ମୋ ଜୀବନର ସ୍ମୃତି
ଗଙ୍ଗାଧର ମହାପାତ୍ର

ପ୍ରକାଶକ
ଲାର୍କ ବୁକ୍ସ
ସୁବର୍ଣ୍ଣରେଖା ଚ୍ୟାମ୍ବର୍ସ
ଭୌମ ନଗର
ଭୁବନେଶ୍ୱର - ୭୫୧ ୦୦୧

ପ୍ରଥମ ପ୍ରକାଶ : ୨୦୦୨

ଟାଇପ ସେଟିଂ ଓ ମୁଦ୍ରଣ
ଶୋଭନ
୧୦୬ ଆଚାର୍ଯ୍ୟ ବିହାର
ଭୁବନେଶ୍ୱର - ୭୫୧ ୦୧୩

ଶହେ ପଚାଶ ଟଙ୍କା ମାତ୍ର

**Mo Jibanara Smruti**
**Gangadhar Mohapatra**

Published by
**LARK BOOKS**
Subarnarekha Chambers
Bhauma Nagar
Bhubaneswar - 751 001

First Edition 2002

Type Setting & Printing
**SHOVAN**
106 Acharya Vihar
Bhubaneswar - 751 013

Rupees one hundred fifty only

ISBN 81-7375-100-5



ମନ୍ତ୍ରୀ ଭାବରେ ଶପଥ ଗ୍ରହଣ ଉତ୍ସବ
ବାମପଟେ ବସିଛନ୍ତି ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ
ରାଜ୍ୟପାଳ ମାନ୍ୟବର ଆକବର ଅଲ୍ଲି ଖାଁ ଶପଥ ପାଠ କରାଉଛନ୍ତି



୰ ପ୍ରମୋଦ ପତି

ଓଡ଼ିଶାର ଜନୈକ କୃତି ସନ୍ତାନ, ବିଭିନ୍ନ ଦେଶ ଦ୍ୱାରା ପ୍ରଦତ୍ତ ଅନେକ ଆନ୍ତର୍ଜାତିକ ପୁରସ୍କାର ପ୍ରାପ୍ତ, ଆନିମେଶନ ଫିଲ୍ମର ଦିଗଦର୍ଶକ, ବିଶିଷ୍ଟ କ୍ଷୁଦ୍ର ତଥ୍ୟାଭିତ୍ତିକ ଚଳଚ୍ଚିତ୍ରର ନିର୍ମାତା, ମୋର ଜାମାତା, ଶ୍ରୀମତୀ ସୁଚିତ୍ରା ପତି (ମୋର ଦ୍ୱିତୀୟା କନ୍ୟା)ଙ୍କ ସ୍ୱାମୀ, ସ୍ୱର୍ଗୀୟ ପ୍ରମୋଦ ପତିଙ୍କ ସ୍ମୃତି ଓ ପ୍ରତିଭା ପ୍ରତି ସମ୍ମାନ ଜଣାଇ ମୋର ଏହି ସ୍ମୃତି ବିଜଡ଼ିତ 'ମୋ ଜୀବନର ସ୍ମୃତି' ପୁସ୍ତକକୁ ଭବିଷ୍ୟତ ଯୁବ ପିଢ଼ିଙ୍କ ପ୍ରେରଣା ପାଇଁ ଉତ୍ସର୍ଗ କଲି ।

ଗଙ୍ଗାଧର ମହାପାତ୍ର

# ସୂଚନା

ମୁଁ ନିଜ ଜୀବନର ସ୍ମୃତି ଓ ଅନୁଭୂତି ନେଇ ପୁସ୍ତକଟିଏ ପ୍ରକାଶ କରିବି, କେବେ କଳ୍ପନା କରିନଥିଲି । ମୁଁ ଏପରି ଗୋଟେ ବିରାଟ ପୁରୁଷ ନୁହେଁ ବା ଜୀବନରେ ଏପରି ପରମ ଉତ୍କର୍ଷତା ବିଭିନ୍ନ ଦିଗରେ ଅର୍ଜନ କରିନାହିଁ ଯାହାକି ପାଠକ ମାନଙ୍କୁ ଅନୁପ୍ରାଣିତ କରିପାରିବ ବା ଦିଗଦର୍ଶନ ଦେବାରେ ସହାୟକ ହେବ । ଜୀବନର ଆରମ୍ଭରେ ଯାହା ହେବାପାଇଁ ଛାତ୍ରାବସ୍ଥାରେ କଳ୍ପନା କରିଥିଲି, ସମୟର ଆବର୍ତ୍ତନରେ ଆଉ ଏକ ଆଦର୍ଶରେ ଅନୁପ୍ରାଣିତ ହୋଇ ଜୀବନ ଅନ୍ୟ ଏକ ଦିଗରେ ଯାଇ ଆଜି ଅଠାଅଶୀ ବର୍ଷ ପୂର୍ଣ୍ଣ ହୋଇ ଅଣାନବେ ବର୍ଷରେ ପହଞ୍ଚିଲାଣି । ଏ ମଧ୍ୟରେ ବହୁତ ବନ୍ଧୁ ଓ ଶୁଭେଚ୍ଛୁ ମତେ ମୋ ସ୍ମୃତି ଓ ଅନୁଭୂତିକୁ ନେଇ ଆତ୍ମଜୀବନୀ ଲେଖିବା ପାଇଁ ପ୍ରବର୍ତ୍ତାଇ ଥିଲେ ମଧ୍ୟ ମୁଁ ସେ ଦିଗରେ ଧ୍ୟାନ ଦେଇନଥିଲି । କାଳକ୍ରମେ ୧୯୯୦ ମସିହା ଲୋକସଭା ନିର୍ବାଚନରେ ମୋର ଅପ୍ରତ୍ୟାଶିତ ଅସଫଳତା ମତେ କ୍ଷମତା ରାଜନୀତିରୁ ଦୂରେଇ ଯିବାକୁ ବାଧ୍ୟ କଲା । ଅବଶିଷ୍ଟ ଜୀବନ କିପରି କଟାଇବି ସେଥିପାଇଁ ଚିନ୍ତା କରୁଥିବାବେଳେ ମୋର କେତେକ ସହକର୍ମୀ, ବିଶିଷ୍ଟ ଆଇନଜୀବୀ ମୋର ୮୫ତମ ଜନ୍ମଦିନ ପାଳନ କରିବା ପାଇଁ ପୁରୀଠାରେ ଗଙ୍ଗାଧର ମହାପାତ୍ର ୮୫ତମ ଜୟନ୍ତି ଉତ୍ସବ ପାଳନ ଉଦ୍ଦେଶ୍ୟରେ ଏକ ଜୟନ୍ତି କମିଟି ମୋର ପରମ ଶୁଭେଚ୍ଛୁ ବିଶିଷ୍ଟ ବର୍ଷୀୟାନ ଆଡ଼ଭୋକେଟ୍ ଶ୍ରୀ ଶରତ ଚନ୍ଦ୍ର ରାଉତରାୟଙ୍କ ଅଧ୍ୟକ୍ଷତାରେ ଗଠନ କଲେ ଓ ଏହି ଅବସରରେ ମଧ୍ୟ ଏକ ଅଭିନନ୍ଦନିକା ପ୍ରକାଶ କରିବାପାଇଁ ସ୍ଥିର କରି ଅନେକ ବିଶିଷ୍ଟ ବ୍ୟକ୍ତିଙ୍କୁ ମୋ ସହିତ ସେମାନଙ୍କର ସମ୍ପର୍କୀୟ ବିଭିନ୍ନ ସମୟର ଅନୁଭୂତି ଉପରେ ଲେଖା ପଠାଇବା ପାଇଁ ଅନୁରୋଧ ପତ୍ରମାନ ପଠାଇଲେ । ଅଭିନନ୍ଦନିକାଟି ପ୍ରାୟ ୨୫୦ ପୃଷ୍ଠା ହେଲା । କମିଟି ତରଫରୁ ଶରତ ବାବୁଙ୍କ ଉଦ୍ୟମ ଓ ମୋର ଦ୍ୱିତୀୟ ଓ ତୃତୀୟ ପୁତ୍ର ଶ୍ରୀମାନ ଉମାବଲ୍ଲଭ ଓ ଶ୍ରୀମାନ ସୀତାବଲ୍ଲଭଙ୍କ ଅକ୍ଳାନ୍ତ ଉଦ୍ୟମ ଓ ପୁରୀର ବିଶିଷ୍ଟ ସାହିତ୍ୟିକା ସ୍ୱର୍ଗତା ପ୍ରମିଳା ଆଚାର୍ଯ୍ୟ, ଶ୍ରୀମତୀ ପ୍ରତୀମା ମିଶ୍ର ଏବଂ ସାହିତ୍ୟ ଓ ସଂସ୍କୃତିପ୍ରେମୀ ତଥା ସମାଜସେବୀ ଶ୍ରୀ ଅନାମ ସାହୁ ପ୍ରମୁଖ ପୁରୀ ଓ ଭୁବନେଶ୍ୱରରୁ ପ୍ରାୟ ୫୦ ହଜାର

ଟଙ୍କାର ଅର୍ଥ ଓ ବିଜ୍ଞାପନ ସଂଗ୍ରହ କରି ରାଜ୍ୟର ବହୁ ବିଶିଷ୍ଟ ଲେଖକ, ସାହିତ୍ୟିକ, ସମାଜସେବୀ ଓ ରାଜନୀତିକ ନେତାଙ୍କ ଠାରୁ ଅନେକ ମୂଲ୍ୟବାନ ଲେଖା ସଂଗ୍ରହ କରି ଅଭିନନ୍ଦନିକାଟି ପ୍ରକାଶ କରିବାରେ ସଫଳ ହୋଇଥିଲେ ।

୧୯୯୯ ମସିହା ଜୁଲାଇ ୨୧ ତାରିଖ ଦିନ ଓଡ଼ିଶାର ବିଶିଷ୍ଟ ଜନନାୟକ ପୂର୍ବତନ ମୁଖ୍ୟମନ୍ତ୍ରୀ ବର୍ଷୀୟାନ କଂଗ୍ରେସ ନେତା ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଅଭିନନ୍ଦନିକାଟି ଉନ୍ମୋଚନ କରିଥିଲେ । ଆମ ରାଜ୍ୟର ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଡକ୍ଟର ଗିରିଧର ଗମାଙ୍ଗ ପୁରୀ ପୌର ଭବନରେ ଉକ୍ତ ଉତ୍ସବର ଅପରାହ୍ନ ଅଧିବେଶନରେ ମୁଖ୍ୟ ଅତିଥି ରୂପେ ଯୋଗଦେଇ ଦୀର୍ଘ ତିନି ଘଣ୍ଟା ଉତ୍ସବରେ କଟାଇଥିଲେ । ବର୍ତ୍ତମାନ ରାଜ୍ୟ ବିଧାନସଭାର ବାଚସ୍ପତି ଶ୍ରୀ ଶରତ କର, ବିଶିଷ୍ଟ ସାହିତ୍ୟିକ ଶ୍ରୀ ଯଦୁନାଥ ଦାଶମହାପାତ୍ର, ପୂର୍ବତନ ଉପବାଚସ୍ପତି ଶ୍ରୀ ହରିହର ବାହିନିପତି, ସ୍ଥାନୀୟ ବିଧାୟକ ଶ୍ରୀ ମହେଶ୍ୱର ମହାନ୍ତି ଓ ତତ୍‌କାଳୀନ ପୁରୀ ପୌରପାଳ ଶ୍ରୀ ସୁରେନ୍ଦ୍ରନାଥ ଦାସ ପ୍ରମୁଖ ବହୁ ଯୁବକ, ଛାତ୍ର, ସାମ୍ବାଦିକ ଓ ଜନସେବୀ ଉକ୍ତ ଉତ୍ସବରେ ଯୋଗ ଦେଇ ଉତ୍ସବଟିକୁ ସାଫଲ୍ୟମଣ୍ଡିତ କରିଥିଲେ ।

ମୋର ଯାହା ମନେ ପଡୁଛି ସେହିଦିନ ପୁରୀ ସର୍କିଟ୍ ହାଉସରେ ଜାନକୀ ବାବୁଙ୍କ ସହିତ ଏକ ନିବିଡ଼ ବ୍ୟକ୍ତିଗତ ଆଲୋଚନା ବେଳେ ମୋ ବାଲ୍ୟ ଜୀବନରେ ପୁରୀ ଜିଲ୍ଲାସ୍କୁଲରେ ପଢ଼ା ସମୟର ଆର୍ଥିକ ଅସୁବିଧା ଭିତରେ ମୁଁ କିପରି ସମସ୍ତ ପ୍ରତିବନ୍ଧକ ଦୂର କରିବାରେ ସାହସ ଧରି ଅଗ୍ରସର ହେଲି ସେ ସମ୍ପର୍କରେ ତାଙ୍କୁ ଜଣାଇବାରେ ଏ ସମ୍ପର୍କୀୟ ସମସ୍ତ ସ୍ମୃତି ଓ ଅନୁଭୂତିକୁ ନେଇ ଆଗ୍ରହୀ ଛାତ୍ର ଓ ଯୁବକ ମାନଙ୍କ ପାଇଁ ଶିକ୍ଷଣୀୟ ହେବାଭଳି ଏକ ପୁସ୍ତକ ପ୍ରକାଶ କରିବା ପାଇଁ ସେ ପରାମର୍ଶ ଦେଲେ । ସେହି ଦିନ ଠାରୁ ତାଙ୍କ ପରାମର୍ଶକୁ ପୁଞ୍ଜି କରି ଏକ ପୁସ୍ତକ ଲେଖିବାରେ ମନ ଭିତରେ ମୋର ଆଗ୍ରହ ଜନ୍ମିଲା । ଏ ମଧ୍ୟରେ ମତେ ଗୋଟିଏ ନୂତନ ନିଯୁକ୍ତି ମଧ୍ୟ ମିଳିଲା, କ୍ୟାବିନେଟ ପାହ୍ୟା ସହିତ ରାଜ୍ୟ ଆଇନ ରିଭିଜନ କମିଟିର ଅଧ୍ୟକ୍ଷ ଭାବରେ । ରାଜ୍ୟ ସରକାର ମଧ୍ୟ ଏକ ମନ୍ତ୍ରୀ ପାହ୍ୟା ପାଇଁ ଘର ଓ କ୍ୟାବିନେଟ ମନ୍ତ୍ରୀଙ୍କର ସବୁ ସୁବିଧା ଯୋଗାଇ ଦେଲେ । ମୋର ପି.ଏ. ଶ୍ରୀ କ୍ଷିରୋଦ ମହାନ୍ତି ଓ ବ୍ୟକ୍ତିଗତ ସଚିବ ଶ୍ରୀ କୈଳାସ ଚନ୍ଦ୍ର ବାରିକଙ୍କ ସହଯୋଗ ମଧ୍ୟ ମିଳିଲା ଓ ସେମାନେ ମୋର ଲେଖାକୁ ଓଡ଼ିଆରେ ଟାଇପ କରିଦେବେ ବୋଲି ବିଶେଷ ଆଗ୍ରହ ମଧ୍ୟ ପ୍ରକାଶ କଲେ । ଫଳରେ ମୁଁ ଅଫିସରେ ବସି ଦିନବେଳେ ପ୍ରାୟ ଦୁଇ ଘଣ୍ଟା ନିଜେ ଲେଖିଦିଏ ଓ ମୋର ପି.ଏ.

ଶ୍ରୀ ମହାନ୍ତି ତାକୁ ନେଇ ପରଦିନ ଓଡ଼ିଆ ଟାଇପ କରି ମତେ ଦେଖାନ୍ତି । ଏହିପରି ମୋ ହାତଲେଖା ପ୍ରାୟ ତିନିଶହ ପୃଷ୍ଠା ସରିଲାବେଳକୁ ରାଜ୍ୟରେ ପୁଣି ନିର୍ବାଚନ ହୋଇ ଏକ ଅଣ କଂଗ୍ରେସ ମିଳିତ ମନ୍ତ୍ରୀମଣ୍ଡଳ ଶ୍ରୀ ନବୀନ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରୀତ୍ୱରେ ପ୍ରତିଷ୍ଠିତ ହେଲା ୨୦୦୦ ମସିହା ପ୍ରାରମ୍ଭରେ । ଯେହେତୁ ପୂର୍ବ କଂଗ୍ରେସ ଦଳ ସରକାର ମତେ ନିଯୁକ୍ତି ଦେଇଥିଲେ ଏବଂ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ମୋର ନିଯୁକ୍ତିର ସମୟ ଅତିକ୍ରାନ୍ତ କରିବାପାଇଁ ବାଧା ସୃଷ୍ଟି କରିବାର ଆଶଙ୍କା ନଥିଲେ ମଧ ନୈତିକତା ଦୃଷ୍ଟିରୁ ମୁଁ ଅଣକଂଗ୍ରେସର ମିଳିତ ମନ୍ତ୍ରୀମଣ୍ଡଳଙ୍କ ନିୟନ୍ତ୍ରଣରେ ଦାୟୀତ୍ୱ ତୁଲାଇବା ସମୀଚିନ ହେବ ନାହି ବୋଲି ମନେ କରି ଇସ୍ତଫା ପ୍ରଦାନ କଲି । ଇସ୍ତଫା ଦେବା ସତ୍ତ୍ୱେ ସରକାର ଇସ୍ତଫା ଗ୍ରହଣ କରିବାର କୌଣସି ସୂଚନା ନଦେଲେ ମଧ ଏକତରଫା ମୋ ତରଫରୁ କାର୍ଯ୍ୟରୁ ଅବ୍ୟାହତି ନେଲି ବୋଲି ମୁଖ୍ୟମନ୍ତ୍ରୀଙ୍କୁ ଜଣାଇ ଦେଲି ଓ ଅଫିସରେ ଯୋଗ ନଦେଇ ମୋର ଅଫିସ କର୍ମଚାରୀ ମାନଙ୍କୁ ଅବ୍ୟାହତି ଦେଇ ମୋ ନିଜ ଘରକୁ ଫେରିଆସିଲି । ଘରକୁ ଫେରିବାର କିଛି ଦିନ ପରେ ମୋର ଚତୁର୍ଥ ପୁତ୍ର ଶ୍ରୀମାନ ଶ୍ୟାମାବଲ୍ଲଭ ଓ ତାର ଧର୍ମପତ୍ନୀ ଶ୍ରୀମତୀ ଇନ୍ଦିରା ଲେଖାଟିକୁ ସମ୍ପୂର୍ଣ୍ଣ କରିବାପାଇଁ ତାଙ୍କ ପଲାସପଲ୍ଲୀ ବାସଭବନରେ ଗୋଟିଏ ଶୀତତାପ ନିୟନ୍ତ୍ରଣ ଥିବା କୋଠରୀ ଓ ଲେଖିବା ପାଇଁ ସମସ୍ତ ସୁବିଧା ଯୋଗାଇ ଦେଇ ପୁସ୍ତକଟିକୁ ସମ୍ପୂର୍ଣ୍ଣ କରିବାରେ ଯେଉଁ ସହଯୋଗ କରିଛନ୍ତି ସେଥିପାଇଁ ସେମାନଙ୍କୁ ହାର୍ଦ୍ଦିକ ଶୁଭେଚ୍ଛା ଓ ଆଶୀର୍ବାଦ ଜଣାଉଛି । ମୁଁ ନିଜେ ଆଜି ବିଶ୍ୱାସ କରିପାରୁନାହିଁ କିପରି ନିଜ ହାତରେ ୫୮୦ ପୃଷ୍ଠାର ହାତଲେଖା ସମ୍ପୂର୍ଣ୍ଣ କରିପାରିଲି । ଲେଖା ସରିବାପରେ ଛାପିବା ପାଇଁ କଟକ ବାଲୁବଜାର ସାରସ୍ୱତ ପୁସ୍ତକ ଭଣ୍ଡାରର ସ୍ୱତ୍ତ୍ୱାଧିକାରୀ ଶ୍ରୀ ପ୍ରଶାନ୍ତ କୁମାର ନନ୍ଦ ଆଗ୍ରହ ପ୍ରକାଶ କଲେ ଓ ପାଣ୍ଡୁଲିପିଟି ନେଇଗଲେ । ଏକ ମାସ ପରେ ୬୦ ପୃଷ୍ଠା ପର୍ଯ୍ୟନ୍ତ ପ୍ରୁଫ୍ ବାହାର କରି ତାଙ୍କର ଶାରୀରିକ ଅସୁସ୍ଥତା, ପୁଅର ବ୍ରତୋପନୟନ ଓ ବ୍ୟବସାୟଗତ ସଙ୍କଟ ଦୃଷ୍ଟିରୁ ଛପାଟି ଅଗ୍ରଗତି କଲାନାହିଁ । ମୁଁ ତାଙ୍କୁ ବାରମ୍ବାର ଫୋନ କରି କିଛି ଫଳ ନହେବାରୁ କଟକ ଯାଇ ମୋର ପୁତ୍ର ହାଇକୋର୍ଟର ଆଡ୍‌ଭୋକେଟ୍ ଶ୍ରୀମାନ ଉମାବଲ୍ଲଭଙ୍କ ଉଦ୍ୟମ ଫଳରେ ପାଣ୍ଡୁଲିପି ଫେରସ୍ତ ଆଣିବାରେ ସମର୍ଥ ହେଲି । ତାପରେ ମୋର ପରମ ଆତ୍ମୀୟ ଲାର୍କ ବୁକ୍‌ସ୍‌ର ସ୍ୱତ୍ତ୍ୱାଧିକାରୀ ଶ୍ରୀ ମହେନ୍ଦ୍ର ମିଶ୍ରଙ୍କୁ ପାଣ୍ଡୁଲିପିଟି ଧରାଇ ଦେଲି । ଏ ବୟସରେ ପାଣ୍ଡୁଲିପିକୁ ଆଉଥରେ ସଂଶୋଧନ କଲେ ମୋ ଆଖି ଉପରେ ପ୍ରବଳ ଚାପ ପଡ଼ିବା ଆଶଙ୍କା କରି ସଂଶୋଧନ ପାଇଁ କୁଣ୍ଠାବୋଧ କରିବାରୁ ମୋ ପୁଅ

ଉମାବଲ୍ଲଭ ତାଙ୍କ ହାଇକୋର୍ଟ କାମ ସହିତ, କେନ୍ଦ୍ର ପ୍ରଶାସନିକ ଟ୍ରିବୁନାଲରେ ତାଙ୍କ ସରକାରୀ ଓକିଲର ଦାୟୀତ୍ୱ ତୁଲାଇ ନିଜର ଆଇନ ବ୍ୟବସାୟ ପାଇଁ ବ୍ୟସ୍ତ ରହୁଥିଲେ ମଧ୍ୟ ଛୁଟିଦିନ ମାନଙ୍କରେ ଅର୍ଦ୍ଧରାତ୍ର ପର୍ଯ୍ୟନ୍ତ ପାଣ୍ଡୁଲିପି ସଂଶୋଧନ କରିବାରେ ଯେଉଁ ସାହସ କଲେ ଓ ସେ କାର୍ଯ୍ୟ ସମ୍ପାଦନ କରିବାରେ ସଫଳ ହେଲେ ସେଥିପାଇଁ ଆଜି ବୋଧହୁଏ ପୁସ୍ତକଟି ପ୍ରକାଶ କରିବା ସହଜସାଧ୍ୟ ହୋଇପାରିଲା । ଶ୍ରୀମାନ୍ ମହେନ୍ଦ୍ର ମୋର ଅତି ନିକଟ ସମ୍ପର୍କୀୟ ଓ ଜଣେ ପ୍ରତିଷ୍ଠିତ ପୁସ୍ତକ ପ୍ରକାଶ ଅନୁଷ୍ଠାନର ମାଲିକ ହେଲେ ମଧ୍ୟ ତାର ମୂଲ୍ୟବାନ ସମୟ ଦେଇ ଦ୍ୱିତୀୟ ଥର ପାଇଁ ପ୍ରଥମ ଛପାଟିର ସମସ୍ତ ସଂଶୋଧନ କରି ବହିଟି ମୋର ୮୯ତମ ଜନ୍ମତିଥି ଉତ୍ସବରେ ଉନ୍ମୋଚନ କରିବାର ଯେଉଁ ସୁଯୋଗ ସୃଷ୍ଟି କରିଛି ସେଥିପାଇଁ ତାକୁ ଓ ତାର ପରିବାରବର୍ଗଙ୍କୁ ହୃଦୟର ଗଭୀରତମ ସ୍ଥାନରୁ ଆଶୀର୍ବାଦ ଦେଇ ତାର ଦୀର୍ଘ ଜୀବନ କାମନା ସହିତ ତାର ଓ ତା ବ୍ୟବସାୟର ଉନ୍ନତି କାମନା କରୁଛି ।

ମୋର ପରିବାରବର୍ଗ ଓ ବିଶେଷ କରି ମୋର ପୁତ୍ରମାନେ ସବୁବେଳେ ମତେ ଏହି ଲେଖା ସମ୍ପୂର୍ଣ୍ଣ କରିବାରେ ସମସ୍ତ ସହଯୋଗ ଦେଇ ଆଗେଇବା ପାଇଁ ସୁଯୋଗ ସୃଷ୍ଟି କରିଛନ୍ତି । ଅନେକ ବ୍ୟକ୍ତିଗତ ବନ୍ଧୁ, ରାଜନୈତିକ ସହକର୍ମୀ, ମୋର ଅଫିସର କର୍ମଚାରୀ ମାନେ ମତେ ଲେଖାଲେଖି କରିବା, ଟାଇପ କରିବା, ମୋର ଲେଖାକୁ ଉତାରିବା ପ୍ରଭୃତି ଯାବତୀୟ କାର୍ଯ୍ୟରେ ସହାୟତା କରିଥିବାରୁ ସେମାନଙ୍କୁ ମୋର ଶୁଭେଚ୍ଛା ଓ ଆଶୀର୍ବାଦ ଜଣାଉଛି ।

ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, ଶ୍ରୀ ଶରତ ଚନ୍ଦ୍ର ରାଉତରାୟ, ପୁରୀ ଜୟନ୍ତୀ କମିଟିର ସଦସ୍ୟମାନେ ମତେ ନିଜର ସ୍ମୃତି ଓ ଅନୁଭୂତିକୁ ପୁସ୍ତକରେ ପ୍ରତିଫଳିତ କରିବାରେ ସହାୟକ ହୋଇଥିବା ଦୃଷ୍ଟିରୁ ସମସ୍ତଙ୍କୁ ଧନ୍ୟବାଦ ଓ ଶୁଭେଚ୍ଛା ଜଣାଉଛି ।

ଗୋଟିଏ ବିଷୟ ଉଲ୍ଲେଖ କରିବା ସମୀଚିନ ହେବ ଯେ ମୋର ୮୫ ବର୍ଷର ଜନ୍ମଜୟନ୍ତୀ ପାଳନ କରିବା ଉତ୍ସବରେ ସମ୍ମାନନୀୟ ଅତିଥି ଭାବରେ ଭୁବନେଶ୍ୱର ଦୂରଦର୍ଶନ କେନ୍ଦ୍ରର ଅଧ୍ୟକ୍ଷ ଶ୍ରୀ ଜଗନ୍ନାଥ ପ୍ରସାଦ ଭଗତ ଯୋଗ ଦେଇ ମୋ ଜୀବନୀ ଉପରେ ଆଧାରିତ ଏକ ଚଳଚିତ୍ର ପ୍ରସ୍ତୁତ କରିବାପାଇଁ କେନ୍ଦ୍ର ସୂଚନା ଓ ପ୍ରସାରଣ ବିଭାଗକୁ ସୁପାରିଶ କରିବେ ବୋଲି ଘୋଷଣା କରିଥିଲେ । କିନ୍ତୁ ବଞ୍ଚିଥିବା ବ୍ୟକ୍ତି ବିଶେଷଙ୍କ ଉପରେ ସାଧାରଣତଃ ଦୂରଦର୍ଶନ କୌଣସି ଚଳଚିତ୍ର କରାଗଲେ ତାଙ୍କ ଜୀବିତାବସ୍ଥାରେ ସାଧାରଣଙ୍କୁ ଦେଖାଇବାର ପରମିଶନ ନଥିବାରୁ ଏ ସମ୍ପର୍କରେ

ଚଳଚିତ୍ର ତିଆରି କରିବାର ନିଷ୍ପତ୍ତି ନେବାପାଇଁ ନାନା ପ୍ରଶ୍ନ ଉଠିବା ପରେ ମଧ୍ୟ ଶେଷରେ ସୂଚନା ଓ ପ୍ରସାରଣ ମନ୍ତ୍ରାଳୟର ପ୍ରଶାସନିକ ଅନୁମତି ମିଳିଲା କିନ୍ତୁ ଅର୍ଥ ନଥିବାରେ ଡେରି ଘଟି ୨୦୦୧ ମସିହାରେ ଭୁବନେଶ୍ୱର ଦୂରଦର୍ଶନ କେନ୍ଦ୍ରର ଯୁଗ୍ମ ନିର୍ଦ୍ଦେଶକ ଶ୍ରୀ ଅରବିନ୍ଦ ମୁଖାର୍ଜୀଙ୍କୁ ନିର୍ଦ୍ଦେଶକ ଭାବେ ନିଯୁକ୍ତି ମିଳିଲା ଓ ନିର୍ମାଣ ସମ୍ପୂର୍ଣ୍ଣ ପାଇଁ ପ୍ରାୟ ସତୁରି ହଜାର ଟଙ୍କା ବ୍ୟୟରେ ୨୦୦୧ ଶେଷ ସୁଦ୍ଧା ଚଳଚିତ୍ରଟି ପ୍ରସ୍ତୁତ ହୋଇ ଭୁବନେଶ୍ୱର ଦୂରଦର୍ଶନ କେନ୍ଦ୍ରର ଦର୍ଶନାଗାରରେ ପ୍ରଦର୍ଶିତ ହୋଇ ମୋର ସମ୍ମତି ଲାଭ କରିଥିଲା । ଏଥିପାଇଁ ଶ୍ରୀ ଭଗତ ଓ ତାଙ୍କର ସହକର୍ମୀ ଓ ଦୂରଦର୍ଶନ କେନ୍ଦ୍ରର ଚଳଚିତ୍ର ନିର୍ମାଣକାରୀ ସହଯୋଗୀମାନଙ୍କୁ ଏହି ପୁସ୍ତକ ପ୍ରକାଶ ଅବସରରେ ମୋର ହାର୍ଦ୍ଦିକ କୃତଜ୍ଞତା ଜଣାଉଛି । ବିଶେଷ କରି ଖରାରେ କଟକ ଭୁବନେଶ୍ୱର ଓ ପୁରୀ ଠାରେ ବିଭିନ୍ନ ପର୍ଯ୍ୟାୟରେ ସୁଟିଂ ହୋଇ ଚଳଚିତ୍ରଟି ବେଶ ଆକର୍ଷଣୀୟ ହୋଇଥିବା ମୁଁ ଉପଲବ୍ଧି କରିଛି । ଏଥିପାଇଁ ମୋର ଦୁଇ ପୁତ୍ର ଶ୍ରୀମାନ୍ ସୀତାବଲ୍ଲଭ, ଶ୍ୟାମାବଲ୍ଲଭ ଓ ପୁତ୍ରବଧୂ ଶ୍ରୀମତୀ ଇନ୍ଦିରା ଯେଉଁ ସହଯୋଗ ଦେଇଛନ୍ତି ଓ କଷ୍ଟ ସ୍ୱୀକାର କରିଛନ୍ତି, ସେମାନଙ୍କ ଉଦ୍ୟମ ଓ ବ୍ୟବସାୟ ପରିଚାଳନା ଅଭିଜ୍ଞତାର ଭୂୟସୀ ପ୍ରଂଶସା କରିବା ସହିତ ହାର୍ଦ୍ଦିକ ଆଶୀର୍ବାଦ ଦେଉଅଛି ।

ଏହି ଚଳଚିତ୍ରଟିର ସୁଟିଂ ସମୟରେ ସତ୍ୟବାଦୀ ନିକଟସ୍ଥ ଆମ୍ଭ ଗ୍ରାମ ବିଶ୍ୱନାଥପୁର ଓ ମୋର ମାମୁଁ ଘର ଗ୍ରାମ ବୀରନରସିଂହପୁର ତଥା ମାଉସୀ ଘର ଗ୍ରାମ ଶ୍ରୀରାମଚନ୍ଦ୍ରପୁରରେ ରହୁଥିବା ଆମ୍ଭର ଆତ୍ମୀୟସ୍ୱଜନମାନେ ତଥା ଉକ୍ତ ତିନିଟି ଗ୍ରାମର ଗ୍ରାମବାସୀମାନଙ୍କ ସହଯୋଗ ପାଇଁ ମୁଁ ସେମାନଙ୍କୁ ମଧ୍ୟ ହାର୍ଦ୍ଦିକ କୃତଜ୍ଞତା ଜଣାଉଛି । ପୁରୀ ସହରରେ ତଥା ସୁଆରସାହିସ୍ଥ ଆମ ଘର ଭିତରେ ଏହି ଚଳଚିତ୍ରର ସୁଟିଂ ସମୟରେ ମୋର ବୋହୁ ହିନ୍ଦି ସାହିତ୍ୟର ବିଦୁଷୀ, ସୁଲେଖିକା ଅଧ୍ୟାପିକା ଡାଃ କେତକୀ ମହାପାତ୍ର ସଟ୍ ଗୁଡ଼ିକ ପ୍ରାଣବନ୍ତ କରିବାକୁ ଦେଇଥିବା ପରାମର୍ଶ ଓ ସହଯୋଗ ଅତ୍ୟନ୍ତ ପ୍ରଶଂସନୀୟ । ଏଥିପାଇଁ ତାଙ୍କର ଓ ମୋର ନାତିମାନଙ୍କ ଭବିଷ୍ୟତ ଉଜ୍ଜଳ ହେଉ ଓ ତାଙ୍କର ଦୀର୍ଘ ଜୀବନ ପାଇଁ ସେମାନଙ୍କୁ ଆଶୀର୍ବାଦ କରୁଛି । ଶ୍ରୀଜଗନ୍ନାଥ ସେମାନଙ୍କର ଅଶେଷ ମଙ୍ଗଳ ବିଧାନ କରନ୍ତୁ ଏହାହିଁ ପ୍ରାର୍ଥନା ।

ସର୍ବୋପରି ମୋର ସହଧର୍ମିଣୀ ଶ୍ରୀମତୀ ରୁକ୍ମିଣୀ ଦେବୀଙ୍କର ସହଯୋଗ ବିନା ଏହି ଚଳଚିତ୍ର ଓ ସ୍ମୃତି ଓ ଅନୁଭୂତିର ରଚନା ପ୍ରକାଶ କରିବା କେବେ ସମ୍ଭବ ହୋଇ ପାରି ନଥାନ୍ତା । ମୋର ଯଦି କିଛି ପ୍ରତିଷ୍ଠା ଘଟିଥାଏ ସେଥିପାଇଁ ତାଙ୍କର ସହଯୋଗ

ହେଉଛି ମୋର ବଡ଼ ସମ୍ବଳ, ସାହସର ସହ କାର୍ଯ୍ୟକୁ ସମ୍ପୂର୍ଣ୍ଣ କରିବାରେ ସବୁଠାରୁ ବଡ଼ ଅବଦାନ । ୮୧ ବର୍ଷ ବୟସରେ ତାଙ୍କର ସହଯୋଗ ଓ ପ୍ରେରଣା ନଥିଲେ ମୁଁ ଏ ପରି ଏକ ଉଦ୍ୟମରେ ଆଗେଇ ପାରି ନଥାନ୍ତି । ଗତ ବର୍ଷ ମୋର ଶାରିରୀକ ଅସୁସ୍ଥତା ମତେ ହତାଶ କରିଥିଲା । ଡଃ ବସନ୍ତ ଦାସଙ୍କ ଅସୀମ ଉଦ୍ୟମ ଓ ଆନ୍ତରିକ ଚିକିତ୍ସା ଫଳରେ ମୁଁ ପ୍ରାୟ ଛଅ ମାସପରେ ବଞ୍ଚିବାର ଆଶା ଦେଖିଲି ।

ସେହି ସମୟରେ ରାଜ୍ୟରେ ମହାବାତ୍ୟା ଫଳରେ ଛାରଖାର ହୋଇଯାଇଥିବା ବହୁ ଜୀବନ ଓ ସମ୍ପତ୍ତି କ୍ଷୟକ୍ଷତି ଘଟି ରାଜ୍ୟର ଅର୍ଥନୈତିକ ମେରୁଦଣ୍ଡ ଭାଙ୍ଗି ପଡ଼ିଥିଲା । ଏପର୍ଯ୍ୟନ୍ତ ମଧ୍ୟ ଅର୍ଥନୀତି ସୁଧାର ହୋଇନାହିଁ । ସେହି ସଙ୍କଟ ବେଳେ ଅନେକ ପ୍ରାନ୍ତୀୟ ସରକାର ରାଜ୍ୟ ସରକାରଙ୍କୁ ସହାୟତା କରିବାରେ ବିଶେଷ ଉଦ୍ୟମ କରିଥିଲେ । ସେତେବେଳେ ଦିଲ୍ଲୀର ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶୀଲା ଦୀକ୍ଷିତ ପୁରୀ ଜିଲ୍ଲାର ଥଇଥାନ ଓ ନବ ନିର୍ମାଣର ଦାୟିତ୍ୱ ନେଇଥିଲେ । ନିଜେ ମଧ୍ୟ ଓଡ଼ିଶା ଆସି ପୁରୀ ଜିଲ୍ଲାର ଥଇଥାନ କାର୍ଯ୍ୟ ପରିଦର୍ଶନ ଓ ପରାମର୍ଶ ଦେବା ସମୟରେ ମୋର ଅସୁସ୍ଥତା ଖବର ପାଇ ମୋର ଫରେଷ୍ଟ ପାର୍କ ବାସଭବନକୁ ଆସି ଚିକିତ୍ସା ବ୍ୟବସ୍ଥା ସମ୍ପର୍କରେ ଆଲୋଚନା କରିବା ସହିତ ଆଜ୍‌ମା ରୋଗରୁ ସମ୍ପୂର୍ଣ୍ଣ ମୁକ୍ତି ନପାଇବା ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟକ୍ରମରୁ କ୍ଷାନ୍ତ ହେବାକୁ ପରାମର୍ଶ ଦେଇ କେବଳ ନିଜର 'ମେମୋୟରସ' ଲେଖିବାର ଯଦି ସୁବିଧା ହୁଏ ସେତିକି ଅନ୍ତତଃ ପିଲାମାନଙ୍କ ପାଇଁ ସ୍ମୃତି ଭାବେ ସାଇତି ରଖିବା ପାଇଁ ଉଦ୍ୟମ କର ବୋଲି ପରାମର୍ଶ ଦେଲେ । ଏ ଦିଗରେ ମୁଁ କିଛି ଆଗେଇଥିବା କଥା କହିବାରୁ ସେ ଅତ୍ୟନ୍ତ ଖୁସି ହୋଇ ଜାନକୀ ବାବୁ ମତେ ଏ କାର୍ଯ୍ୟ ପାଇଁ ଯେଉଁ ଉତ୍ସାହ ଦେଉଛନ୍ତି ସେ କଥା ଶୁଣି ଅତ୍ୟନ୍ତ ପ୍ରୀତ ହୋଇଥିଲେ । ତାଙ୍କର ପରାମର୍ଶ ମଧ୍ୟ ମୋର ଅସୁସ୍ଥତା ସତ୍ତ୍ୱେ ଏ ପୁସ୍ତକଟି ସମ୍ପୂର୍ଣ୍ଣ କରିବାରେ ବିଶେଷ ଉତ୍ସାହ ସୃଷ୍ଟି କରିଥିଲା । ଶ୍ରୀମତୀ ଦୀକ୍ଷିତଙ୍କ ପ୍ରତି ଗଭୀର କୃତଜ୍ଞତା ଦେବାପାଇଁ ବର୍ତ୍ତମାନ ମୋର ଭାଷା ନାହିଁ । ତାଙ୍କର ପରାମର୍ଶ ଓ ସଦିଚ୍ଛା ପାଇଁ ତାଙ୍କଠାରେ କୃତଜ୍ଞତା ପ୍ରକାଶ କରୁଛି । ଉତ୍କଳ ଆର୍ଯ୍ୟପ୍ରତିନିଧି ସଭାର ଅଧ୍ୟକ୍ଷ ଆଚାର୍ଯ୍ୟ ଜ୍ଞାନେନ୍ଦ୍ର ଉଡ଼ାଜାହାଜ ପଡ଼ିଆରେ ଶ୍ରୀମତୀ ଦୀକ୍ଷିତଙ୍କୁ ମୋ ଅସୁସ୍ଥତା ସମ୍ବାଦ ଦେଇ ଅଳ୍ପ ସମୟ ପରେ ମୋ ବାସଭବନକୁ ଶ୍ରୀମତୀ ଦୀକ୍ଷିତ ଆସି ବହୁ ସମୟ କଟାଇବାର ସୁଯୋଗ ପାଇଁ ତାଙ୍କୁ ଅଶେଷ ଧନ୍ୟବାଦ ଦେଉଛି ।

ମୋର ଶୁଭେଚ୍ଛୁ ତଥା ସହୃଦୟକ ମାନେ ପ୍ରତିବର୍ଷ ମୋର ଜନ୍ମଜୟନ୍ତୀ ଉତ୍ସବ ପାଳନ କରୁଛନ୍ତି ଏବଂ ଏ ବର୍ଷ ଜୁଲାଇ ୨୧ ତାରିଖ ୨୦୦୨ ମସିହାରେ ହେବାକୁ

ଥିବା ଜନ୍ମଜୟନ୍ତୀରେ ମୋର ଆତ୍ମଜୀବନୀ - 'ମୋର ଜୀବନର ସ୍ମୃତି' ପୁସ୍ତକଟିକୁ ଉନ୍ମୋଚନ କରିବାର ନିଷ୍ପତ୍ତି ନେଇଥିବାରୁ ଜୟନ୍ତୀ କମିଟିର ସମସ୍ତଙ୍କୁ ମୁଁ କୃତଜ୍ଞତା ଜଣାଉଛି ।

ବହିଟି ପ୍ରକାଶିତ ହେବାପରେ ଯଦି ପାଠକ ମାନଙ୍କୁ ନିଜର ଜୀବନ ଗଢ଼ିବାରେ କିଛି ପ୍ରେରଣା ଓ ଉତ୍ସାହ ଦେଇପାରେ ତାହାହେଲେ ମୋର ସମସ୍ତ ଶ୍ରମ ସାର୍ଥକ ହେଲା ବୋଲି ବିଚାରିବି । ପୁଣିଥରେ ଶ୍ରୀଜଗନ୍ନାଥଙ୍କ ଚରଣ କମଳରେ ଏ ପୁସ୍ତକଟି ଅର୍ପଣ କରି ମୋର ଜୀବନର ଶେଷ କାମନା ପୂରଣରେ ତାଙ୍କର କରୁଣା ପ୍ରତି ବିନମ୍ର ପ୍ରଣତି ଜଣାଉଛି । ଆଉ ଅନେକ ବିଷୟ ଏବେ ମନେ ପଡୁଛି । ଯଦି ସମ୍ଭବ ହୁଏ ଏହି ପୁସ୍ତକର ଦ୍ୱିତୀୟ ଭାଗ ପ୍ରକାଶ କରିବି ।

(ଗଙ୍ଗାଧର ମହାପାତ୍ର)

# ସୂଚୀ

# ବଂଶବୃକ୍ଷ



ଆମ ପରିବାର
✓ ପରମାନନ୍ଦ ମହାପାତ୍ର
✓ ଦାମୋଦର
✓ ନରସିଂହ
✓ କାଶୀନାଥ
✓ ମାର୍କଣ୍ଡେୟ
ସୁରେଶ
ଗଙ୍ଗାଧର
ଚନ୍ଦ୍ରଶେଖର
ଶଶିଶେଖର
ରାଜକିଶୋର
ହରିହର
✓ କୃଷ୍ଣଚନ୍ଦ୍ର
✓ ଶରତଚନ୍ଦ୍ର




ମୋ ପରିବାର
ଗଙ୍ଗାଧର
ରୁକ୍ମିଣୀ
ପଦ୍ମିନୀ
ବିଶ୍ୱକେଶ
ସୁଚିତ୍ରା
✓ ପ୍ରମୋଦ
ରମାବଲ୍ଲଭ
ରଶ୍ମି
ଉମାବଲ୍ଲଭ
କେତକୀ
ପ୍ରମିଳା
ପ୍ରଭାକର
ସୀତାବଲ୍ଲଭ
ରାଜଶ୍ରୀ
ଶ୍ୟାମାବଲ୍ଲଭ
ଇନ୍ଦିରା
ଲକ୍ଷ୍ମୀବଲ୍ଲଭ
ଗାୟତ୍ରୀ
ଜାନକୀବଲ୍ଲଭ
ଶାନ୍ତି
ସୁରଭୀ
ସୁଧାଂଶୁ

# ଆମ ପରିବାର

ଆମ ପରିବାର ସଂପର୍କରେ କିଛି ଉଲ୍ଲେଖ କରିବା ଉଚିତ ମନେ କରୁଛି । ନଚେତ ମୋ ଜୀବନ ସଂଗ୍ରାମର ଏକ ଚିତ୍ର ସଂପୂର୍ଣ୍ଣ ହେବ ନାହିଁ ବୋଲି ମୁଁ ହୃଦବୋଧ କରୁଛି ।

ପ୍ରଥମରୁ ମୁଁ କହି ରଖୁଛି ଯେ ମୁଁ ୧୯୩୨ ମସିହାରେ ମାଟ୍ରିକ ପରୀକ୍ଷା ଦେବା ପୂର୍ବରୁ ଚୌଧୁରୀ ରାଧାଶ୍ୟାମ ଦାଶଙ୍କ ଏକମାତ୍ର କନ୍ୟା ସନ୍ତାନ, ଯାହାଙ୍କୁ ସେ ତାଙ୍କ ସାନ ଭାଇ ସ୍ୱର୍ଗତ ଚୌଧୁରୀ ଗଙ୍ଗାଧର ଦାଶଙ୍କଠାରୁ ନେଇ ପାଳିଥିଲେ ମତେ ବିବାହ ଦେଇଥିଲେ ।

୧୯୩୬ ମସିହାରେ ଶ୍ରୀମତୀ ରୁକ୍ମିଣୀ ଦେବୀ ଆମ ଘରକୁ ଆସିଲେ । ସେତେବେଳେ ଛୋଟ କନ୍ୟା ବିବାହ ହେବାର ପ୍ରଥା ଥିଲା । ୧୯୩୨ ମସିହା ବେଳକୁ ମୋର ବୟସ ୧୭ ବର୍ଷ ଓ ଶ୍ରୀମତୀ ରୁକ୍ମିଣୀଙ୍କ ବୟସ ମାତ୍ର ୧୦ ବର୍ଷ । ଅର୍ଥାତ ୧୪ ବର୍ଷ ବୟସରେ ୧୯୩୬ ମସିହାଠାରୁ ଆମର ଗୃହସ୍ଥାଶ୍ରମ ଆରମ୍ଭ ହୁଏ । ମୋର ସ୍ପଷ୍ଟ ସ୍ମରଣ ଅଛି ଆମର ପୁରୀରେ ଘର ନଥିଲା । ମୋର ପିତା ଖଣ୍ଡିଏ ଛୋଟ ଘର ହେରାଗୋହିରୀ ସାହିରେ ୩୦୦ ଟଙ୍କାରେ ଖରିଦ କରି ସେଠାରେ ଆମ ପରିବାରକୁ ଚଳାଉଥିଲେ । ଘରଟି ୨ ବଖରା ବିଶିଷ୍ଟ । ଗୋଟିଏ ଆମର ଶୋଇବା ପାଇଁ ଉଦ୍ଦିଷ୍ଟ ଥିଲା । ମୁଁ, ମୋର ବୋଉ ଶ୍ରୀମତି ମାଳତୀ ଦେବୀ, ପିତା ଦାମୋଦର ମହାପାତ୍ର ଓ ମୋର ସାନ ଭାଇ ଶ୍ରୀମାନ ଚନ୍ଦ୍ରଶେଖର (ବର୍ତ୍ତମାନ ଦୈନିକ ମାତୃଭାଷାର ସଂପାଦକ) ରହୁଥିଲୁ । ଅନ୍ୟ ବଖରାଟି ଛୋଟ, ରୋଷାଇ କରିବା ପାଇଁ ଉଦ୍ଦିଷ୍ଟ । ୨ଟି ବଖରା ମଧ୍ୟରେ ଥିବା ଛୋଟ ଅଗଣାଟିଏ ଖରାଦିନେ ଚଳାଚଳ ପାଇଁ ବ୍ୟବହୃତ ହୁଏ । ଘରକୁ ଯିବା ପାଇଁ ଗୋହିରିଟିଏ । ସେ ପୁଣି ଆମ ପଡିଶାରେ ରହୁଥିବା ନୀଳକଣ୍ଠ ରାଜଗୁରୁଙ୍କ ଘର ଓ ଆମ ଘର ଉଭୟଙ୍କ ପରିବାର ବ୍ୟବହାର କରିବା ପାଇଁ ଉଦ୍ଦିଷ୍ଟ ଥିଲା । ଉଭୟ ପରିବାରର ଗୋଟିଏ ଅଗଣା । ଦୁଇ ଭାଗରେ ବିଭକ୍ତ ଏକ ବାଉଁଶ ବାଡରେ, କାନ୍ଥଟିଏ ମଧ୍ୟ ନଥାଏ । ଘର ତଳ ସବୁ ମାଟି, ସିମେଣ୍ଟ ଲଗାଇବାର ସାମର୍ଥ୍ୟ ନଥାଏ । ସଂପୂର୍ଣ୍ଣ ଘରଟି ମାଟି କାନ୍ଥ ଓ ଚାଳ ଛପର । ଏପରି ଘରେ ମୋ ସ୍ତ୍ରୀ ଆସି ଆମେ ରହିବା ସମ୍ଭବପର ନୁହେଁ ବୋଲି ଉପଲବ୍ଧି କରି ମୋର ସ୍ୱର୍ଗତ ଶ୍ୱଶୁର ରାଧାଶ୍ୟାମ ଚୌଧୁରୀ ପୁରୀ ସୁଆର ସାହି (ବଡଦାଣ୍ଡ ନିକଟ) କୁଶୁପୁର ମଠର ଏକ ସ୍ଥିତିବାନ ରେକର୍ଡ ଥିବା ଗୋଟିଏ ପକ୍କା ଘର ଓ ୨ ବଖରା ଚାଳ ଘର

ଥିବା ଜାଗାଟିଏ ତତକାଳୀନ ମୂଲ୍ୟ ତିନି ହଜାର ଚାରି ଶହ ଟଙ୍କା ମୂଲ୍ୟରେ ଖରିଦ କରି ତାକୁ ମରାମତ କରାଇଥିଲେ । ତା ଭିତରେ ନାଗସାପ ରହୁଥାନ୍ତି ଓ ସେ ଘର ମଠର ବିଶେଷ ବ୍ୟବହାରରେ ଆସୁନଥାଏ । ଜାନିଯାତ୍ରା ସମୟରେ କୁଶୁପୁରରୁ ଯଦି ମହନ୍ତ ବା ତାଙ୍କ ମଠର କେହି କର୍ମଚାରୀ ଆସନ୍ତି ଦିନେ ଦି ଦିନ ପକ୍କା ଘର ବଖରାଟିରେ ରହନ୍ତି । ଏହି ଘରଟି ଶ୍ୱଶୁର ମୋ ସ୍ତ୍ରୀଙ୍କ ନାମରେ ଖରିଦ କରି ଆମକୁ ରହିବା ପାଇଁ ଦେବାରେ ଆମେ ସମସ୍ତେ ସେ ଘରେ ରହିଲୁ ।

ମୋ ଭାଇଭଉଣୀମାନଙ୍କ ସଂପର୍କରେ ନ କହିଲେ ପରିବାରର ବିବରଣୀ ଅସଂପୂର୍ଣ୍ଣ ରହିବ ।

ମୋ ପ୍ରଥମ ସାନଭାଇ ଶ୍ରୀ ଚନ୍ଦ୍ରଶେଖର ମହାପାତ୍ରଙ୍କୁ ବର୍ତ୍ତମାନ ୭୫ ବର୍ଷ । ସେ ଜଣେ ଆମ ରାଜ୍ୟର ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ ଓ ବର୍ଷୀୟାନ ସାମ୍ବାଦିକ । ପ୍ରାୟ ୫୦ ବର୍ଷ ଧରି ରାଜ୍ୟର ପ୍ରତିଷ୍ଠିତ ଦୈନିକ ସମ୍ବାଦପତ୍ର ପ୍ରଜାତନ୍ତ୍ରରେ ଉତ୍କଳ କେଶରୀ ସ୍ୱର୍ଗତ ଡକ୍ଟର ହରେକୃଷ୍ଣ ମହତାବଙ୍କ ଦ୍ୱାରା ପ୍ରକାଶ ଆରମ୍ଭରୁ ଜଣେ ସହକାରୀ ସଂପାଦକ ଭାବେ କାର୍ଯ୍ୟରତ ରହି ଦୀର୍ଘ ୩୦ ବର୍ଷ ପରେ ତା'ର ସଂପାଦକ ଦାୟିତ୍ୱ ମଧ୍ୟ ତୁଲାଇଥିଲେ ବିଶେଷ ଦକ୍ଷତାର ସହିତ । ସାମ୍ବାଦିକତା ଉପରେ ତାଙ୍କର ଲିଖିତ ପୁସ୍ତକ ଏବେ ମଧ୍ୟ ବ୍ରହ୍ମପୁର ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟ ସାମ୍ବାଦିକ ବିଭାଗରେ ଡିଗ୍ରୀ କୋର୍ସରେ ପଢାଯାଏ । ଏବେ ମଧ୍ୟ ସେ ଏ ପରିଣତ ବୟସରେ ଦୈନିକ ମାତୃଭାଷାର ସଂପାଦକ ଦାୟିତ୍ୱ ତୁଲାଉଛନ୍ତି । ଦୈନିକ ପ୍ରଜାତନ୍ତ୍ରର ସଂପାଦକ ଥିଲା ବେଳେ ମହତାବ ବାବୁଙ୍କ ବାର୍ଦ୍ଧକ୍ୟଜନିତ ଅସୁସ୍ଥତାର ସୁଯୋଗ ନେଇ କିଛି ଅସହିଷ୍ଣୁ ବ୍ୟକ୍ତି ଭବିଷ୍ୟତର ସ୍ଥାୟୀତ୍ୱ ଉପରେ ଆଶଙ୍କା ସୃଷ୍ଟି କରି ବର୍ତ୍ତମାନ ଲୋକସଭାର ସଦସ୍ୟ ଭର୍ତ୍ତୃହରି ମହତାବଙ୍କୁ ଉତ୍ତରାଧିକାରୀ ଭାବେ ପ୍ରଜାତନ୍ତ୍ର ପ୍ରଚାର ସମିତି ଓ ପ୍ରଜାତନ୍ତ୍ର ପ୍ରେସ୍ ଓ କାଗଜର ସମସ୍ତ ଦାୟିତ୍ୱ ଅର୍ପଣ କରିବା ପାଇଁ ଯେଉଁ ପରାମର୍ଶ ଦେଲେ ସେଥିରେ ପ୍ରଭାବିତ ହୋଇ ମହତାବ ବାବୁ ଭର୍ତ୍ତୃହରି ବାବୁଙ୍କୁ ପ୍ରଜାତନ୍ତ୍ରର ସମ୍ପାଦକ ଦାୟିତ୍ୱ ତାଙ୍କର ଦେହାବସାନର କିଛି ମାସ ପୂର୍ବରୁ ଅର୍ପଣ କରିବାରେ ଚନ୍ଦ୍ରଶେଖର ପ୍ରଜାତନ୍ତ୍ର ଅନୁଷ୍ଠାନରୁ ଅବ୍ୟାହତି ନେବାର ଅବ୍ୟବହିତ ପରେ ସ୍ୱର୍ଗତ ଶଶୀଭୂଷଣ ରଥଙ୍କ ପ୍ରତିଷ୍ଠିତ 'ଦୈନିକ ଆଶା'ର ସଂପାଦକ ଭାବେ ଦାୟିତ୍ୱ ନେଲେ । ଗଞ୍ଜାମର ବିଶିଷ୍ଟ ନେତା ପୂର୍ବତନ ମନ୍ତ୍ରୀ ଓ ବ୍ରହ୍ମପୁର ପୌରପାଳ ସ୍ୱର୍ଗତ ବୃନ୍ଦାବନ ନାୟକ ସେତେବେଳେ ଏହି 'ଆଶା' ଦୈନିକର ଦାୟିତ୍ୱରେ ଥିଲେ । ପାଞ୍ଚ ବର୍ଷରୁ ଉର୍ଦ୍ଧ୍ୱ ଏ ଦାୟିତ୍ୱ ତୁଲାଇବା ପରେ ଓ ବୃନ୍ଦାବନ ବାବୁଙ୍କ ବିୟୋଗ ଦୃଷ୍ଟିରୁ ତାଙ୍କର ପୋଷ୍ୟପୁତ୍ର ଶ୍ରୀ ନାୟକ ଦୈନିକ ଆଶାର ସାଂଗଠନିକ ଅବସ୍ଥା ବୁଝିବାରେ ଅକ୍ଷମ ହେବାରେ ଏହି କାଗଜର ପ୍ରତିଷ୍ଠା କ୍ରମଶଃ ହ୍ରାସ ହେବାର ଦେଖି ଚନ୍ଦ୍ରଶେଖର

ବ୍ରହ୍ମପୁରରୁ ଏହି ଦୈନିକ ସମ୍ବାଦପତ୍ରର ଦାୟିତ୍ୱରୁ ଅବ୍ୟାହତି ନେଇ କଟକରୁ ସାରସ୍ୱତ ପ୍ରେସ୍‌ରୁ ପ୍ରକାଶିତ ଓ ସ୍ୱର୍ଗତ ବାଳକୃଷ୍ଣ କରଙ୍କ ଦ୍ୱାରା ପ୍ରତିଷ୍ଠିତ ଦୈନିକ ମାତୃଭୂମିର ନିଜସ୍ୱ ପ୍ରେସ୍‌ରୁ ପ୍ରକାଶିତ ମାତୃଭାଷାର ସଂପାଦକ ଦାୟିତ୍ୱ ପ୍ରାୟ ୫ ବର୍ଷ ହେବ ତୁଲାଇ ଆସୁଛନ୍ତି । ସାମ୍ବାଦିକତା ତାଙ୍କ ଜୀବନର କେବଳ ପରିବାର ଚଳିବାର ଏକମାତ୍ର ପନ୍ଥା ନଥିଲେ ମଧ୍ୟ ଜଣେ ଆଜୀବନ ଉଚ୍ଚକୋଟୀର ସାମ୍ବାଦିକ ଥିବା ଯୋଗୁଁ ଦୈନିକ କାଗଜ ପରିଚାଳନା ଓ ପ୍ରକାଶନ କ୍ଷେତ୍ରରେ ତାଙ୍କର ଅବଦାନ ଅତୁଳନୀୟ । ଜଣେ ଶ୍ରେଷ୍ଠ ଓ ସମ୍ମାନନୀୟ ସାମ୍ବାଦିକ ଭାବରେ ନୁହେଁ, ସର୍ବୋଦୟ ବିଚାରଧାରାରେ ଓଡିଶାର ପ୍ରଖ୍ୟାତ ନେତା, ଦେଶର ଜଣେ ପ୍ରବୀଣ ସମାଜବାଦୀ ଚିନ୍ତାଧାରାର ଓ ସମାଜବାଦୀ କଂଗ୍ରେସର ଅନ୍ୟତମ ପ୍ରତିଷ୍ଠାତା ରାଜ୍ୟର ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ, ମା ଶ୍ରୀମତୀ ରମାଦେବୀ, ଅର୍ଣ୍ଣପୂର୍ଣ୍ଣା ମହାରଣା, ମନମୋହନ ଚୌଧୁରୀ ପ୍ରଭୃତିଙ୍କ ନେତୃତ୍ୱରେ ଓଡିଶାରେ ସର୍ବୋଦୟ ଆନ୍ଦୋଳନ ଓ ଚିନ୍ତାଧାରାର ପ୍ରସାର ଦିଗରେ ଚନ୍ଦ୍ରଶେଖର ସକ୍ରୀୟ ପ୍ରମୁଖ ଭାବରେ ରହି ଆସିଛନ୍ତି । ଏବେ ଏହି ସର୍ବୋଦୟ ଆନ୍ଦୋଳନର ପ୍ରମୁଖ ଦାୟିତ୍ୱରେ ଥିବା ମହାତ୍ମାଗାନ୍ଧୀଙ୍କ ବ୍ୟକ୍ତିଗତ ସଚିବ, ସ୍ୱାଧୀନତା ଆନ୍ଦୋଳନର ମହାନ ନେତା ସ୍ୱର୍ଗତ ମହାଦେବ ଦେଶାଇଙ୍କ ସମୁଧୀ ଓ ବିଶିଷ୍ଟ ସର୍ବୋଦୟ ନେତା ଭାବେ ସମଗ୍ର ଦେଶରେ ପ୍ରତିଷ୍ଠିତ ବର୍ଷୀୟାନ ନେତା ମନମୋହନ ଚୌଧୁରୀଙ୍କ ପରିବାର ସହିତ ଚନ୍ଦ୍ରଶେଖର ଜଣେ ଅତି ନିକଟ ସହଯୋଗୀ ଭାବେ ସର୍ବୋଦୟ ଚିନ୍ତାଧାରାର ମୌଳିକ ଦର୍ଶନର ପୂଜାରୀ ଭାବେ ସମ୍ମାନିତ । ଅତ୍ୟନ୍ତ ସରଳ ଜୀବନ । ତାଙ୍କ ସହିତ ସାକ୍ଷାତରେ ହଠାତ ସେ ଏତେ ବଡ ଚିନ୍ତାଧାରାର ଅଧିକାରୀ ଥିଲେ ବୋଲି କେହି କହିବେ ନାହିଁ । ଓଡିଶାରେ ବହୁ ଚିନ୍ତାନାୟକଙ୍କ ସହିତ ମୁଁ ମଧ୍ୟ ମୋର ସାନ ଭାଇ ଚନ୍ଦ୍ରଶେଖରଙ୍କୁ ନେଇ ଗର୍ବ କରେ ।

ଚନ୍ଦ୍ରଶେଖରଙ୍କ ପରେ ଶ୍ରୀମାନ ଶଶୀଶେଖର ମହାପାତ୍ର, ସୂଚନା ଓ ପ୍ରସାରଣ ବିଭାଗର ଅତିରିକ୍ତ ନିର୍ଦ୍ଦେଶକ ଭାବେ ସାରା ଜୀବନ ରାଜ୍ୟ ସୂଚନା ଓ ଲୋକସଂପର୍କ ବିଭାଗର ପ୍ରସାରଣ ଓ ପ୍ରତିଷ୍ଠାନରେ ମୁଖ୍ୟ ଭୂମିକା ନେଇ ଏପରି ଦକ୍ଷତା ଓ ଲୋକପ୍ରିୟତା ଅର୍ଜନ କରିଥିଲେ ଯେ, ପଶ୍ଚିମ ଓଡିଶାର ଯେ କେହି କ୍ୟାବିନେଟ ମନ୍ତ୍ରୀ ଦାୟିତ୍ୱ ନିଅନ୍ତେ, ଶ୍ରୀମାନ ଶଶିଙ୍କୁ ବ୍ୟକ୍ତିଗତ ସଚିବ ଭାବେ ନିଯୁକ୍ତି କେବଳ ଦିଅନ୍ତି ନାହିଁ, ଅଫିସ୍‌ର ସମସ୍ତ ଦାୟିତ୍ୱ ତୁଲାଇବାରେ ଜଣେ ଅତ୍ୟନ୍ତ ବିଶ୍ୱସ୍ତ ସହଯୋଗୀ ଭାବେ ଭାର ଦିଅନ୍ତି । ଶ୍ରୀବଲ୍ଲଭ ପାଣିଗ୍ରାହୀ, କୃପାସିନ୍ଧୁ ଭୋଇ, ପୂର୍ବତନ ସ୍ୱାସ୍ଥ୍ୟମନ୍ତ୍ରୀ ସ୍ୱର୍ଗତ ଡାଃ ଜସକେତନ ସାହୁ, ପଶ୍ଚିମ ଓଡିଶାର ପୂର୍ବତନ ରାଜସ୍ୱ ମନ୍ତ୍ରୀ ସ୍ୱର୍ଗତ ଉପେନ୍ଦ୍ର ଦୀକ୍ଷିତଙ୍କ ସହିତ କଂଗ୍ରେସ ମନ୍ତ୍ରିମଣ୍ଡଳର ଅଧିକାଂଶ ମନ୍ତ୍ରୀ । ଶଶୀଶେଖର

ଚାକିରୀରୁ ଅବ୍ୟାହତି ନେବା ପର୍ଯ୍ୟନ୍ତ ପ୍ରାୟ ବହୁ ସରକାରଙ୍କ ଗୁରୁତ୍ୱପୂର୍ଣ୍ଣ ବିଭାଗର ଦାୟିତ୍ୱ ତୁଲାଇ ଏବେ ଅବସର ଜୀବନ ଯାପନ କରୁଛନ୍ତି । ସୂଚନା ଓ ଲୋକସଂପର୍କ ବିଭାଗ କର୍ମକର୍ତ୍ତାମାନେ ଏବେ ମଧ୍ୟ ଶଶୀଶେଖରଙ୍କ ବିଶ୍ୱସ୍ତ ସେବା, ଦାୟିତ୍ୱବୋଧ, ସାଧୁତା ଓ ଦକ୍ଷତାର ଭୂୟସୀ ପ୍ରଶଂସା କରନ୍ତି ଏବଂ ତାଙ୍କର ପରାମର୍ଶ ନିଅନ୍ତି । ସେ ମଧ୍ୟ ଜ୍ୟୋତିଷ ବିଦ୍ୟାରେ ଜଣେ ବିଶିଷ୍ଟ ପାରଙ୍ଗମ ବ୍ୟକ୍ତି ଭାବେ ଭୁବନେଶ୍ୱରରେ ସମ୍ମାନୀତ । ତାଙ୍କର ବଡପୁଅ ଓ ଦୁଇ କନ୍ୟା ଜାମାତା, ନାତି, ନାତୁଣୀ ଉଚ୍ଚସ୍ଥାନରେ ସେବାରତ ।

ମୋର କନିଷ୍ଠ ଭାତ୍ରା ଶ୍ରୀ ରାଜକିଶୋର ମହାପାତ୍ର ଭାରତର ପ୍ରତିରକ୍ଷା ଉତ୍ପାଦନ ବିଭାଗର ଅତିରିକ୍ତ ନିର୍ଦ୍ଦେଶକ ଭାବେ ହାଇଦରାବାଦରୁ ଅବସର ନେଇ (Additional Director, Defence Production) ଅବସର ନେବାର ଏକ ମାସ ନ ପୂରୁଣୁ ବମ୍ବେଠାରେ ଏକ ଆନ୍ତର୍ଜାତିକ ବ୍ୟବସାୟୀ ସଂଗଠନର ମ୍ୟାନେଜମେଣ୍ଟରେ ଶୀର୍ଷସ୍ଥାନରେ ଦୁଇ ବର୍ଷ କାର୍ଯ୍ୟ କରି ଓଡିଶା ଫେରି ଆସିଲେ । କିନ୍ତୁ ନିଜର ଦକ୍ଷତା ତାଙ୍କୁ ଘରେ ବସିବାକୁ ଦେଲା ନାହିଁ । ଭୁବନେଶ୍ୱରସ୍ଥ ରସୁଲଗଡଠାରେ ପ୍ରତିଷ୍ଠିତ ଏକ ସୂଚନା ବୈଷୟିକ ସଂସ୍ଥାର ବରିଷ୍ଠ ଅଧ୍ୟାପକ ଭାବେ ନିଯୁକ୍ତି ପାଇ ଏବେ ମଧ୍ୟ ଦାୟିତ୍ୱରେ ଅଛନ୍ତି । ନିଜର ବାସଗୃହ ଚନ୍ଦ୍ରଶେଖରପୁର ଅଞ୍ଚଳରେ କରିଛନ୍ତି । ସେ ରାଜ୍ୟର ଶ୍ରେଷ୍ଠ କବିରାଜ, ମହାମହୋପାଧ୍ୟାୟ ମାରୁଣୀ ବ୍ରହ୍ମାଙ୍କର ନାତୁଣୀ ଜ୍ୱାଇଁ । ତାଙ୍କର ଜ୍ୟେଷ୍ଠ ପୁତ୍ର ଶ୍ରୀମାନ ରଂଜନ ନାସିକ ଓ ଦ୍ୱିତୀୟ ପୁତ୍ର ଶ୍ରୀମାନ ରତନ ପୁନାଠାରେ ବିଶିଷ୍ଟ ଇଞ୍ଜିନିୟର ଭାବେ ଏବଂ ଏକମାତ୍ର କନ୍ୟା ରଞ୍ଜିତା (ଜିତୁ)ର ସ୍ୱାମୀ ମେଜର୍ ସୁରଜିତ ମିଶ୍ର ଜାମ୍ମୁ କାଶ୍ମୀର ରାଜ୍ୟର ପାକିସ୍ଥାନ ଆନ୍ତର୍ଜାତିକ ସୀମାରେଖା ପାଖେ ଦୀର୍ଘ ଚାରି ବର୍ଷ ଧରି ପଦାତିକ ବାହିନୀର ଜଣେ ଦାୟିତ୍ୱପୂର୍ଣ୍ଣ କମାଣ୍ଡର ଭାବେ ରହିବା ପରେ ବର୍ତ୍ତମାନ ତାଙ୍କ ବ୍ରିଗେଡ ପୂର୍ବ ଭାରତରେ କାର୍ଯ୍ୟରତ ଓ ଶ୍ରୀମାନ ମିଶ୍ର କଲିକତାରେ ବ୍ରିଗେଡ ଦାୟିତ୍ୱ ତୁଲାଉଛନ୍ତି ।

ମୁଁ ଏ ସବୁ ଲେଖିବାର ଏକମାତ୍ର ଉଦ୍ଦେଶ୍ୟ ଯେ ଆମ ପରିବାରର ମୁଖ୍ୟ ଭାବେ ଅତ୍ୟନ୍ତ ଆର୍ଥିକ ଦୁରବସ୍ଥାର ସମ୍ମୁଖୀନ ହୋଇ ମଧ ପରିବାରର ସମସ୍ତେ ବହୁ ବାଧାବିଘ୍ନ ଅତିକ୍ରମ କରି ନିଜର ଉଦ୍ୟମ, ଦକ୍ଷତା, ସାଧୁତା ଓ ବିଶ୍ୱସ୍ତତା ବଳରେ ଉଚ୍ଚସ୍ଥାନ ଅଧିକାର କରି ନିଜ ନିଜ କ୍ଷେତ୍ରରେ ବିଶେଷ ପ୍ରଶଂସିତ ଓ ପ୍ରତିଷ୍ଠା ଅର୍ଜନ କରିବାରେ ସମର୍ଥ ହୋଇଛନ୍ତି । ସେମାନଙ୍କ ଶିକ୍ଷା, ବ୍ରତ, ବିଭାଘର ଓ ଉଚ୍ଚ ସ୍ତରରେ ବିଭିନ୍ନ ବିଭାଗରେ ନିଯୁକ୍ତି କରାଇବାରେ ମୁଁ ମୋର ସମସ୍ତ ଦାୟିତ୍ୱ ନେଇ ସେମାନଙ୍କୁ ଯେଉଁ ଭାବେ ମଣିଷ କରିଥିଲି ଆଜି ସେମାନଙ୍କର ପ୍ରତିଷ୍ଠା ଓ ଦକ୍ଷତା ଫଳରେ ମୋ ପରିବାର ଓ ମୁଁ ଆମେ ସମସ୍ତେ ଗର୍ବିତ । ସବୁ ଭାଇମାନେ ମତେ ଭାଇନା ଭାବେ ନ

ଦେଖି ନିଜର ପିତାଙ୍କ ପରି ସମ୍ମାନ ଦିଅନ୍ତି ଓ ଆନୁଗତ୍ୟ ପ୍ରକାଶ କରନ୍ତି । ମୋର ଏ ବୟସରେ ସେମାନେ ମୋର ଭାଇ ନୁହନ୍ତି ପୁତ୍ର ସନ୍ତାନ ଓ ଏକ ଆଦର୍ଶ ଯୌଥ ପରିବାରର ଭୂମିକା ନିଭାଉଛନ୍ତି । ମୋର ମନେହୁଏ ଏପରି ଏକ ଆଦର୍ଶ ଯୌଥ ପରିବାରର ଦୃଷ୍ଟାନ୍ତ ଏବେ କ୍ୱଚିତ ଦେଖାଯାଏ । ଆମର ପରିବାର ସେଥିପାଇଁ ସାମାଜିକତା, ଦକ୍ଷତା, ସହନଶୀଳତା ଓ ପ୍ରେମବନ୍ଧନରେ ଆବଦ୍ଧ । ସେହି ହେଉଛି ଆମ ପରିବାରର ଗର୍ବ । ମୁଁ ସମସ୍ତଙ୍କ ଜୀବନାଦର୍ଶ ପାଇଁ ଗର୍ବିତ । ଏ ସବୁ କେବଳ ସମ୍ଭବ ହୋଇପାରିଛି ମୋର ଧର୍ମପତ୍ନୀ ଶ୍ରୀମତୀ ରୁକ୍ମିଣୀ ଦେବୀଙ୍କ ଆଜୀବନ ସେବା, ସ୍ୱାର୍ଥତ୍ୟାଗ ଓ ଉତ୍ସର୍ଗୀକୃତ ଅବଦାନ ପାଇଁ । ସେ ସମସ୍ତଙ୍କର ଆଦର୍ଶ, ବନ୍ଦନୀୟା । ଘରର ମୂରବି ଭାବେ ଦୀର୍ଘ ୬୫ ବର୍ଷ ଧରି ପରିବାରର ସବୁ ଦାୟିତ୍ୱ ତୁଲାଉ ଗ୍ରାଣ୍ଡମା (ବୁଢ଼ୀମା) ଭାବେ ସମସ୍ତଙ୍କର ସମ୍ମାନ ଓ ଭକ୍ତିର ଅଧିକାରିଣୀ । ତାଙ୍କରି ଯୋଗୁ ହିଁ ଆମର ପରିବାର ଏକ ଆଦର୍ଶ ଯୌଥ ପରିବାର ଭାବେ ପ୍ରଶଂସିତ ଆମ ସମାଜରେ । ମୋର ପ୍ରତିଷ୍ଠାରେ ତାଙ୍କର ଅବଦାନ ଅବିସ୍ମରଣୀୟ । ସେ ହେଉଛନ୍ତି ଆମ ପରିବାରର ଗର୍ବ ଓ ଆଦର୍ଶ । ଜଣେ ବିଶିଷ୍ଟ ଜମିଦାର ଘରର ଅଳୀଅଳି ଝିଅ ଭାବରେ ୧୪,୧୫ ବୟସରେ ଆମ ଘରକୁ ଆସି ବୃଦ୍ଧ ପିତା ମାତାଙ୍କ ସେବା, ଭଣଜା, ଭାଣେଜି, ପୁତ୍ର କନ୍ୟାମାନଙ୍କର ସମସ୍ତ ଦାୟିତ୍ୱ ନେଇ ଏତେ ବଡ ପରିବାରର ଦାୟିତ୍ୱ ତୁଲାଉ ଦୀର୍ଘ ୬୫ ବର୍ଷ ଧରି ସେ ଯେଉଁ ସେବାର ଦୃଷ୍ଟାନ୍ତ ଦେଖାଇଛନ୍ତି ତାହା ବର୍ତ୍ତମାନ ସମାଜରେ ବିରଳ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏ ପରିଣତ ବୟସରେ (୭୮ ବର୍ଷ ପୂରିବାକୁ ବସିଛି) ସେ ସମସ୍ତଙ୍କର ଅଭିଭାବକ ଓ ପରାମର୍ଶଦାତା । ପାରିବାରିକ ସମସ୍ୟା ସମାଧାନରେ ତାଙ୍କର ନିଷ୍ପତ୍ତି ସମସ୍ତଙ୍କର ବିନା ସର୍ତ୍ତରେ ଗୃହୀତ ଏବେ ମଧ୍ୟ ହେଉଛି । ସମସ୍ତ ପ୍ରେରଣାର ସେ ହେଉଛନ୍ତି କେନ୍ଦ୍ରବିନ୍ଦୁ ।

ମୋ ଏକମାତ୍ର ଭଉଣୀ ସ୍ୱର୍ଗତ ହାରାମଣୀ ଦେବୀ ଆଜନ୍ମ ଦୁଃଖି । ନନା ଗରିବ ଥିବା ହେତୁ ଓ ସେତେବେଳେ ବାଲ୍ୟବିବାହ ପ୍ରଥା ପୁରୀ ଜିଲ୍ଲା ବ୍ରାହ୍ମଣ ସମାଜରେ ଏକ ବ୍ୟାଧି ରୂପେ ଗୃହୀତ ହୋଇଥିବା ଦୃଷ୍ଟେ ତା'ର ଶିକାର ହୋଇ ହାରାମଣୀଙ୍କୁ ବୀରପୁରୁଷୋତ୍ତମପୁର ବ୍ରାହ୍ମଣ ଶାସନରେ ସେଇପରି ଏକ ସମ୍ବଳହୀନ ମାଟ୍ରିକ ପାସ୍ କରି ପୁରୀ ଜିଲ୍ଲା ପୁଲିସ ଅଫିସ୍‌ରେ ସହକାରୀ ରୂପେ କାର୍ଯ୍ୟ କରୁଥିବା ସ୍ୱର୍ଗତ ଜଗନ୍ନାଥ ମିଶ୍ରଙ୍କୁ ବିବାହ ଦେଇଥିଲେ । ବିବାହର ୫ ବର୍ଷ ଭିତରେ ଜଗନ୍ନାଥ ନିଜ ଦକ୍ଷତା ଓ କର୍ମଶକ୍ତି ଯୋଗୁଁ ସେତେବେଳର ଓଡ଼ିଶାରେ ଏକମାତ୍ର ପୁଲିସ୍ ଆଇ.ଜି.ଙ୍କ ଅଫିସ୍‌ରେ ଜଣେ ସହକାରୀ ରୂପେ ଅବସ୍ଥାପିତ ହୋଇଥିଲେ । ସେତେବେଳେ ସମଗ୍ର ରାଜ୍ୟରେ ଜଣେ ମାତ୍ର ଆଇ.ଜି. ରାଜ୍ୟ ପୋଲିସ ଫୋର୍ସର ମୁଖ୍ୟ ଥିଲେ । ବର୍ତ୍ତମାନ

ଡି.ଜି. ୪ଜଣ, ଆଇ.ଜି. ୯ ଜଣରୁ ଊର୍ଦ୍ଧ୍ୱ, ଡି.ଆଇ.ଜି. ଓ ଏସ.ପି. ପାହ୍ୟାର ଅଫିସରଙ୍କ ସଂଖ୍ୟା ଗଣି ହେବ ନାହିଁ ସହଜରେ । ସେହି ପରିମାଣରେ ଚୋରୀ, ଡକାୟତି, ନାରୀ ନିର୍ଯାତନା, ରାହାଜାନୀ ଓ ଅନ୍ୟାନ୍ୟ ଅପରାଧ ଦଶ ଗୁଣ ଅଧିକ ବଢ଼ିଛି । ଭ୍ରଷ୍ଟାଚାର ମଧ୍ୟ ପୋଲିସ ଫୋର୍ସକୁ ଅତି ମାତ୍ରାରେ ସଂକ୍ରମିତ କରିଛି । ସାମାଜିକ ବ୍ୟାଧି ଭାବେ ସମାଜକୁ ତା ଠାରୁ ଅଧିକ ସଂକ୍ରମିତ କରି ସମଗ୍ର ଦେଶରେ ଏକ ଭୟାବହ ପରିସ୍ଥିତି ସୃଷ୍ଟି କରି ପୃଥିବୀର ସର୍ବବୃହତ ଗଣତାନ୍ତ୍ରିକ ରାଷ୍ଟ୍ର ରୂପେ ଭାରତକୁ ଏକ ଅଗ୍ରଗାମୀ ଭ୍ରଷ୍ଟାଚାରୀ ରାଷ୍ଟ୍ର ରୂପେ ନିନ୍ଦିତ କରିଛି ଏବଂ ରାଷ୍ଟ୍ରୀୟ ଅଭିବୃଦ୍ଧିର ବିରାଟ ପ୍ରତିବନ୍ଧକ ବୋଲି ଚିନ୍ତାଶୀଳ ରାଷ୍ଟ୍ରନାୟକମାନେ ଉଦବେଗ ପ୍ରକାଶ କରୁଛନ୍ତି । ସେ ଯାହା ହେଉ ହାରାମଣୀ କେବଳ ୨୩ ବର୍ଷ ସମୟକୁ ପାଞ୍ଚଟି ସନ୍ତାନର ମା' ହୋଇସାରିଥିଲା । ହଠାତ୍, ବଜ୍ର ପଡ଼ିଲା ତା ଉପରେ । ୨୪ ଘଣ୍ଟା ଭିତରେ ହାରାମଣୀର ପତି ସେରିବ୍ରାଲ ମାଲେରିଆରେ ପ୍ରାଣତ୍ୟାଗ କଲେ ଆମକୁ ଦେଖିବାର ସୁଯୋଗ ନ ଦେଇ, ଚିକିତ୍ସା କରିବା ତ ଦୂରର କଥା । ସେହି ଦିନଠାରୁ ହାରାମଣୀ ଓ ତା'ର ପାଞ୍ଚଟି ସନ୍ତାନଙ୍କୁ ରୁକ୍ମିଣୀ ଦେବୀଙ୍କ ସଂପୂର୍ଣ୍ଣ ସହଯୋଗରେ ଆମର ନିଜ ସନ୍ତାନ ରୂପେ ଗ୍ରହଣ କରି ନେଇ ସେମାନଙ୍କ ସମସ୍ତ ପାଠପଢ଼ା, ବ୍ରତ, ବିବାହ ଓ ସଂସାର ଗଢ଼ିବାରେ ସମସ୍ତ ଦାୟିତ୍ୱ ନେଲୁ । ଯାହା ଫଳରେ ହାରାମଣୀର ଜ୍ୟେଷ୍ଠ ପୁତ୍ର ରାଜ୍ୟର ପ୍ରମୁଖ ମୁଖ୍ୟ ଯନ୍ତ୍ରୀ (Engineer in Chief) ରୂପେ ୩ ବର୍ଷ କଟାଇ ବର୍ତ୍ତମାନ ପୃଥିବୀ ବ୍ୟାଙ୍କର ଭାରତ ଶାଖା ତାମିଲନାଡୁ ରାଜ୍ୟସରକାରଙ୍କ କେତେକ ଜଳ ଯୋଗାଣ ଯୋଜନାର ପରାମର୍ଶଦାତା ରୂପେ କାର୍ଯ୍ୟ କରୁଛନ୍ତି । ଜ୍ୟେଷ୍ଠା କନ୍ୟା ବନବାସିନୀ (ବାନି) ପାରଳାଖେମୁଣ୍ଡିର ତତ୍‌କାଳୀନ ଜଣେ ବିଶିଷ୍ଟ ଆଇନଜୀବୀ ଓ କୋରାପୁଟ ଜିଲ୍ଲାର ସରକାରୀ ଓକିଲ ନନ୍ଦ କିଶୋର ମିଶ୍ରଙ୍କ ପୁତ୍ର ଶ୍ରୀମାନ ଗୌରୀଶଙ୍କରଙ୍କୁ ବିବାହ କରିଥିଲେ । ଗୌରୀଶଙ୍କରଙ୍କ ଅବସର ପରେ ବର୍ତ୍ତମାନ ପାରଳାଖେମଣ୍ଡି ସହରରେ ସେ ନିଜ ଘରେ ରହୁଛନ୍ତି । ଗୌରୀଶଙ୍କର ପ୍ରତିରକ୍ଷା ବିଭାଗରେ ଭାରତ ଓ ଭାରତ ବାହାରେ କାର୍ଯ୍ୟ କରି ଆର୍ମିରୁ ଅବସର ନେଇ, ରାଜ୍ୟ ଶିଳ୍ପ ବିଭାଗର ଶାନ୍ତିରକ୍ଷା ବାହିନୀ (Industrial Security Force)ରେ ଦୀର୍ଘ ସମୟ ସେବାରତ ରହିବା ପରେ ଅବସର ନେଇଛନ୍ତି । ଦ୍ୱିତୀୟ ପୁତ୍ର ଡାକ୍ତର ପ୍ରଫୁଲ୍ଲ ଚନ୍ଦ୍ର ମିଶ୍ର ସ୍ୱାସ୍ଥ୍ୟ ବିଭାଗରେ ଜଏଣ୍ଟ ଡାଇରେକ୍ଟର, ତାଙ୍କର ଧର୍ମପତ୍ନୀ ମଧ୍ୟ କେନ୍ଦ୍ରାପଡ଼ା, ସୋନପୁର ଓ ବଲାଙ୍ଗୀର ଜିଲ୍ଲାର ମୁଖ୍ୟ ସ୍ୱାସ୍ଥ୍ୟ ବିଭାଗ ଅଫିସର ରୂପେ କାର୍ଯ୍ୟ କରି ଅବସର ଅପେକ୍ଷାରେ । ଦ୍ୱିତୀୟ କନ୍ୟା ଡକ୍ଟର କୁମୁଦିନୀ ମିଶ୍ର M.A., Ph.D.କରି ବର୍ତ୍ତମାନ ରମାଦେବୀ କଲେଜରେ ପ୍ରାଧ୍ୟାପିକା ଭାବେ ସେବାରତ ଏବଂ କନିଷ୍ଠପୁତ୍ର ଶ୍ରୀମାନ ପ୍ରମୋଦ କୁମାର ମିଶ୍ର ପୁରୀ ଜିଲ୍ଲା ଆଇନଜୀବୀ ମହଲରେ ଜଣେ ବରିଷ୍ଠ ଆଇନଜୀବୀ ଭାବେ ପ୍ରତିଷ୍ଠିତ ।

ଓଳ୍ପର ଶ୍ରୀମତି କୁମୁଦିନୀ ମିଶ୍ର ଆଦର୍ଶ ଜୀବନ, ମା' ପ୍ରତି ସେବା, ଦୁଇ କନ୍ୟା ଓ ପୁତ୍ରଙ୍କୁ ଶିକ୍ଷା ଦେଇ ଉଚ୍ଚସ୍ଥାନରେ ଅବସ୍ଥାପିତ କରିବାରେ ଯେଉଁ କଠୋର ପରିଶ୍ରମ ଓ ଦକ୍ଷତା ଦେଖାଉଛନ୍ତି, ବିଶେଷ କରି ନିଜର ପରିବାରର ସମସ୍ତ ଦାୟିତ୍ୱ ତୁଲାଇବାରେ ନିଜର 'ମା' ହାରାମଣୀଙ୍କୁ ଶେଷ ଜୀବନରେ ନିଜ ପାଖରେ ରଖି ଭାଇମାନଙ୍କର 'ମା' ପ୍ରତି ସଂପୂର୍ଣ୍ଣ ଅବହେଳାକୁ ଖାତିର ନକରି ଯେପରି ସେବାର ଆଦର୍ଶ ଦେଖାଇଛନ୍ତି ତାହା ଏକ ଆଦର୍ଶ କନ୍ୟାର ଉଦାହରଣ ବୋଲି କୁହାଯାଇପାରେ । କୁମୁଦିନୀର ସ୍ୱାମୀ ଶ୍ରୀ ସୁଧାଂଶୁ ଶେଖର ଦାଶ ରାଜ୍ୟ ଖଣି ବିଭାଗର ଅତିରିକ୍ତ ନିର୍ଦ୍ଦେଶକ ଭାବେ ଦାୟିତ୍ୱ ତୁଲାଇ ଗତ ୨ ବର୍ଷ ହେବ ଅବସର ନେଇ ଭୁବନେଶ୍ୱରରେ ଅବସର ଜୀବନ କଟାଉଛନ୍ତି । ସ୍ପଷ୍ଟତଃ କହିବାକୁ ଗଲେ ମୋର ଭଉଣୀ ବିଧବା ହୋଇ ମୋ ପରିବାରର ଅଙ୍ଗ ରୂପେ ସମସ୍ତ ପିଲାଙ୍କୁ ମଣିଷ କରି ସମାଜରେ ପ୍ରତିଷ୍ଠିତ କରାଇଲେ ସୁଦ୍ଧା ଈଶ୍ୱରଙ୍କ କରୁଣା ଅଭାବରୁ ପୁଅମାନେ ତାଙ୍କ ପ୍ରତି ଯେଉଁ ଅବିଚାର କରି ଅବହେଳା ପ୍ରଦର୍ଶନ କଲେ ସେଥିରେ ହାରାମଣୀ ଶେଷ ଜୀବନରେ ବହୁ ଶାରୀରିକ ଓ ମାନସିକ ଯନ୍ତ୍ରଣା ମଧ୍ୟରେ ଅତ୍ୟନ୍ତ ଶୋକାକୁଳ ଅବସ୍ଥାରେ ମୃତ୍ୟୁ କାମନା କରି ଶେଷରେ ଦ୍ୱିତୀୟ କନ୍ୟା କୁମୁଦିନୀଙ୍କ ଆଦର୍ଶ ସେବା ଓ ଯତ୍ନ ସତ୍ତ୍ୱେ ୭୮ ବର୍ଷ ବୟସରେ କୁମୁଦିନୀଙ୍କ ବାସଭବନରେ ଶେଷ ନିଃଶ୍ୱାସ ତ୍ୟାଗ କଲେ ମଧ୍ୟ ପୁତ୍ରମାନେ ତାଙ୍କର ଚିକିତ୍ସା ଦୂରେ ଥାଉ ଦେଖିବାକୁ ମଧ ଆସିଲେ ନାହିଁ । ଦୁଃଖିନୀ ଜନ୍ମଦାତ୍ରୀଙ୍କ ପ୍ରତି ଏପରି କ୍ରୁରତା ସେମାନଙ୍କର ପରିବାରର ମର୍ଯ୍ୟାଦାରେ ବହୁତ ଆଞ୍ଚ ଆଣିଛି । ତା ସତ୍ତ୍ୱେ ମୁଁ ସେମାନଙ୍କର ଶୁଭ କାମନା କରୁଛି । ତାଙ୍କୁ ସ୍ୱଚ୍ଛ ବୟସରୁ ନିରାଶ୍ରୟ ଅବସ୍ଥାରୁ କଟକରୁ ନେଇ ଆଣି ଯେପରି ମଣିଷ ଓ ପ୍ରତିଷ୍ଠିତ କରିବାରେ ମୋର କର୍ତ୍ତବ୍ୟ ସଂପାଦନ କରିଛି, ଏ ପରିଣତ ବୟସରେ ଯେଉଁ କାରଣରୁ ହେଉ ସେମାନଙ୍କର ନିଜର ମା ପ୍ରତି ଶେଷ ଜୀବନରେ ଅନାଗ୍ରହ ଓ ଅବିଚାର ମୋର ମନରେ ଅନେକ ମାନସିକ ଅଶାନ୍ତି ସୃଷ୍ଟି କଲେ ସୁଦ୍ଧା, ସେମାନଙ୍କ ସନ୍ତାନମାନେ ବିଚକ୍ଷଣ ବୁଦ୍ଧି ଓ ପ୍ରତିଭା ବଳରେ ରାଜ୍ୟ ଭିତରେ ଓ ବାହାରେ ଏପରିକି ଭାରତ ବାହାରେ ନିଜର କଠୋର ଉଦ୍ୟମ, ପ୍ରତିଭା ଓ ଦକ୍ଷତା ଦ୍ୱାରା ଯେପରି ଉଚ୍ଚସ୍ଥାନ ଅଧିକାର କରିଛନ୍ତି ସେଥିପାଇଁ ମୁଁ ଗର୍ବୀତ ଓ ସେମାନଙ୍କର ଭବିଷ୍ୟତ ଆହୁରି ଉଜ୍ଜ୍ୱଳମୟ ହେଉ ଏହା ହିଁ ଶ୍ରୀ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା କରୁଛି ।

ମୋର ଧର୍ମପତ୍ନୀ ଓ କନ୍ୟାମାନଙ୍କ ସଂପର୍କରେ ନ କହିଲେ ଏହି ବିରାଟ ପରିବାରର ପରିଚୟ ସଂପୂର୍ଣ୍ଣ ହେବ ନାହିଁ । ମୋର ପତ୍ନୀ ଶ୍ରୀମତୀ ରୁକ୍ମିଣୀ ଦେବୀ ବାଲିଅନ୍ତା ଥାନା ଅନ୍ତର୍ଗତ ଭିଙ୍ଗାରପୁର ନିବାସୀ ଜନୈକ ଜମିଦାର ସ୍ୱର୍ଗତ ଚୌଧୁରୀ ରାଧାଶ୍ୟାମ ଦାଶଙ୍କର ଏକମାତ୍ର କନ୍ୟା । ପୁଣି ରୁକ୍ମିଣୀ ଦେବୀଙ୍କୁ ସ୍ୱର୍ଗତ ରାଧାଶ୍ୟାମ

ଚୌଧୁରୀ ତାଙ୍କ ସାନ ଭାଇ ସ୍ୱର୍ଗତ ଚୌଧୁରୀ ଗଙ୍ଗାଧର ଦାଶଙ୍କଠାରୁ ପୋଷ୍ୟା କନ୍ୟା ରୂପେ ଗ୍ରହଣ କରି ଶୈଶବାବସ୍ଥାରୁ ପାଳି ଅତ୍ୟନ୍ତ ସ୍ନେହ ଓ ଆଦରର ଏକମାତ୍ର ସନ୍ତାନ ରୂପେ ମାତ୍ର ୧୦ ବର୍ଷ ବୟସରେ ମତେ ବିବାହ ଦେଇଥିଲେ । ସେ ସଂପର୍କରେ ମୁଁ ଆଗରୁ ବର୍ଣ୍ଣନା କରିଛି । ୧୯୩୬ ମସିହାରେ ସେ ଘର ଚଳାଇବା ପାଇଁ ଯୋଗ୍ୟତା ହାସଲ କରି ଆମ ଘରକୁ ଆଲୋକିତ କରି ଦୀର୍ଘ ୬୫ ବର୍ଷ ଧରି ସେ ମୋ ପରିବାରର ଶ୍ରେଷ୍ଠ ସେବିକା, ପରିଚାଳିକା, ସମସ୍ତ ପୁତ୍ର କନ୍ୟାଙ୍କ ବ୍ୟତିତ ପାଞ୍ଚଟି ଭଣଜା ଓ ଭାଣେଜୀଙ୍କ ଶିକ୍ଷା, ଦୀକ୍ଷା, ବ୍ରତ, ବିବାହ ଓ ଘର ସଂପର୍କୀୟ ସମସ୍ତ ପାରିବାରିକ ସମସ୍ୟାର ଶାନ୍ତିପୂର୍ଣ୍ଣ ସମାଧାନ ଓ ସୁଖି ପରିବାର ସୃଷ୍ଟି କରିବାରେ ତାଙ୍କର ଅତୁଳନୀୟ ଅବଦାନ ପାଇଁ ଆମେ ସମସ୍ତେ ଗର୍ବିତ । ରାଜ୍ୟ ଭିତରେ ଯେତେ ଲୋକ ଆମ ପରିବାର ସଂସ୍ପର୍ଶରେ ଆସିଛନ୍ତି ସମସ୍ତେ ରୁକ୍ମିଣୀ ଦେବୀଙ୍କ ଆଦର୍ଶ, ଗୃହସ୍ଥାଶ୍ରମ ଓ ଏକ ଶାନ୍ତିପୂର୍ଣ୍ଣ ଓ ସହୃଦୟତା ଭିତରେ ଏପରି ଏକ ବିରାଟ ପରିବାରର ସମସ୍ତ ଦାୟିତ୍ୱ ତୁଲାଇବାରେ ସେ ଗତ ୬୫ ବର୍ଷ ଧରି ଅବିଶ୍ରାନ୍ତ ଉଦ୍ୟମ କରି ଆସିଛନ୍ତି, ତାହା ଗୃହସ୍ଥାଶ୍ରମରେ ବିଶ୍ୱାସ କରୁଥିବା ଓ ସୁଖି ପରିବାର ଗଢୁଥିବା ଗୃହିଣୀ ସମାଜ ପାଇଁ ଏକ ଆଦର୍ଶ ବୋଲି କହିଛନ୍ତି ।

ମୋର ସମୁଦାୟ ଛଅ ପୁଅ ଓ ଚାରି କନ୍ୟା । ମୋର ଜ୍ୟେଷ୍ଠା କନ୍ୟା କଲ୍ୟାଣୀୟା ପଦ୍ମିନୀ (କୁନି) ଜଣେ ବିଶିଷ୍ଟ ଆଇ.ପି.ଏସ.(ଭାରତୀୟ ପୋଲିସ ସେବା ଅଫିସର)ଙ୍କୁ ୧୯୫୬ ମସିହାରେ ବିବାହ କରିଥିଲେ । ମୋର ପ୍ରଥମ ଜାମାତା ଶ୍ରୀ ବିଶ୍ୱକେଶ ତ୍ରିପାଠୀ, ଆଇ.ପି.ଏସ. ଓଡିଶାରେ ଅତିରିକ୍ତ ଆଇ.ଜି. ଭାବେ ଅବସ୍ଥାପିତ ହେଲେ । ଦିଲ୍ଲୀ, ପଶ୍ଚିମବଙ୍ଗ ଓ ମହାରାଷ୍ଟ୍ରରେ ସି.ଆର.ପି. ଫୋର୍ସରେ ଶୀର୍ଷ ଦାୟିତ୍ୱରେ ଓ ପଞ୍ଜାବରେ ବି.ଏସ.ଏଫ୍. (ଆଇ.ଜି.) ରୂପେ ସବୁଠାରୁ କଠିନ ସମୟରେ ଦାୟିତ୍ୱ ନେଲେ । ଶିଖ ସନ୍ତ୍ରାସବାଦୀମାନେ ସେତେବେଳକୁ ପଞ୍ଜାବ ରାଜ୍ୟରେ ଓ ଭାରତୀୟ ସୀମାରେ ଏକ ସଂକଟମୟ ପରିସ୍ଥିତି ସୃଷ୍ଟି କରି ଭାରତର ପଶ୍ଚିମ ସୀମାନ୍ତ ପ୍ରତିରକ୍ଷା କ୍ଷେତ୍ରରେ ଏକ ଉଦ୍‌ବେଗଜନକ ପରିସ୍ଥିତି ସୃଷ୍ଟି କରିଥାଆନ୍ତି । ସେମାନଙ୍କୁ ମୁକାବିଲା କରିବା କେନ୍ଦ୍ର ସରକାରଙ୍କର ପ୍ରଧାନ ସମସ୍ୟା ଭାବେ ସମଗ୍ର ଦେଶର ସୁରକ୍ଷା ବ୍ୟବସ୍ଥାକୁ ଆହୁରି ଅଧିକ ଗୁରୁତର କରିଥାଏ । ଏହି ସମୟରେ ଭାରତର ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ । ଅମୃତସରରେ ଅବସ୍ଥିତ ଐତିହାସିକ ସ୍ୱର୍ଣ୍ଣ ମନ୍ଦିରକୁ ଏହି ଶିଖ ସନ୍ତ୍ରାସବାଦୀମାନେ ପ୍ରଚୁର ମାରଣାସ୍ତ୍ରର ଗନ୍ତାଘର ବନାଇ ସନ୍ତ୍ରାସବାଦୀ କାର୍ଯ୍ୟକ୍ରମର କେନ୍ଦ୍ର କରିବାରେ ସକ୍ଷମ ହୋଇପାରିଥିଲେ ଓ ଶିଖ ଧର୍ମଗୁରୁମାନଙ୍କର ପରମ ପବିତ୍ର ପୀଠ ସ୍ୱର୍ଣ୍ଣ ମନ୍ଦିରକୁ ଭାରତର ସୈନ୍ୟବାହିନୀ ଓ ପ୍ରତିରକ୍ଷା ବାହିନୀ ଆକ୍ରମଣ କଲେ

ଶିଖମାନେ ସମଗ୍ର ଦେଶର ସୁରକ୍ଷା ବ୍ୟବସ୍ଥାରେ ଘୋର ସଂକଟ ସୃଷ୍ଟି କରିବାର ଆଶଙ୍କା ଥିବାରୁ ସ୍ୱର୍ଣ୍ଣ ମନ୍ଦିର ଭିତରେ ସୁରକ୍ଷା ବାହିନୀର ପ୍ରବେଶକୁ ବିରୋଧ କରୁଥାଆନ୍ତି । ଏହି ସଂକଟମୟ ପରିସ୍ଥିତିରେ ବିଚକ୍ଷଣା, ଶକ୍ତିଶାଳୀ ଓ ଅସୀମ ସାହସୀ ଶ୍ରୀମତୀ ଇନ୍ଦିରାଜୀ ଏକ କଠୋର ନିଷ୍ପତ୍ତି ନେଲେ ସନ୍ତ୍ରାସବାଦୀମାନଙ୍କୁ ସ୍ୱର୍ଣ୍ଣ ମନ୍ଦିରରୁ ସଂପୂର୍ଣ୍ଣ ରୂପେ ବିତାଡ଼ିତ କରିବା ପାଇଁ ଓ ସ୍ୱର୍ଣ୍ଣମନ୍ଦିର ଓ ତାର ଚାରି ପାଖର ସୁରକ୍ଷା, ସୈନ୍ୟ ଓ ପ୍ରତିରକ୍ଷା ବାହିନୀ ହାତରେ ଛାଡ଼ିଦେବା ପାଇଁ । ଏପରି କଠୋର ନିଷ୍ପତ୍ତି, ଶକ୍ତିଶାଳୀ ନେତୃତ୍ୱ ଓ ଦିଗ୍‌ଦର୍ଶନ ବୋଧହୁଏ ଶ୍ରୀମତୀ ଗାନ୍ଧୀଙ୍କ ବ୍ୟତୀତ ଅନ୍ୟ କେହି ଦେଇ ପାରି ଥାଆନ୍ତେ କି ନାହିଁ ଇତିହାସ କହିବ । କିନ୍ତୁ ଶ୍ରୀମତୀ ଗାନ୍ଧୀ ଭାରତବାସୀଙ୍କର ଚିରସ୍ମରଣୀୟ ହୋଇ ରହିବେ ଏହି କଠୋର ନିଷ୍ପତ୍ତିର ସଫଳତାରେ । ମୋର ଜାମାତା ଶ୍ରୀମାନ ବିଶ୍ୱକେଶ ସୀମା ସୁରକ୍ଷା ବାହିନୀର ଆଇ.ଜି. ଭାବରେ ନିଜ ଜୀବନକୁ ରାଷ୍ଟ୍ରର ସ୍ୱାର୍ଥ ଆଗରେ ତୁଚ୍ଛ ମନେ କରି ଶ୍ରୀମତୀ ଗାନ୍ଧୀଙ୍କର ଅତ୍ୟନ୍ତ ପ୍ରଶଂସାର ପାତ୍ର ହୋଇଥିଲେ ଓ ଏହି ଘଟଣା ପରେ ପରେ ତାଙ୍କୁ ଅଜସ୍ର ପ୍ରଶଂସା ସହିତ ସୀମାନ୍ତ ସୁରକ୍ଷା ବାହିନୀରେ ଡାଇରେକ୍ଟର ଜେନେରାଲ କରାଯିବା ପାଇଁ ସୁପାରିଶ ହୋଇଥିବାର ଖବର ପାଇ ମୁଁ ଓ ମୋ ପରିବାର ଅତ୍ୟନ୍ତ ଗର୍ବିତ ମନେ କରିଥିଲୁ ।

କେନ୍ଦ୍ରୀୟ ପୋଲିସ ସେବାରେ ଜଣେ ଓଡ଼ିଆ ଅଫିସର ଭାବେ ଏପରି ସାହସିକତା ଓ ଦେଶସେବାରେ ସଫଳତା ସହ ଦାୟିତ୍ୱ ତୁଲାଇବାର ଦକ୍ଷତା ଉପରେ ରାଜ୍ୟ ପୁଲିସ ଫୋର୍ସର ସର୍ବୋଚ୍ଚ ଅଧିକାରୀମାନେ, ମୁଁ ମନ୍ତ୍ରୀ ଥିବା ସମୟରେ, ସମସ୍ତେ ବଧାଇ ଦେଇଛନ୍ତି । ଏହି ସମୟରେ ମୁଁ ରାଜ୍ୟ ମନ୍ତ୍ରିମଣ୍ଡଳରେ ଜଣେ ବରିଷ୍ଠ ସଦସ୍ୟ ଭାବେ ଯେତେ ଖୁସି ନଥିଲି ବିଶ୍ୱକେଶଙ୍କ ଦକ୍ଷତା, ଦେଶସେବା ଓ ରାଷ୍ଟ୍ରୀୟ ଦାୟିତ୍ୱ ତୁଲାଇବାରେ ସଫଳତା ମତେ, ମୋ ପରିବାର ଓ ତାଙ୍କ ପରିବାରକୁ ଅଧିକ ଆନନ୍ଦ ଓ ସନ୍ତୋଷ ଦେଇଥିଲେ । ଭଗବାନଙ୍କ କରୁଣା ଓ ଆଶୀର୍ବାଦରେ ତାଙ୍କର ଏକମାତ୍ର କନ୍ୟା ଇପ୍‌ସିତା ଡାକ ନାମ ଇତୁ ଓ ତା'ର ସ୍ୱାମୀ ଶ୍ରୀମାନ ସଞ୍ଜୟ କାଠୋରିଆ ବର୍ତ୍ତମାନ ଆମେରିକା ରାଜଧାନୀ ୱାସିଙ୍ଗଟନରେ ଅଛନ୍ତି । ଉଭୟ ଯୁକ୍ତରାଷ୍ଟ୍ରରେ ସେବାରତ । ଧନଞ୍ଜୟ ପୃଥିବୀ ବ୍ୟାଙ୍କରେ ଜଣେ ସିନିଅର ବରିଷ୍ଠ ଅଧିକାରୀ । ବିଶ୍ୱକେଶ ଓ ପଦ୍ମିନୀର ପ୍ରଥମ ପୁତ୍ର କଲ୍ୟାଣୀୟ ଦେବାଶିଷ ଏକ ଖ୍ୟାତନାମା କମ୍ପୁଟର ଇଞ୍ଜିନିୟର । ସେ ମଧ୍ୟ ବିଭିନ୍ନ ରାଷ୍ଟ୍ରୀୟ ଏବଂ ଅର୍ନ୍ତରାଷ୍ଟ୍ରୀୟ କମ୍ପାନୀରେ ଦାୟିତ୍ୱ ତୁଲାଇଛନ୍ତି ଦକ୍ଷ କମ୍ପ୍ୟୁଟର ଇଞ୍ଜିନିୟର ଭାବେ । ନିଜର କମ୍ପ୍ୟୁଟର ଫାର୍ମ କରି ତାର ଅଧ୍ୟକ୍ଷ ରୂପେ ଭୁବନେଶ୍ୱରରେ ବର୍ତ୍ତମାନ କାର୍ଯ୍ୟରତ । ତାଙ୍କର ପତ୍ନୀ କଲ୍ୟାଣୀୟା ସସ୍ମିତା (ଜାପାନି) ବର୍ତ୍ତମାନ କଟକରେ ଷ୍ଟେଟ ବ୍ୟାଙ୍କ

ଅଫ୍ ବିକାନିର୍‌ର ଅଫିସର । ଉଭୟଙ୍କର ଏକମାତ୍ର କନ୍ୟା ୫/୬ ବର୍ଷର ଭୁବନେଶ୍ୱର କନ୍‌ଭେଣ୍ଟ୍ ସ୍କୁଲ୍‌ର ନର୍ସରୀରେ ନାମ ଲେଖାଇଛନ୍ତି । ତାଙ୍କ ନାମ ଦିକ୍ଷା । ଜେଜେ ବାପା ଓ ଜେଜେ ମା (ମୋର ଝିଅ ଓ ଜ୍ୱାଇଁ)ଙ୍କର ସମୟ କଟାଇବାରେ ଓ ଆନନ୍ଦ ଦେବାରେ ଏହି ଛୋଟ ଅଳିଅଳି ଝିଅଟି ପରମ ଆନନ୍ଦ ଓ ଆଶୀର୍ବାଦର ଅଧିକାରୀ ।

ମୋର ଦ୍ୱିତୀୟ ନାତି (ବିଶ୍ୱକେଶଙ୍କର ୨ୟ ପୁତ୍ର) ଶୁଭାଶିଷ ବର୍ତ୍ତମାନ ଦିଲ୍ଲୀରେ ଏକ ବିରାଟ ଆଡଭଟାଇଜିଂ ଫାର୍ମର ପ୍ରତିଷ୍ଠାତା । ତା'ର ଅଫିସ ଭୁବନେଶ୍ୱର, ଦିଲ୍ଲୀ, ଆରବ ଦେଶର ଦୁବାଇ ଏପରିକି ଆମେରିକାରେ ମଧ୍ୟ କରିପାରିଛି । ସେ ବର୍ତ୍ତମାନ ସସ୍ତ୍ରୀକ କାନାଡାରେ ତାର ବ୍ୟବସାୟ ସଂପ୍ରସାରିତ କରିବା ପାଇଁ କାନାଡା ଯିବାପାଇଁ ଇମିଗ୍ରେସନ ସାର୍ଟିଫିକେଟ ପାଇଁ ଉଦ୍ୟମ କରୁଛି । ତା'ର ସ୍ତ୍ରୀ ପାକିସ୍ତାନର କରାଚୀରୁ ରିଫ୍ୟୁଜି ଭାବରେ ଆସିଥିବା ଜଣେ ଭାରତ ସରକାରଙ୍କର ଅର୍ଥ ବିଭାଗର ଉଚ୍ଚ ପଦସ୍ଥ ଅଧିକାରୀ ଭାବେ କାର୍ଯ୍ୟ ଶେଷ କରି, ଆମେରିକାରେ ସସ୍ତ୍ରୀକ କନ୍ୟାଙ୍କ ନିକଟରେ ରହୁଥିଲେ ମଧ୍ୟ ଦିଲ୍ଲୀସ୍ଥ ବସନ୍ତ ବିହାରରେ ମଝିରେ ମଝିରେ ରହୁଛନ୍ତି । ଶୁଭାଶିଷର ଧର୍ମପତ୍ନୀ ସଙ୍ଗୀତା ଭାରତର ଅନ୍ତର୍ଦ୍ଦେଶୀୟ ଉଡାଜାହାଜ ସଂସ୍ଥା (Air India) ର ଜଣେ ସିନିଅର ଗ୍ରାଉଣ୍ଡ ଅଫିସର । ଉଭୟଙ୍କର ୨ଟି ପୁତ୍ର ଦିଲ୍ଲୀରେ ଶିକ୍ଷାରତ । ବିଶ୍ୱକେଶ ଓ ମୋର ପ୍ରଥମା କନ୍ୟା ୨୦୦୧ ମସିହା ଏପ୍ରିଲ ମାସରୁ ତାଙ୍କ ଝିଅ ଜ୍ୱାଇଁଙ୍କ ସହିତ ଓ୍ୱାସିଙ୍ଗଟନ୍‌ରେ ଦୁଇ ମାସ ରହିଛନ୍ତି ।

ମୋର ଦ୍ୱିତୀୟା କନ୍ୟା କଲ୍ୟାଣୀୟା ସୁଚିତ୍ରା ପତି କୋଣାର୍କ ଦୂରଦର୍ଶନ ସଂସ୍ଥାର ପରଚେଜ୍ ଅଫିସର ରୂପେ ଅବସର ନେଇଛନ୍ତି । ସୁଚିତ୍ରା ବିବାହ କରିଥିଲେ ପ୍ରମୋଦ ପତିଙ୍କୁ ଯେକି ଏକ ଅନିର୍ବଚନୀୟ ମେଧାବୀ ଛାତ୍ର ଭାବେ ବାଙ୍ଗାଲୋରରୁ ଫଟୋଗ୍ରାଫି (Cinematography) ଇଞ୍ଜିନିୟରିଂରେ ପ୍ରଥମ ଶ୍ରେଣୀର ୨ୟ ସ୍ଥାନ ଅଧିକାର କରି ସ୍ୱର୍ଣ୍ଣ ପଦକ ପ୍ରାପ୍ତ ହୋଇ ରାଜ୍ୟ ସରକାରଙ୍କ ଲୋକସଂପର୍କ ବିଭାଗରେ ସେବା ଆରମ୍ଭ କରିଥିଲେ । ୩ବର୍ଷ ପରେ ତାଙ୍କୁ ଚେକୋସ୍ଲୋଭାକିଆ ରାଷ୍ଟ୍ର ତରଫରୁ ଏକ ବୃତ୍ତି ମିଳିଲା ୩ ବର୍ଷ ପାଇଁ ସଂକେତ ଫିଲ୍ମ ସଂପର୍କରେ ଅଧିକ ଜ୍ଞାନ ଅର୍ଜନ କରିବା ପାଇଁ । ସ୍ୱର୍ଗତ ପ୍ରମୋଦ (ଜାମାତାଙ୍କ ନାମ) ଥିଲେ ବିଖ୍ୟାତ ଅଙ୍କଶାସ୍ତ୍ର ଶିକ୍ଷକ ଓ ରେଭେନ୍‌ସା କଲିଜିଏଟ ସ୍କୁଲର ତତ୍କାଳୀନ ପ୍ରଧାନ ଶିକ୍ଷକ ସ୍ୱର୍ଗତ ନାରାୟଣ ପତିଙ୍କର ଜ୍ୟେଷ୍ଠ ପୁତ୍ର । ଚେକୋସ୍ଲୋଭାକିଆରେ ପପେଟ ଫିଲ୍ମ ତିଆରି କ୍ଷେତ୍ରରେ ଏପରି ପ୍ରତିଭା ପ୍ରଦର୍ଶନ କଲେ ଯେ ତାଙ୍କୁ କେନ୍ଦ୍ର ସାଧାରଣ ସେବା ସଂସ୍ଥା ବିନା ଇଣ୍ଟରଭ୍ୟୁରେ ତାଙ୍କ କୃତିତ୍ୱ ସଂପର୍କୀୟ ଦଲୀଲ ସବୁ ସମୀକ୍ଷା କରି କେନ୍ଦ୍ର ସରକାରଙ୍କ ସୂଚନା ଓ ପ୍ରସାରଣ ମନ୍ତ୍ରଣାଳୟର ଜନୈକ ଉଚ୍ଚ ଅଧିକାରୀ ରୂପେ ମନୋନୀତ କରି ଲଣ୍ଡନରେ ଥିବା ଭାରତୀୟ ରାଷ୍ଟ୍ରଦୂତଙ୍କୁ ନିର୍ଦ୍ଦେଶ ଦେଲେ ପ୍ରମୋଦଙ୍କ ସହିତ

ଲଣ୍ଡନଠାରେ ଆଲୋଚନା କରି ତାଙ୍କର ବ୍ୟକ୍ତିଗତ ମତ ଦେବା ପାଇଁ । ତାଙ୍କ ମତ ପାଇ କେନ୍ଦ୍ର ସରକାର ତାଙ୍କୁ ଲଣ୍ଡନକୁ ନିଯୁକ୍ତିପତ୍ର ପଠାଇ ବମ୍ବେରେ ସିଧାସଳଖ ଯୋଗ ଦେବାକୁ ନିର୍ଦ୍ଦେଶ ଦେଲେ । ସେ ବମ୍ବେରେ ପପେଟ୍ ଫିଲ୍ମ ଓ ଅନ୍ୟାନ୍ୟ Cre-ative ଫିଲ୍ମ ତିଆରିରେ ଏପରି ଦକ୍ଷତା ପ୍ରଦର୍ଶନ କଲେ ଯେ ୧୪ ବର୍ଷ ବମ୍ବେରେ ମନ୍ତ୍ରଣାଳୟର ଅତିରିକ୍ତ ନିର୍ଦ୍ଦେଶକ ଭାବରେ କାର୍ଯ୍ୟ କଲେ । ପ୍ରତିବର୍ଷ ସେ ଆନ୍ତର୍ଜାତିକ ସମ୍ମିଳନୀରେ ଯୋଗ ଦେବା ପାଇଁ କେନ୍ଦ୍ର ସରକାରଙ୍କ ପ୍ରତିନିଧିତ୍ୱ କରୁଥିଲେ । ବହୁ ଆନ୍ତର୍ଜାତୀକ ପୁରସ୍କାରର ଅଧିକାରୀ ହୋଇ ଶେଷରେ (U.N.O) ଜାତିସଂଘର ସାମାଜିକ ଓ ସାଂସ୍କୃତିକ ବିଭାଗ ଦ୍ୱାରା ପ୍ୟାରିସରେ ଏକ ଉଚ୍ଚ ବେତନରେ ଡାଇରେକ୍ଟର ରୂପେ ନିଯୁକ୍ତି ମିଳିବାର ସ୍ଥିର କରାଯାଇଥିଲା । ଠିକ୍ ଏହି ସମୟରେ ନିଷ୍ଠୁର ଭାଗ୍ୟ ତାଙ୍କର ଅନ୍ତରାୟ ହେଲା । ଭାରତରେ କ୍ୟାନସର ସେବା ଉପରେ ଏକ ଫିଲ୍ମ କରି ସେ ଆନ୍ତର୍ଜାତିକ ପୁରସ୍କାରପ୍ରାପ୍ତ ହେବା ପରେ ନିଜେ କାନସର ରୋଗରେ ଆକ୍ରାନ୍ତ ହୋଇ ବମ୍ବେ, ଲଣ୍ଡନ ଓ ଭିଏନାରେ ଚିକିତ୍ସା ହେବା ପରେ ୧୯୭୫ ମସିହା ଜାନୁୟାରୀ ୨୦ ତାରିଖରେ ପ୍ରାଣତ୍ୟାଗ କଲେ ବମ୍ବେର ଟାଟା ମେମୋରିଆଲ ହସ୍ପିଟାଲ୍‌ରେ । ଭାରତ ଏକ ଶ୍ରେଷ୍ଠ ଫିଲ୍ମ ବୈଜ୍ଞାନିକଙ୍କୁ ହରାଇଲା । ସେ ଦୁଃଖ କେବଳ ଆମ ପରିବାରର ନୁହେଁ ସାରା ରାଜ୍ୟର । ଜଣେ ଶ୍ରେଷ୍ଠ ବୈଷୟିକ ଜ୍ଞାନସଂପନ୍ନ ସିନେମାଟୋଗ୍ରାଫର ବୈଜ୍ଞାନିକଙ୍କ ଅକାଳ ବିୟୋଗର ସ୍ଥାନ ପୂରଣ ପାଇଁ ସମୟ ଲାଗିବ । ସମଗ୍ର ରାଜ୍ୟରେ ପ୍ରମୋଦଙ୍କ ଅପୂର୍ଣ୍ଣ ବୟସରେ ତିରୋଧାନ ଏକ ଶୂନ୍ୟ ସ୍ଥାନ ସୃଷ୍ଟି କରିଥିଲା । ସୁଚିତ୍ରାର ୨ଟି କନ୍ୟାଙ୍କ ଭିତରୁ ଦ୍ୱିତୀୟା କନ୍ୟା କଲ୍ୟାଣୀୟା ସିପ୍ରା ବର୍ତ୍ତମାନ ଯୁକ୍ତରାଷ୍ଟ୍ର ଆମେରିକାର ଆଲାସ୍କା ରାଜ୍ୟରେ (Ph.d) କରୁଛନ୍ତି । ରାଉରକେଲା ଇସ୍ପାତ କାରଖାନାରେ ଜଣେ ସିନିଅର ଅଫିସର ଭାବେ ସେ ଗତ ୧୦ ବର୍ଷ ଧରି କାର୍ଯ୍ୟ କଲା ପରେ ଷ୍ଟଡି ଲିଭ୍‌ରେ ଆମେରିକା ଯାଇଛନ୍ତି । ସେଠାରେ ପିଏଚ.ଡି. ସହିତ ସେ ମଧ୍ୟ ଗୋଟିଏ ଆମେରିକା ସରକାରଙ୍କ ବୃତ୍ତି ପାଉଛନ୍ତି । ତା'ର ସ୍ୱାମୀ ଦେବଜ୍ୟୋତି ପତି ମଧ୍ୟ ଆମେରିକାରେ ଓଡିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟରୁ ଷ୍ଟଡି ଲିଭ୍ ନେଇ ଆମେରିକା କୃଷି ଇଞ୍ଜିନିୟରିଂରେ ଡକ୍ଟରେଟ୍ କରୁଛନ୍ତି । ସେ ଜଣେ ମେଧାବୀ ଆରକିଟେକ୍ଟରାଲ ଇଞ୍ଜିନିୟର । ସୁଚିତ୍ରାର ପ୍ରଥମ କନ୍ୟା ଏମ.ଏ. କରି ଭୁବନେଶ୍ୱରଠାରେ ଅର୍ଥ ବିଭାଗର ସିନିଅର ଅଡିଟର ଶ୍ୟାମସୁନ୍ଦର ମହାପାତ୍ରଙ୍କୁ ବିବାହ କରିଛନ୍ତି ।

ସୁଚିତ୍ରା ସ୍କୁଲ ଓ କଲେଜରେ ପଢୁଥିବା ସମୟରେ ଓଡ଼ିଶୀ ନୃତ୍ୟରେ ପାରଙ୍ଗମତା ଲାଭକରି ବହୁ ଅନୁଷ୍ଠାନ ଦ୍ୱାରା ପୁରସ୍କୃତ ହୋଇଛି ଏବଂ ରାଜ୍ୟ ସରକାର ଓ ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ମନୋନୀତ ହୋଇ ରାଷ୍ଟ୍ରର ସାଧାରଣତନ୍ତ୍ର ଦିବସ (Republic

Day) ଉତ୍ସବରେ ସର୍ବଭାରତୀୟ କ୍ଷେତ୍ରରେ ପ୍ରତିଯୋଗିତାରେ ଶ୍ରେଷ୍ଠତ୍ୱ ପ୍ରତିପାଦନ କରି ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ତଥା ରାଷ୍ଟ୍ରନାୟକ ପଣ୍ଡିତ ଜବାହାରଲାଲ ନେହେରୁଙ୍କ ଦ୍ୱାରା ସ୍ୱତନ୍ତ ଭାବେ ପ୍ରଶଂସିତ ହୋଇଥିଲା । ପଣ୍ଡିତଜୀ ତା କାନ୍ଧରେ ହାତ ଦେଇ ଆଶୀର୍ବାଦ କଲାବେଳେ ଏକ ସ୍ୱତନ୍ତ୍ର ଫଟୋ ତାର ନେଇଥିଲେ । ସେ ଫଟୋଟି ତା ଛାତ୍ର ଜୀବନର ସଫଳତା ବୋଲି ସେ ଫଟୋଟି ଏ ପର୍ଯ୍ୟନ୍ତ ସାଇତି ରଖିଛି । ସୁଚିତ୍ରା ଦକ୍ଷ ସଙ୍ଗଠିକା ଓ ଲାଏନସ କ୍ଲବର ସଦସ୍ୟା ରୂପେ ବହୁ ସେବା କାର୍ଯ୍ୟରେ ସହଯୋଗ କରିଛି ଓ ବହୁ ପୁରସ୍କାର ପାଇଛି । ସେ ମଧ ସିଲାଇ ଓ ରାନ୍ଧିବା କାର୍ଯ୍ୟରେ ଧୁରନ୍ଧର ଓ ବହୁ ପତ୍ରପତ୍ରିକାରେ ତାର ରାନ୍ଧିବା ଓ ସିଲାଇ ବିଷୟକ ଲେଖା ପ୍ରକାଶ ପାଏ ।

ମୋର ତୃତୀୟା କନ୍ୟା କଲ୍ୟାଣୀୟା ପ୍ରମିଳା ଓଡ଼ିଶା ସରକାରରେ କାର୍ଯ୍ୟ କରୁଥିବା କଷ୍ଟ ଆକାଉଣ୍ଟାଣ୍ଟ୍ ଶ୍ରୀଯୁକ୍ତ ପ୍ରଭାକର ମିଶ୍ରଙ୍କୁ ବିବାହ କରିଛନ୍ତି । ଶ୍ରୀଯୁକ୍ତ ମିଶ୍ର ବି.ଏ., ବି.କମ୍., କଷ୍ଟ ଆକାଉଣ୍ଟାନ୍‌ସି ପାଶ କରି ତାଲଚେର କୋଇଲା ଖଣି ଓ ତାଲଚେର ସାର କାରଖାନାରେ ଅର୍ଥ ପରାମର୍ଶଦାତା ରୂପେ କାର୍ଯ୍ୟ କଲା ପରେ ଓଡ଼ିଶା ରାଜ୍ୟ ସାଧାରଣ ସେବା ପ୍ରତିଷ୍ଠାନ (Orissa Public Service Commission) ଦ୍ୱାରା ମନୋନୀତ ହୋଇ ଜଙ୍ଗଲ ବିଭାଗର କେନ୍ଦୁପତ୍ର ବ୍ୟବସାୟ ବିଭାଗରେ ଆକାଉଣ୍ଟସ୍ ଅଫିସର ରୂପେ ସରକାରୀ କାର୍ଯ୍ୟରେ ଯୋଗ ଦେଇ ବର୍ତ୍ତମାନ ସେ ବିଭାଗର ମୁଖ୍ୟ ଅର୍ଥ ପରାମର୍ଶଦାତା (Chief Controller of Costs & Financial Adviser) ଭାବେ କାର୍ଯ୍ୟ କରୁଛନ୍ତି । ସେ ଜଣେ ଦକ୍ଷ ଓ ସଚ୍ଚୋଟ ଅଫିସର ରୂପେ ଖ୍ୟାତି ଅର୍ଜନ କରିଛନ୍ତି । ମୋର ଝିଅ ପ୍ରମିଳା ମଧ ଜଣେ ଦକ୍ଷ ସଙ୍ଗଠିକା ଓ ଲାଏନସ୍ କ୍ଲବର ସଦସ୍ୟା ରୂପେ ବହୁ ସେବା କାର୍ଯ୍ୟରେ ସହଯୋଗ କରି ପ୍ରଶଂସିତା ହୋଇଛି । ତାଙ୍କର ପ୍ରଥମା କନ୍ୟା ଦେବଜ୍ୟୋତି (ମାମା) ବିବାହ କରିଛି ଜଣେ ଦକ୍ଷ କମ୍ପୁଟର ଇଞ୍ଜିନିୟର ଶ୍ରୀମାନ ଜ୍ଞାନଙ୍କୁ ଯେ କି ବର୍ତ୍ତମାନ ପୁନାରେ ଏକ ଅନ୍ତର୍ଦେଶୀୟ ବାଣିଜ୍ୟ ସଂସ୍ଥାରେ କାର୍ଯ୍ୟରତ । ପ୍ରମିଳାଙ୍କ ଦ୍ୱିତୀୟା କନ୍ୟା ଦେବଦ୍ୟୁତି (ପାପା) ଓଡ଼ିଶା ହାଇକୋର୍ଟର ଯୁବ ଆଡଭୋକେଟ ଶ୍ରୀମାନ ଅଶୋକ ମିଶ୍ରଙ୍କୁ ବିବାହ କରି କଟକରେ ରହୁଛନ୍ତି । ପ୍ରମିଳାଙ୍କ ତୃତୀୟା କନ୍ୟା ସ୍ୱାତିରୂପା Computer Application ରେ MCA ଡିଗ୍ରୀ ହାସଲ କରି ଭୁବନେଶ୍ୱରର ଏକ ବାଣିଜ୍ୟ ସଂସ୍ଥାରେ କାର୍ଯ୍ୟାରତ । ପ୍ରମିଳାଙ୍କ ଏକମାତ୍ର ପୁଅ ଶ୍ରୀମାନ ସୌମ୍ୟପ୍ରସାଦ (ବାବୁ) ଇଞ୍ଜିନିୟରିଂ କଲେଜରେ ଶେଷବର୍ଷର ଛାତ୍ର । ସେ ଜଣେ ମେଧାବୀ ଛାତ୍ର ।

ମୋର ଚତୁର୍ଥୀ କନ୍ୟା କଲ୍ୟାଣୀୟା ସୁରଭିର ଡାକନାମ ମନି । ସେ ସ୍କୁଲ ଓ କଲେଜରେ ପଢୁଥିବା ବେଳେ ଓଡ଼ିଶୀ ନୃତ୍ୟରେ ପାରଙ୍ଗମତା ହାସଲ କରି ବହୁ

ପୁରସ୍କୃତ ହେଉଛି । ସେ ଜଣେ ଅବସର ପ୍ରାପ୍ତ ଜିଲ୍ଲାଜଜ୍ ଶ୍ରୀ ନୃସିଂହ ଚରଣ ମହାପାତ୍ରଙ୍କ ଜ୍ୟେଷ୍ଠ ପୁତ୍ର ଶ୍ରୀମାନ ସୁଧାଂଶୁ ଶେଖର ମହାପାତ୍ରଙ୍କୁ ବିବାହ କରିଛି । ଶ୍ରୀମାନ ସୁଧାଂଶୁ ଜଣେ ଦକ୍ଷ ବଏଲର ଇଞ୍ଜିନିୟର (Boiler Engineer) । ଭାରତ ଓ ବଙ୍ଗଳାଦେଶରେ କାର୍ଯ୍ୟ କରିବା ପରେ ଏବେ ନାଇକୋରେ Chief Engineer (Boiler) ପଦବୀରେ କାର୍ଯ୍ୟରତ । ମନି ନିଜ ଉଦ୍ୟମରେ ନାଇକୋ ନଗରରେ ଏକ ଇଂରାଜି ମିଡିଅମ ସ୍କୁଲ ପ୍ରତିଷ୍ଠା କରି ସେହି ଅନୁଷ୍ଠାନର ଅଧକ୍ଷା ରୂପେ କାର୍ଯ୍ୟରତ । ଏହି ସ୍କୁଲରେ ଛୋଟ ଛୋଟ ପିଲାମାନଙ୍କୁ ପାଠ ପଢାଇବା ସହିତ ନାଚ, ପେଣ୍ଟିଂ ଓ ଖେଳକୁଦ ମଧ ଶିକ୍ଷା ଦିଆଯାଏ ! ଏହି ଅନୁଷ୍ଠାନ ନାଇକୋ ନଗରୀରେ ବିଶେଷ ପ୍ରଶଂସିତ । ନାଇକୋ ନଗରୀରେ ମହିଳା ଅନୁଷ୍ଠାନ ଗଢ଼ିବା ସହ ଏହାର କର୍ମକର୍ତ୍ତା ହିସାବରେ ମଧ ସୁରଭି ବହୁ ସାଂସ୍କୃତିକ ଓ ସାମାଜିକ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରି ସମାଜରେ ନିଜର ଏକ ସ୍ୱତନ୍ତ୍ର ସ୍ଥାନ ସୃଷ୍ଟି କରିପାରିଛି । ତାଙ୍କର ଏକ ମାତ୍ର ଝିଅ ଶ୍ୱେତପଦ୍ମା (ଚୁମ୍ମନ) ଫେସନ ଡିଜାଇନିଂ ପଢୁଛି ହାଇଦରାବାଦରେ ଏବଂ ଏକମାତ୍ର ପୁଅ ସନ୍ଦୀପ (ସିଟୁନ) ସ୍କୁଲରେ ପଢୁଛି ଅନୁଗୋଳରେ ।

ମୋର ଛଅଟି ପୁଅ । ମୋର ସେମାନଙ୍କ ପ୍ରତି ଗଭୀର ସ୍ନେହ ଓ ସେମାନଙ୍କର ମୋ ପ୍ରତି ଅଶେଷ ଶ୍ରଦ୍ଧା ଓ ସମ୍ମାନ ଆମ ପରିବାରକୁ ଏକ ଆଦର୍ଶ ପରିବାରର ସମ୍ମାନ ଦେଇଛି । ମୋର ଛଅ ପୁଅ ଓ ସେମାନଙ୍କର ସନ୍ତାନ ମାନଙ୍କ ସହ ଆମେ ସମସ୍ତେ ଏକ ଯୌଥ ପରିବାର ଭାବେ ଏ ପର୍ଯ୍ୟନ୍ତ ରହିଛୁ । କେହି କେବେ ମୋତେ ଭାବିବାକୁ ଦେଇନାହିଁ ଯେ ତାର ମୋ ପ୍ରତି ଆନୁଗତ୍ୟ ଅନ୍ୟ ଭାଇମାନଙ୍କ ତୁଳନାରେ କମ । ସମସ୍ତେ ଶିକ୍ଷା ସମାପ୍ତ ପରେ ବିଭିନ୍ନ ସରକାରୀ, ବେସରକାରୀ ତଥା ଅନ୍ୟାନ୍ୟ ସଂସ୍ଥାମାନଙ୍କରେ ଦାୟିତ୍ୱ ନେଇ ଶାନ୍ତିରେ ଅଛନ୍ତି । ସମସ୍ତେ ଉଚ୍ଚଶିକ୍ଷିତ ।

ମୋର ଜ୍ୟେଷ୍ଠ ପୁତ୍ର କ୍ୟାପଟେନ ରମାବଲ୍ଲଭ ଭୁବନେଶ୍ୱରସ୍ଥିତ ତତ୍କାଳୀନ ଓଡ଼ିଶା ଫ୍ଲାଇଙ୍ଗ କ୍ଲବରେ ଶିକ୍ଷା ଲାଭ କରି ଜଣେ ବୈମାନିକ ଭାବେ ଚାକିରି ଆରମ୍ଭ କରିଥିଲେ ସେହି ଫ୍ଲାଇଙ୍ଗ କ୍ଲବରେ । ପରେ ରାଜ୍ୟ ସରକାର ସେଇ ଫ୍ଲାଇଙ୍ଗ କ୍ଲବର ପରିଚାଳନାକୁ ନିଜ ହାତକୁ ନେଲା ପରେ ଏହି ଫ୍ଲାଇଙ୍ଗ କ୍ଲବର ନାମ ହେଲା ଓଡ଼ିଶା ରାଜ୍ୟ ବିମାନ ଚାଳକ ପ୍ରଶିକ୍ଷଣ କେନ୍ଦ୍ର (Govt. Aviation Training Institute) ଏବଂ କ୍ୟାପଟେନ ରମାବଲ୍ଲଭ ରାଜ୍ୟ ସରକାରଙ୍କ ଅଧିନରେ ରାଜ୍ୟ ସରକାରୀ କର୍ମଚାରୀର ମର୍ଯାଦା ଲାଭ କଲେ । ପରବର୍ତ୍ତୀ ପର୍ଯ୍ୟାୟରେ ନିଜର ଦକ୍ଷତା ବଳରେ ସେ ଏହି ସଂସ୍ଥାର ଆସିଷ୍ଟାଣ୍ଟ ଫ୍ଲାଇଙ୍ଗ ଇନଷ୍ଟ୍ରକ୍ଟର (Asst. Flying Instructor) ରୁ ଏହାର ଚିଫ୍ ଇନଷ୍ଟ୍ରକ୍ଟର ପଦକୁ ଉନ୍ନିତ ହୋଇ ପାରିଛନ୍ତି । ପାଇଲଟ ଶିକ୍ଷାନବିଶମାନଙ୍କୁ ଟ୍ରେନିଂ ଦେବା ସହ କ୍ୟାପଟେନ ରମାବଲ୍ଲଭ ମଧ ରାଜ୍ୟ

ସରକାରୀ ବିମାନ ଚାଳନା କରି ମୁଖ୍ୟମନ୍ତ୍ରୀଙ୍କ ଠାରୁ ରାଜ୍ୟପାଳ ତଥା ଅନ୍ୟ କେନ୍ଦ୍ରୀୟ ଓ ରାଜ୍ୟସ୍ତରୀୟ ବିଶିଷ୍ଟ ବ୍ୟକ୍ତି ବିଶେଷଙ୍କୁ ରାଜ୍ୟ ସରକାରଙ୍କ ନିର୍ଦ୍ଦେଶରେ ରାଜ୍ୟ ସରକାରଙ୍କ ବିମାନରେ ବିଭିନ୍ନ ଜାଗାକୁ ନେଇଛନ୍ତି । ରାଜ୍ୟର ଦୁର୍ଦ୍ଦିନରେ, ଅର୍ଥାତ୍ ବନ୍ୟା ଓ ପ୍ରାକୃତିକ ବିପତ୍ତି ସମୟରେ ସେ ଦକ୍ଷତାର ସହ ରାଜ୍ୟ ସରକାରୀ ବିମାନରେ ରାଜ୍ୟର ଓ କେନ୍ଦ୍ରର ବିଶିଷ୍ଟ ବ୍ୟକ୍ତିମାନଙ୍କୁ ବିଭିନ୍ନ ସ୍ଥାନକୁ ନେଇଛନ୍ତି । ତାଙ୍କ ବିମାନ ଚାଳନାକୁ ବିଜୁ ପଟ୍ଟନାୟକଙ୍କ ଠାରୁ ଆରମ୍ଭ କରି ବହୁ ପୁରାତନ ଓ ବର୍ତ୍ତମାନର ବିଶିଷ୍ଟ ବୈମାନିକମାନେ ପ୍ରଶଂସା କରିଛନ୍ତି । ତାଙ୍କ ସ୍ତ୍ରୀ କଲ୍ୟାଣୀ ରଶ୍ମୀ ଅର୍ଥନୀତିରେ ଏମ.ଏ. ପାସ କରି ବି.ଜେ.ବି. ଇଂରାଜୀ ମିଡିଅମ ସ୍କୁଲରେ ଶିକ୍ଷକତା କରୁଥିଲେ । କିନ୍ତୁ ସମୟ ଓ ପରିସ୍ଥିତିର ଚାପରେ ଚାକିରି ଛାଡ଼ି ପରିବାର ଗଢ଼ି ତୋଳିବାରେ ମନ ଦେଇ ନିଜକୁ ଜଣେ ସୁଗୃହୀଣି, ଉତ୍ତମ ମାତା ଓ ଉତ୍ତମ ବୋହୂ ହିସାବରେ ପ୍ରତିଷ୍ଠିତ କରିପାରିଛନ୍ତି । ସେ ଆମମାନଙ୍କର ବହୁ ସେବା ଯତ୍ନ କରନ୍ତି । ତାଙ୍କର ଦୁଇ ଝିଅ - ମୋନାଲିସା (କୁମୁନ୍) ଓ ସୁସ୍ମିତା (ସୁମୁନ) । ମୋନାଲିସା କମ୍ପ୍ୟୁଟର ମ୍ୟାନେଜମେଣ୍ଟ ପାଠ ପଢ଼ି ବର୍ତ୍ତମାନ ମହାରାଷ୍ଟ୍ର ରାଜ୍ୟର ପୁନା ସହରରେ ଉଚ୍ଚ ଚାକିରୀରେ ଅଛି । ସେ ବଡ଼ ଅଧ୍ୟବ୍ୟବସାୟୀ, ମେଧାବୀ ଓ ବନ୍ଧୁବତ୍ସଳ ହୋଇଥିବାରୁ ତାଙ୍କ ସହପାଠୀ ତଥା ସହକର୍ମୀ ମହଲରେ ବହୁତ ପ୍ରିୟ । ସାନଝିଅ ସୁମୁନ ବୁର୍ଲା ଇଞ୍ଜିନିୟରିଂ କଲେଜରୁ ଇଲେକଟ୍ରୋନିକସ ଇଞ୍ଜିନିୟରିଂ ଡିଗ୍ରୀ ପାଠ ପଢ଼ା ସାରି ଜଣେ ଇଲେକ୍ଟ୍ରନିକ ଇଞ୍ଜିନିୟର ହୋଇଛି । ସେ ଜଣେ ମେଧାବୀ ଛାତ୍ରୀ ହିସାବରେ ସମସ୍ତଙ୍କର ଅତି ପ୍ରିୟ ।

ମୋର ଦ୍ୱିତୀୟ ପୁତ୍ର ଶ୍ରୀମାନ ଉମାବଲ୍ଲଭ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଏମ.ଏ. ପାସ କରି ଏବଂ ମଧୁସୂଦନ ଆଇନ କଲେଜ କଟକରୁ ଆଇନ୍ (LL.B.) ପାସ କରି ପୁରୀରେ ନିଜର ଆଇନ ବ୍ୟବସାୟ ଆରମ୍ଭ କରିଥିଲେ । ପରବର୍ତ୍ତୀ ସମୟରେ ସେ ସହକାରୀ ସରକାରୀ ଓକିଲ, ଅତିରିକ୍ତ ସରକାରୀ ଓକିଲ, ସରକାରୀ ଓକିଲ ଇତ୍ୟାଦି ରୂପେ ଜିଲାସ୍ତରରେ କାର୍ଯ୍ୟ କରି ପ୍ରଶଂସାର ପାତ୍ର ହୋଇଛନ୍ତି । ଏବେ ଗତ ଦଶ ବର୍ଷ ହେଲା ନିଜର ଆଇନ ବ୍ୟବସାୟକୁ କଟକ ହାଇକୋର୍ଟକୁ ସ୍ଥାନାନ୍ତରିତ କରି କଟକରେ ମଧ୍ୟ ହାଇକୋର୍ଟ ଆଡଭୋକେଟ ରୂପେ ସୁନାମ ଅର୍ଜନ କରିବା ସହ ଓଡ଼ିଶା ହାଇକୋର୍ଟରେ ରେଳବାଇ (Railway Advocate) ଓକିଲ ଦାୟିତ୍ୱ ସହ ବିଭିନ୍ନ କମ୍ପାନିର ଓକିଲ ହିସାବରେ କାର୍ଯ୍ୟ ସମ୍ପାଦନ କରୁଛନ୍ତି । ସେ ଗତ ୯ ବର୍ଷ ଧରି (୧୯୯୨ ରୁ ଅଦ୍ୟାବଧି ୨୦୦୧ ମସିହା ପର୍ଯ୍ୟନ୍ତ) କେନ୍ଦ୍ର ସରକାରଙ୍କର ଷ୍ଟାଣ୍ଡିଂ କାଉନ୍‌ସିଲ ରୂପେ କେନ୍ଦ୍ରୀୟ ପ୍ରଶାସନିକ ଟ୍ରିବ୍ୟୁନାଲ (Central Administrative Tribunal) ରେ କାର୍ଯ୍ୟ କରି ଉଚ୍ଚ ପ୍ରଶଂସିତ ହୋଇଛନ୍ତି । ଶ୍ରୀମାନ ଉମାବଲ୍ଲଭ ମଧ୍ୟ

ଜଣେ ଶ୍ରମିକ ନେତା ହିସାବରେ ବିଭିନ୍ନ ଶ୍ରମିକ ସଙ୍ଗଠନ ଗଢ଼ିବାସହ ଶ୍ରମିକଙ୍କର ଉନ୍ନତି ପାଇଁ ବହୁ ବର୍ଷ ଉଦ୍ୟମ କରିଥିଲେ ଏବଂ କଂଗ୍ରେସର ପୁରୀ ଜିଲ୍ଲା ଲେବର ସେଲର ବହୁ ବର୍ଷ ଧରି ଆବାହକ କାର୍ଯ୍ୟ କରିଛନ୍ତି । ସେ ମଧ ରାଜ୍ୟ କଂଗ୍ରେସ ଶ୍ରମିକ ସେଲ ଓ ରାଜ୍ୟ କଂଗ୍ରେସ ଲିଗାଲ ସେଲ ଏବଂ କଂଗ୍ରେସ ଇକୋନମିକ ସେଲର ବିଭିନ୍ନ ସମୟରେ ସଦସ୍ୟ ରହିଛନ୍ତି । ଶ୍ରୀ ଉମାବଲ୍ଲଭ ମଧ ରାଜନୀତିରେ ଯୋଗଦାନ କରି ପୁରୀ ମ୍ୟୁନିସିପାଲିଟିର କାଉନ୍‌ସିଲର ରୂପେ ନିର୍ବାଚିତ ହୋଇ ୧୯୮୦ ରୁ ୧୯୮୫ ପର୍ଯ୍ୟନ୍ତ କାର୍ଯ୍ୟ କରିଛନ୍ତି । ପୁରୀ ମ୍ୟୁନିସ୍‌ପାଲିଟିର ଅଧକ୍ଷ ପଦ ପାଇଁ ପ୍ରାର୍ଥୀ ରୂପେ ପ୍ରତିଦ୍ୱନ୍ଦିତା କରି ମାତ୍ର ଏକ ଖଣ୍ଡ ଭୋଟରେ ପରାସ୍ତ ହୋଇଥିଲେ । ବର୍ତ୍ତମାନ ଓଡ଼ିଶା ହାଇକୋର୍ଟର ବରିଷ୍ଠ ଆଇନ୍‌ଜୀବି ଓ ଓଡ଼ିଶା ରାଜ୍ୟ ଆଇନ୍‌ଜୀବି ମହଲରେ ଏକ ଜଣାଶୁଣା ମୁହଁ । ଓଡ଼ିଶାରୁ ମାତ୍ର ୩ ଜଣ ଓକିଲ ଓ ୩ ଜଣ ଜଜ୍ Indian Law Institute, New Delhi ର ଆଜୀବନ ସଦସ୍ୟ ରହିଛନ୍ତି । ଶ୍ରୀମାନ ଉମାବଲ୍ଲଭ ସେମାନଙ୍କ ମଧରୁ ଜଣେ । Indian Law Institute ର ଆଜୀବନ ସଦସ୍ୟ ଭାବେ ସେ ବହୁ ଜାତୀୟ ଓ ଆନ୍ତର୍ଜାତୀୟ ଆଇନଜୀବି ସମ୍ମିଳନୀ ତଥା ଆଲୋଚନା ଚକ୍ରରେ ଯୋଗ ଦେବାର ସୁଯୋଗ ପାଇଛନ୍ତି ।

ଶ୍ରୀମାନ ଉମାବଲ୍ଲଭ ବିହାରର ପାଟଣା ଜିଲ୍ଲା ଜଜ୍ ସ୍ୱର୍ଗତ ଗିରିଜା ଶଙ୍କର ଷଡ଼ଙ୍ଗୀଙ୍କର କନ୍ୟା ଡାଃ କେତକୀ ମହାପାତ୍ର, ଏମ.ଏ., ପି.ଏଚ.ଡି.ଙ୍କୁ ବିବାହ କରିଛନ୍ତି । ଡାଃ କେତକୀ ହିନ୍ଦୀ ସାହିତ୍ୟରେ ଜଣେ ବିଦୁଷୀ ହେବା ସହ ସଂସ୍କୃତ ସାହିତ୍ୟରେ ମଧ ଏମ.ଏ. ଏବଂ ଏଲ.ଏଲ.ବି. ମଧ ପାସ କରିଛନ୍ତି । ଫକୀରମୋହନ ଓ ପ୍ରେମଚାନ୍ଦଙ୍କ ଉପରେ ଏକ ତୁଳନାତ୍ମକ ସନ୍ଦର୍ଭ ଲେଖି ଡାଃ କେତକୀ ଉଚ୍ଚ ପ୍ରଶଂସିତ ହୋଇଛନ୍ତି । ସେ ମଧ ଆନ୍ତର୍ଜାତିକ ହିନ୍ଦୀ ସମ୍ମେଳନୀରେ (World Hindi Conference) ଭାରତର ପ୍ରତିନିଧି ରୂପେ ଯୋଗ ଦେବାର ସୁଯୋଗ ପାଇଛନ୍ତି । ସେ ବର୍ତ୍ତମାନ ଶ୍ରୀ ସଦାଶିବ କେନ୍ଦ୍ରିୟ ସଂସ୍କୃତ ବିଦ୍ୟାପୀଠ (ଏକ କେନ୍ଦ୍ର ସରକାରୀ ସଂସ୍ଥା)ର ହିନ୍ଦୀ ବିଭାଗର ମୁଖ୍ୟ ଅଧାପିକା ରୂପେ କାର୍ଯ୍ୟ କରୁଛନ୍ତି । ଶ୍ରୀମାନ ଉମାବଲ୍ଲଭ ଓ କେତକୀଙ୍କର ତିନି ପୁଅ । ବଡ଼ ପୁଅ ଶ୍ରୀମାନ ରାଜୀବ ଜଣେ ଉଚ୍ଚକୋଟୀର ଛାତ୍ର ହିସାବରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ମାଷ୍ଟର ଇନ୍ ଫାଇନାନ୍ସ ଆଣ୍ଡ କନ୍‌ଟ୍ରୋଲରେ ବିଶ୍ୱବିଦ୍ୟାଳୟରେ ପ୍ରଥମ ୫ ଜଣଙ୍କ ମଧରେ ରହିଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ହାଣ୍ଡବଲ ଟିମ୍‌ରେ ଜାତୀୟ ପ୍ରତିଯୋଗୀତାରେ ଅଂଶ ଗ୍ରହଣ କରିବାର ସୁଯୋଗ ପାଇଛନ୍ତି । ଜଣେ ଦକ୍ଷ ପ୍ରଶାସନିକ ଅଧିକାରୀ ହେବା ତାଙ୍କର ଇଚ୍ଛା । ଦ୍ୱିତୀୟ ପୁତ୍ର ଶ୍ରୀମାନ ରିତେଶ ବର୍ତ୍ତମାନ ଦିଲ୍ଲୀରେ ଇଣ୍ଟରନାସନାଲ ମ୍ୟାନେଜମେଣ୍ଟ ପାଠ ପଢୁଛନ୍ତି । ସେ ମଧ ଜଣେ ମେଧାବୀ ଛାତ୍ର ଓ ସଫ୍‌ଟବଲ

ଖେଳାଳି । ଏହି ଖେଳରେ ମଧ୍ୟ ସେ ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ଜାତୀୟ ସ୍ତରରେ ଖେଳିଛନ୍ତି । ସେ ବହୁତ ମେଳାପି, ପରୋପକାରୀ ଓ ବନ୍ଧୁବତ୍ସଳ । ତୃତୀୟ ପୁତ୍ର ଶ୍ରୀମାନ ରୋହିତ ବର୍ତ୍ତମାନ ବି.ଏ. ୩ୟ ବର୍ଷ ଛାତ୍ର ଓ କମ୍ପ୍ୟୁଟର ପାଠ୍ୟକ୍ରମ (BCA) ର ମଧ୍ୟ ୨ୟ ବର୍ଷର ଛାତ୍ର । ସେ ଜଣେ ଅତ୍ୟନ୍ତ ସରଳ ପ୍ରକୃତିର ପିଲା ଓ ପରୋପକାରୀ । ସେ ବହୁ ବକ୍ତୃତା ପ୍ରତିଯୋଗୀତାରେ ଭାଗ ନେଇ କଲେଜ ତଥା ବିଶ୍ୱବିଦ୍ୟାଳୟ ଓ ଅନ୍ୟାନ୍ୟ ଅନୁଷ୍ଠାନ ତରଫରୁ ପୁରସ୍କୃତ ହୋଇଛନ୍ତି । ଶ୍ରୀମାନ ରିତେଶ ଓ ଶ୍ରୀମାନ ରୋହିତ ଜମଜ ଭ୍ରାତା ହୋଇଥିଲେ ମଧ୍ୟ ପିଲାଦିନୁ ରୋହିତ ବହୁବର୍ଷ ପର୍ଯ୍ୟନ୍ତ ରୋଗାକ୍ରାନ୍ତ ହୋଇ ବିଛଣାରେ ପଡ଼ିରହିବା ଫଳରେ ତାଙ୍କର ପାଠପଢ଼ା ତାଙ୍କର ଭାଇ ରିତେଶ ଠାରୁ ଟିକିଏ ପଛେଇ ଯାଇଛି ।

ମୋର ତୃତୀୟ ପୁତ୍ର ଶ୍ରୀମାନ ସୀତାବଲ୍ଲଭ ମନସ୍ତତ୍ୱ (Psychology) ରେ ଏମ.ଏ. ପାସ କରି ଏଲ.ଏଲ.ବି. ମଧ୍ୟ ପାସ କଲାପରେ ଚାକିରି କିମ୍ବା ଓକିଲାତିରେ ମନ ନ ଦେଇ ସମାଜସେବାକୁ ନିଜ ବ୍ରତ ରୂପେ ଗ୍ରହଣ କରି ନେଇଛନ୍ତି । ସାଧୁ, ସଚ୍ଚୋଟ ଓ ମୂଲ୍ୟବୋଧ ଭିତ୍ତିକ ଆଦର୍ଶ ସାଧାରଣ ଜୀବନ ସହିତ ପାରିବାରିକ ଶାନ୍ତି ଓ ସୌହାର୍ଦ୍ଦ୍ୟରେ ପ୍ରମୁଖ ଭାଗ ନେଇ, ସମସ୍ତ ଭାଇଭଉଣୀ ଓ ସେମାନଙ୍କ ସନ୍ତାନ ମାନଙ୍କୁ ନିଜ ଦୁଇ ଝିଅଙ୍କ ସହ ସମାନ ସ୍ନେହ ମମତା ପ୍ରଦର୍ଶନ ପୂର୍ବକ ଗୃହର ଶାନ୍ତି ସୌହାଦ୍ୟବର୍ଦ୍ଧକ ଭାବେ ଓ ଆମ ପରିବାରର ପ୍ରଧାନ ରକ୍ଷକ ଭାବେ କାର୍ଯ୍ୟ କରନ୍ତି । ତାଙ୍କ ଅନାବିଳ ସ୍ନେହ ମମତା ପରିବାରକୁ ଏକାଠି ରଖି ଏକ ସୁଖଶାନ୍ତ ପରିବେଷ୍ଟନୀ ସୃଷ୍ଟି କରିବାରେ ମୁଖ୍ୟ ଭୂମିକା ନେଇଛି । ସେ ସମସ୍ତଙ୍କ ପାଇଁ ଲୋଡ଼ା । ନିଜର ସ୍ୱାର୍ଥ ବିନିମୟରେ ପରିବାରର ସ୍ୱାର୍ଥ, ଶାନ୍ତି ଓ ସୁଖ, ସ୍ୱାଚ୍ଛନ୍ଦ୍ୟ ହିଁ ତାଙ୍କର ଏକାନ୍ତ କାମ୍ୟ ।

ଶ୍ରୀମାନ ସୀତାବଲ୍ଲଭ ମଧ୍ୟ କଂଗ୍ରେସରେ ଯୋଗ ଦେଇ ଯୁବ କଂଗ୍ରେସକୁ ରାଜ୍ୟରେ ସୁଦୃଢ଼ କରିବାରେ ବିଶେଷ ଭୂମିକା ଗ୍ରହଣ କରିଥିଲେ । ରାଜ୍ୟର କଂଗ୍ରେସ ସଙ୍ଗଠନର ଓ ପୁରୀ ଜିଲ୍ଲା କଂଗ୍ରେସ ସଙ୍ଗଠନର ସେ ଜଣେ ବଳିଷ୍ଠ କର୍ମୀ ଓ କର୍ମକର୍ତ୍ତା ରୂପେ ବିଶେଷ ପରିଚିତ । ଆମ ରାଜ୍ୟରେ ଯୁବ କଂଗ୍ରେସ ସଙ୍ଗଠନକୁ ମଜବୁତ କରିବାରେ ତାଙ୍କର ଅବଦାନ ବହୁତ । ସେ ମଧ୍ୟ ଜଣେ ଯୁବ ଶିଳ୍ପଦ୍ୟୋଗୀ । ତାଙ୍କର ରସୁଲଗଡ଼ ଶିଳ୍ପକେନ୍ଦ୍ରରେ ବ୍ୟବସାୟ ଅଛି । ପୁରୀ ଜିଲ୍ଲାର ୧୯୮୦ ରୁ ୧୯୯୦ ମଧ୍ୟରେ ବନ୍ୟା ସମୟରେ ବହୁ ଗ୍ରାମକୁ ଯାଇ ଲୋକଙ୍କୁ ଉଦ୍ଧାର କରିବା ସହ ସେମାନଙ୍କୁ ଥଇଥାନ କରିବାରେ ସେ ଯେଉଁ ପାରଦର୍ଶୀତା ଦେଖାଇଛନ୍ତି ତା ଫଳରେ କଣାସ, ପୁରୀସଦର ଓ ବ୍ରହ୍ମଗିରି ଅଞ୍ଚଳର ଲୋକମାନଙ୍କର ଆଦରର ପାତ୍ର ହୋଇ ପାରିଛନ୍ତି । ସୀତାବଲ୍ଲଭ ଅବସରପ୍ରାପ୍ତ ଜିଲା ଜଜ୍ ଶ୍ରୀଯୁକ୍ତ କୃପାସିନ୍ଧୁ ମିଶ୍ରଙ୍କ କନ୍ୟା

ତଥା ଆହ୍ଲାହାବାଦ ଓ ଓଡ଼ିଶା ହାଇକୋର୍ଟର ପୂର୍ବତନ ବିଚାରପତି ଶ୍ରୀ ଶରତ ଚନ୍ଦ୍ର ମହାପାତ୍ରଙ୍କ ଭାଣେଜି କଲ୍ୟାଣୀୟା ରାଜଶ୍ରୀଙ୍କୁ ବିବାହ କରିଛନ୍ତି । ରାଜଶ୍ରୀ ଜଣେ ସୁଗୃହିଣୀ ଏବଂ ନିଜ ପରିବାର ସହ ଆମ (ମୁଁ ଓ ସ୍ତ୍ରୀ) ସେବାରେ ନିଜକୁ ସମ୍ପୂର୍ଣ୍ଣରୂପେ ନିୟୋଗ କରିଛନ୍ତି । ତାଙ୍କର ଦୁଇ ଝିଅ ମନୀଷା (ମାମୁନ୍) ଓ ଇନ୍ଦିରା ପ୍ରିୟଦର୍ଶିନୀ (ପିକୁନ୍) । ମନୀଷା +୩ ଓ ଇନ୍ଦିରା +୨ର ଛାତ୍ରୀ ।

ମୋର ଚତୁର୍ଥ ପୁତ୍ର ଶ୍ରୀମାନ ଶ୍ୟାମାବଲ୍ଲଭ ବାଲ୍ୟଅବସ୍ଥାରୁ ପୋଲିଓ ରୋଗାକ୍ରାନ୍ତ ହୋଇ ବହୁ କଷ୍ଟ ସହି ଭାରତର ବହୁ ବଡ଼ ବଡ଼ ଡାକ୍ତରଙ୍କ ଚିକିତ୍ସା ସତ୍ତ୍ୱେ ଡାହାଣ ଗୋଡ଼ଟି ଅକ୍ଷମପ୍ରାୟ ହୋଇଥିଲେ ମଧ୍ୟ ନିଜର ଶାରିରୀକ ଅକ୍ଷମତାକୁ ମୁକାବିଲା କରି ନିଜର ଅକ୍ଲାନ୍ତ ପରିଶ୍ରମ, ଏକାଗ୍ରତା ଓ କଠିନ ଉଦ୍ୟମରେ ବିଭିନ୍ନ ଧନ୍ଦାରେ ନିଜକୁ ପ୍ରତିଷ୍ଠିତ କରିବାର ସାହସ ଓ ଧୈର୍ଯ୍ୟ ତାଙ୍କ ସହିତ ସମ୍ପର୍କ ଥିବା ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଛି । ତାଙ୍କର କଠିନ ପରିଶ୍ରମ ଓ ବ୍ୟବସାୟିକ ତୀକ୍ଷ୍ଣ ବୁଦ୍ଧି, ସଙ୍ଗଠନ ଶକ୍ତି ତାଙ୍କୁ ଆଜି ତାଙ୍କ ବ୍ୟବସାୟର ଶୀର୍ଷସ୍ଥାନରେ ପହଞ୍ଚାଇ ବ୍ୟବସାୟ ମହଲରେ ଶ୍ରଦ୍ଧା ଓ ସମ୍ମାନର ପାତ୍ର କରି ତୋଳିଛି । ରାଜଧାନୀ ଗ୍ୟାସ୍ ସଂସ୍ଥାର ମାଲିକ ରୂପେ ହିନ୍ଦୁସ୍ତାନ ପେଟ୍ରୋଲିୟମ (H.P.) ର ରୋଷେଇ ଗ୍ୟାସ ଡିଷ୍ଟ୍ରିବ୍ୟୁଟର (L.P.G.) ରୂପେ ସେ ଓଡ଼ିଶାରେ ଶ୍ରେଷ୍ଠ ସ୍ଥାନ ଅଧିକାର କରିଛନ୍ତି । ତାଙ୍କ ସହଧର୍ମିଣୀ ଶ୍ରୀମତୀ ଇନ୍ଦିରା ମହାପାତ୍ର ଜଣେ ଗ୍ୟାସ ବ୍ୟବସାୟୀ ଓ ସ୍ମୃତି ଗ୍ୟାସର ମାଲିକ । ସେ ମଧ୍ୟ H.P. ଗ୍ୟାସର ବିତରକ ରୂପେ ସୁନାମ ଅର୍ଜନ କରିଛନ୍ତି । ସେ ଭୁବନେଶ୍ୱରରେ ସାମାଜିକ ଓ ସାଂସ୍କୃତିକ ଅନୁଷ୍ଠାନ ମାନଙ୍କର ସଦସ୍ୟା ରହି ବହୁ ଲୋକହିତକର କାର୍ଯ୍ୟ କରିଛନ୍ତି । ସେ ଲାଏନସ୍ କ୍ଲବର ବିଭିନ୍ନ ପଦ ପଦବୀରେ ବହୁ ବର୍ଷ ଧରି କାର୍ଯ୍ୟ କରି ଆସୁଛନ୍ତି ଏବଂ ଏହି ସଂସ୍ଥା ଜରିଆରେ ବହୁ ସେବାମୂଳକ କାର୍ଯ୍ୟରେ ସହଯୋଗ କରି ପ୍ରଶଂସିତା ହୋଇଛନ୍ତି । ଇନ୍ଦିରା ଓ ଶ୍ୟାମାବଲ୍ଲଭ ଉଭୟ ନିଜ ନିଜ ବ୍ୟବସାୟରେ ସଫଳତା ହାସଲ କରିବା ସହ ପରିବାରର ସମ୍ମାନ ବଢ଼ାଇ ସଫଳ ଓ ସଚ୍ଚୋଟ ବ୍ୟବସାୟୀ ଭାବରେ ବହୁତ ସମ୍ମାନର ଅଧିକାରୀ । ମୋର ଉଭୟଙ୍କ ପାଇଁ ଗର୍ବ କରିବାର ଯଥାର୍ଥତା ଅଛି । ପରିବାରକୁ ଶାନ୍ତି ଓ ସହୃଦୟତା ଦେଇ ଏକ ଶୋଭନୀୟ ପରିବେଶ ସୃଷ୍ଟି କରିବାରେ ଉଭୟଙ୍କର ଅବଦାନ ମୋ ପାଇଁ କେବଳ ନୁହେଁ ସମସ୍ତ ପରିବାର ପାଇଁ ଚରମ ସନ୍ତୋଷ ସୃଷ୍ଟି କରିଛି । ତାଙ୍କର ଝିଅ ଇଷା କମ୍ପ୍ୟୁଟର ଡିଗ୍ରି ହାସଲ କରିଛି ଓ ବର୍ତ୍ତମାନ ହାଇଦରାବାଦରେ ଚାକିରି କରିଥିବା ଜଣେ କମ୍ପ୍ୟୁଟର ଇଞ୍ଜିନିୟରଙ୍କୁ ବିବାହ କରିଛି । ତାଙ୍କର ନାମ ଅରୁଣ । ଶ୍ୟାମାବଲ୍ଲଭଙ୍କର ଏକମାତ୍ର ପୁତ୍ର ଶଶାଙ୍କ ବର୍ତ୍ତମାନ ବାଇଓଟେକ୍ନୋଲଜି ଇଞ୍ଜିନିୟରିଂ ପଢୁଛି ।

ମୋର ପଞ୍ଚମ ପୁତ୍ର ଶ୍ରୀମାନ ଲକ୍ଷ୍ମୀବଲ୍ଲଭ ବୈତରଣୀ ଗ୍ରାମ୍ୟ ବ୍ୟାଙ୍କର ମାନେଜରର କାର୍ଯ୍ୟ କରୁଛନ୍ତି । ସେ ତାଙ୍କ ସଚୋଟ ପଣିଆ ଓ ସାଧୁତା ପାଇଁ ଏବଂ ଜଣେ ଉତ୍ତମ ସଙ୍ଗଠକ ହିସାବରେ ବ୍ୟାଙ୍କ ଅଫିସର ସଙ୍ଗଠନର ଦକ୍ଷ କର୍ମକର୍ତ୍ତା ରୂପେ ବ୍ୟାଙ୍କର କର୍ମକର୍ତ୍ତା ତଥା ଜନସାଧାରଣଙ୍କ ଦ୍ୱାରା ଆଦୃତ । ତାଙ୍କ ସ୍ତ୍ରୀ କଲ୍ୟାଣିୟା ଗାୟତ୍ରୀ ବିଶ୍ୱବିଦ୍ୟାଳୟରୁ ଡିଗ୍ରୀ ପାସ କରିବା ପରେ ସେହି ଗ୍ରାମ୍ୟ ବ୍ୟାଙ୍କର ଜଣେ ସହାୟକ ରୂପେ ଯୋଗ ଦେଇ ନିଜର ଅଧ୍ୟବସାୟ ଓ କାର୍ଯ୍ୟ ଦକ୍ଷତା ଫଳରେ ଏବେ ବ୍ୟାଙ୍କର ଶାଖା ପରିଚାଳକ ପଦବୀକୁ ଉତ୍ତୀର୍ଣ୍ଣ ହୋଇ ଏବେ ବାରିପଦାରେ ବୈତରଣୀ ଗ୍ରାମ୍ୟ ବ୍ୟାଙ୍କରେ କାର୍ଯ୍ୟ କରୁଛନ୍ତି । ଗାୟତ୍ରୀ ଓ ଲକ୍ଷ୍ମୀବଲ୍ଲଭଙ୍କର ଏକମାତ୍ର ଝିଅ ଶର୍ମିଷ୍ଠା (ଚିକୁନ୍) ବର୍ତ୍ତମାନ ବାରିପଦା କଲେଜରେ +୩ର ଛାତ୍ରୀ ।

ମୋର କନିଷ୍ଠ ପୁତ୍ର ଶ୍ରୀମାନ ଜାନକୀବଲ୍ଲଭ ରାଜ୍ୟ ବୁଣାକାର ହସ୍ତତନ୍ତ ସମବାୟ ସମିତି (ରାଜ୍ୟ ସରକାର ପରିଚାଳିତ ସଂସ୍ଥା)ର ମାର୍କେଟିଂ ଅଫିସର । ବେଶ ଦକ୍ଷତା ପ୍ରଦର୍ଶନ କରି ସଂସ୍ଥାର ବ୍ୟବସାୟ ବୃଦ୍ଧିରେ ସହାୟକ ହୋଇଥିବାରୁ ଉଚ୍ଚ ପ୍ରଶଂସିତ । ତାଙ୍କ ଉଦ୍ୟମରେ ଏହି ସଂସ୍ଥାର ବ୍ୟବସାୟ ଦିଲ୍ଲୀ, ବମ୍ବେ ଓ କଲିକତା ମହାନଗରୀରେ ବେଶ ବୃଦ୍ଧି ପାଇଛି ତଥା ଓଡ଼ିଶାର ପ୍ରାୟ ପ୍ରତିଟି ଜିଲ୍ଲାରେ ଏହାର ଶାଖା ଖୋଲାଯାଇ ଲୋକମାନଙ୍କୁ ସୁଲଭ ଦରରେ ହସ୍ତତନ୍ତ ବସ୍ତ୍ର ଯୋଗାଇବା ସହ ସଂସ୍ଥାର ବ୍ୟବସାୟରେ ଅଭିବୃଦ୍ଧି ଘଟିଛି । ତାଙ୍କର ଦକ୍ଷତା, ସଚ୍ଚୋଟତା ଓ ନିଷ୍ଠା ଶ୍ରୀ ଜାନକୀବଲ୍ଲଭଙ୍କୁ ଏହି ସଂସ୍ଥାର ଜଣେ ଦକ୍ଷ ଅଫିସର ଭାବେ ପ୍ରଶଂସିତ କରିଛି । ତାଙ୍କର ଆୟ ଅନ୍ୟ ଭାଇମାନଙ୍କ ତୁଳନାରେ କମ ହେଲେ ମଧ୍ୟ ନିଜର ଆତ୍ମମର୍ଯ୍ୟାଦା ଜ୍ଞାନ ଓ ପରିବାରର ସଂହତି ଓ ସମନ୍ୱୟ ପ୍ରତି ତାଙ୍କର ଅବଦାନ ସହୃଦୟତା, ଉଦାରତା ଅନ୍ୟମାନଙ୍କ ତୁଳନାରେ କିଛି କମ ନୁହେଁ । ସେ ଆତ୍ମସମ୍ମାନର ସହ ସ୍ୱାବଲମ୍ବନଶୀଳ ଭାବେ ତାଙ୍କ ସ୍ତ୍ରୀ କଲ୍ୟାଣୀୟା ଶାନ୍ତି ଓ ଦୁଇଟି ଝିଅ ଗୁଡୁ ଓ ଲାଡଲିଙ୍କ ସହ ଏକ ସୁସ୍ଥ ଓ ନିରାମୟ ଜୀବନ ଅତିବାହିତ କରିବାରେ ଯେପରି ଦକ୍ଷ ସେପରି ମୋର ଓ ମୋ ସ୍ତ୍ରୀଙ୍କ ସେବାରେ ମଧ୍ୟ ଉଭୟଙ୍କର ଅନୁରକ୍ତି ଓ ଆନ୍ତରିକତା ପ୍ରଦର୍ଶନ କରି କାର୍ଯ୍ୟ କରିବାରେ ମଧ୍ୟ ଦକ୍ଷ । ତାଙ୍କର ଦୁଇ ଝିଅ ବର୍ତ୍ତମାନ ସ୍କୁଲରେ ପାଠ ପଢୁଛନ୍ତି । ଜାନକୀବଲ୍ଲଭଙ୍କ ସ୍ତ୍ରୀ ଶାନ୍ତି ବି.ଏ., ବି.ଏଡ୍., ବି.ମିଉଜ. ପାସ କରି କିଛିଦିନ ପାଇଁ ଏକ ବେସରକାରୀ ସ୍କୁଲରେ ମ୍ୟୁଜିକ ଶିକ୍ଷୟତ୍ରୀ କାର୍ଯ୍ୟ କରିବାପରେ ଏବେ ଚାକିରି ତ୍ୟାଗ କରି ନିଜର ଉଦ୍ୟମରେ ଏକ ଘରୋଇ ଇଂରାଜୀ ମିଡିୟମ ସ୍କୁଲ (ଛୋଟ ଛୋଟ ପିଲାଙ୍କୁ ଖେଳ ସହ ପାଠ ପଢ଼ାଇବା ପାଇଁ) ଖୋଲିଛନ୍ତି ଏବଂ ନିଜେ ତାର ପ୍ରିନ୍ସିପାଲ ଅଛନ୍ତି ।

ଏ ପରି ଭାବେ ଆମର ପରିବାର ବୃକ୍ଷ୍ୟଟି ବୃନ୍ତ ମେଲି ସାରା ଭାରତରେ ଖେଳିଯାଇ, ସୁଦୂର ଆମେରିକା ଓ ଅନ୍ୟାନ୍ୟ ମହାଦେଶ ପର୍ଯ୍ୟନ୍ତ ବିସ୍ତାରିତ ହୋଇଛି । ନମ୍ରତାର ସହିତ ମୁଁ ପ୍ରକାଶ କରୁଛି ଯେ ମୁଁ ଓ ମୋର ଧର୍ମପତ୍ନୀ ଶ୍ରୀମତୀ ରୁକ୍ମିଣୀ ଦେବୀ ବୋଧହୁଏ ପୂର୍ବ ଜନ୍ମରେ କିଛି ଆଧାତ୍ମିକତା ଅର୍ଜନ କରିଥିଲୁ ଯାହାଫଳରେ ଏ ଜନ୍ମରେ ସ୍ୱଳ୍ପତା ମଧ୍ୟରେ ପରମ ସନ୍ତୋଷର ଅଧିକାରୀ ହୋଇ ଏକ ଆଦର୍ଶ ଯୌଥ ପରିବାରର ଶାନ୍ତି ଓ ସନ୍ତୋଷ ଲାଭ କରିବାରେ ସଫଳତା ହାସଲ କରିଛୁ । ଏହାହିଁ ମୋ ପାରିବାରିକ ଜୀବନର ଶ୍ରେଷ୍ଠ ସଫଳତା । ଆଜି ଜୀବନର ଶେଷ ଅବସ୍ଥାରେ ସେହି ସ୍ମୃତି ହିଁ ମୋର ଜୀବନର ପରମ ସଫଳତା ବୋଲି ମୁଁ ମନେ କରେ । ପାରିବାରିକ ଶାନ୍ତି ଓ ସନ୍ତୋଷ ଆଗରେ ଧନର ସ୍ଥାନ ବହୁ ଦୂରରେ । ମାନସିକ ଶାନ୍ତି ଧନଶାଳୀ ବ୍ୟକ୍ତିର ପରିମାପକ ନୁହଁ । ବୌଦ୍ଧିକ ଶାନ୍ତି, ପାରିବାରିକ ଶାନ୍ତ ପରିବେଶ ହିଁ ମଣିଷକୁ ପରମ ଆନନ୍ଦ ଦିଏ । ମୁଁ ଈଶ୍ୱରଙ୍କ ଅପାର କରୁଣାରୁ ବଞ୍ଚିତ ନୁହଁ ବୋଲି ଗର୍ବିତ । ମୋ ପରିବାରକୁ ନେଇ ମୁଁ ସବୁବେଳେ ଗର୍ବ କରେ । ଅନେକ ମଧ୍ୟ ମୋ ପରିବାରକୁ ଓ ପିଲାମାନଙ୍କ କୃତି ଓ ସଫଳତାକୁ ନେଇ ଈର୍ଷା ମଧ୍ୟ କରନ୍ତି । ଜଗନ୍ନାଥଙ୍କ ଅପାର କରୁଣା ଉପରେ ଭରଷା ରଖି ମୁଁ ମୋ ପରିବାରର ସମସ୍ତଙ୍କ ପାଇଁ ଶୁଭଙ୍କର, ମଙ୍ଗଳମୟ ହେଉ ଓ ସବୁବେଳେ ଶ୍ରୀଜିଉଙ୍କ କୃପାଦୃଷ୍ଟି ସେମାନଙ୍କ ଉଜ୍ଜଳ ଭବିଷ୍ୟତ ପାଇଁ ଆଶୀର୍ବାଦ ଦେଉଥାଉ ଏହାହିଁ ମୋର ଜୀବନର ଶେଷ ପ୍ରାର୍ଥନା । ଜଗନ୍ନାଥ ପରିବାରକୁ ସାଫଲ୍ୟମଣ୍ଡିତ କରନ୍ତୁ ଓ ଏ ବିରାଟ ପରିବାରଟି ରାଜ୍ୟରେ ସୁସ୍ଥ ପରିବାର, ଶାନ୍ତ ପରିବାର ଓ ପ୍ରଭୁଙ୍କ ଆଶୀର୍ବାଦ ପ୍ରାପ୍ତ ପରିବାର ଭାବେ ସଂଯତ, ଶୃଙ୍ଖଳିତ ହୋଇ ସୁଖମୟ ଜୀବନଯାପନ କରନ୍ତୁ ଏହାହିଁ ଜଗନ୍ନାଥଙ୍କ ଶ୍ରୀ ଚରଣ ତଳେ କରୁଣ ନିବେଦନ ।

# ପାରିବାରିକ ଅବସ୍ଥା ଓ ପ୍ରାଥମିକ ଶିକ୍ଷା

୧୯୧୪ ମସିହାରେ ସାରା ପୃଥିବୀ ଏକ ବିଶ୍ୱ ଯୁଦ୍ଧ ପାଇଁ ଦୁଇ ଭାଗରେ ବିଭକ୍ତ ହୋଇଥାଏ । ଏକ ପକ୍ଷରେ ଜର୍ମାନୀ, ଅଷ୍ଟ୍ରିଆ ଓ ହଙ୍ଗେରୀ । ସମଗ୍ର ଭାରତ ବର୍ଷ ବ୍ରିଟିଶ ଉପନିବେଶବାଦ ବିରୁଦ୍ଧରେ ସଂଗ୍ରାମ ପାଇଁ ଜାଗ୍ରତ । ମହାତ୍ମାଗାନ୍ଧୀ ଦକ୍ଷିଣ ଆଫ୍ରିକାରେ ବର୍ଣ୍ଣ ବୈଷମ ବିରୁଦ୍ଧରେ ସତ୍ୟାଗ୍ରହ ଆନ୍ଦୋଳନରେ ସଫଳତା ହାସଲ କରି ଭାରତକୁ ଫେରିଥାନ୍ତି । ୧୯୦୫ର ବଙ୍ଗ ବିଚ୍ଛେଦ (Ordinance) ବିରୁଦ୍ଧରେ ସାରା ବଙ୍ଗଳା ଦେଶରେ ଯେଉଁ ବିଦ୍ରୋହ ଜାଗି ଉଠିଥିଲା ସମଗ୍ର ଭାରତ ବର୍ଷର ଚିନ୍ତାଶୀଳ ଜନନାୟକମାନେ ବଙ୍ଗ ଦେଶର ଏହି ଆନ୍ଦୋଳନକୁ ଅଧିକ ମଜବୁତ କରିବା ପାଇଁ ଏକ ବିରାଟ ଜାତୀୟ ଆନ୍ଦୋଳନର ସୂତ୍ରପାତ କରୁଥାଆନ୍ତି । ଲୋକମାନ୍ୟ ତିଳକ, ବିପିନ ପାଲ, ଲାଜପତ ରାୟ ଜେଲମୁକ୍ତ ହୋଇ ଅରବିନ୍ଦ ପ୍ରଭୃତିଙ୍କ ସହଯୋଗରେ ସ୍ୱରାଜ୍ୟ ଦାବିରେ ଭାରତରେ ନବ ଜାଗରଣ ସୃଷ୍ଟି କରିବାରେ ନେତୃତ୍ୱ ନେଉଥାଆନ୍ତି । ବଡଲାଟ ଲର୍ଡ କର୍ଜନଙ୍କ ପ୍ରେସ୍ ଆଇନ ଓ ଇଣ୍ଡିଆ ଡିଫେନ୍ସ ଆକ୍ଟ ଜରିଆରେ ଆନ୍ଦୋଳନକୁ ମୁକାବିଲା କରିବା ସହିତ ଭାରତୀୟଙ୍କୁ କିଛି କ୍ଷମତା ଦେବାର ପ୍ରୟାସ କରି ସନ୍ତୋଷ କରିବାର ପ୍ରଚେଷ୍ଟା ମଧ୍ୟ ଅବ୍ୟାହତ ରଖିଥାଆନ୍ତି ।

ଅରବିନ୍ଦ (ତତ୍‌କାଳୀନ ଅରବିନ୍ଦ ଘୋଷ), ବିପିନ ପାଲ, ଲାଲା ଲାଜପତ ରାୟ, ବାଳ ଗଙ୍ଗାଧର ତିଳକ ପ୍ରଭୃତି ନେତୃବୃନ୍ଦ ବିଶେଷ ଭାବେ ବ୍ରିଟିଶ ସରକାରର ଭାରତକୁ ସ୍ୱରାଜ୍ୟ ଦେବା ପାଇଁ ପ୍ରତିଶ୍ରୁତି ପ୍ରଦାନ ପରେ ପ୍ରଥମ ମହାଯୁଦ୍ଧରେ ବ୍ରିଟିଶ ସରକାରଙ୍କୁ ସାହାଯ୍ୟ କରିବା ପାଇଁ ସର୍ତ୍ତ ରଖିଲେ । କିନ୍ତୁ ଗାନ୍ଧିଜୀ ଏହି ମହାଯୁଦ୍ଧରେ ବ୍ରିଟିଶ ଶକ୍ତିକୁ ବିନା ସର୍ତ୍ତରେ ସହଯୋଗ କରିବା ସିଦ୍ଧାନ୍ତ ନେଲେ । ମହାତ୍ମାଗାନ୍ଧୀଙ୍କର ଠିକ୍ ସେହି ସମୟରେ ଭାରତ ପ୍ରତ୍ୟାବର୍ତ୍ତନ ଓ ବ୍ରିଟିଶ ସରକାରଙ୍କୁ ଯୁଦ୍ଧରେ ସମର୍ଥନ ଏକ ନୂତନ ଦିଗନ୍ତ ସୃଷ୍ଟି କରିଥାଏ । ସେହି ସମୟର ରାଷ୍ଟ୍ର ବିଦ୍ରୋହ ପରିବେଶ ଭିତରେ ଗାନ୍ଧିଜୀଙ୍କର ବ୍ରିଟିଶ ସରକାର ସହିତ ସହଯୋଗ ପ୍ରସ୍ତାବ ଏକ ବିରାଟ ଜାତୀୟ ଆନ୍ଦୋଳନ ସୃଷ୍ଟି କରିଥିଲା । ଓଡିଶାରେ ମଧ୍ୟ ମଧୁସୂଦନ, ଗୋପବନ୍ଧୁଙ୍କ ନେତୃତ୍ୱରେ ଉତ୍କଳ ସମ୍ମିଳନୀ ଜରିଆରେ ଭାଷାଭିତ୍ତିରେ ଏକ ସ୍ୱତନ୍ତ୍ର ଓଡିଶା ପ୍ରଦେଶ

ପ୍ରତିଷ୍ଠା କରିବା ପାଇଁ ଉଦ୍ୟମ ଚାଲିଥାଏ । ଉତ୍କଳ ସମ୍ମିଳନୀ ମଣ୍ଡପରୁ ଏକ ରାଜ୍ୟବ୍ୟାପି ସାଂସ୍କୃତିକ ଆନ୍ଦୋଳନ ଆରମ୍ଭ ହୁଏ ।

ପଣ୍ଡିତ ଗୋପବନ୍ଧୁ ସତ୍ୟବାଦୀ ବକୁଳ ବନରେ ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ, ଆଚାର୍ଯ୍ୟ ହରିହର ଏବଂ ପଣ୍ଡିତ କୃପାସିନ୍ଧୁଙ୍କ ଭଳି ପ୍ରବୀଣ ଯୁବକ ଶିକ୍ଷାବିତମାନଙ୍କୁ ନେଇ ସତ୍ୟବାଦୀ ବନ ବିଦ୍ୟାଳୟ ଜରିଆରେ ରାଜ୍ୟରେ ଏକ ନବ ଜାଗରଣ ସୃଷ୍ଟି କରୁଥିଲେ । ବିଶ୍ୱକବି ରବୀନ୍ଦ୍ରନାଥ ବଙ୍ଗ ଦେଶର ଶାନ୍ତି ନିକେତନରେ ଓ ପଣ୍ଡିତ ଗୋପବନ୍ଧୁ ସତ୍ୟବାଦୀ ବକୁଳ ବନର ଶାନ୍ତ ପରିବେଶ ଭିତରେ ଜାତୀୟ ବିଦ୍ୟାଳୟ ସୃଷ୍ଟି କରି ସମଗ୍ର ରାଜ୍ୟରେ ଦେଶାତ୍ମବୋଧର ଏକ ନୂତନ ବିସ୍ଫୋରଣ ଜରିଆରେ ଯୁବ ମାନସକୁ ଆନ୍ଦୋଳିତ କରୁଥାନ୍ତି । 'ସତ୍ୟବାଦୀ' ପତ୍ରିକା ଜରିଆରେ ସାହିତ୍ୟିକ ଓ ସାଂସ୍କୃତିକ ଚେତନା ଓ ଦେଶାତ୍ମବୋଧ ସମଗ୍ର ଓଡିଶାକୁ ଅନୁପ୍ରାଣିତ କରିବାରେ ପ୍ରମୁଖ ଭାଗ ନେଉଥାଏ । ଏହିପରି ଏକ ଜନଜାଗୃତିର ପରିବେଶ ଭିତରେ ୧୯୧୪ ମସିହା ଜୁଲାଇ ୧୪ ତାରିଖ ଦିନ ଏକ ପ୍ରତିଷ୍ଠିତ ବ୍ରାହ୍ମଣ ପରିବାରରେ ବୀର ନରସିଂହପୁର ଗ୍ରାମରେ ମୋର ଅଜାଘର ସ୍ୱର୍ଗତ ମୃତ୍ୟୁଞ୍ଜୟ ମିଶ୍ରଙ୍କ ବାସଭବନରେ ମୁଁ ଜନ୍ମ ନିଏ । ମୋ ପିତାଙ୍କର ଜନ୍ମ ସତ୍ୟବାଦୀର (ସାକ୍ଷୀଗୋପାଳ) ଅନତିଦୂରରେ ଥାଉ ଏକ ପ୍ରତିଷ୍ଠିତ ବ୍ରାହ୍ମଣ ଶାସନ ବିଶ୍ୱନାଥପୁରରେ । ନନା ଏକ ନିମ୍ନ ମଧ୍ୟମ ଶ୍ରେଣୀର ଏକ ପରିବାରର ମୁଖ୍ୟ । ତାଙ୍କର ପ୍ରଥମ ସହଧର୍ମିଣୀ ବିବାହର ପାଞ୍ଚ ଛଅ ବର୍ଷ ପରେ ଏକମାତ୍ର କନ୍ୟା ଶ୍ରୀମତିଙ୍କୁ ଛାଡି ପ୍ରାଣତ୍ୟାଗ କରିବାପରେ ପରିବାରରେ ନନା ଏକାକୀ ହୋଇପଡନ୍ତି । କିଛି ଦିନ ପରେ ଦ୍ୱିତୀୟ ବିବାହ ପାଇଁ ସମ୍ମତି ଜଣାଇ ବୀରନରସିଂହପୁର ଶାସନର ସ୍ୱର୍ଗତ ମୃତ୍ୟୁଞ୍ଜୟ ମିଶ୍ରଙ୍କ କନ୍ୟା ଶ୍ରୀମତୀ ମାଳତୀ ଦେବୀଙ୍କୁ ବିବାହ କରିଥିଲେ ।

ମୋର ପିତା ଥିଲେ ଜଣେ ନୈଷ୍ଠିକ ବ୍ରାହ୍ମଣ, ସମ୍ପତ୍ତିବାଡି ବିଶେଷ ନଥିଲା । ମୋର ନନା ମଧ୍ୟ ଅଳ୍ପ ପାଠ ପଢି ପ୍ରଥମେ ୩ ଟଙ୍କା ଦରମାରେ ନିମ୍ନ ପ୍ରାଥମିକ ସ୍କୁଲ ଶିକ୍ଷକ ଥିଲେ । ପରେ ଉତ୍କଳମଣି ଗୋପବନ୍ଧୁଙ୍କ ଗୁରୁ ସ୍ୱର୍ଗତ ରାମଚନ୍ଦ୍ର ଦାସ ପୁରୀର ବିଶିଷ୍ଟ ମୁକ୍ତାରଙ୍କ ମୋହରୀର ଭାବେ କାର୍ଯ୍ୟ କରୁଥିଲେ । ତତ୍‌କାଳୀନ ନାମଜାଦା ଜମିଦାର ଭିଙ୍ଗାରପୁର ଷ୍ଟେଟର ମକଦ୍ଦମା ବୁଝାସୁଝା କରୁଥିବାରୁ ବଡଦାଣ୍ଡସ୍ଥିତ ଟାଉନଥାନା ସମ୍ମୁଖରେ ଅବସ୍ଥିତ ଭିଙ୍ଗାରପୁର କୋଠାର ଗୋଟିଏ କୋଠରୀରେ ପୁରୀରେ ରହୁଥିଲେ । ବଡ ଜକେଇ ନରସିଂହ ମହାପାତ୍ର ଅଳ୍ପ ବୟସରେ ଚାଲିଗଲେ । ତାଙ୍କର ଏକମାତ୍ର ପୁତ୍ର ମାର୍କଣ୍ଡ ମହାପାତ୍ର ପାଠ ୮ମଶ୍ରେଣୀ ପର୍ଯ୍ୟନ୍ତ ପଢି ଆଉ କିଛି ନକରି ସେ ମଧ୍ୟ ପରିଣତ ବୟସରେ ପ୍ରାଣତ୍ୟାଗ କଲେ । ସେ ଭିଙ୍ଗାରପୁର ଷ୍ଟେଟର ଜଣେ ଅଂଶୀଦାର ସ୍ୱର୍ଗତ ପଦ୍ମନାଭ ଦାଶଙ୍କ ଏକମାତ୍ର କନ୍ୟାକୁ ବିବାହ କରିଥିଲେ ।

ସେ ମଧ୍ୟ ଅଳ୍ପ ବୟସରେ ମାର୍କଣ୍ଡ ଭାଇନାଙ୍କ ଆଗରୁ ଇହଧାମରୁ ବିଦାୟ ନେଇଥିଲେ । କକେଇ କାଶୀନାଥ ମହାପାତ୍ର ତତ୍କାଳୀନ ଭର୍ଣ୍ଣାକୁଲାର ପାଶ୍ କରି ଟ୍ରେନିଂ ନେଇ ଶିକ୍ଷକତା କରୁଥିଲେ ମାସିକ ୧୨ ଟଙ୍କାରେ । ଉତ୍କଳମଣି ଗୋପବନ୍ଧୁ ତାଙ୍କୁ ଉପାନ୍ତ ଅଞ୍ଚଳରେ ଓଡିଆ ସ୍କୁଲ୍‌ରେ ଶିକ୍ଷକତା କରିବା ପାଇଁ ଚାଇଁବସା (ବିହାର ରାଞ୍ଚି ଡିଭିଜନ) ସିଂହଭୂମ ଜିଲ୍ଲାକୁ ପଠାଇଥିଲେ । ତାଙ୍କ ଜ୍ୟେଷ୍ଠ ପୁତ୍ର ହରିହର ମହାପାତ୍ର ଓଡିଶା ହାଇକୋର୍ଟରେ ଆଡଭୋକେଟ ଭାବରେ ସୁନାମ ଅର୍ଜନ କରି ଆଡଭୋକେଟ୍ ଜେନେରାଲ ହେଲେ ଓ ପରବର୍ତ୍ତୀ ସମୟରେ ପାଟଣା ହାଇକୋର୍ଟରେ ବିଚାରପତି ନିଯୁକ୍ତି ପାଇ ପାଟଣାଠାରେ ହିଁ ଅବସର ନେଲେ । ସେ ଜଣେ ବିଶିଷ୍ଟ ସାହିତ୍ୟିକ ଓ ସବୁଜ ସାହିତ୍ୟରଥୀମାନଙ୍କ ଭିତରେ ଅନ୍ୟତମ । ସାହିତ୍ୟ, ଶିକ୍ଷା, ସଂସ୍କୃତି କ୍ଷେତ୍ରରେ ବିଶେଷ ପ୍ରତିଷ୍ଠା ଅର୍ଜନ କରି ଆମ ପରିବାର ପାଇଁ ଖ୍ୟାତି ଆଣି ଦେଇଛନ୍ତି । ତାଙ୍କର ତିନି ପୁଅଙ୍କ ଭିତରୁ ମେଜର ଜେନେରାଲ ବସନ୍ତ ମହାପାତ୍ର ଅବସର ନେଲା ପରେ କଟକରେ ରହୁଛନ୍ତି । ଶ୍ରୀ ଅନନ୍ତ ମହାପାତ୍ର ରାଜ୍ୟର ଡ୍ରାମା, ଫିଲ୍ମ ନିର୍ଦ୍ଦେଶନା କ୍ଷେତ୍ରରେ ବିଶିଷ୍ଟ ସ୍ଥାନ ଅଧିକାର କରିଛନ୍ତି । ଭାଇନାଙ୍କ ଜ୍ୟେଷ୍ଠ ପୁତ୍ର ସ୍ୱର୍ଗତ ପ୍ରଭାତ କୁମାର ମହାପାତ୍ର ଜଣେ ବିଶିଷ୍ଟ ଶିଳ୍ପପତି ଭାବରେ କଲିକତାରେ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ । ବିଶେଷ କରି ଜଣେ ଆନ୍ତର୍ଜାତିକ ଟ୍ରାଭେଲ ଏଜେନ୍ସିର ଦାୟିତ୍ୱରେ ରହି ଖ୍ୟାତିର ଅଧିକାରୀ ହେଲେ । ସେ ୬୭ ବର୍ଷ ବୟସରେ ସଂସାରରୁ ବିଦାୟ ନେଇଛନ୍ତି । ତାଙ୍କର ଦୁଇ ପୁତ୍ର ଓ ଏକ କନ୍ୟା ବର୍ତ୍ତମାନ ବ୍ୟବସାୟ ବୁଝୁଛନ୍ତି କଲିକତା ଓ ଭାରତ ବାହାରେ ବିଶେଷ କରି କଲିକତା ଓ ଲଣ୍ଡନରେ । ତାଙ୍କର ଅନ୍ୟ ଭାଇ କୃଷ୍ଣଚନ୍ଦ୍ର ଓ ମୁଁ ପ୍ରାୟ ଏକ ସମୟରେ ଜନ୍ମ ଗ୍ରହଣ କରିଥିଲୁ । ସାଥୀରେ ପଢୁଥିଲୁ । ରେଭେନ୍‌ସା କଲେଜରେ ଦ୍ୱିତୀୟ ବର୍ଷ ବିଜ୍ଞାନ ଛାତ୍ର ଭାବେ ଏକାଠି ରେଭେନ୍‌ସା ପଶ୍ଚିମ ଛାତ୍ରାବାସରେ ରହୁଥିବାବେଳେ ହଠାତ୍ ତାଙ୍କର ବିୟୋଗ ଘଟିଲା । ଶରତଚନ୍ଦ୍ର ଏବେ ଗ୍ରାମରେ ଓ ପୁରୀରେ ରହି ତାଙ୍କର ଜମି କଥା ବୁଝୁଥିଲେ, କିନ୍ତୁ କିଛି ମାସ ତଳେ ତାଙ୍କର ମଧ୍ୟ ଦେହାନ୍ତ ହେଲା ।

ହରିହର ଭାଇନାଙ୍କର ଦୁଇ କନ୍ୟା । ବଡ ଝିଅ ମିନି ସ୍ୱର୍ଗତ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ କନିଷ୍ଠ ପୁତ୍ର ଶ୍ରୀମାନ ରଙ୍ଗନାଥଙ୍କୁ ବିବାହ କରିଛନ୍ତି । ଶ୍ରୀ ରଙ୍ଗନାଥ ବରିଷ୍ଠ ଆଇନଜୀବୀ ଭାବରେ ସୁନାମ ଅର୍ଜନ କରି ଓଡିଶା ହାଇକୋର୍ଟରେ ବିଚାରପତି, ପ୍ରଧାନ ବିଚାରପତି ଭାବରେ ଦୀର୍ଘ ବର୍ଷ ରହିବା ପରେ ସୁପ୍ରିମକୋର୍ଟର ବିଚାରପତି ଦାୟିତ୍ୱ ନେଇ ଭାରତର ସର୍ବୋଚ୍ଚ ନ୍ୟାୟାଳୟର ମୁଖ୍ୟ ବିଚାରପତି ଭାବେ ତିନି ବର୍ଷ କାର୍ଯ୍ୟ କଲେ । ମାନବିକ ଅଧିକାର କମିଶନର ଅଧ୍ୟକ୍ଷ ଭାବେ ଆନ୍ତର୍ଜାତୀୟ ଆରବିଟ୍ରେସନ ଟ୍ରିବ୍ୟୁନାଲର ଜଣେକ ବିଚାରପତି ଓ ପରେ

ରାଜ୍ୟସଭାର ସଭ୍ୟ ଭାବେ (ସାଂସଦ) ରାଜନୀତି କ୍ଷେତ୍ରରେ ଜନସେବାରେ ପ୍ରତ୍ୟକ୍ଷ ଭାଗ ନେଇ ଓଡିଶାର ଜଣେ ସୁପୁତ୍ର ଭାବେ ସାରା ଭାରତରେ ଖ୍ୟାତି ଅର୍ଜନ କରିଛନ୍ତି । ଏବେ ମଧ୍ୟ ଭାରତର ସଂସ୍କୃତ କମିଶନର ଅଧ୍ୟକ୍ଷ ଦାୟିତ୍ୱ ତୁଲାଉଛନ୍ତି । ତାଙ୍କର ବଡ ଭାଇ ସ୍ୱର୍ଗତ ରଘୁନାଥ ମିଶ୍ର ଜଣେ ବିଶିଷ୍ଟ ସଂସ୍କୃତ ପଣ୍ଡିତ, ରାଜ୍ୟ ବିଧାନସଭାର ସଦସ୍ୟ ଓ ଓଡିଶାର ଜଣେ ଖ୍ୟାତନାମା ବକ୍ତା ଭାବେ ପ୍ରସିଦ୍ଧି ଲାଭ କରିଥିଲେ । ତାଙ୍କ ସୁପୁତ୍ର ଶ୍ରୀ ଦୀପକ ମିଶ୍ର ବର୍ତ୍ତମାନ ମଧ୍ୟପ୍ରଦେଶ ହାଇକୋର୍ଟର ଜଣେ ବିଚାରପତି । ମଝିଆ ଭାଇ ଶ୍ରୀ ଲୋକନାଥ ମିଶ୍ର ୧୮ ବର୍ଷ ରାଜ୍ୟସଭା ସଦସ୍ୟ ଭାବେ ଓ ପରବର୍ତ୍ତୀ ଅବସ୍ଥାରେ ଆସାମର ରାଜ୍ୟପାଳ ଭାବେ ଦୀର୍ଘ ୭ ବର୍ଷ ଦାୟିତ୍ୱରେ ରହି ଏବେ ଅବସର ନେଇଛନ୍ତି । ଲୋକନାଥଙ୍କର ପୁତ୍ର ଶ୍ରୀମାନ ପିନାକୀ ମିଶ୍ର ପୂର୍ବତନ ସାଂସଦ ଓ ବର୍ତ୍ତମାନ ଦିଲ୍ଲୀରେ ଅବସ୍ଥାନ କରୁଛନ୍ତି । ମାର୍କଣ୍ଡ ଭାଇନାଙ୍କ ପୁଅ ସୁରେଶ ରାଉରକେଲା ଲୁହା କାରଖାନାରେ ଜଣେ ଅଫିସର ଭାବେ କାର୍ଯ୍ୟ କରି ଅବସର ନେଲାପରେ ଗ୍ରାମରେ ଓ ରାଉରକେଲାରେ ରହୁଛନ୍ତି । ତାଙ୍କର ଦୁଇ ପୁଅ ଭଞ୍ଜନଗର ଏବଂ ରାଉରକେଲାରେ କାର୍ଯ୍ୟରତ ।

ମୁଁ ଜନ୍ମ ହେବା ପରେ ପ୍ରାୟ ପାଞ୍ଚ ବର୍ଷ ପର୍ଯ୍ୟନ୍ତ ବୀରନରସିଂହପୁର ଠାରେ ଅଜା ଘରେ ରହୁଥିଲି । କାରଣ ଶ୍ୱାସରୋଗ ମଝିରେ ମଝିରେ ମୋର ସ୍ୱାସ୍ଥ୍ୟର ଅବନତି ଘଟାଉଥିଲା ଓ ନିଜ ଗ୍ରାମରେ ବୋଉ ଛଡା ଆଉ କେହି ରହୁନଥିଲେ । ନନାଙ୍କର ସମ୍ବଳ ନଥିଲା ପୁରୀ ସହରରେ ଘରଟିଏ ନେଇ ଖର୍ଚ୍ଚ ତୁଲାଇବା ପାଇଁ । ସେତେବେଳେ କାହା କଥାରେ ମନ ଦେଇ ମୋର ଆଈ କିମ୍ଭୀର ମାଂସ ସିଝାଇ ଗୋଟିଏ ଛୋଟ ଭୋଗେଇରେ ଅଗଣା ରୋଷଘର ଶୀକାରେ ରଖି ଖାଇବାକୁ ଦେଉଥିଲା ଶ୍ୱାସ ଭଲ ପାଇଁ । ତାପର ଠାରୁ ଜୀବନରେ ଶ୍ୱାସ ଦେଖିନଥିଲି । ଏବେ ଦୁଇ ତିନି ବର୍ଷ ହେବ ଶ୍ୱାସ ରୋଗ ପୁନର୍ବାର ଆକ୍ରମଣ କରିଛି । ସେତେବେଳେ ଦୁଇ/ତିନି ମାସର ପିଲାମାନଙ୍କୁ ଚାଉଳ, ଖଳି ଓ ଦୋରଣ୍ଡା ଭାତ ଜାଉ ପରି ତିଆରି କରି ଖାଇବାକୁ ଦିଆଯାଉଥିଲା । ଆଜି ହୁଏତ ଏସବୁ ବିଶ୍ୱାସ ହେବ ନାହିଁ । ଗାଈ ଓ ଛେଳି ପଛରେ ଗୋଡାଇବା, ଗୋରୁ ଗୁହାଳରେ ବୁଲାଇ ବୁଲାଇ କାଖେଇ କରି ଖଳୀଭାତ ଘଣ୍ଟେ ପେଟେ କରି ଖୁଆଇ ଦେଲେ ଆଈମାନେ ଅତ୍ୟନ୍ତ ସନ୍ତୋଷ ଲାଭ କରୁଥିଲେ ।

ପ୍ରାୟ ପାଞ୍ଚବର୍ଷ ପରେ ଗାଁକୁ ନନା ମତେ ନେଇଆସି ଗ୍ରାମର ପ୍ରାଇମେରୀ ସ୍କୁଲରେ ନାମ ଲେଖାଇଦେଲେ । ଘର ବୋଲି ଆମର ୯ ଫୁଟ ଓସାର ଓ ଲମ୍ବାରେ ପ୍ରାୟ ୩୦ ଫୁଟ । ସେଥିରେ ପୁଣି ୨ଟି ଅଗଣା, ଦାଣ୍ଡପଟେ ବଖରାଏ, ମଝିରେ ଆଉ ଗୋଟିଏ ବଖରା । ରୋଷେଇ ଘରକୁ ଯିବା ପାଇଁ ଅଢେଇ ଫୁଟ ଓସାରର ଗୋହିରିଟିଏ । ଦାଣ୍ଡପଟ ଘରକୁ ଶୋଇବା, ବସ ଉଠ କରିବା, ମଝି ଅଗଣାକୁ ଓ

ରୋଷେଇ ଘରକୁ ଯିବାର ବାଟ ରୂପେ ବ୍ୟବହାର କରାଯାଏ । କକେଇ କାଶୀନାଥ ମହାପାତ୍ର, ରାଞ୍ଚିରେ ଉର୍ଣ୍ଣାକୁଳର ଓଡିଆ ପଣ୍ଡିତ ଥିବାରୁ ମାସିକ ଟ୨୦ ବେତନ ପାଉଥାଆନ୍ତି । ସେ ସେଥିରେ ଚଳି କ୍ରମଶଃ ତାଙ୍କ ଭାଗରେ ପଡିଥିବା ଘରକୁ ଚୁନ ଧଉଳାଇ ଦୁଇଟି ଅଧିକା ବଖରା ଘର ଓ କୋଠିଟିଏ କରିଥାଆନ୍ତି । କାରଣ ଭାଇନା (ହରିହର ମହାପାତ୍ର) ସେତେବେଳକୁ କଲେଜକୁ ଗଲେଣି । ଆମର ସବୁ ମାଟିଘର । ତଳ ବନମାଟି ଗୋବର ଦେଇ ଲିପା ହୁଏ । ଦାଣ୍ଡ ପଟକୁ ସାମାନ୍ୟ ଛୋଟ ବାରଣ୍ଡା, ଆମ ଗ୍ରାମର ମୁଖ୍ୟ ଦେବତା ଗୋପୀନାଥଦେବଙ୍କୁ ବିମାନରେ ନେଲାବେଳେ ଭୋଗ ଦେବା ପାଇଁ ସୁବିଧା ଏବଂ କିଏ ବନ୍ଧୁ ବାନ୍ଧବ ଘରକୁ ଆସିଲେ ବସା ଉଠା, ଏପରିକି ପୁରୁଷମାନେ ରାତ୍ର ଶୋଇବା ପାଇଁ ଏପରି ବାରଣ୍ଡାଟିଏର ଆବଶ୍ୟକତା ଥିବା ହେତୁ ପ୍ରାୟ ସମସ୍ତ ବ୍ରାହ୍ମଣ ଶାସନରେ ଯେତେ ଛୋଟ ଘରଟିଏ ଥିଲେ ମଧ୍ୟ ସାମନାପଟକୁ ପିଣ୍ଡାଟିଏ ନିଶ୍ଚୟ ଥିବ । ମୋ ନନା ସାତ ଆଠ ଦିନରେ ଥରେ ଆସି କିଛି ସମୟ ରହି ବୋଉ ଓ ମୋର ଅସୁବିଧା ଦେଖି ପୁରୀ ଫେରିଯାନ୍ତି । ପ୍ରାଇମେରୀ ସ୍କୁଲ୍‌ଟି ଗୋପୀନାଥ ଦେବ ମନ୍ଦିରର ପଶ୍ଚିମ ପଟେ । ଗୋପୀନାଥଦେବ ଆମ ଅଞ୍ଚଳର ପ୍ରସିଦ୍ଧ ଠାକୁର । ଅତ୍ୟନ୍ତ ଲାବଣ୍ୟମୂର୍ତ୍ତି । ଅଷ୍ଟ ଧାତୁରେ ତିଆରି । ଆମ ଗ୍ରାମର ଚନ୍ଦନ ଯାତ୍ରା ଓ ଦୋଳ ପର୍ବ ବାଣ ଜାତ ଦେଖିବା ପାଇଁ ପାଖ ଅଞ୍ଚଳର ଅନେକ ଆସନ୍ତି ବିଶେଷ କରି ଚନ୍ଦନ ଯାତ୍ରାର ଗୋଟିପୁଅ ନୃତ୍ୟ ଓ ଗୋପୀନାଥଙ୍କର ପ୍ରତିଦିନ ନୂଆ ବେଶ । ଗ୍ରାମର ଉଭୟ ପଟେ ଦୁଇଟି ବିରାଟ ପୋଖରୀ । ପ୍ରଥମ ଖଣ୍ଡି ପୋଖରୀ ଗୋପୀନାଥ ମନ୍ଦିରକୁ ଲାଗି । ଏହାର ନାମ 'ବାଲି ପୋଖରୀ' ଓ ଅନ୍ୟଟିର ନାମ 'ଚନ୍ଦନ ପୋଖରୀ' । ଗୋପୀନାଥ ଚନ୍ଦନ ପୋଖରୀରେ ଚାପ ଖେଳନ୍ତି । ଗ୍ରାମର ଉଭୟ ପାର୍ଶ୍ୱରେ ଦୁଇଟି ବିରାଟ ଯୋର । ସ୍ତ୍ରୀ ଲୋକ ମାନେ ସେଇ ଯୋର ପାଣିରେ ବାସନ ମାଜିବା, ଲୁଗା ଧୋଇବାଠାରୁ ଆରମ୍ଭ କରି ସୌଚ ହେବା ଓ ସ୍ନାନ କରିବା କାର୍ଯ୍ୟ ସମାପନ କରନ୍ତି । ପ୍ରାୟ ଏକଶତ ପରିବାରର ବିରାଟ ରକ୍ଷଣଶୀଳ ବ୍ରାହ୍ମଣ ଶାସନ । କୂଅ ବୋଧହୁଏ ଦୁଇଟି ଥିଲା । ସେଥିପାଇଁ ଆମ ଖଣ୍ଡି ମହାଜନମାନେ ବାଲି ପୋଖରୀ ପାଣି ପିଇବା ପାଇଁ ବ୍ୟବହାର କରନ୍ତି । ପ୍ରତ୍ୟେକ ପୋଖରୀରେ ଦୁଇଟି ସ୍ନାନ ତୁଠ । ଗୋଟିଏ ପୁରୁଷ ଲୋକମାନେ ବ୍ୟବହାର କରନ୍ତି । ଅନ୍ୟ ତୁଠରେ ନଡିଆ ବରଡା ବାଡ ଘେରାଇ ଦିଆଯାଇ ପୋଖରୀ ନିକଟ ଘରର ସ୍ତ୍ରୀ ଲୋକମାନଙ୍କ ଗାଧୋଇବା ପାଇଁ ବ୍ୟବହୃତ ହୁଏ । ଗ୍ରାମବାସୀ କି ପୁରୁଷ, କି ସ୍ତ୍ରୀ ସମସ୍ତେ ନିକଟସ୍ଥ ପଡିଆକୁ ବାହାର ପାଣି (ଝାଡା ଫେରିବା) ପାଇଁ ଯାଆନ୍ତି । ସ୍ତ୍ରୀ ଲୋକମାନେ ପ୍ରାୟ ଅପରାହ୍ନ ସମୟରେ ମିଶି କରି ଯାଆନ୍ତି । ଝାଡା ବସିବା ବେଳେ ଘର ଓ ଗ୍ରାମ ସମସ୍ୟା ଆଲୋଚନା ହେଉଥାଏ । ବହୁ ସମୟ ଧରି ଯେପରି ଏହି ମଇଳା ପଡିଆଟି

ଏକ ସାମାଜିକ ମିଳନସ୍ଥଳ । କେହି ସଫା କରନ୍ତି ନାହିଁ । କୋଳାମାନେ ଘୁଷୁରୀ ଗୋଠ ଧରି ମଝିରେ ମଝିରେ ପରିଷ୍କାର କରି ଦିଅନ୍ତି । ନଚେତ ସୂର୍ଯ୍ୟ ଦେବତାଙ୍କ କୃପାରେ ମଇଳା ସବୁ ମାଟିରେ ପରିଣତ ହୋଇ ପଡିଆର ଅଂଶବିଶେଷ ହୋଇଯାଏ । ସତ୍ୟବାଦୀଠାରୁ ଆମ ଗ୍ରାମକୁ ଏକ କିଲୋମିଟର କଚ୍ଚା ରାସ୍ତା । ବର୍ଷାଦିନେ ବହୁତ କଷ୍ଟ । ଶଗଡ ପଙ୍କ ଦେଇ ଯିବା ବେଳେ ବଳଦଙ୍କ ଆଖିରୁ ଲୁହ ଗଡେ । ଆମ ଗ୍ରାମର ଏକ କିଲୋମିଟର ଦୂରରେ ଏକ ଚାଷୀ ଗାଁର ନାମ ପାଣିଭଣ୍ଡାର । ବର୍ଷା ଦିନେ ସେ ଗ୍ରାମକୁ ଯିବାକୁ ହେଲେ ଗାମୁଛା ପିନ୍ଧିବାକୁ ହେବ । ଏପରିକି ଗାଁ ଦାଣ୍ଡ ପଙ୍କ କାଦୁଅରେ ଯାତାୟାତ ପାଇଁ କଷ୍ଟବୋଧ ହୁଏ ।

ସ୍କୁଲଘରଟି ମାଟି କାନ୍ଥ ଓ ଚାଳ । ଛପର ପାଇଁ ଗ୍ରାମବାସୀମାନେ ଭେଦା କରି ଛଣ ଦିଅନ୍ତି ଓ ଛପର କରିବାର ଦାୟିତ୍ୱ ନିଅନ୍ତି । ସ୍କୁଲ ଛାତ୍ରମାନେ ଝାଟି ମାଟି କାନ୍ଥର ମରାମତି, ଲିପା ପୋଛା ଓ ସ୍କୁଲ ଘର ତଳ ମଧ୍ୟ ଲିପା ପୋଛା କରନ୍ତି । ୨ୟ ଓ ୩ୟ ଶ୍ରେଣୀଠାରୁ ୪ର୍ଥ ଶ୍ରେଣୀ ଛାତ୍ରମାନେ ଏହି ଦାୟିତ୍ୱ ନିଅନ୍ତି । ଆମ ସ୍କୁଲର ହେଡ ପଣ୍ଡିତଙ୍କ ନାମ ପଣ୍ଡିତ ନୀଳକଣ୍ଠ ମିଶ୍ର । ମାସିକ ବେତନ ନ' ଟଙ୍କା । ସେ ଭର୍ଣ୍ଣାକୁଲାର ଟ୍ରେନ୍ଡ଼ ଶିକ୍ଷକ । ଅତ୍ୟନ୍ତ ରାଗୀ ଓ ପିଲାମାନଙ୍କ ତ୍ରୁଟି ପାଇଁ ବେତ୍ରାଘାତ କରନ୍ତି, ଏକ ଗୋଡକିଆ ଠିଆ କରାନ୍ତି ପୁଣି ଗୋଟିଏ ଗୋଡରେ ଠିଆ ହୋଇ ଉଭୟ କାନକୁ ୨ ହାତରେ ମୋଡିବାକୁ କହନ୍ତି । ଏକଥା ଲେଖିଲାବେଳେ ମନେ ପଡେ ଐତିହାସିକ, ସାହିତ୍ୟିକ ତଥା ପଣ୍ଡିତ ଗୋପବନ୍ଧୁଙ୍କ ବକୁଳ ବନ ଛୁରିଅଣା ବଣର ସାଧକ ଆଦର୍ଶ ଶିକ୍ଷକ ପଣ୍ଡିତ କୃପାସିନ୍ଧୁଙ୍କ କଥା । କୃପାସିନ୍ଧୁ ୮ମ ଶ୍ରେଣୀର ଛାତ୍ର ଥିବାବେଳେ ବିଶିଷ୍ଟ ଶିକ୍ଷାବିତ୍ ପୁରୀ ଜିଲ୍ଲା ସ୍କୁଲ୍‌ର ତତକାଳୀନ ପ୍ରଧାନ ଶିକ୍ଷକ ଚନ୍ଦ୍ରମୋହନ ମହାରଣା ଥାନ୍ତି । ପ୍ରଧାନଶିକ୍ଷକଙ୍କୁ ନ ଜଣାଇ ଛାତ୍ର କୃପାସିନ୍ଧୁ କିଛି ସାଥୀଙ୍କ ସହିତ କଟକ ଯାଇଥିବା ଯୋଗୁ ଦୁଇ ଦିନ କ୍ଲାସ ଯୋଗ ଦେଇନଥିବା ଓ ବିନାନୁମତିରେ ଅନୁପସ୍ଥିତ ଥିବା ଦୋଷ ପାଇଁ ତାଙ୍କୁ ଏକ ଗୋଡିକିଆ କରାଇ ସ୍କୁଲ ଛୁଟି ୪.୩୦ ମିନିଟ ପର୍ଯ୍ୟନ୍ତ ରଖିବା ଫଳରେ ଦୁଇ ଦିନ ପରେ ତାଙ୍କର ବାତଜ୍ୱର ଆରମ୍ଭ ହେଲା ଓ ଗୋଡ ଫୁଲିଗଲା । ସେଇ ବାତଜ୍ୱର ସେ ସାରା ଜୀବନ ଭୋଗିଲେ । ଶେଷ ଜୀବନରେ ବାତଜ୍ୱର ତାଙ୍କୁ ବହୁତ ଯନ୍ତ୍ରଣା ଦେଲା । ସେ ଗୋଟିଏ କାରଣ ଯୋଗୁଁ ସାଧକ କୃପାସିନ୍ଧୁ କଟକ ରେଭେନ୍ସା କଲିଜିଏଟ ସ୍କୁଲକୁ ପଢିବା ପାଇଁ ଗଲେ । ୩ ଟଙ୍କା ବୃତ୍ତି ଏକମାତ୍ର ସମ୍ବଳ ଥିଲେ ମଧ୍ୟ ଚନ୍ଦ୍ରମୋହନ ମହାରଣା ଶେଷରେ ବହୁତ ଅବଶୋଷ କଲେ । ଯେତେବେଳେ କୃପାସିନ୍ଧୁଙ୍କ ସହିତ ତାଙ୍କର ଦେଖାହୁଏ ସେ କୃପାସିନ୍ଧୁଙ୍କ ଗୋଡକୁ ଚାହିଁ ଆଉଁସି ଦିଅନ୍ତି । ମୋ ଭାଗ୍ୟରେ ମଧ୍ୟ ସେଇ ଦଣ୍ଡ ଭୋଗ ଏବେ ସ୍ପଷ୍ଟ ମନେ ଅଛି । ଥରେ ଗୋବର ଓ ବନ ମାଟି ଚକଟି ସ୍କୁଲର ସାମନା କାନ୍ଥରେ

ଛାଟି ସମାନ କରି ଅବଶିଷ୍ଟ ମାଟି ଗୋବରକୁ ସ୍କୁଲ ବଗିଚାରେ ନ ପକାଇ ଆମେ ହାତ ଗୋଡ ଧୁଆଧୋଇ ହୋଇ କ୍ଲାସ୍‌କୁ ଆସିଲୁ । ମୁଁ କ୍ଲାସ୍ ମନିଟର ଥିବା ହେତୁ ମୋର ହେଲା ଦୋଷ । ୩ ବେତ ପ୍ରହାର ଖାଇ ଏକ ଗୋଡିକିଆ ହୋଇ ପ୍ରାୟ ୨ ଘଣ୍ଟା ଛିଡା ହେବାକୁ ପଡିଲା । ମୁଁ ଭୀଷଣ କାନ୍ଦୁଥାଏ କାରଣ ସେ ଧମକାଉ ଥାଆନ୍ତି 'ତୋ ନନା ଆସିଲେ ତାଙ୍କୁ ତୋ ଅମାନିଆ ପଣ କହି ଏହି ସ୍କୁଲରୁ ନାମ କଟାଇ ଦେବି' । ଭବିଷ୍ୟତ ଆଦେଶ, ନନାଙ୍କ ଗାଳି ଓ ମାଡ ପୁଣି ନାମ କଟିଯିବାର ଆଶଙ୍କା ମତେ ଏପରି ଭୟଭୀତ କଲା ଯେ ମୁଁ ଅସମ୍ଭାଳ । ବିବାହ ପରେ ନୂଆ କରି ହୋଇ ଝିଅ ଶାଶୁଘରକୁ ଯିବା ବେଳେ ଯେପରି ଭାଇ ଭଉଣୀ, ବୋଉ ଓ ବାପାଙ୍କୁ କୁଣ୍ଢେଇ ପିନ୍ଧିଥିବା ଶାଢୀ ବ୍ଲାଉଜ ସବୁ ଲୁହରେ ଓଦା କରି ଦିଅନ୍ତି ମୁଁ ସ୍କୁଲରୁ ଫେରି ଘରେ ବୋଉକୁ ଧରି କାନ୍ଦି କାନ୍ଦି ସବୁ କଥା କହିଲି । ବୋଉ ବୁଝାଇ ନନା ଆଉ ଦଣ୍ଡ ଦେବେ ନାହିଁ ବୋଲି ବହୁ ଆଶ୍ୱାସନା ଦେଇ ଖୁଆଇ ଶୁଆଇ ଦେଇଥିଲା । ଏହା ମୋର ତୃତୀୟ ଶ୍ରେଣୀର ଅଭିଜ୍ଞତା । ପରବର୍ତ୍ତୀ ଅବସ୍ଥାରେ ଦିନେ ମୁଁ ଆଇନ ବ୍ୟବସାୟ କରୁଥିବାବେଳେ ମୋ ବଡ ଝିଅ (ଶ୍ରୀମତୀ ପଦ୍ମିନୀ ତ୍ରିପାଠୀ) ଜଣେ ଆଇ.ପି.ଏସ. ଅଫିସରକୁ ବିବାହ କରିଥିଲେ ସୁଦ୍ଧା ମୋ ଜ୍ୱାଇଁ ଆଇ.ଜି. ହେବା ପର୍ଯ୍ୟନ୍ତ ସମସ୍ତ ଘର କାମ କରୁଥିଲା ପିଅନମାନଙ୍କ ସାହାଯ୍ୟ ନ ନେଇ । ମୋ ଠାରୁ ଥରେ ତିରସ୍କାର ପାଇ ସାରା ଜୀବନ ମତେ କହେ 'ନନା ଆପଣଙ୍କର ସେଇ ଦିନର ଶାସନ' ମତେ ଜୀବନ ଗଠନରେ ବହୁତ ସହାୟକ ହୋଇଛି । କଥାଟି ହେଲା ଦିନେ ପ୍ରାୟ ୧୦ଟା ବେଳେ ସାମାନ୍ୟ ମେଘୁଆ ହୋଇ ଝିପିଝିପି ବର୍ଷା ପଡୁଥାଏ, କୁନୁ (ପଦ୍ମିନୀର ଡାକ ନାମ) ମତେ କହିଲା 'ନନା ମଟର ଡ୍ରାଇଭରକୁ କହନ୍ତୁ ସେ ସରକାରୀ ଗାର୍ଲସ୍କୁଲରେ (ଅଧ କିଲୋମିଟରରୁ ଟିକିଏ ବେଶି) ଛାଡି ଦେଇ ଆସିବ ।' ମୋର ମନରେ ଟିକିଏ ରାଗ ଆସିଲା । କହି ପକାଇଲି 'କୁନୁ ତୋ ନନା ପଇସାଟିଏର ମୁଢି କାନିରେ ବାନ୍ଧି ୩ କିଲୋମିଟର କି ଖରା କି ବର୍ଷା ଲୋକନାଥ ଘାଟରେ ତତ୍‌କାଳୀନ ଏଡଓ୍ୱାର୍ଡ ସ୍କୁଲକୁ ଚାଲି କରି ଯାଉଥିଲା ଏବଂ ସ୍କୁଲରୁ ଫେରି ବାପାଙ୍କ ସାଥୀରେ ରୋଷାଇ କରି ପଢୁଥିଲା । ତୁ ଅଧ କିଲୋମିଟର ରାସ୍ତା ଛତାଟିଏ ଧରି ଯିବାକୁ ମଟରର ସାହାଯ୍ୟ ନେଉଛୁ, ମତେ ଏହା ଭଲ ଲାଗୁ ନାହିଁ ।' ଏତିକିରେ ସେ ଟିକିଏ ମୁହଁ ଶୁଖାଇ ଛତା ଧରି ସ୍କୁଲକୁ ଗଲା । ମୁଁ ସେ ଦିନ କଚେରୀରୁ ଫେରିଲା ପରେ ମୋ ସ୍ତ୍ରୀ ରୁକ୍ମିଣୀ ଦେବୀ ମୋତେ ତିରସ୍କାର କହି କହିଲେ, ଝିଅକୁ ଆକଟ କଲ କିଛି ବାଧା ନାହିଁ, କିନ୍ତୁ ଅଫିସ ଘରେ ଏତେ ଲୋକଙ୍କ ଉପସ୍ଥିତିରେ ଏପରି କହିବା ଫଳରେ ସେ ଅତ୍ୟନ୍ତ ଲଜ୍ଜିତ ମନେ କରି ବହୁତ କାନ୍ଦି କହିଲା 'ଆଉ ନନାଙ୍କୁ କେବେ ସ୍କୁଲ ଯିବାକୁ ଗାଡି ମାଗିବି ନାହିଁ ।' ମୁଁ ନିଜର ତ୍ରୁଟି ବୁଝି ପାରି ଅତ୍ୟନ୍ତ ଦୁଃଖିତ ହୋଇ କହିବାର ତାତ୍ପର୍ଯ୍ୟ

ବୁଝାଇବାରେ ସେ ଆଶ୍ୱସ୍ତ ହେଲା । ଆଜି ତା ଘରେ ତା'ର, ତା'ର ଝିଅ, ପୁଅଙ୍କର ମଟର ଗାଡି ଓ ସମସ୍ତେ ନିଜ ନିଜ ସ୍ତରରେ ବହୁ ଦାୟିତ୍ୱପୂର୍ଣ୍ଣ ସ୍ଥାନରେ ଦକ୍ଷତାର ସହିତ ସୁନାମ ଅର୍ଜନ କରୁଛନ୍ତି । ଏହି ଦିନଙ୍କର ଘଟଣା କୁନୁର ସାରା ଜୀବନ ଗଢିବାରେ ସହାୟକ ହେବା ସହିତ ମତେ ମଧ୍ୟ ପରବର୍ତ୍ତୀ କାଳରେ ଅଧିକ ସଜାତ ହେବାକୁ ଶିକ୍ଷା ଦେଲା । ବହୁତ ଅସୁବିଧା ଭିତରେ ମୁଁ ଅପର ପ୍ରାଇମେରୀରେ ଉତ୍ତୀର୍ଣ୍ଣ ହୋଇ ତତ୍‌କାଳୀନ ଲୋକନାଥ ଘାଟ ରୋଡରେ ଅବସ୍ଥିତ ତତ୍‌କାଳୀନ ଏଡୱାର୍ଡ ଏମ.ଇ. ସ୍କୁଲରେ ନାମ ଲେଖାଇଲି । ସେତେବେଳର ହେଡମାଷ୍ଟରଙ୍କ ନାମ ମୋ ନାମ ସହିତ ସମାନ – ଗଙ୍ଗାଧର ମହାପାତ୍ର । ପରବର୍ତ୍ତୀ ଅବସ୍ଥାରେ ସେ ମୋର ମାମୁଁ ଶଶୁର (ମଳାଶୁର) ହେଲେ । ସେଇ ସ୍କୁଲର ୨ୟ ଶିକ୍ଷକ ହେଲେ ଶ୍ରୀ ଦୀନବନ୍ଧୁ ମିଶ୍ର, ପୁରୀ କୁଣ୍ଡାଇବେଣ୍ଟ ସାହି ବାନାମ୍ବର ମହାଦେବଙ୍କ ମନ୍ଦିର ନିକଟରେ । ତାଙ୍କୁ ସମସ୍ତେ ଡରନ୍ତି । ତାଙ୍କ ହାତରେ କ୍ଲାସକୁ ଆସିବା ବେଳେ ୨ଟି ବେତ ଥାଏ । ଦେଢ ହାତ ଲମ୍ବର ବେତ । ସେଥିରେ ଏପରି କ୍ଷିପ୍ର ଗତିରେ ସେ ବେତ୍ରାଘାତ କରନ୍ତି ଯେ ଏକ ମିନିଟ୍‌ରେ ୩୦ ବେତ ଦେବେ ଓ ସେ ସବୁ ଅତ୍ୟନ୍ତ କଷ୍ଟଦାୟକ । ଉତ୍ତର ନ ମିଳିବା ପର୍ଯ୍ୟନ୍ତ ବେତ୍ରାଘାତ ହେଉଥିବ । 'ଷ୍ଟାଣ୍ଡ ଅପ୍ ଅନ ଦି ବେଞ୍ଚ' ବେଞ୍ଚ ଉପରେ ଛିଡା ହୁଅ ବୋଲି ତା ସହିତ ନିର୍ଦ୍ଦେଶ ଥିବ । ତା ପର କ୍ଲାସରେ ସେ ସବୁର ଉତ୍ତର ଦେଲେ ଛାତ୍ରକୁ ଦଣ୍ଡ ଛାଡ । ତାଙ୍କର ବେତ୍ରାଘାତ ଛାତ୍ରମାନଙ୍କୁ ଠିକ୍ ବାଟକୁ ଆଣେ ।

ନନା ମତେ ପୁରୀ ବଡଦାଣ୍ଡ ଚୌଧୁରୀ କୋଠାରେ ରଖାଇ ଥାନ୍ତି । ଗୋଟିଏ ଛୋଟ ଘର ଦାଣ୍ଡ ବାରନ୍ଦାକୁ ଲାଗି । ଘରଟି ୬ ଫୁଟରେ ୯ ଫୁଟ । ଆମେ ବାପ ପୁଅ ସେଠାରେ ରହୁ । ସକାଳେ ନନା ରାନ୍ଧି ଦେଇ ୯ଟା ବେଳକୁ ସେ ଖାଇ ମତେ ମଧ୍ୟ ଖାଇବାକୁ ଦିଅନ୍ତି । ଆଉ ଗୋଟିଏ ପଇସା ଦିଅନ୍ତି ସ୍କୁଲରୁ ଫେରି ମୁଢି ବା ବରା ଖାଇ ତାଙ୍କ ଫେରିବାକୁ ଅପେକ୍ଷା କରିବା ପାଇଁ । ନନା କ୍ଳାନ୍ତ ହୋଇ ଫେରିଲା ପରେ ନିତ୍ୟକର୍ମ ସାରି ଆମେ ଦୁହେଁ ରୋଷେଇ ଘରକୁ ଯାଉ । ମୁଁ ନନାଙ୍କୁ ରାତ୍ର ରୋଷେଇରେ ସାହାଯ୍ୟ କରେ କାରଣ ସକାଳେ ପାଠ ପଢିବା ପାଇଁ ୨ଘଣ୍ଟା ମୋର ସମୟ ଲାଗୁଥିବାରୁ ସକାଳ ରୋଷାଇ ନନା କରନ୍ତି । ପ୍ରତିଦିନ ୩ କିଲୋମିଟର ଯିବା ଓ ୩ କିଲୋମିଟର ଫେରିବା (ସେତେବେଳେ ଦେଢ କୋଷ ରାସ୍ତା ବୋଲି କହୁଥିଲେ) ୬ କିଲୋମିଟର ଯିବା ଆସିବା, ରାତ୍ର ରୋଷାଇ. ଏକ ପଇସାର ମୁଢି । ରାତ୍ର ପଢିବା ପାଇଁ ଗୋଟିଏ ମିଂଜି ମିଂଜି ଜଳୁଥିବା ଲଣ୍ଠନ । ଯେଉଁ ଦିନ କିରାସିନୀ ନଥାଏ, ଡିବିଟିଏ ଆମର ସହାୟକ । ଭାତ ଓ ମୁଗ ଡାଲିରେ ଆଳୁ ବାଇଗଣ ଦେଇ ଡାଲମା । ଏହା ଥାଏ ଆମର ସବୁଠାରୁ ଭଲ ଖାଦ୍ୟ । ଏତେ ଦୂର ହେବାରୁ ବୋଉ ସହିତ ପରାମର୍ଶ କରି ନନା ମତେ ମୋ ବଡ ମାଉସୀ ନାନୀ (ଜେଜେ ନାନୀ) ଘରେ

ରହି ପଢିବା ପାଇଁ ସ୍ଥିର କଲେ । ଜେଜେ ନାନୀଙ୍କର ପୁଅ ନାହିଁ । ସେ ମଉସା ପଣ୍ଡିତ ନାରାୟଣ ମିଶ୍ରଙ୍କର ଦ୍ୱିତୀୟା ସ୍ତ୍ରୀ ଯେପରି ମୋ ବୋଉ ମୋ ନନାଙ୍କର । ପଣ୍ଡିତ ନାରାୟଣଙ୍କର ପ୍ରଥମ ସ୍ତ୍ରୀର ଏକମାତ୍ର କନ୍ୟା ଅମ୍ବିକା ନାନୀ ବିଧବା । ତାଙ୍କର ଦୁଇଟି ପୁଅ ଜୟକୃଷ୍ଣ ଓ ରାମଚନ୍ଦ୍ର । ପରେ ରାମଚନ୍ଦ୍ର ଜଣେ ଭଲ 'ମୁକ୍ତାର' (ଓକିଲଙ୍କ ତଳ ସ୍ତର) ହେଲେ । ତାଙ୍କ କନ୍ୟା ବନୁ ପୂର୍ବତନ ମନ୍ତ୍ରୀ ଓ ଉତ୍କଳ ସମ୍ମିଳନୀର ସଭାପତି ଶ୍ରୀ ହରିଶ ଚନ୍ଦ୍ର ବକ୍ସିପାତ୍ରଙ୍କ ସ୍ତ୍ରୀ । ବଡ ଭାଇ ଜୟକୃଷ୍ଣ ପରେ ହୋମିଓପାଥୀ ଡାକ୍ତର ହେଲେ । ତାଙ୍କର ଜ୍ୱାଇଁ ଡକ୍ଟର ଦାମୋଦର ହୋତା ରାଜ୍ୟର ଜଣେ ବିଶିଷ୍ଟ ଶାସ୍ତ୍ରୀୟ ସଙ୍ଗୀତଜ୍ଞ । ବନାରସରୁ ଶାସ୍ତ୍ରୀୟ ସଙ୍ଗୀତରେ ଉଚ୍ଚତମ ଉପାଧୀ ପାଇ ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟର ଅଧ୍ୟକ୍ଷ ଭାବେ ନିଯୁକ୍ତି ପାଇଲେ । ମୋ ଜେଜେ ନାନୀ ରାମକୁ ପୁଅ କରି ଥାଆନ୍ତି । ଆମେ ସେ ଘରେ ସେତେବେଳେ ଚଳିବାକୁ ଛଅ ପ୍ରାଣୀ । ମଉସା ପଣ୍ଡିତ ନାରାୟଣ ମିଶ୍ର, ଜେଜେ ନାନୀ, ଅମ୍ବିକା ନାନୀ, ମୁଁ , ରାମ ଓ ଜୟି । ଛଅ ପ୍ରାଣୀଙ୍କ ପାଇଁ ଖାଇବାକୁ ଚାଉଳ ନଥାଏ । ମଉସା ଦକ୍ଷିଣ ପାର୍ଶ୍ୱ ମଠର ପୁରୋହିତ ଥିଲେ, କିନ୍ତୁ ଦୋତାଲା ଉପରୁ ଖସି ପଡି ଛୋଟା ହୋଇଯିବାରୁ ଆଉ ପୁରୋହିତ କାମ କରିପାରିଲେ ନାହିଁ । କିନ୍ତୁ ମଠ ଦୟା କରି ସକାଳ ଓଳି ଅଧ ସେର ବଗଡା ନାଲି ଚାଉଳ ଓ ଛୋଟ କୁଣ୍ଡିରେ କୁଣ୍ଡିଏ ମୋଟା ମୁଗ ପଡି ଆକାରରେ ଦିଅନ୍ତି । ତାକୁ ମାଉସୀ ନାନୀ ଓ ଅମ୍ବିକା ନାନୀ ରୋଷାଇ କରି ସମସ୍ତେ ଖାଉ । ଅଳ୍ପ ଦିନ ପରେ ମଉସା ଚାଲିଗଲେ । ସକାଳ ସାଢେ ୮ଟାରୁ ୯ଟା ମଧ୍ୟରେ ପଡି ଚାଉଳ ଆଣିବା ପାଇଁ ମୁଁ ବା ରାମ ଯାଉ । ୨୦ ମିନିଟ ଛିଡା ହେବା ପରେ ଅମୁଣିହା ଦାୟିତ୍ୱରେ ଥିବା ଗୁମାସ୍ତା ପଡି ଚାଉଳ ଦିଏ । ତାହା ହିଁ ଆମର ଖାଦ୍ୟ । ରାତ୍ର ବେଳା ମଠରୁ ଅଧା ଖାଣ୍ଡି ଅବଢା ଅର୍ଣ୍ଣ ମିଳେ । ସେ ଆମକୁ ଅଣ୍ଟେ ନାହିଁ । ତାକୁ ପାଣିରେ ଭିଜେଇ ଅବଢା ସହିତ ଯେଉଁ ଡାଲି ଥାଏ ଜେଜେ ନାନୀ ଆମ ତିନି ଭାଇଙ୍କୁ ଦିଅନ୍ତି । ସେମାନେ ଲେମ୍ବୁ ଲୁଣ ସହ ଖାଆନ୍ତି । ପଡିଶା ଘର ଥିଲା ଶ୍ରୀ ରାଜ କିଶୋର ମହାପ୍ରଶସ୍ତଙ୍କ ଘର । ତାଙ୍କର ବିଧବା ଭଉଣୀ ଆମର ଏ ଅବସ୍ଥା ଦେଖି ତାଙ୍କ ଘରେ ତିଆରି ହୋଇଥିବା ତରକାରୀ ବା ଶାଗ ଆମ ଖାଇବା ପାଇଁ ପଠାନ୍ତି ।

ଆମର ସେଥିପାଇଁ ରାତ୍ର ଓଳି କିପରି କେଉଁଠି ଖାଇବା ବଡ ଚିନ୍ତା ହୋଇଥାଏ । ପାଖ ଗଙ୍ଗାମାତା ମଠ (ଶ୍ୱେତ ଗଙ୍ଗା ଉପରେ) ରେ ଅନେକ ସମୟରେ 'ମଉଛା' (ଉତ୍ସବ) ହୁଏ । ଆମେ ବଳେ ପଶି ରାତ୍ର ଭୋଜନର ବ୍ୟବସ୍ଥା କରୁ । ସେଥିପାଇଁ ବହୁ ତିରସ୍କାର ସହିବାକୁ ପଡେ । କିନ୍ତୁ କ୍ଷୁଧା ସମସ୍ତ ତିରସ୍କାରର ମୁକାବିଲା କରି ଆମକୁ ନିମନ୍ତ୍ରିତ ଅତିଥି ପାଖରେ ବସାଇ ଦିଏ । ଏହା ଛଡା ସେତେବେଳେ ବହୁ ମଠରେ ରାତ୍ର ଅଭ୍ୟାଗତମାନଙ୍କୁ ଖାଇବାକୁ ଦିଆଯାଉଥିଲା । ସେଥିପାଇଁ ଖଣ୍ଡିଏ ଖଣ୍ଡିଏ

ଟିକଟ ଆଗରୁ ସଂଗ୍ରହ କରିବାକୁ ପଡେ । ଆମେ ସ୍କୁଲ୍‌ରୁ ଆସି କେଉଁ ମଠରେ ମଉଛବ ହେଉଛି ଖବର ନେଇ ଟିକଟ ସଂଗ୍ରହ କରୁ । ଯେଉଁ ଦିନ ଟିକଟ ମିଳେ ମଠର ସଦର ଦ୍ୱାରରେ ଯେଉଁ ଚୋରା ଦ୍ୱାର ଥାଏ ଅଭ୍ୟାଗତ ମାନେ ସେଇ ବାଟେ ଟିକଟ୍ ଦେଖାଇ ପ୍ରବେଶ କରନ୍ତି । ଆମେ ସେହି ଟିକଟଧାରୀଙ୍କ ସହିତ ଜବରଦସ୍ତ ପ୍ରବେଶ କରୁ ଚୋରା ଦ୍ୱାର ବାଟେ । ସଙ୍ଗେ ସଙ୍ଗେ ଗୋଟିଏ ସ୍ଥାନରେ ବସି ଆଉ ଗୋଟିଏ ସ୍ଥାନରେ ଗାମୁଛା ରଖି ଅନ୍ୟ ଲୋକ ବସିଛନ୍ତି ବୋଲି କହି କାହାକୁ ବସାଇ ଦେଇନଥାଉ । ନିଜେ ତୃପ୍ତ ହୋଇ ମହାପ୍ରସାଦ ଭୋଜନ (ଘିଅ, ଖିରା) ଖାଇ ବାକି ପାଖରେ ଥିବା ଗାମୁଛାରେ ଅନ୍ତତକ ବାନ୍ଧି, ମାଉସୀ ଓ ଅମ୍ବିକାନାନୀଙ୍କ ପାଇଁ ଆଣୁ । ଏପରି ମାସରେ ପ୍ରାୟ ୧୫ ଦିନ ମାହାଳିଆ ଭୋଜନ ମିଳିଯାଏ । ଏହି ପରି ଭାବରେ ଦୁଇ ବର୍ଷ ମାଉସୀ ଘରେ ଅଭାବ ଅନାଟନ ଭିତରେ ମୁଁ ମାଇନର ପାସ୍ କଲି । ୧୯୨୮ ମସିହାରେ ପ୍ରଥମେ କେନ୍ଦ୍ର ପରୀକ୍ଷାରେ ଆମେ ୧୩ ଜଣ କେନ୍ଦ୍ର ପରୀକ୍ଷା ଦେଇଥିଲୁ ଏଡୱାର୍ଡ ମି.ଇ.ସ୍କୁଲରୁ । ଦୁଇ ଜଣ କେବଳ ମୁଁ ଓ ନରୋତ୍ତମ ମହାନ୍ତି କୃତିତ୍ୱର ସହ ପାଶ କରି ଅଷ୍ଟମ ଶ୍ରେଣୀରେ ପୁରୀ ଜିଲ୍ଲା ସ୍କୁଲରେ ପଢିବା ପାଇଁ ଯୋଗ୍ୟତା ହାସଲ କଲୁ ।

ମୁଁ ଏଡୱାର୍ଡ ସ୍କୁଲରେ ୬ଷ୍ଠ ଶ୍ରେଣୀର ଛାତ୍ର ଥିବା ବେଳେ ଉତ୍କଳମଣି ଗୋପବନ୍ଧୁ ଦାଶଙ୍କୁ ଦେଖିବା ପାଇଁ ନନା ମୋତେ ସାଙ୍ଗରେ ନେଇ ପଥୁରିଆ ସାହି ଗୋଲାଘର କୋଠାରେ ଥିବା ସତ୍ୟବାଦୀ ପ୍ରେସକୁ ନେଇଯାଇଥିଲେ । ପଣ୍ଡିତ ଗୋପବନ୍ଧୁ ଏପରି ଏକ ବିରାଟ ବ୍ୟକ୍ତି, ଜାତୀୟବାଦୀ ନେତା, ସାହିତ୍ୟିକ ଓ ଜନନାୟକ ବୋଲି ଧାରଣା କରିବା ମୋ ପକ୍ଷରେ ସମ୍ଭବପର ନଥିଲା । ନନା ସେତେବେଳକୁ ପଣ୍ଡିତ ଗୋପବନ୍ଧୁଙ୍କ ଗୁରୁ ସ୍ୱର୍ଗତ ରାମଚନ୍ଦ୍ର ଦାସଙ୍କ ପାଖରେ ମୋହରୀର କାମ କରୁଥାଆନ୍ତି । ସେ ଜଣେ ଅତି ନୈଷ୍ଠିକ ବ୍ରାହ୍ମଣ ହୋଇଥିବାରୁ ଗୋଟିଏ ପଇସା ଠକି ନେବା ତାଙ୍କ ଚରିତ୍ରରେ ନଥିଲା । ଗୋପବନ୍ଧୁ ତାଙ୍କୁ ଅତି ଭଲ ପାଉଥିଲେ ଓ ଦାମ ଭାଇନା ବୋଲି ସମ୍ବୋଧନ କରୁଥିଲେ । ମୋ କକେଇ ସ୍ୱର୍ଗତ କାଶୀନାଥ ମହାପାତ୍ରଙ୍କୁ ଗୋପବନ୍ଧୁ ବିହାରର ଉପାନ୍ତ ଅଞ୍ଚଳ ସିଂହଭୂମ ଜିଲ୍ଲାର ଚାଇଁବସାରେ ଓଡିଆ ଶିକ୍ଷକ ଭାବେ କାର୍ଯ୍ୟ କରିବା ପାଇଁ ପଠାଇଥିଲେ । ଭାଇ ହରିହର ମହାପାତ୍ର ଚାଇଁବସାରେ ପ୍ରାଥମିକ ଅବସ୍ଥାରେ ଶିକ୍ଷା ସମାପ୍ତ କଲା ପରେ ସତ୍ୟବାଦୀ ବନ ବିଦ୍ୟାଳୟରେ ମଧ୍ୟ ଅଧ୍ୟୟନ କରିଥିଲେ । ସେଥିପାଇଁ ପଣ୍ଡିତ ଗୋପବନ୍ଧୁଙ୍କ ସହିତ ଆମ ପରିବାରର ସଂପର୍କ । ମୁଁ ମାଇନର ସ୍କୁଲରୁ ଅଷ୍ଟମ ଶ୍ରେଣୀକୁ ଆସିଲା ବେଳକୁ ସତ୍ୟବାଦୀ ଜାତୀୟ ବିଦ୍ୟାଳୟରେ ପରିଣତ ହୋଇସାରିଛି ଏବଂ ୧୯୨୦ ପରଠାରୁ ପଣ୍ଡିତ ଗୋପବନ୍ଧୁ, ନୀଳକଣ୍ଠ, କୃପାସିନ୍ଧୁ, ଆଚାର୍ଯ୍ୟ ହରିହର, ଗୋଦାବରୀଶ ପ୍ରଭୃତି

ଜାତୀୟ କଂଗ୍ରେସରେ ମହାତ୍ମାଗାନ୍ଧୀଙ୍କ ୧୯୨୦ ମସିହା ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗ ଦେଇ ଜେଲ ବରଣ କରିଥାଆନ୍ତି । ମୁଁ ମାଇନର ପାଶ୍ କଲାବେଳକୁ ପଣ୍ଡିତ ଗୋପବନ୍ଧୁଙ୍କର ଅକାଳ ବିୟୋଗ ସମଗ୍ର ରାଜ୍ୟକୁ ସ୍ତମ୍ଭୀଭୂତ କରିଦେଇଥିଲା । ଉତ୍କଳ ସମ୍ମିଳନୀ ମଞ୍ଚପରୁ ଓଡିଶାକୁ ଭାଷା ଭିତ୍ତିରେ ଏକ ସ୍ୱତନ୍ତ୍ର ପ୍ରଦେଶ କରିବା ପାଇଁ ଉତ୍କଳ ଗୌରବ ମଧୁସୂଦନଙ୍କ ନେତୃତ୍ୱରେ ଆନ୍ଦୋଳନ ସମଗ୍ର ରାଜ୍ୟରେ ଏକ ନବ ଚେତନା ସୃଷ୍ଟି କରିଥାଏ । ଏ ସବୁ ସହିତ ସମଗ୍ର ଦେଶରେ ବ୍ରିଟିଶ ସରକାର ବିରୁଦ୍ଧରେ ବିଦ୍ରୋହର ସଂକେତ, ସ୍ୱରାଜ ପାର୍ଟିର ଆବିର୍ଭାବ ଓ ପୂର୍ଣ୍ଣ ସ୍ୱାଧୀନତା ପାଇଁ କେନ୍ଦ୍ର ଓ ରାଜ୍ୟ ବ୍ୟବସ୍ଥା ସଭା ଭିତରେ ଓ ବାହାରେ ତୁଙ୍ଗନେତାମାନେ ସମଗ୍ର ଦେଶକୁ ଏକ ଆଗ୍ନେୟଗିରୀରେ ପରିଣତ କରିଥାଆନ୍ତି । ଏ ସବୁ ମୋର ମନକୁ ମଧ୍ୟ ଆନ୍ଦୋଳିତ କରୁଥାଏ । ମୁଁ କୌଣସିମତେ ୧୯୨୮ ମସିହା ଜୁନ୍ ମାସରେ ପୁରୀ ଜିଲ୍ଲା ସ୍କୁଲରେ ନାମ ଲେଖାଇଲି । ମାସକୁ ସ୍କୁଲ ଦରମା ୩ଟଙ୍କା (ସେତେବେଳେ ମୋର ଏକମାତ୍ର ଭଉଣୀ ଓ ସାନ ଭାଇ ଚନ୍ଦ୍ର ଜନ୍ମ ହୋଇ ଥାଆନ୍ତି) । ପରିବାର ବଢିବାକୁ ଲାଗୁଥାଏ । ଜମି ବାଡି ତ ନାହିଁ । ମାଣେ ଜମି, ସେଥିରେ ଚାଉଳ ଦୁଇ ମାସ ଯିବ କି ନାହିଁ । ମୋ ପଢିବା ପ୍ରଶ୍ନବାଚୀ ହୋଇ ପଡେ । ଏହି ସମୟରେ ମୋର ଆଈ ଅମ୍ବିକା ଦେବୀ ପ୍ରସ୍ତାବ ଦେଲେ ଶ୍ରୀରାମଚନ୍ଦ୍ରପୁର ଗ୍ରାମର ଗୋବିନ୍ଦ ତ୍ରିପାଠୀ ଡେପୁଟି ମାଜିଷ୍ଟ୍ରେଟଙ୍କ ନିକଟକୁ ଯିବେ ଓ ମାସିକ ଆର୍ଥିକ ସହାୟତା ଆଣିବେ ମୋର ପଢିବା ପାଇଁ । ଗୋବିନ୍ଦ ତ୍ରିପାଠୀ, ପ୍ରଥମ ଓଡିଆ ବାରିଷ୍ଟର ବିଶ୍ୱନାଥ ମିଶ୍ରଙ୍କ ଜ୍ୱାଇଁ, ପୁରୀରେ ବର୍ତ୍ତମାନ ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟର ଅଧ୍ୟକ୍ଷ ଯେଉଁ ସରକାରୀ ନିବାସରେ ରହୁଛନ୍ତି ସେହିଘରେ ରହୁଥିଲେ । ତାହା ସେତେବେଳେ ଏକ ଭଡାଘର ଥିଲା । ମୋ ଆଈ ହେଉଛନ୍ତି ବାରିଷ୍ଟର ବିଶ୍ୱନାଥ ମିଶ୍ରଙ୍କ ଭଉଣୀ । ଆଈ ଗୋବିନ୍ଦ ତ୍ରିପାଠୀଙ୍କ ପାଖକୁ ମତେ ନେଲା । ତାଙ୍କ ସ୍ତ୍ରୀ (ବିଶ୍ୱନାଥ ମିଶ୍ରଙ୍କର କନ୍ୟା) ସତୀ ନାନୀଙ୍କୁ ମତେ ପଢିବା ପାଇଁ ମାସିକ କିଛି ଆର୍ଥିକ ସହାୟତା ଦେବାକୁ କହି ଗୋବିନ୍ଦ ତ୍ରିପାଠୀଙ୍କୁ ସତୀ ନାନୀଙ୍କ ଜରିଆରେ ଅନୁରୋଧ କରିବାରେ ମୋର ସ୍କୁଲ ଦରମା ମାସିକ ୩ ଟଙ୍କା ଦେବାକୁ ସେ ରାଜି ହେଲେ । ଏଣିକି ପଢିବା ଅସୁବିଧା ହେବ ନାହିଁ ବୋଲି ପରିବାରର ସମସ୍ତେ ଆଶ୍ୱସ୍ତ ହେଲେ ।

୧୯୩୦ ମସିହା ନିଖିଳ ଭାରତ କଂଗ୍ରେସ କମିଟି ଅଧିବେଶନର ଆୟୋଜନ ପୁରୀରେ ଚାଲିଥାଏ । ପଣ୍ଡିତ ନୀଳକଣ୍ଠ ଅଭ୍ୟର୍ଥନା କମିଟିର ସଭାପତି, ସ୍ୱର୍ଗତ ଗୋପବନ୍ଧୁ ଚୌଧୁରୀ ସାଧାରଣ ସଂପାଦକ, ଡକ୍ଟର ହରେକୃଷ୍ଣ ମହତାବ ସ୍ୱେଚ୍ଛାସେବୀ ସଂସ୍ଥାର ସଂଚାଳକ । ଆମେ ସବୁ ସେତେବେଳର ପୁରୀ ସେବା ସମିତି ଆଚାର୍ଯ୍ୟ ହରିହରଙ୍କ ନେତୃତ୍ୱରେ ପରିଚାଳିତ ସଂସ୍ଥାରେ ସଂଚାଳକ ମୁରାରୀ ତ୍ରିପାଠୀ

(ମୁରାରୀ ଭାଇନାଙ୍କ) ନେତୃତ୍ୱରେ ସ୍ୱେଚ୍ଛାସେବୀ ଭାବେ କାମ କରୁଥାଉ । କଂଗ୍ରେସ ସେବା ଦଳ ଟ୍ରେନିଂରେ ଆମେ ସମସ୍ତେ ଯୋଗ ଦେଲୁ । ଭାଇନାଙ୍କ ସାନ ଭଉଣୀ ହାରାମଣୀ ଦେବୀ (ଏବେ କଟକରେ ରହୁଛନ୍ତି) ଆଚାର୍ଯ୍ୟ ମହାଶୟଙ୍କ ସାନଭାଇ ଡକ୍ଟର ଶଙ୍କର ଦାଶଙ୍କୁ ବିବାହ କରିଥାନ୍ତି । ସେ ମଧ୍ୟ କଂଗ୍ରେସ ସେବା ଦଳରେ ଯୋଗ ଦେବାକୁ ଆସିଲା । ମୋ ନନା ଭୟଙ୍କର ରାଗିକରି କହିଲେ କୁଳୀନ ବ୍ରାହ୍ମଣ ଘରର ଯୁବତୀ ବୋହୂ ଓ ସାମନ୍ତ ବ୍ରାହ୍ମଣ ପରିବାରର ଝିଅ ହୋଇ ଦାଣ୍ଡକୁ ବାହାରି ପରେଡ କରିବ । କିନ୍ତୁ ଆମେ ସେତେବେଳେ କଂଗ୍ରେସ ଅଧିବେଶନ ପାଇଁ ଆୟୋଜନରେ ପଣ୍ଡିତ ନୀଳକଣ୍ଠଙ୍କ ପ୍ରେରଣାରେ ଓତଃପ୍ରୋତ ଭାବରେ ଜଡ଼ିତ ହୋଇଗଲୁଣି । ସେତେବେଳେ ପୁରୀ ସମୁଦ୍ରକୂଳ ବଳିଆପଣ୍ଡାଠାରେ ତାଳତାଟିରେ ଏକ ବିଶାଳ ବସ୍ତି ନିର୍ମାଣ ଚାଲିଥାଏ । ହଠାତ୍ ଗାନ୍ଧିଜୀଙ୍କ ନେତୃତ୍ୱରେ ଜାତୀୟ କଂଗ୍ରେସକୁ ବେଆଇନ ଘୋଷଣା କରାଗଲା । ଲବଣ ସତ୍ୟାଗ୍ରହ ଆନ୍ଦୋଳନ ନେତୃତ୍ୱ ନେଇ ଗାନ୍ଧିଜୀ ଅହମ୍ମଦାବାଦ ସାବରମତି ଆଶ୍ରମରୁ ଦାଣ୍ଡୀ ଯାତ୍ରା ଆରମ୍ଭ କଲେ । ସାରା ଦେଶରେ ଦ୍ୱିତୀୟ ପର୍ଯ୍ୟାୟ ସ୍ୱାଧୀନତା ଆନ୍ଦୋଳନ ଯାହାକୁ ସାଧାରଣତଃ ଲବଣ ସତ୍ୟାଗ୍ରହ କୁହାଯାଏ, ଏକିଭୂତ ଗାନ୍ଧିଜୀଙ୍କ ନେତୃତ୍ୱରେ ବିଦ୍ରୋହ ଅଗ୍ନି ପ୍ରଜ୍ୱଳିତ ହେଲା । ସେତେବେଳର ପୁରୀ ଜିଲ୍ଲାପାଳ ଏମ.କେ. ଅଡ଼ାନୀ, ଆଇ.ସି.ଏସ. । ସେ ସିନ୍ଧର ଲୋକ । ଜଣେ ଜାତୀୟବାଦୀ ସିଭିଲିଆନ । ସେ ନିର୍ଦ୍ଦେଶ ଦେଲେ ୨୪ ଘଣ୍ଟା ମଧ୍ୟରେ ବଳିଆ ପଣ୍ଡା କଂଗ୍ରେସ ନଗରକୁ ଯଦି ସଂପୂର୍ଣ୍ଣ ଭାଙ୍ଗି ଦିଆ ନଯାଏ ସେ ବାଜ୍ୟାପ୍ତ କରିଦେବେ । ଶ୍ରୀ ଜଗନ୍ନାଥ ମିଶ୍ର ହେଉଛନ୍ତି କୋଷାଧ୍ୟକ୍ଷ । ରାତାରାତି ବହୁ ସ୍ୱେଚ୍ଛାସେବୀ ଓ ନୋଳିଆମାନଙ୍କ ସହାୟତାରେ କଂଗ୍ରେସ ନଗରରୁ ସମସ୍ତ ଜିନିଷ ଉଠାଇ ନିଆଗଲା । ଅଡାନି ସାହେବ ନଥିଲେ ସେ ସବୁ ବାଜ୍ୟାପ୍ତ ହୋଇଥାଆନ୍ତା । ପରେ ସବୁ ବିକ୍ରିବଟା ହେଇ କେବଳ ଟ୩୬,୦୦୦ (ଛତିଶ ହଜାର ଟଙ୍କା) ମିଳିଲା । ଅସହଯୋଗ ଆନ୍ଦୋଳନରେ ଲକ୍ଷ ଲକ୍ଷ ଲୋକ ଯୋଗ ଦେଇ ଜେଲ ବରଣ କଲେ । କେତେ ଜଣ ଛାତ୍ର ପ୍ରଚାରକ ଅନନ୍ତ ମିଶ୍ରଙ୍କ ସୁପୁତ୍ର ଶଶୀ ଭୂଷଣ ମିଶ୍ରଙ୍କ ନେତୃତ୍ୱରେ ଗଞ୍ଜେଇ ଅଫିସ ଦୋକାନ ଆଗରେ ପିକେଟିଂ କରି ଗିରଫ ହେଲୁ । ତତକାଳୀନ ଟାଉନ ଥାନା ଇନ୍‌ସପେକ୍ଟର କ୍ଷେତ୍ରମୋହନ ବାବୁ ଓ ହାବିଲଦାର ଆମକୁ ଗିରଫ କଲେ । ଥାନାରେ ଜମାଦାର ବେତ୍ରାଘାତ ଦେଇ ପୁରୀ ଜେଲକୁ ପଠାଇଲେ । ମୋର ସେତେବେଳେକୁ ଏକାଦଶ ଶ୍ରେଣୀ ପାଇଁ ପରୀକ୍ଷା ଆରମ୍ଭ ହେବାକୁ ଥାଏ । ତା ପର ଦିନ ଅଡାନି ସାହେବ ଜେଲକୁ ଆସିଲେ । ଆମେ କେତେ ଜଣ ଆଗତୁରା ହୋଇ ଥାନାରେ ପୁଲିସ ବେତ୍ରାଘାତ କରିଛି ବୋଲି ଅଭିଯୋଗ କଲୁ । ସେତେବେଳେକୁ କମ୍ୟୁନିଷ୍ଟ ନେତା

ସ୍ୱର୍ଗତ ରାମକୃଷ୍ଣ ପତିଙ୍କ ପିତା ରାଏ ସାହେବ ଆନନ୍ଦ ପତି ପୁରୀ ଜିଲ୍ଲା ସ୍କୁଲର ପ୍ରଧାନ ଶିକ୍ଷକ । ସେ ଅତ୍ୟନ୍ତ ବ୍ରିଟିଶ ଭକ୍ତ । ଆମେ ଆରେଷ୍ଟ ହେବା ପୂର୍ବରୁ ପୁରୀ ଜିଲ୍ଲା ସ୍କୁଲରେ ଧର୍ମଘଟ ଫଳରେ ଗୋଟିଏ ବୋଲି ଛାତ୍ର ଉପସ୍ଥାନ ନାହିଁ । ସେତେବେଳେ ଆମର ନେତା ରେଭେନ୍‌ସା କଲେଜର ସବୁଠାରୁ ମେଧାବୀ ଛାତ୍ର ମାନେ ସଦାଶିବ ମିଶ୍ର, ବିହାରୀ ପଟ୍ଟନାୟକ, ଦୀନବନ୍ଧୁ ସାହୁ ପ୍ରମୁଖ । ମୁଁ ସେ ଧର୍ମଘଟରେ ସକ୍ରିୟ ଅଂଶଗ୍ରହଣ କରି ଦଣ୍ଡ ପଡିଆ ସଭାରେ ବକ୍ତୃତା ଦେବା ଅପରାଧରେ ଜଡିତ ହୋଇ ପୁରୀ ଜିଲ୍ଲା ସ୍କୁଲରୁ ବହିଷ୍କୃତ ହେଲି । ଏପରି ଭାବରେ ସ୍କୁଲରୁ ବହିଷ୍କୃତ ଓ ପୁଣି ଗିରଫ ହେଇଥିବା ଫଳରେ ବୃଦ୍ଧ ନନା ଓ ଅନ୍ୟମାନେ ଭାରି ବ୍ୟଥିତ ହୋଇପଡିଲେ । କିନ୍ତୁ ଅଡାନୀ ସାହେବଙ୍କ ଆଗରେ ଆମେ କେତେ ଜଣ ଛାତ୍ର ଟାଉନ ଥାନାରେ ପୁଲିସର ବେତ୍ରାଘାତ ଓ ଅନ୍ୟାୟ ଗିରଫ ଦ୍ୱାରା ପ୍ରତିବାଦ କରିବାରେ ଅଡାନି କହି ଉଠିଲେ, 'ମୁଁ ମଧ୍ୟ ଦେଶ ସ୍ୱାଧୀନ ହେବା ଚାହେଁ । କିନ୍ତୁ ତୁମେ ଭଲ ପାଠ ପଢି ମେଧାବୀ ଛାତ୍ର ରୂପେ ବିଶ୍ୱବିଦ୍ୟାଳୟରେ ଖ୍ୟାତି ଅର୍ଜନ ନ କଲେ ଦେଶ ଚଳାଇବ କିଏ ? ଜବାହାର ନେହେରୁ ଓ ମୋତିଲାଲ ନେହେରୁଙ୍କ ଦୃଷ୍ଟାନ୍ତ ଦେଇ ସେ କହିଲେ ଗାନ୍ଧୀ, ନେହେରୁ ବାରିଷ୍ଟର । ନୀଳକଣ୍ଠ ବାବୁ, ଗୋପବନ୍ଧୁ ଚୌଧୁରୀ ବହୁତ ପାଠ ପଢିଲା ପରେ ଆନ୍ଦୋଳନରେ ଯୋଗ ଦେଇଛନ୍ତି । ତୁମେ ଛାତ୍ରାବସ୍ଥାରୁ ନିଜର ଭବିଷ୍ୟତ ନଷ୍ଟ କର ନାହିଁ ।' ମୁଁ ହଠାତ କହି ପକାଇଲି ଦେଶ ପ୍ରଥମ, ଶିକ୍ଷା ପରେ (First Country, then Education) । ସେ ମୋତେ ପଚାରିଲେ କେଉଁ କ୍ଲାସ୍‌ରେ ପଢୁଛ ? ମୁଁ ଉତ୍ତର ଦେଲି ଏକାଦଶ ଶ୍ରେଣୀରେ । ମାଟ୍ରିକ ପରୀକ୍ଷା ପରବର୍ଷ ହେବ । ସେ ଖୁବ ଭାବିଲେ ଏବଂ ସାଙ୍ଗେ ସାଙ୍ଗେ ଜେଲ କର୍ତ୍ତୃପକ୍ଷଙ୍କୁ ନିର୍ଦ୍ଦେଶ ଦେଲେ ଛାତ୍ରମାନଙ୍କୁ ଖଲାସ କରିଦିଅ । ମୁଁ ଜିଲ୍ଲା ମାଜିଷ୍ଟ୍ରେଟ ଭାବେ ହୁକୁମ ଦେଉଛି । ଏହା କହି କ'ଣ କାଗଜରେ ଲେଖି ଜେଲ୍ ଅଧିକାରୀଙ୍କୁ ଦେଲେ । ତା'ର ଦେଢ ଘଣ୍ଟା ପରେ ଆମକୁ ଛାଡି ଦିଆଗଲା । ଆମେ ଜେଲ୍ ଫାଟକ ପାଖରୁ ସିଧା କଲେକ୍ଟରଙ୍କ କ୍ୱାର୍ଟର୍ସକୁ ଯାଇ ଅଡାନୀ ସାହେବଙ୍କୁ ଦେଖା କରି ଆବେଦନ କଲୁ 'ବର୍ତ୍ତମାନ ହେଡ୍ ମାଷ୍ଟ୍ର ଆମକୁ ସ୍କୁଲରୁ ବହିଷ୍କୃତ କରିଛନ୍ତି, ଆମେ ପଢିବୁ କିପରି ?' ସେ ସଙ୍ଗେ ସଙ୍ଗେ ହେଡ୍ ମାଷ୍ଟରଙ୍କୁ ଡକାଇଲେ, ସମସ୍ତଙ୍କ ଉପରୁ ବହିଷ୍କାର ଆଦେଶ ପ୍ରତ୍ୟାହାର କରିନେବାକୁ ନିର୍ଦ୍ଦେଶ ଦେଲେ । ଆନନ୍ଦ ପତି ମହାଶୟ କହିଲେ 'ସମସ୍ତେ ବଣ୍ଡ୍ ଲେଖିଦେବେ ଯଦି ସେ ବହିଷ୍କାର ଆଦେଶ ପ୍ରତ୍ୟାହାର କରିବେ ।' କଲେକ୍ଟର ପୁଣି କହି ଉଠିଲେ 'ଆପଣ ଛାତ୍ର ସଭାରେ ଉପସ୍ଥିତ ଥିଲେ କି ?' ହେଡ୍ ମାଷ୍ଟ୍ର ନାହିଁ କଲେ । ଅଡାନୀ ସାହେବ ପଚାରିଲେ କାହା ଅଭିଯୋଗ ଉପରେ ସେ ଦଣ୍ଡ ପାଇଁ ବାଧ୍ୟ କରୁଛନ୍ତି ? ହେଡ୍ ମାଷ୍ଟ୍ର ଉତ୍ତର ଦେଇ ପାରିଲେ ନାହିଁ । ପରେ କେତେକ ସରକାରୀ କର୍ମଚାରୀଙ୍କ

ତତ୍ତ୍ୱାବଧାନରେ ପଢୁଥିବା ଛାତ୍ରଙ୍କ ଛଡା ଅନ୍ୟ କେହି ଦଣ୍ଡ ନ ଦେଇ ହେଡ ମାଷ୍ଟ୍ରଙ୍କୁ ଘେରାଉ କରି 'ନକଲି ଗାନ୍ଧୀ' ବୋଲି ଚିଡାଇବାରେ ଶେଷରେ ସବୁ ଛାତ୍ରଙ୍କୁ ବିନା ଦଣ୍ଡରେ ବାଧ୍ୟ କରାନଯାଇ ପୁନର୍ବାର ତାଙ୍କ ନାମରୁ ବହିଷ୍କାର ଆଦେଶ ପ୍ରତ୍ୟାହାର କରାଯାଇ ପରଦିନ ସ୍କୁଲ ଖୋଲିଲା । ପରେ ପରେ ମୁଁ ବୋର୍ଡିଂରେ ରହିଲି । ସେହିଦିନଠାରୁ କଂଗ୍ରେସ ସଂଗଠନରେ ମୋର ସକ୍ରୀୟ ସଂପର୍କ ରହିଲା । ପରେ ପରେ ମୁରାରୀ ତ୍ରିପାଠୀଙ୍କ ନେତୃତ୍ୱରେ ଆମେ ବିଦେଶୀ ଲୁଗା ସଂଗ୍ରହ କରି ପୋଡିଲୁ ଏବଂ ଛାତ୍ର ସଂଗଠନ ସହିତ ବଙ୍ଗଳାର କେତେକ ସନ୍ତ୍ରାସବାଦୀ ନେତାଙ୍କ ସହିତ ପ୍ରତ୍ୟକ୍ଷ ସଂପର୍କ ସ୍ଥାପନ କଲୁ । ପୁରୀ ରାମଚଣ୍ଡୀ ସାହିରେ ପୂର୍ବତନ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଦେବୀଙ୍କ ଜକେଇ ଓଡିଶାରେ ସାମ୍ୟବାଦୀ ଆନ୍ଦୋଳନର ଦିଗ୍‌ଦର୍ଶକ ଓ ସ୍ୱାଧୀନତା ଆନ୍ଦୋଳନର ଅଗ୍ରଭାଗରେ ଥିବା ଯୁବ ନେତା ଭଗବତୀ ଚରଣ ପାଣିଗ୍ରାହୀଙ୍କ ସଂସ୍ପର୍ଶରେ ଆସି, ଆଲୋଚନାରେ ଭାଗ ନେବାର ସୁଯୋଗ ମିଳିବା ପରେ ପଣ୍ଡିତ ନୀଳକଣ୍ଠଙ୍କ ଜ୍ୟେଷ୍ଠ ପୁତ୍ର ସ୍ୱର୍ଗତ ଅଶୋକ ଦାସଙ୍କ ନେତୃତ୍ୱରେ ଆମେ କେତେକ ଯୁବକ, ପୂର୍ବତନ କେନ୍ଦ୍ରମନ୍ତ୍ରୀ ମୋର ମାମୁଁ ପୁଅ ଭାଇ ଶ୍ରୀ ବିବୁଧେନ୍ଦ୍ର ମିଶ୍ରଙ୍କ ଘରେ ଏକ ଭବିଷ୍ୟତ କାର୍ଯ୍ୟପନ୍ଥା ସ୍ଥିର କରିବା ପାଇଁ ସିକ୍ରେଟ ସେଲ୍‌ର ଶୁଭାରମ୍ଭ ହେଲା ।

୧୯୩୨ ମସିହାରେ ମାଟ୍ରିକ ପରୀକ୍ଷା ଦେଇଥାଏ । ସେତେବେଳକୁ ପୁରୀ ଛାତ୍ର ସମାଜରେ ମୁଁ ଜଣେ ପ୍ରମୁଖ ନେତୃତ୍ୱ ନେଉଥିବା ବ୍ୟକ୍ତି । ମୋର ଆଉ ଦୁଇ ଭାଇ ଚନ୍ଦ୍ରଶେଖର (ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ବର୍ତ୍ତମାନ ଦୈନିକ 'ମାତୃଭାଷା'ର ସମ୍ପାଦକ), ଶ୍ରୀ ଶଶୀଶେଖର (ଅବସରପ୍ରାପ୍ତ ଯୁଗ୍ମ ଅତିରିକ୍ତ ନିର୍ଦ୍ଦେଶକ, ସୂଚନା ଲୋକ ସଂପର୍କ ବିଭାଗ) ପ୍ରାଥମିକ ସ୍କୁଲରେ ଯୋଗ ଦେଇ ଥାଆନ୍ତି । ନନାଙ୍କର ବୃଦ୍ଧାବସ୍ଥା । ଆୟ ସୀମିତ । ତିନି ଶହ ଟଙ୍କାରେ ହେରାଗୋହିରୀ ସାହି ପଞ୍ଚମୁଖୀ ଚୌରା ନିକଟରେ ଦୁଇ ବଖରା ବିଶିଷ୍ଟ ଗୋଟିଏ ଅଗଣା ଥାଇ ଗୋଟିଏ ଘର କିଣିଥାଆନ୍ତି । ପରିବାର ସହିତ ନନା ସେହି ଘରେ ରହିଲେ । ଘରର ଅନ୍ୟ ପାଖରେ ପୁରୀ ଗଜପତି ମହାରାଜାଙ୍କ ରାଜଗୁରୁ ବଂଶର ଦୁଇଟି ପୁଅ ମଧୁସୂଦନ ଓ ନୀଳକଣ୍ଠ ମଧ୍ୟ ତାଙ୍କ ପରିବାର ସହିତ ରହୁଥାଆନ୍ତି । ମାଟ୍ରିକ ପାଶ୍ ପରେ କଲେଜରେ କିପରି ପଢିବି ତାହା ହିଁ ଚିନ୍ତାର ବିଷୟ ହୋଇଥାଏ । ହରିଭାଇନା (ନ୍ୟାୟପତି ହରିହର ମହାପାତ୍ର) ସେତେବେଳେ କଟକରେ ଓକିଲାତି ବ୍ୟବସାୟ ଆରମ୍ଭ କରିବା ପାଇଁ ଯୋଗାଡ କରୁଥାଆନ୍ତି । ତା ପୂର୍ବରୁ ସେ ଭଦ୍ରଖ ଇରଦାଷ୍ଟେଟ୍‌ର ଜମିଦାରଙ୍କ ପୁତ୍ର ଶ୍ରୀ ମୃତ୍ୟୁଞ୍ଜୟ ନାରାୟଣ ପ୍ରହରାଜଙ୍କ ଗାର୍ଡିଅନ ଟ୍ୟୁଟର ଭାବରେ ମାସିକ ଏକ ଶତ ଟଙ୍କା ପାରିଶ୍ରମିକରେ ପୁରୀ ରାମଚଣ୍ଡୀ ସାହିରେ ରହୁଥାଆନ୍ତି । ପାଖରେ ଭଗବତୀ ଚରଣ

ପାଣିଗ୍ରାହୀଙ୍କ ଘର । ସେହି ସମୟରେ ନନା ମୋର ବିବାହ କରିଦେବେ ବୋଲି ସ୍ଥିର କରି ଭିଙ୍ଗାରପୁରସ୍ଥ ତତକାଳୀନ ପ୍ରଖ୍ୟାତ ଜମିଦାର ପରିବାରରେ ପ୍ରସ୍ତାବ ପକାଉଲେ । ଭିଙ୍ଗାରପୁରର ଚୌଧୁରୀ ପରିବାର ସେତେବେଳେ ଅତ୍ୟନ୍ତ ପ୍ରଭାବଶାଳୀ । ହରି ଭାଇନା ସେହି ପରିବାରର ଚୌଧୁରୀ ନରହରି ଦାଶଙ୍କ କନ୍ୟାକୁ ବିବାହ କରିଥାଆନ୍ତି ଛାତ୍ରାବସ୍ଥାରେ । ମୋର ବଡ ଜେଜେଙ୍କ ପୁଅ ମାର୍କଣ୍ଡ ଭାଇନା ମଧ୍ୟ ସେହି ପରିବାରର ଆଉ ଜଣେ ପ୍ରଖ୍ୟାତ ଜମିଦାର ଚୌଧୁରୀ ପଦ୍ମନାଭ ଦାଶଙ୍କ ଏକମାତ୍ର କନ୍ୟାକୁ ଅଷ୍ଟମ ଶ୍ରେଣୀ ଛାତ୍ର ଭାବରେ ୧୪ ବର୍ଷ ବୟସରେ ବିବାହ କରିଥିଲେ । ସେତେବେଳେ ଛୋଟ କନ୍ୟା ବିବାହ ପ୍ରଥା ଚଳୁଥାଏ । ଭିଙ୍ଗାରପୁର ଜମିଦାରମାନେ ବ୍ରାହ୍ମଣ ସମାଜରେ ଉଚ୍ଚଶ୍ରେଣୀର ବ୍ରାହ୍ମଣ ନହୋଇଥିବା ହେତୁ ଏବଂ ପୁରୀ ଜିଲ୍ଲା ବ୍ରାହ୍ମଣ ପୁଣି ଶାସନର ସାମନ୍ତ ବ୍ରାହ୍ମଣ ପରିବାରରେ ବନ୍ଧୁ ବାନ୍ଧି ସେମାନଙ୍କ ମର୍ଯ୍ୟାଦା ବ୍ରାହ୍ମଣ ସମାଜରେ ବଢାଇବା ପାଇଁ ଗରିବ ଘରର ସାମନ୍ତ ବ୍ରାହ୍ମଣ ମାନଙ୍କୁ ଅର୍ଥ ଓ ସମ୍ପତ୍ତି ପ୍ରଲୋଭନ ଦେଖାଇ କନ୍ୟାଦାନ କରୁଥାଆନ୍ତି । ମୋ ନନା ଭିଙ୍ଗାରପୁର ଷ୍ଟେଟ୍‌ର ପୁରୀ ସହରର ଅନ୍ୟତ୍ର ଥିବା ଜମିବାଡିର ମାଲିମକଦ୍ଦମାରେ ମୋହରୀର କାର୍ଯ୍ୟ କରୁଥିବା ଦୃଷ୍ଟିରୁ ଏବଂ ସେ ଜଣେ ଅତ୍ୟନ୍ତ ନୈଷ୍ଠିକ ଓ ସାଧୁ ପ୍ରକୃତିର ଲୋକ ପୁଣି ପଣ୍ଡିତ ଗୋପବନ୍ଧୁଙ୍କ ଗୁରୁ ଶ୍ରୀ ରାମଚନ୍ଦ୍ର ଦାସଙ୍କ ମୋହରୀର ଥିବାରୁ ତତ୍‌କାଳୀନ ଭିଙ୍ଗାରପୁର ଇଷ୍ଟେଟର ଅଂଶୀଦାରମାନେ ତାଙ୍କୁ ଖାତିର କରୁଥିଲେ ଓ ଦାମ ଭାଇନା ବୋଲି ସମ୍ବୋଧନ କରି ବଡଦାଣ୍ଡ ଭିଙ୍ଗାରପୁର ଚୌଧୁରୀ ବଂଶର ବିରାଟ ପଥର କୋଠାରୁ ଏକ ବଖରା ଘର ବିନା ଭଡାରେ ଆମେ ରହିବା ପାଇଁ ଛାଡି ଦେଇଥିଲେ । ମାଟ୍ରିକ ପରୀକ୍ଷା ଦେବାର ତିନି ଚାରି ମାସ ପୂର୍ବରୁ ନନା ମତେ ଚୌଧୁରୀ କୋଠାକୁ ଡକାଇନେଲେ । ସେଠାରେ ଚୌଧୁରୀ ରାଧାଶ୍ୟାମ ଦାଶ ଓ ତାଙ୍କ ପତ୍ନୀ ଉପର ମହଲାରେ ଏକ ବଡ କୋଠରୀରେ ଅବସ୍ଥାନ କରୁଥାଆନ୍ତି । ଉଭୟଙ୍କର ବିରାଟ ବପୁ । ରାଧାଶ୍ୟାମ ଚୌଧୁରୀ କଲିକତା ପ୍ରେସିଡେନ୍ସୀ କଲେଜରୁ ବିଜ୍ଞାନରେ ସ୍ନାତକ ଉପାଧି ପାଇ କିଛି ବର୍ଷ ଡେପୁଟୀ ମାଜିଷ୍ଟ୍ରେଟ ଚାକିରୀ କଲେ । ବଡ ସାହେବମାନଙ୍କ ହାତୀ ଖେଦା ଦାୟିତ୍ୱରେ ମାଜିଷ୍ଟ୍ରେଟ ଭାବେ ଉପସ୍ଥାପିତ ହେଲା ପରେ ଜମିଦାର ଘରର ଯୁବକ ଅଫିସର ସାହେବଙ୍କ ଉପଭୋଗ ପାଇଁ ଜଙ୍ଗଲରେ ହାତୀ ଖେଦା ଆୟୋଜନ କରିବା ତାଙ୍କ ସ୍ୱାଭିମାନ ପ୍ରତି ଏକ ଧକ୍କା ଲାଗିବାରୁ ଡେପୁଟି ଚାକିରୀରୁ ଅବ୍ୟାହତି ନେଇ ଜମିଦାରୀ ବୁଝୁଥାଆନ୍ତି । ତାଙ୍କ ପତ୍ନୀ ଶ୍ରୀମତି ଚମ୍ପାଦେବୀ ମୋର ପୂର୍ବତନ ପ୍ରଧାନ ଶିକ୍ଷକ (ଏଡଓ୍ୱାର୍ଡ ମି.ଇ.ସ୍କୁଲ) ଗଙ୍ଗାଧର ମହାପାତ୍ରଙ୍କ ଚନ୍ଦ୍ର ଭଉଣୀ । ସେ ଅତ୍ୟନ୍ତ ସ୍ନେହୀ ଓ ଉଦାର, ସମଗ୍ର ଦେହରେ ସୁନା ଅଳଙ୍କାର ଓ ଦେଖିବାକୁ ରାଜାଘର କନ୍ୟା

ପରି । ମତେ ଖଣ୍ଡିଏ ମଶିଣାରେ ବସିବା ପାଇଁ ଦିଆଗଲା । ନନା ବାହାରକୁ ଆସିଲେ । ଜମିଦାର ରାଧାଶ୍ୟାମ ଚୌଧୁରୀ ମତେ ପଚାରିଲେ ତୁମେ ମାଟ୍ରିକ ପାଶ୍ ପରେ କ'ଣ କରିବ ? ମୁଁ ଉତ୍ତର ଦେଲି ରେଭେନ୍‌ସା କଲେଜରେ ବିଜ୍ଞାନରେ ଆଇ.ଏସ.ସି. ପଢ଼ିବି । ସେ ପୁଣି ପଚାରିଲେ 'କେଉଁଠାରୁ ପଇସା ଆଣିବ ?' ମୋର ଉତ୍ତର 'ଯେପରି ଅନ୍ୟର ସହାୟତାରେ ମାଟ୍ରିକ ସାରିବାକୁ ଯାଉଛି ସେହିପରି ସାହାଯ୍ୟ ଯୋଗାଡ଼ କରିବି । ନଚେତ ମୋ ଭାଇନା (ହରିହର ମହାପାତ୍ର) ଓକିଲାତି କଟକରେ କରିବାକୁ ଯାଉଛନ୍ତି । କଟକ ଓଡ଼ିଆ ବଜାରରେ ଘରଟିଏ ଭଡ଼ା ନିଆଯାଇଛି । ମୁଁ ତାଙ୍କ ଘରେ ତାଙ୍କୁ ରୋଷାଇ କାମ ଓ ଅନ୍ୟାନ୍ୟ ଘର କାମରେ ସହାୟକ ଭାବେ ରହିଲେ ସେ ମତେ ପଢ଼ାଇବା ପାଇଁ ସହାୟକ ହେବେ ।' ଏହା ପରେ ଆଉ ଗୋଟିଏ ପ୍ରଶ୍ନ ହେଲା । ଆଇ.ଏସ.ସି. ପାଶ୍ କରି କ'ଣ କରିବ ? ମୁଁ ସଂଗେ ସଂଗେ ଉତ୍ତର ଦେଲି, ପାଟଣା ମେଡ଼ିକାଲ କଲେଜ ବା ବନାରସ ଇଂଜିନିୟରିଂ କଲେଜରେ ପଢ଼ିବି । ତାଙ୍କର ଶେଷ ପ୍ରଶ୍ନ ହେଲା ଏପରି ମେଡ଼ିକାଲ ଓ ଇଂଜିନିୟରିଂ କଲେଜ ଖର୍ଚ୍ଚ ତୁଲାଇବ କିପରି ? ମୋର ଉତ୍ତର – ସରକାରୀ ବୃତ୍ତି ନ ମିଳିଲେ କେଉଁଠାରୁ ହେଲେ ସାହାଯ୍ୟ ନେଇ ପଢ଼ିବାର ମୋର ସାହସ ଅଛି । ଏତିକିରେ ମୋର ଇଣ୍ଟରଭ୍ୟୁ ଶେଷ । ନନା ସେତେବେଳକୁ ଫେରି ଆସିଲେଣି । ମୋର ପୋଷାକ ହେଉଛି ୬ ହାତୀ ଖଦୀ ଖଣ୍ଡିଏ ଓ ଖଦୀର ହାଫ ସାର୍ଟ । ମୁଁ ମଧ୍ୟ ସେତେବେଳକୁ ସୂତାକଟା ଭଲ ଭାବରେ ଶିଖି ଗଲିଣି । ଆଚାର୍ଯ୍ୟ ହରିହରଙ୍କ ପୁରୀ ରାମଚଣ୍ଡୀ ସାହିସ୍ଥ ଆଶ୍ରମରେ ମଝିରେ ମଝିରେ ରହେ । ଆଶ୍ରମ ଓଳାଏ ଓ ସେଠାରେ ଯେଉଁ ଟ୍ରେଞ୍ଚ ପାଇଖାନା ଓ ଉଟା ଥୁଆ ହେବାର ପାଇଖାନାରେ ବ୍ଲିଚିଂ ପାଉଡ଼ର ଓ ବାଲି ପକାଇ ତାକୁ ସଫା କରିବା ଓ ଆଶ୍ରମ ଭିତର ଓ ବାହାର ଓଳାଇବା କାମ ଆମକୁ ବହୁତ ଭଲ ଲାଗେ । ଆତ୍ମନିର୍ଭରଶୀଳ ହେବାର ସାହସ ଆମ ମନରେ ଆଚାର୍ଯ୍ୟ ମହାଶୟଙ୍କ ଆଦର୍ଶ ଆମକୁ ଶିଖାଇଥାଏ । ଆଜନ୍ମ ବ୍ରହ୍ମଚାରୀ ଶ୍ରୀଯୁକ୍ତ ମୁରାରୀ ତ୍ରିପାଠୀ ଆଚାର୍ଯ୍ୟ ମହାଶୟଙ୍କ ପ୍ରେରଣାରେ ପୁରୀ ସେବା ସମିତି ନାମରେ ଏକ ଅନୁଷ୍ଠାନ ପ୍ରତିଷ୍ଠା କରିଥାଆନ୍ତି । ରଥଯାତ୍ରାରେ ବ୍ୟାଗ କାନ୍ଧରେ ପକାଇ ଯାତ୍ରୀଙ୍କୁ ପିଇବା ପାଣି ଦେବା ଓ ଷ୍ଟ୍ରେଚରରେ ପ୍ରାଥମିକ ଚିକିତ୍ସା ନେବା ପାଇଁ ଆମର ବଡ଼ ସେବା କାମ । ଏଥିରେ ଆମର ଉତ୍ସାହ ଆମକୁ ବହୁତ ସେବାର ପ୍ରେରଣା ଦିଏ । ବର୍ତ୍ତମାନ ସେହି ଆଶ୍ରମ ସ୍ଥାନରେ ପୁରୀର ପ୍ରଥମ ସିନେମା ଘର 'ଲକ୍ଷ୍ମୀ ଟକିଜ୍' ପ୍ରତିଷ୍ଠିତ ।

ମାଟ୍ରିକ ପରୀକ୍ଷା ପରେ ମୋର ବିବାହ ଚୌଧୁରୀ ରାଧାଶ୍ୟାମ ଦାଶଙ୍କ ପୋଷ୍ୟ କନ୍ୟା ୧୦ ବର୍ଷର ଝିଅ କୁମାରୀ ରୁକ୍ମିଣୀଙ୍କ ସହିତ ସମ୍ପନ୍ନ ହୋଇଥିଲା । ରେଭେନସା

କଲେଜ ପଶ୍ଚିମ ଛାତ୍ରାବାସରେ ଦ୍ୱିତୀୟ ମହଲାର ଗୋଟିଏ ରୁମ୍‌ରେ ମୁଁ ଏବଂ କଳାହାଣ୍ଡି ଜିଲ୍ଲା ଭବାନୀପାଟଣାର ଶ୍ରୀ ନାରାୟଣ ଚାନ୍ଦ (ପୂର୍ବତନ ଅବସରପ୍ରାପ୍ତ ଆଇ.ପି.ଏସ. ଏବଂ ପୂର୍ବତନ ଆଇ.ଜି. ପୋଲିସ) ସାଥୀ ହୋଇ ଥିଲୁ । ଫିଜିକ୍ସ (ପଦାର୍ଥ ବିଜ୍ଞାନ)ର ପ୍ରଫେସର ନାରାୟଣ ମିଶ୍ର ଥାଆନ୍ତି ୱାର୍ଡେନ । ତାଙ୍କର ସୁପୁତ୍ର ସ୍ୱର୍ଗତ ଶ୍ରୀ ପଦ୍ମନାଭ ମିଶ୍ର ଆଇ.ଏ.ଏସ୍ (ସ୍ୱରାଷ୍ଟ୍ର ବିଭାଗ ସଚିବ) ସେତେବେଳେ ଅଳ୍ପବୟସ୍କ ଥାଇ ପ୍ରାଥମିକ ସ୍କୁଲର ଛାତ୍ର । ପରବର୍ତ୍ତୀ ସମୟରେ ଶ୍ରୀ ପ୍ୟାରୀ ମୋହନ ମହାପାତ୍ର ଆଇ.ଏ.ଏସ.ଙ୍କର ପଦ୍ମନାଭ ମିଶ୍ରଙ୍କ କନ୍ୟା ସହିତ ବିବାହ ସମ୍ପନ୍ନ ହେଲା । ଅଧ୍ୟାପକ ନାରାୟଣଙ୍କ ଗାଁ ମୋ ଶ୍ୱଶୁର ଗ୍ରାମ ଭିଙ୍ଗାରପୁର ନିକଟ ଥିବାରୁ ଓ ମୋ ଶଶୁର ଚୌଧୁରୀ ରାଧାଶ୍ୟାମ ଦାଶଙ୍କ ସହିତ ତାଙ୍କର ବହୁତ ବ୍ୟକ୍ତିଗତ ବନ୍ଧୁତା ଦୃଷ୍ଟିରୁ ସେ ମତେ ବହୁତ ଭଲ ପାଉଥିଲେ । ମୋର କକେଇ ପୁଅ ଭାଇ ହରି ଭାଇନାଙ୍କ ତଳ ଭାଇ କୃଷ୍ଣ ମଧ୍ୟ ସେଇ ଛାତ୍ରାବାସରେ ଆଉ ଗୋଟିଏ ରୁମ୍‌ରେ ଦ୍ୱିତୀୟ ବର୍ଷରେ (2nd year I.Sc.) ରହିବାକୁ ଆସିଲା । କିନ୍ତୁ ବିଧାତାର କି ବରାଦ୍ । ଆମେ ଆଇ.ଏସ.ସି. ପରୀକ୍ଷା ଦେବାର ଅଳ୍ପ ଦିନ ପୂର୍ବରୁ ହଠାତ୍ ତା'ର ମୃତ୍ୟୁ ଘଟେ । ସେଇ ମର୍ମନ୍ତୁଦ ଦୁଃଖଦାୟକ ସ୍ମୃତି ଜୀବନରେ ଭୁଲି ହେବ ନାହିଁ । ଆମ ଦୁଇ ଭାଇଙ୍କ ଭିତରେ ଅତି ଘନିଷ୍ଠ ଆତ୍ମୀୟତା ଥିଲେ ମଧ୍ୟ ସେ ଦୁଃଖଦ ବିୟୋଗ ମୋ ଜୀବନର ଏକ ଅଭୁଲା ସ୍ମୃତି ରୂପେ ଏବେ ମଧ୍ୟ ରହସ୍ୟମୟ ହୋଇ ରହିଛି । ଅଶୋକ ଭାଇନା, କୃଷ୍ଣ ଏବଂ ମୁଁ କେବଳ ଏକ ପ୍ରାଣ ନଥିଲୁ, ଆମର ଆତ୍ମୀୟତା, ରାଜନୈତିକ ଦର୍ଶନ ଥିଲା ଏକ ଓ ଅଭିନ୍ନ । ଅଶୋକ ଭାଇନା କଲିକତାରେ ସନ୍ତ୍ରାସବାଦୀ ଯୁବ ସଂଘ 'ଅନୁଶୀଳନ' ସହିତ ସଂପର୍କ ରଖିଥିଲେ । ସେଥିପାଇଁ ସେ କଲିକତାରେ ଏକାଦଶ ଶ୍ରେଣୀ ଛାତ୍ର ଭାବରେ ଅଧ୍ୟୟନ କରୁଥିବା ବେଳେ କଲିକତା ପୁଲିସ୍‌ର ଅମାନୁଷିକ ଅତ୍ୟାଚାରର ଶିକାର ହୋଇଥିଲେ । ପଣ୍ଡିତ ନୀଳକଣ୍ଠ ସେତେବେଳେ କେନ୍ଦ୍ର ବ୍ୟବସ୍ଥା ସଭାର ଜଣେ ଟାଣୁଆ କଂଗ୍ରେସ ସଦସ୍ୟ । ତାଙ୍କର ଘନିଷ୍ଠ ବନ୍ଧୁ ନରସିଂହ ଦୀକ୍ଷିତଙ୍କ କଲିକତା ବାସଭବନରେ ରହି ଅଶୋକ ଭାଇନା ମାଟ୍ରିକୁଲେସନ ପ୍ରଥମଶ୍ରେଣୀରେ ୧୯୩୧ ମସିହାରେ ଉତ୍ତୀର୍ଣ୍ଣ ହେଲେ । ସେ ରେଭେନ୍‌ସା କଲେଜରେ କଳାରେ ଆଇ.ଏ. ପ୍ରଥମ ବର୍ଷରେ ନାମ ଲେଖାଇଲେ । ସେତେବେଳକୁ ସେ ଆମର ରାଜନୈତିକ ଗୁରୁ ଓ ପରାମର୍ଶଦାତା । ଅତି ତୀକ୍ଷ୍ଣବୁଦ୍ଧି ସମ୍ପନ୍ନ ମେଧାବୀ ଯୁବକ । ଦକ୍ଷ ସଂଗଠକ ଭାବେ ଛାତ୍ର ମହଲରେ ଅତ୍ୟନ୍ତ ପ୍ରିୟ । ସ୍ୱର୍ଗତ ବିଜୁ ପଟ୍ଟନାୟକ ତାଙ୍କର ସହପାଠୀ ଓ ବନ୍ଧୁ । ବିଜୁ ପଟ୍ଟନାୟକ ଆଇ.ଏସ.ସି. ୨ୟ ବର୍ଷରେ ଦିଲ୍ଲୀ ଗଲେ ଉଡାଜାହାଜ ଚାଳନା ଶିକ୍ଷା ପାଇଁ । ଅଶୋକ ଭାଇନା ମଧ୍ୟ ବହୁ ସମୟରେ ଦିଲ୍ଲୀରେ ରହନ୍ତି ପଣ୍ଡିତ ନୀଳକଣ୍ଠଙ୍କ ସରକାରୀ ବାସଭବନରେ । ବିଜୁବାବୁ ତାଙ୍କୁ

ଉଡାଜାହାଜରେ ବସାଇ ଯମୁନା ନଦୀ ଉପରେ ଲୁପ କରି ଅଳ୍ପ ଉଚ୍ଚରେ ବିଚକ୍ଷଣତାର ସହିତ ଉଡାଜାହାଜ ଚଳାଉଥିଲେ । ପଣ୍ଡିତ ନୀଳକଣ୍ଠ କେଉଁଠାରୁ କ'ଣ ଶୁଣିଲେ କେଜାଣି ଏପରି ଉଡାଜାହାଜରେ ସାଙ୍ଗସାଥୀମାନଙ୍କ ସହିତ ବିଶେଷ କରି ଅନ୍ୟ କେନ୍ଦ୍ରୀୟ ବିଧାନସଭା (Central Legislative assembly) ସଦସ୍ୟମାନଙ୍କ ପୁତ୍ର କନ୍ୟାମାନଙ୍କ ସହିତ ଆକାଶରେ 'ପ୍ରମୋଦ ବିହାର'ର ପକ୍ଷପାତି ନଥିଲେ । କିନ୍ତୁ ସେ ସମୟରେ ବିଦ୍ରୋହୀ ଉନ୍ମାଦ ଯୁବକ ଅଶୋକ ନନା ନୀଳକଣ୍ଠଙ୍କର କଠୋର ନୈତିକତା ଓ ରକ୍ଷଣଶୀଳ ମନୋଭାବକୁ ପସନ୍ଦ କରୁନଥିଲେ । ସେହି ସମୟରୁ ବିଜୁ ପଟ୍ଟନାୟକଙ୍କର ସାହସ, ବିମାନ ଚାଳନାର ଦକ୍ଷତା ଆମ ଯୁବ ପ୍ରାଣକୁ ଆକର୍ଷଣ କରିଥିଲା ଓ କ୍ରମଶଃ ମୁଁ ବିଜୁ ବାବୁଙ୍କ ସହିତ ସଂପର୍କ ସ୍ଥାପନ କରିବାର ସୁଯୋଗ ଭାଇନାଙ୍କ ମାଧ୍ୟମରେ ପାଇ ପାରିଲି ଯାହାକି ଭବିଷ୍ୟତରେ ବ୍ୟକ୍ତିଗତ ଓ ରାଜନୈତିକ ଆତ୍ମୀୟତାରେ ପରିଣତ ହୋଇ ପରବର୍ତ୍ତୀ ଜୀବନର ମୋଡ ବଦଳାଇ ଦେଇଥିଲା ।

୧୯୩୪ ମସିହା । ମୁଁ ଦ୍ୱିତୀୟ ବର୍ଷ ବିଜ୍ଞାନ ଛାତ୍ର । ଭଲ କରି ପାଠ ପଢି କିପରି ମେଡିକାଲ ବା ଇଂଜିନିୟରିଂ କଲେଜରେ ଅଧ୍ୟୟନ କରିବାର ସୁଯୋଗ ପାଇବି ସେଥିପାଇଁ ଉଦ୍ୟମ କରୁଥାଏ । ସେତେବେଳକୁ ବିବୁଧେନ୍ଦ୍ର ମିଶ୍ର, ମନମୋହନ ମିଶ୍ର, ଉଦୟନାଥ ମିଶ୍ର, ରାମହରି ରଥ, ମୁକୁନ୍ଦ ମିଶ୍ର ପ୍ରଭୃତି ପୁରୀ ଜିଲ୍ଲା ସ୍କୁଲରେ ଅଧ୍ୟୟନ କରୁଥାଆନ୍ତି । ବିବୁଧେନ୍ଦ୍ର ମିଶ୍ରଙ୍କ ନନା ସ୍ୱର୍ଗତ ଗୋପୀନାଥ ମିଶ୍ର ଆମର ଏହି ଅବାଧ ମିଶ୍ରଣ ଓ ରାଜନୈତିକ କାର୍ଯ୍ୟକ୍ରମରେ କେବେ ହେଲେ ବାଧା ସୃଷ୍ଟି କରୁନଥାନ୍ତି । ତାଙ୍କର ଅନ୍ୟ ଦୁଇ ପୁଅ ସ୍ୱର୍ଗତ ସଚ୍ଚିଦାନନ୍ଦ ଓ ଶ୍ରୀ ବିବେକାନନ୍ଦ ମିଶ୍ର ରାଜନୀତି ସହିତ ସଂପର୍କ ନଥିଲେ ସୁଦ୍ଧା ଆମ ସହିତ ସଂପର୍କ ରଖୁଥାଆନ୍ତି । ସଚ୍ଚି କଲିକତାରେ ମାଟ୍ରିକ ପ୍ରଥମ ଶ୍ରେଣୀରେ ପାସ୍ କରି ବିଦ୍ୟାସାଗର କଲେଜରେ ଆଇ.ଏ. ପଢିବାର ସୁଯୋଗ ପାଇଲେ । ୧୯୩୪ ମସିହାରେ ବିହାରରେ ନାହିଁ ନଥିବା ଭୂମିକମ୍ପ । ହଜାର ହଜାର ଲୋକଙ୍କ ଶବ ସଂସ୍କାର, ଲକ୍ଷ ଲକ୍ଷ ବାସଶୂନ୍ୟ ହୋଇଥିବା ଲୋକଙ୍କ ପୁନର୍ବାସ ବ୍ୟବସ୍ଥା, ତଦ୍‌ଜନିତ ଖାଦ୍ୟ ଓ ସ୍ୱାସ୍ଥ୍ୟ ସମସ୍ୟା, ମହାମାରୀ ଯୋଗୁ ସମଗ୍ର ଦେଶ ଉଦ୍‌ବିଗ୍ନ । ଡକ୍ଟର ରାଜେନ୍ଦ୍ର ପ୍ରସାଦ (ପୂର୍ବତନ ରାଷ୍ଟ୍ରପତି)ଙ୍କ ସଭାପତିତ୍ୱରେ ବିହାର ରିଲିଫ କମିଟିକୁ ଦାନ ଦେବା ପାଇଁ ଓ ସ୍ୱେଚ୍ଛାସେବୀ କାମ ପାଇଁ ଗାନ୍ଧିଜୀଙ୍କ ନିବେଦନ, ବିହାର ରିଲିଫ ପାଣ୍ଠି ପାଇଁ ଅର୍ଥ ଓ ଖାଦ୍ୟ ଯୋଗାଡ ପାଇଁ କଟକର ଛାତ୍ରମାନଙ୍କୁ ସଂଗଠିତ କରିବା, ରାସ୍ତାରେ ଶୋଭାଯାତ୍ରା କରି ସାଧାରଣ ଲୋକଙ୍କ ଠାରୁ ଖାଇବା ଜିନିଷ (Biscuit, Loaf, Wheat, Rice) ସହ ଲୁଗା ବହୁ ପରିମାଣରେ ସଂଗ୍ରହ କରାଯାଇ ପାଟନା ପଠାଇବା ପାଇଁ ଓଡିଶାରେ ଗଠିତ ଭୂମିକମ୍ପ

ସାହାଯ୍ୟ କମିଟି, ସ୍ୱରାଜ ଆଶ୍ରମକୁ ଦାୟିତ୍ୱ ଦିଆଯାଇଥିଲା । ପ୍ରିନ୍ସିପାଲ୍ Mr. W.V. Davis, ଜଣେ Irish ସେତେବେଳେ ରେଭେନ୍ସା କଲେଜର ଅଧ୍ୟକ୍ଷ । ବଳଭଦ୍ର ପ୍ରସାଦ ପଶ୍ଚିମ ଛାତ୍ରାବାସର ୱାର୍ଡେନ ଥିଲେ । ଜୟ ପ୍ରକାଶ ନାରାୟଣ ଡଃ ବଳଭଦ୍ର ପ୍ରସାଦଙ୍କ ବ୍ୟକ୍ତିଗତ ବନ୍ଧୁ ଓ ସହପାଠୀ । ଜୟପ୍ରକାଶ କଂଗ୍ରେସ ସାମ୍ୟବାଦୀ ଦଳର ପ୍ରତିଷ୍ଠାତା କହିଲେ ଅତ୍ୟୁକ୍ତି ହେବ ନାହିଁ । କଟକରେ ସ୍ୱର୍ଗତ ନବକୃଷ୍ଣ ଚୌଧୁରୀ ଜୟପ୍ରକାଶଙ୍କ କଂଗ୍ରେସ ସାମ୍ୟବାଦୀ ଦଳର ଫାଉଣ୍ଡେସନ ସଭ୍ୟ ଭାବେ ଜୟପ୍ରକାଶଙ୍କ ବିଶ୍ୱସ୍ତ ସହଯୋଗୀ । ବିଶ୍ୱନାଥ ପଣ୍ଡିତ ଓ ଅନ୍ୟମାନେ ନବବାବୁଙ୍କର ଅତ୍ୟନ୍ତ ବିଶ୍ୱସ୍ତ । ଛାତ୍ରଭାବେ ଆମେ ସବୁ ସାମ୍ୟବାଦୀ ଚିନ୍ତାଧାରାର ବାହକ ଥିଲୁ ଓ ଜୟପ୍ରକାଶଙ୍କ ପ୍ରତି ଆମର ଗଭୀର ଶ୍ରଦ୍ଧା ଓ ସମ୍ମାନ ଥାଏ ।

ଦ୍ୱିତୀୟ ବର୍ଷର ବିଶ୍ୱବିଦ୍ୟାଳୟ ପରୀକ୍ଷା ପୂର୍ବରୁ ଯେଉଁ ଟର୍ମିନାଲ ପରୀକ୍ଷା ହୁଏ ତା'ର ପୂର୍ବଦିନ ପଶ୍ଚିମ ଛାତ୍ରାବାସ ସୁପରିଟେଣ୍ଡେଣ୍ଟ ମୋ ରୁମକୁ ଆସି କହିଲେ 'ଗଙ୍ଗାଧର ତୁମର ପିନ୍ଧିଥିବା ଲୁଗା ଓ ଜାମା ଛଡା, ବହିପତ୍ର, ଖାତାପତ୍ର, ବାକ୍ସ ସହିତ ସବୁ ମୋ ହଷ୍ଟେଲ ଉପର କ୍ୱାର୍ଟସ୍‌କୁ ତୁରନ୍ତ ନେଇ ଆସ । ପୋଲିସ ସର୍ଚ୍ଚ କରିବା ପାଇଁ ଆସୁଛନ୍ତି । ତୁମକୁ ହୁଏତ ଗିରଫ କରାଯାଇପାରେ ।' ଏହା କହି ମୋ ରୁମ୍‌ରେ ଥିବା ମୋର ଏକମାତ୍ର ଟ୍ରଙ୍କଟିକୁ ନିଜେ ନେଇଗଲେ ଓ ଛାତ୍ରାବାସର ଆଟେଣ୍ଡାଣ୍ଟମାନଙ୍କୁ ନିର୍ଦ୍ଦେଶ ଦେଲେ ଅନ୍ୟସବୁ ଆସବାବ ପତ୍ର ଓ ବହି ଖାତା ପ୍ରଭୃତି ତାଙ୍କ କ୍ୱାର୍ଟରେ ଭିତରକୁ ନେଇଯିବାକୁ । ଛାତ୍ରଙ୍କ ପ୍ରତି ଏପରି ଦରଦ ଏବେ କ୍ୱଚିତ ଦେଖାଯାଏ । ସେତେବେଳର ଜାତୀୟ ସଂଗ୍ରାମ ପ୍ରତି ମମତା ଓ ଛାତ୍ରଙ୍କ ଭବିଷ୍ୟତ ପ୍ରତି ଉଦ୍‌ବେଗ ସେମାନଙ୍କୁ ଶ୍ରଦ୍ଧା, ଭକ୍ତି ଓ ସମ୍ମାନର ଅଧିକାରୀ କରିପାରିଥିଲା ।

ମୁଁ ଓ ନାରାୟଣ ଚାନ୍ଦ କିଛି ବୁଝି ପାରିଲୁ ନାହିଁ । ନାରାୟଣ ଟିକିଏ ଡରିଯାଇ ମୋ ଠାରୁ ଖଣ୍ଡିଏ ଚାଦର ନେଇ ଅନ୍ୟ ଏକ ବଖରାରେ ଦୁଇ ତିନି ଦିନ କଟାଇବ ବୋଲି ମୋ ରୁମ୍‌ରୁ ବାହାରିଗଲା । ଦୁଇ ଘଣ୍ଟା ପରେ ଅଧ୍ୟାପକ ନାରାୟଣ ମିଶ୍ର ମତେ ଖୋଜି ତଳ ମହଲାକୁ ଯାଇ କାନରେ କହିଲେ 'ଡ୍ୟୁକ ସାହେବ ପୁଲିସ ସାହେବଙ୍କୁ ଫୋନ କରି ମୋ ରୁମ୍ ସର୍ଚ୍ଚ କରିବାକୁ ମନା କରି କହିଦେଲେ । ମୋ ଛାତ୍ରର ଆସନ୍ତାକାଲି ଠାରୁ ଟେଷ୍ଟ ପରୀକ୍ଷା, ତା ରୁମ୍ ସର୍ଚ୍ଚ କରି ତାକୁ ଗିରଫ କଲେ ତା'ର ଭବିଷ୍ୟତ ନଷ୍ଟ ହେବ । ପରୀକ୍ଷା ସରିଲେ ମୁଁ ଖବର ଦେବି । ସେତେଦିନ ପର୍ଯ୍ୟନ୍ତ ସେ ମୋ ତତ୍ତ୍ୱାବଧାନରେ ପରୀକ୍ଷା ଦେବ ।' ଡ୍ୟୁକ୍ ସାହେବଙ୍କ ଏପରି ମନୋବୃତ୍ତି ମତେ ଅବାକ୍ କରି ଦେଇଥିଲା । ପରବର୍ତ୍ତୀ ସମୟରେ ମୁଁ ଅନୁସଂଧାନ କରି ଖବର ପାଇଲି ଯେ, ସେ ଜଣେ ଆଇରିଶ । ତାଙ୍କ ଜନ୍ମମାଟି ଆର୍ୟାଲ୍ୟାଣ୍ଡ ସେତେବେଳେ ସ୍ୱାଧୀନତା ପାଇଁ ବ୍ରିଟେନ ବିରୁଦ୍ଧରେ ସଂଗ୍ରାମରତ । ସେଥିପାଇଁ ତାଙ୍କର ସେହି ଇଂଲଣ୍ଡ ବିରୋଧୀ

ମନୋଭାବ ହେଲା ମୋ ଘର ସର୍ଚ୍ଚ ନ ହେବାର ମୁଖ୍ୟ କାରଣ । ଏ ସମୟ ବେଳକୁ ହରି ଭାଇନା ହାଇକୋର୍ଟରେ ଓକିଲାତି କରୁଥାଆନ୍ତି ଓ ତାଙ୍କ ସଢୁ ଶ୍ରୀ ଲକ୍ଷ୍ମଣ ମିଶ୍ର (ଅବସରପ୍ରାପ୍ତ ଆଇ.ପି.ଏସ.) କଟକରେ ସର୍କଲ ଇନିସପେକ୍ଟର । ମୁଁ ଭାଇନାଙ୍କୁ ଖବର ପଠାଇବା ମାତ୍ରେ ସେ ଲକ୍ଷ୍ମଣ ମିଶ୍ରଙ୍କୁ ସବୁ କଥା କହିବାରେ ଲକ୍ଷ୍ମଣବାବୁ ନିଜେ ଅନୁସଂଧାନ ଦାୟିତ୍ୱ ନେଇ ପରେ ରିପୋର୍ଟ ଦେଲେ ଯେ କଲିକତା ପୁଲିସ୍ ଯେଉଁ ସନ୍ଦେହରେ ମତେ ଗିରଫ କରିବାକୁ ଯାଉଛନ୍ତି ତାହା ଭିତ୍ତିହୀନ । କଲିକତାରୁ ଆସିଥିବା ପୁଲିସ୍ ଏପରି ଭାବେ ଶୂନ୍ୟ ହସ୍ତରେ ଫେରିଗଲେ । ମୁଁ ଅନୁସଂଧାନ କରି ବୁଝିଲି ଯେ ବଙ୍ଗଦେଶରୁ ପୁରୀକୁ ଯେଉଁ କେତେକ ସନ୍ତ୍ରାସବାଦୀ ଆସୁଥିଲେ ସେଥିରୁ କେହି କେହି ଅଶୋକ ଭାଇନାଙ୍କ ସହିତ ପ୍ରତ୍ୟକ୍ଷ ସଂପର୍କ ରଖିଥିଲେ ଓ ଅଶୋକ ଭାଇନା ଏ ସଂପର୍କରେ କେତେକ ଚିଠି ଲେଖିଥିଲେ । ଖବର ପାଇ ସନ୍ତ୍ରାସବାଦୀଙ୍କ ସଂପର୍କ ସହିତ ତଥ୍ୟ ଓ ଚିଠି ଉଦ୍ଧାର କରି ମତେ ଓ ଅଶୋକ ଭାଇନାଙ୍କୁ ଷଡଯନ୍ତ୍ରରେ ବଙ୍ଗଳାର ସନ୍ତ୍ରାସବାଦୀଙ୍କ ସହିତ ଅଭିଯୁକ୍ତ କରିବା ପାଇଁ ଯେଉଁ ଚକ୍ରାନ୍ତ କରିଥିଲେ ତାହା ମୋ ରୁମ୍ ସର୍ଚ୍ଚର ଏକ ମୁଖ୍ୟ ଉଦ୍ଦେଶ୍ୟ । ଯାହା ହେଉ ରେଭେନ୍ସା କଲେଜର ସ୍ୱନାମଧନ୍ୟ ଅଧ୍ୟକ୍ଷ, ହରି ଭାଇନା ଓ ଲକ୍ଷ୍ମଣ ମିଶ୍ର ଓ ସର୍ବୋପରି ମୋର ଫିଜିକ୍ସ ଅଧ୍ୟାପକ ନାରାୟଣ ମିଶ୍ରଙ୍କ ମୋ ପ୍ରତି ଅତ୍ୟଧିକ ସ୍ନେହ ଓ ଆଶୀର୍ବାଦ ମତେ ଏପରି ଏକ ଅଭିଯୋଗରେ ଜଡ଼ିତ ହେବା ଓ ତା ପରବର୍ତ୍ତୀ ପରିଣାମରୁ ମୁକ୍ତି ପାଇବାର ସୁଯୋଗ ସୃଷ୍ଟି କରିଦେଲା । ଏହି ଘଟଣା ମତେ ରେଭେନ୍ସା ଛାତ୍ରମାନଙ୍କ ମଧ୍ୟରେ ବିଶେଷ ଆଦୃତ କରିଥିଲା । ମୁଁ ଜଣେ ସନ୍ତ୍ରାସବାଦୀ ବୋଲି କେତେକ ଅବିହିତ କରିଥିଲେ । ଅଶୋକ ଭାଇନା ମଧ୍ୟ ଆଉ ଅଭିଯୁକ୍ତ ହୋଇପାରିନଥିଲେ । ଏ ପରିପ୍ରେକ୍ଷୀରେ ମୁଁ ଆଇ.ଏସ୍.ସି. ପରୀକ୍ଷା ଦେଇ ଦ୍ୱିତୀୟ ଶ୍ରେଣୀରେ ପାଶ୍ କଲେ ମଧ୍ୟ ଶତକଡା ୫୮% ମାର୍କ ରଖିପାରିଥିଲି । ଏହା ପରେ ଜୀବନରେ ମୋର ଆଉ ଗୋଟିଏ ନୂତନ ଅଧ୍ୟାୟ ଆରମ୍ଭ ହେଲା ।

ମୁଁ ଆଇ.ଏସ.ସି.ରେ ଉତ୍ତୀର୍ଣ୍ଣ ହେବା ପରେ ପାଟନା ମେଡିକାଲ କଲେଜ ଓ ବାରାଣାସୀ ଇଞ୍ଜିନିୟରିଂ କଲେଜରେ ନାମ ଲେଖାଇବା ପାଇଁ ଫର୍ମ ପୂରଣ କରି ପଠାଇଲି । ଉଭୟ ଅନୁଷ୍ଠାନରେ ମୋର ନାମ ଲେଖାଇବା ପାଇଁ ପତ୍ର ମିଳିଲା । ଏହି ସମୟରେ ଭାଗ୍ୟର ବିପର୍ଯ୍ୟୟ ଘଟିଲା । ମୋର ଶଶୁର ବହୁମୂତ୍ର ରୋଗୀ । ତାଙ୍କର ଶରୀର ସେତେବେଳେ ଭୟଙ୍କର ଅସୁସ୍ଥ ହେଲା । ତାଙ୍କ ଜଙ୍ଘରେ ଏକ ବାଗି ପଡି ଶେଷରେ ଅସ୍ତ୍ରୋପଚାର ଘଟିଲା ଏବଂ ସେ ମରଣାନ୍ତକ ଅବସ୍ଥାରେ ଶଯ୍ୟାଶାୟୀ ହୋଇପଡିଲେ । ଭୁବନେଶ୍ୱରରେ ଲିଙ୍ଗରାଜ ମନ୍ଦିର ନିକଟସ୍ଥ ଗୋଟିଏ ଭଡ଼ା ଘରେ ସେ ରହୁଥାଆନ୍ତି । ମୋର ଶାଶୁ ଓ ଗଙ୍ଗାଧର ଚୌଧୁରୀ (ଯାହାଙ୍କ ଜନ୍ମିତ କନ୍ୟାଙ୍କୁ

ମୁଁ ବିବାହ କରିଥିଲି) ସେ ମଧ୍ୟ ତାଙ୍କ ଚିକିତ୍ସା ଦାୟିତ୍ୱରେ ସେଠାରେ ଥାଆନ୍ତି । ଯେତେବେଳେ ତାଙ୍କୁ ମୁଁ ପାଟନା ବା ବାରାଣସୀ ଯିବା କଥା କହି କଲେଜମାନଙ୍କଠାରୁ ଆସିଥିବା ପତ୍ର ଦେଖାଇଲି, ଗଙ୍ଗାଧର ଚୌଧୁରୀ କହି ଉଠିଲେ 'ଭାଇନାଙ୍କର ଏପରି ଚରମ ଦୁର୍ଦ୍ଦଶା ବେଳେ ତୁମେ ତାଙ୍କୁ ଛାଡି ପାଟନା ବା ବାରାଣସୀ ଯିବା ଉଚିତ ନୁହେଁ । ତୁମ ଛଡା ତାଙ୍କର ଆଉ କେହି ନାହିଁ । ତୁମେ ପୁଅ ଓ ଜ୍ୱାଇଁ । କିନ୍ତୁ ଭାଇନାଙ୍କ ଅବସ୍ଥା ପରିବର୍ତ୍ତନ ହେଲେ ଏବଂ ତୁମେ ସ୍ନାତକ ହେବା ପରେ ତୁମକୁ ଲଣ୍ଡନ ପଠାଯିବ ବାରିଷ୍ଟର ଟ୍ରେନିଂ ପାଇଁ । ସେଥିପାଇଁ ମେଡିକାଲ ଇଂଜିନିୟରିଂ ପାଠ ନ ପଢି ରେଭେନ୍ସା କଲେଜରେ ସ୍ନାତକ ଶ୍ରେଣୀରେ ନାମ ଲେଖାଇ ଏହିଠାରେ ରହ ।' ଏହା ଶୁଣି ମୋର ଭବିଷ୍ୟତରେ ଡାକ୍ତର ବା ଇଂଜିନିୟର ହେବାର ସ୍ୱପ୍ନ ଧୂଳିସାତ ହେଲା । ଓଡିଶାରେ ସେଥିପାଇଁ ସେତେବେଳେ କୌଣସି ସୁବିଧା ନଥାଏ । କେବଳ କଟକରେ ଏକ ମେଡିକାଲ ସ୍କୁଲ ଓ ଇଂଜିନିୟରିଂ ସ୍କୁଲ୍ ଥାଏ । ମୋର ଏପରି ସ୍କୁଲରେ ପଢିବାର ଇଚ୍ଛା ନଥିଲା । ନନାଙ୍କର ବୟସ ସେତେବେଳକୁ ୭୫ ବର୍ଷ । ତାଙ୍କର ଆର୍ଥିକ ଅବସ୍ଥା ଅତ୍ୟନ୍ତ ଶୋଚନୀୟ । ସେ ମଧ ଶେଷକୁ ମତେ ବାହାରକୁ ଯିବା ପାଇଁ ମନା କଲେ । ଅଗତ୍ୟା ରେଭେନ୍ସା କଲେଜରେ ସ୍ନାତକ ଉପାଧୀ ନେବାପାଇଁ ନାମ ଲେଖାଇଲି ଓ ପୂର୍ବପରି ପଶ୍ଚିମ ଛାତ୍ରାବାସରେ ରହିଲି । ଅର୍ଥନୀତିରେ ସମ୍ମାନ ଓ ଗଣିତଶାସ୍ତ୍ର (Economics with Hons. and Mathematics) ମୋର ଥିଲା ସ୍ନାତକ ବେଳର ବିଷୟବସ୍ତୁ । କିନ୍ତୁ ଅନିଶ୍ଚିତ ଭବିଷ୍ୟତ ନେଇ ମନରେ ବିଶେଷ ଉଦବେଗ ଥାଏ । ମୋର ଜୀବନର ଗତି ବଦଳିଲା ସ୍ନାତକ ବେଳେ । କଲେଜରେ ପୁଣି ଛାତ୍ର ସଂଗଠନ କାର୍ଯ୍ୟ କରି ପ୍ରତିଷ୍ଠା ପାଇବା ପାଇଁ ମନ ବଳାଇଲି ।

ଏହି ସମୟରେ (୧୯୩୨ରୁ ୧୯୩୪) ଉତ୍କଳ ସମ୍ମିଳନୀ ମଣ୍ଡପରୁ ସ୍ୱତନ୍ତ୍ର ଓଡିଶା ପାଇଁ ଆନ୍ଦୋଳନ ଜୋରଦାର ହେଉଥାଏ । ବ୍ରହ୍ମପୁରରୁ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ ଶଶୀ ଭୂଷଣ ରଥ, ଲିଙ୍ଗରାଜ ପାଣିଗ୍ରାହୀ, ମଧୁସୂଦନ ପାଣିଗ୍ରାହୀ ଓ ଦିବାକର ପଟ୍ଟନାୟକ । ୧୯୩୨ରୁ ୧୯୩୪ ମଧ୍ୟରେ ଭାରତବର୍ଷରେ ସତ୍ୟାଗ୍ରହ ଆନ୍ଦୋଳନ ତୀବ୍ର ଆକାର ଧାରଣ କରିଥାଏ । ୧୯୩୪ ମାର୍ଚ୍ଚ ସୁଦ୍ଧା ସମଗ୍ର ଦେଶରେ ଏକ ଲକ୍ଷ କୋଡିଏ ହଜାର ସତ୍ୟାଗ୍ରହୀ ଗିରଫ ହୋଇ ଜେଲଭରି ଯାଇଥିଲେ । ପୁଲିସ୍ ଅତ୍ୟାଚାର ଚରମ ସୀମାରେ ପହଞ୍ଚିଥାଏ । ସତ୍ୟାଗ୍ରହୀମାନଙ୍କର ସମ୍ପତ୍ତି ବ୍ୟାଜାପ୍ତି, ସମୂହ ଜୋରିମାନା, ନିର୍ମମ ଲାଠିମାଡ, ଗୁଳିଚାଳନା ଫଳରେ ଲକ୍ଷ ଲକ୍ଷ ଲୋକ କ୍ଷତିଗ୍ରସ୍ତ ହୋଇଥାଆନ୍ତି । ସମଗ୍ର ଭାରତ ଏକ ରଣାଙ୍ଗନରେ ପରିଣତ ହୋଇଥାଏ । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କର ୧୯୨୮ରେ ଦେହାନ୍ତ ପରେ ଓଡିଶାରେ ସତ୍ୟାଗ୍ରହ ଆନ୍ଦୋଳନର ନେତୃତ୍ୱ ନେଇଥାନ୍ତି ପଣ୍ଡିତ ନୀଳକଣ୍ଠ,

ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ମା ରମା ଦେବୀ, ସ୍ୱର୍ଗତ ନନ୍ଦକିଶୋର ଦାସ, ଡକ୍ଟର ହରେକୃଷ୍ଣ ମହତାବ, ଦିବାକର ପଟ୍ଟନାୟକ, ରାଧାକୃଷ୍ଣ ବିଶ୍ୱାସରାୟ, ରାଧାମୋହନ ସାହୁ, ଶ୍ରୀମତୀ ସରଳା ଦେବୀ, ଆଚାର୍ଯ୍ୟ ହରିହର, ଶ୍ରୀ ରାଜକୃଷ୍ଣ ବୋଷ, ଯଦୁମଣି ମଙ୍ଗରାଜ, ଭଗବତୀ ଚରଣ ପାଣିଗ୍ରାହୀ, ପଣ୍ଡିତ ଲକ୍ଷ୍ମୀ ନାରାୟଣ ମିଶ୍ର ପ୍ରମୁଖ ନେତୃବର୍ଗ । ଆମେ ରେଭେନ୍ସା କଲେଜରେ ଧର୍ମଘଟ, ଶୋଭାଯାତ୍ରା, ଛାତ୍ରସମାଜ ମଧ୍ୟରେ ସଚେତନତା ସୃଷ୍ଟି କରିବା ସହିତ ବିଦେଶୀ ବସ୍ତ୍ର ବର୍ଜନ ଓ ବିଦେଶୀ କପଡା ପୋଡି ପ୍ରଭୃତି କାର୍ଯ୍ୟରେ ଲାଗିପଡି ଥାଉ । ସେତେବେଳକୁ ଛାତ୍ରସଂଘ ଓଡିଶାରେ ପ୍ରତିଷ୍ଠା ହୋଇନଥାଏ । ମହତାବ ବାବୁ କେବଳ ଛାତ୍ର ଓ ଯୁବକମାନଙ୍କର ପ୍ରେରଣାର ଉତ୍ସ ହୋଇଥାଆନ୍ତି । ରେଭେନ୍ସା କଲେଜରୁ ଛାତ୍ର ନେତା ଭାବେ ସେ ପ୍ରଥମ ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗ ଦେଇ ରାଜ୍ୟରେ ଯୁବଶକ୍ତିର ସର୍ବୋଚ୍ଚ ପ୍ରେରଣାଦାୟକ ସଂଗଠକ, ସବୁଠାରୁ ଅଧିକ ସମ୍ମାନୀତ ନେତା । ସମାଜ କାଗଜ ଛଡା ଅନ୍ୟ କୌଣସି ଦୈନିକ କାଗଜ ନିୟମିତ ଭାବେ ପ୍ରକାଶ ପାଉନଥାଏ । ସମାଜ, ବ୍ରିଟିଶ ଓଡିଶାର ସତ୍ୟାଗ୍ରହ ଆନ୍ଦୋଳନର ଓ ଓଡିଆ ଗଡଜାତ ଆନ୍ଦୋଳନର ମୁଖପାତ୍ର ଭାବରେ ଗାଁ ଗହଳରେ ସତ୍ୟାଗ୍ରହର ବାର୍ତ୍ତା ପହଞ୍ଚାଉଥାଏ । ହାତଲେଖା ବୁଲେଟିନ୍‌ମାନ ଗାଁକୁ ଗାଁ ଆନ୍ଦୋଳନର ଉତ୍ତେଜନା ସୃଷ୍ଟି କରିବାର ଅନ୍ୟ ଏକ ମାଧ୍ୟମ ଥାଏ ।

୧୯୩୨ ମସିହା ସେପ୍ଟେମ୍ବର ମାସରେ ଗାନ୍ଧିଜୀ ପ୍ରଥମେ ଆମରଣ ଅନଶନ ଆରମ୍ଭ କରିଥିଲେ । ଦ୍ୱିତୀୟ ଗୋଲ୍‌ଟେବୁଲ ବୈଠକରୁ ଫେରି ପ୍ରମୁଖ ହରିଜନମାନଙ୍କୁ ଏକ ସ୍ୱତନ୍ତ୍ର ଶ୍ରେଣୀଭୁକ୍ତ କରି ହିନ୍ଦୁ ଧର୍ମାବଲମ୍ବୀମାନଙ୍କ ଭିତରେ ବିଭେଦ ସୃଷ୍ଟି କରାଯାଉଥିବା ଦୃଷ୍ଟିରୁ ନିର୍ବାଚନରେ ସେମାନଙ୍କ ପାଇଁ ସ୍ୱତନ୍ତ୍ର ରିପ୍ରେଜେଣ୍ଟେସନ୍ ଅଧିକାର ଦେବା ପାଇଁ ତତ୍‌କାଳୀନ ବ୍ରିଟିଶ ପ୍ରଧାନମନ୍ତ୍ରୀ ରାମ୍‌ସେ ମାକଡୋନାଲଙ୍କ ଏହା ଥିଲା ଏକ ଷଡଯନ୍ତ୍ର । ୧୯୩୩ ମସିହାରେ ଗାନ୍ଧିଜୀ ପୁଣିଥରେ ଆମରଣ ଅନଶନ କରିଥିଲେ । ଦେଶରେ ହିଂସାକାଣ୍ଡ, ହରିଜନମାନଙ୍କ ଉପରେ ଅତ୍ୟାଚାର ବିରୁଦ୍ଧରେ ଶେଷରେ ଅଗଷ୍ଟ ୧୯୩୩ରେ ପାଟନାଠାରେ କଂଗ୍ରେସ ଅଧିବେଶନ ହୋଇଥିଲା ।

ସତ୍ୟାଗ୍ରହ ଆନ୍ଦୋଳନ ପ୍ରତ୍ୟାହୃତ ହୋଇ, ବ୍ୟକ୍ତିଗତ ସତ୍ୟାଗ୍ରହ ପାଇଁ ଗାନ୍ଧିଜୀ ନିଜେ ଆଇନ ଅମାନ୍ୟ କରି ଗିରଫ ହେଲେ ଓ ଗାନ୍ଧିଜୀଙ୍କୁ ଏକ ବର୍ଷ ଜେଲ୍ ଆଦେଶ ହେଲା । ତା ବିରୁଦ୍ଧରେ ସମଗ୍ର ଦେଶରେ ପୁନର୍ବାର ଜନ ଜାଗରଣ, ଗିରଫଦାରୀ ଚାଲିଲା । ସମଗ୍ର ଦେଶ ୧୯୩୪ ବେଳକୁ ଏକ ଆଗ୍ନେୟଗିରି ରୂପେ ପରିଣତ ହୋଇଥାଏ ।

ରେଭେନ୍‌ସା କଲେଜରେ ସ୍ନାତକ ଛାତ୍ର ଥିବା ଅବସ୍ଥାରେ ଛାତ୍ରମାନଙ୍କ ଭିତରେ କାମ କରିବାର ଅନେକ ସୁଯୋଗ ମିଳିଲା । କଲେଜରେ ଛାତ୍ର ଇଉନିୟନ ପାଇଁ ଆନ୍ଦୋଳନ କରିବା, ହଷ୍ଟେଲ ଇଉନିୟନ କରି ନିର୍ବାଚନ କରାଇବା ଓ ଅନ୍ୟାନ୍ୟ କଲେଜ୍‌ରେ ଛାତ୍ର ଇଉନିୟନ ପ୍ରତିଷ୍ଠା କରିବା ପାଇଁ ଆନ୍ଦୋଳନ । ବିଭିନ୍ନ ଦାବି କରି ସଭା ସମିତି, ଆନ୍ଦୋଳନ, ଶୋଭାଯାତ୍ରା ପ୍ରଭୃତି କାର୍ଯ୍ୟକ୍ରମ, ରାଜନୈତିକ ନେତା ବିଶେଷ କରି ବିଶିଷ୍ଟ ସମାଜବାଦୀ ନେତୃବୃନ୍ଦଙ୍କୁ କଲେଜକୁ ଡାକି, ସ୍ୱାଧୀନତା ତଥା ଦେଶର ବିଭିନ୍ନ ପ୍ରୋବ୍ଲେମ ଉପରେ ଏବଂ ଦେଶର ସ୍ୱାଧୀନତା ଆନ୍ଦୋଳନ ପାଇଁ କଲେଜ ଛାତ୍ରମାନଙ୍କ ମଧ୍ୟରେ ଏକ ଉତ୍ତେଜନା-ପ୍ରବଣ ଅବସ୍ଥା ସୃଷ୍ଟି କରିବାରେ ବିଶେଷ ସମୟ ଅତିବାହିତ ହେଉଥାଏ । ସେତେବେଳକୁ ସ୍ୱର୍ଗତ ଜୟପ୍ରକାଶ ନାରାୟଣଙ୍କ ନେତୃତ୍ୱରେ କଂଗ୍ରେସ ସମାଜବାଦୀ ଗୋଷ୍ଠୀର ସୂତ୍ରପାତ ଆରମ୍ଭ ହୁଏ । ଏମ୍.ଆର. ମାସାଣି, ଶ୍ରୀମତୀ କମଳା ଦେବୀ ଚଟ୍ଟୋପାଧ୍ୟାୟ, ଆଚାର୍ଯ୍ୟ ନରେନ୍ଦ୍ର ଦେବ ପ୍ରଭୃତି ପଣ୍ଡିତ ନେହେରୁ ଓ ସୁବାଷ ଚନ୍ଦ୍ର ବୋଷଙ୍କ ନେତୃତ୍ୱରେ କଂଗ୍ରେସ ଭିତରେ ଏକ ପ୍ରଗତିଶୀଳ ଗୋଷ୍ଠୀ (Progressive Socialist) ଗଠନ କରୁଥାଆନ୍ତି । କମ୍ୟୁନିଷ୍ଟ ମତବାଦୀ ନେତାମାନେ ମଧ୍ୟ ଏମାନଙ୍କ ସହିତ ସଂପୂର୍ଣ୍ଣ ସହଯୋଗ କରୁଥିଲେ । ଓଡିଶାରେ ଉତ୍କଳ ସମ୍ମିଳନୀ ମଞ୍ଚ ସ୍ୱତନ୍ତ୍ର ଓଡିଶା ଦାବିରେ ସର୍ବଦଳୀୟ ପୀଠ ରୂପେ କାର୍ଯ୍ୟ କରୁଥାଏ । କଂଗ୍ରେସ ନେତୃବୃନ୍ଦଙ୍କ ଏଥିରେ ସହଯୋଗ ଥିଲେ ମଧ୍ୟ ଜାତୀୟ ସ୍ରୋତରେ ସେମାନେ ଅଧିକ ସକ୍ରୀୟ ଥିଲେ । କିନ୍ତୁ ଗଂଜାମ, କୋରାପୁଟ ଓ ମାନ୍ଦ୍ରାସ, ମଧ୍ୟପ୍ରଦେଶ ଓ ବିହାର ଓ ପଶ୍ଚିମବଙ୍ଗରେ ଥିବା ଓଡିଆ ଭାଷାଭାଷୀ ଅଞ୍ଚଳରେ ଉତ୍କଳ ସମ୍ମିଳନୀ ନେତାମାନେ ଜୋର ସୋର ଆନ୍ଦୋଳନ କରୁଥିଲେ । ମୁଁ ମଧ୍ୟ ଉପାନ୍ତ ଅଞ୍ଚଳରେ ଉତ୍କଳ ସମ୍ମିଳନୀର ବହୁ ସଭା ମଞ୍ଚରେ ଯୋଗ ଦିଏ । ଏହିପରି ଭାବରେ ଦୁଇ ବର୍ଷ କଟିଗଲା । ମୁଁ ୧୯୩୬ ମସିହାରେ ରେଭେନ୍ସା କଲେଜରୁ ସ୍ନାତକ ଉପାଧୀ ପାଇବା ପାଇଁ ଯୋଗ୍ୟ ବିବେଚିତ ହେଲି ।

ଏହି ସମୟରେ ହୁଏ ମୋର ଜୀବନର ଦ୍ୱିତୀୟ ଥର ପାଇଁ ଦୁର୍ଯ୍ୟୋଗର ସମୟ ଯାହାକି ମୋ ଜୀବନକୁ ଏକ ଭିନ୍ନ ମୋଡ ଦେଲା । ମୁଁ ଏକ ନୂତନ ଜୀବନ ସଂଗ୍ରାମ ଆରମ୍ଭ କରିବାର ଶପଥ ନେଇ ଓଡିଶା ଛାଡିଲି । ୧୯୩୬ ମସିହାରେ ରେଭେନ୍‌ସା କଲେଜ୍‌ରୁ ସ୍ନାତକ ଡିଗ୍ରୀ ହାସଲ କଲି । ମୋର ବି.ଏ.ରେ ଅର୍ଥନୀତି ଅନର୍ସ ଥିଲା । ମନ ଖୁସିରେ ଲଣ୍ଡନ ଯିବି ଲଣ୍ଡନ ଯିବି 'ବାର୍ ଆଟ୍ ଲ' ହୋଇ ଫେରି ହାଇକୋର୍ଟରେ ଆଇନ ବ୍ୟବସାୟ କରିବି ଓ ତା ସହିତ ସାଧାରଣ କ୍ଷେତ୍ରରେ ବ୍ୟାପକ ଭାବରେ ନିଜକୁ ନିୟୋଜିତ କରିବାର ସୁଯୋଗ ମଧ୍ୟ ପାଇବି । ବିଧାତାର କିନ୍ତୁ ବିଧାନ

ଥିଲଗା । ମୋର ଧର୍ମପତ୍ନୀ ଶ୍ରୀମତି ରୁକ୍ମିଣୀ ଦେବୀ ଯାହାଙ୍କୁ ୧୦ ବର୍ଷ ବୟସରେ ମୁଁ ବିବାହ କରିଥିଲି ମୋର ୧୭ ବର୍ଷ ସମୟରେ ମୁଁ ମାଟ୍ରିକ ପାଶ୍ ପରେ, ସେ ୧୪ ବର୍ଷ ବୟସରେ ଆମ ଘରକୁ ଆସିଥିଲେ । ମୁଁ ଗୃହସ୍ଥ ହୋଇ ପଡିବାର ସୁଯୋଗ ଆସିଲା । କିନ୍ତୁ ମୁଁ ମୋର ଶଶୁର ରାଧାଶ୍ୟାମ ଚୌଧୁରୀଙ୍କୁ ଅନୁରୋଧ କରି ମୋ ଲଣ୍ଡନ ଯାତ୍ରା ପରେ ମୋ ସ୍ତ୍ରୀଙ୍କୁ ତାଙ୍କ ଘରକୁ ନେବା ପାଇଁ ଅନୁରୋଧ କରିବା ପାଇଁ ସ୍ଥିର କଲି । କାରଣ ମୋ ନନାଙ୍କ ଆୟ ସୀମିତ, ସେ ଧନୀ ଘରର ଝିଅ । ମୁଁ ରହିବି ଅନୁପସ୍ଥିତ ବହୁ ଦୂର ଦେଶରେ ମୋର ବାରିଷ୍ଟର ସ୍ୱପ୍ନକୁ ସାର୍ଥକ କରିବା ପାଇଁ । ମୋ ସ୍ତ୍ରୀଙ୍କ ଚଳିବାରେ ଅସୁବିଧା ହୋଇପାରେ । ପୁଣି ଆମ ଘରଟି ଚଳିବା ପାଇଁ ବିଶେଷ ବଡ ହୋଇ ନଥାଏ । ମୋ ଶଶୁର ଖଣ୍ଡିଏ ଜାଗା ପୁରୀ ସୁଆର ସାହିରେ ଆମ ପାଇଁ ଖରିଦ କରି ଦେଇଥାଆନ୍ତି । ସେଇଟି କେବଳ ଏକ ଭଗ୍ନ ଘରର ମାଟିସ୍ତୂପ । ସାପ ଥାଆନ୍ତି । ତାକୁ ସଫା କରି ଏକ ପାଇଖାନା ଓ ଗୋଟିଏ ଶୋଇବା ଘର ମୋ ଶଶୁର କରି ଦେଇଥାଆନ୍ତି ମୁଁ ଓ ମୋ ସ୍ତ୍ରୀଙ୍କ ଚଳିବା ପାଇଁ । ଅନ୍ୟ ସବୁ ସୁବିଧା ନଥାଏ । ମୁଁ ଭିଙ୍ଗାରପୁର ଯିବାରେ ଦେଖିଲି ମୋର ଶଶୁର ପୁଣି ଶଯ୍ୟାଶାୟୀ । ଉଠିବାର ଶକ୍ତି ନାହିଁ । ପଚାରି ବୁଝିଲି ତାଙ୍କର ପୁନର୍ବାର ବହୁମୂତ୍ର ରୋଗର ଆବିର୍ଭାବ । ଜ୍ୱର, ରକ୍ତଚାପ ଓ ଅଚଳ ଅବସ୍ଥା । ଯେପରି ସେ ଘାଟିରୁ ଉଦ୍ଧାର ହେବାର ସମ୍ଭାବନା କମ୍ । ତାଙ୍କର ସେବା କରିବା ପାଇଁ ତାଙ୍କ ସାନ ଭାଇ ଚୌଧୁରୀ ଗଙ୍ଗାଧର ଦାଶ ଡାକ୍ତର ବ୍ୟବସ୍ଥାରେ ବ୍ୟସ୍ତ । ମୋ ଶଶୁର ଚୌଧୁରୀ ରାଧାଶ୍ୟାମ ଦାଶ କଥାବାର୍ତ୍ତା କରିବା ସମ୍ଭବପର ହେଉନାହିଁ । ଏ ଦୃଶ୍ୟ ଦେଖି ମୋର ପାସ୍‌ପୋର୍ଟ, ଭିସା ଓ ଲଣ୍ଡନ ଯାତ୍ରା ପାଇଁ ଆର୍ଥିକ ବ୍ୟବସ୍ଥା କରିବା ପାଇଁ ଭିଙ୍ଗାରପୁର ଆସିବାର ଉଦ୍ଦେଶ୍ୟ ସଂପୂର୍ଣ୍ଣ ପଣ୍ଡ ହୋଇଯିବ ବୋଲି ମୁଁ ଘୋର ଚିନ୍ତାରେ ପଡି ତାଙ୍କର ଚିକିତ୍ସାରେ ସହାୟତା ବ୍ୟବସ୍ଥାରେ ସହଯୋଗ କରିବା ଛଡା ଅନ୍ୟ ଉପାୟ ନଥିଲା ।

ଶଶୁରଙ୍କୁ ଭୁବନେଶ୍ୱରକୁ ଅଣାଗଲା କାରଣ ଭିଙ୍ଗାରପୁର ଡାକ୍ତର ଚିକିତ୍ସା କରିବାର ସାହସ କରିପାରିଲେ ନାହିଁ । ଦରକାର ପଡିଲେ କଟକ ନିଆଯାଇପାରେ ବୋଲି ସ୍ଥାନୀୟ ଡାକ୍ତର କହିଲେ । ଶଶୁରଙ୍କୁ ଭୁବନେଶ୍ୱର ଅଣା ହେବାର ତିନି ଚାରି ଦିନ ଚିକିତ୍ସା ପରେ ସେ ମୋ ସ୍ତ୍ରୀଙ୍କୁ ନିକଟକୁ ନେଇ ଆସିବା ପାଇଁ କହିଲେ । କାରଣ ସେ ନିଃସନ୍ତାନ । ମୋ ସ୍ତ୍ରୀଙ୍କୁ ସେ ଝିଅ କରି ପାଳିଥାଆନ୍ତି । ମୋ ଶାଶୁ ଅତ୍ୟନ୍ତ ସ୍ନେହୀ । ଝିଅକୁ ଅତ୍ୟଧିକ ସ୍ନେହ ଓ ଆଦର କରି ୭ମ ଶ୍ରେଣୀ ପର୍ଯ୍ୟନ୍ତ ପଢାଇ ପରେ ଆଉ ପଢିବା ଉଚିତ ନୁହେଁ ବୋଲି ତାଙ୍କର ସେତେବେଳର ପାରମ୍ପରିକ ଚିନ୍ତା । ବଡ ଲୋକ ଝିଅ 'ବଢିଲା' (Maturity) ହେଲେ କେହି ବାହାର ପୁରୁଷ ଦେଖିବେ ନାହିଁ, ଘର ବାହାରକୁ ଯିବା ଆସିବା ବନ୍ଦ । ଏ ସବୁ ଦୃଷ୍ଟିରୁ ତାଙ୍କର ପଢା ସପ୍ତମ ଶ୍ରେଣୀ

ଠାରୁ ଜୋରି ବନ୍ଧା ହୋଇଥାଏ । ଘରକରଣା, ରୋଷାଇବାସ, ଶାଶୂ ଶଶୁର ଓ ଘରର ଅନ୍ୟମାନଙ୍କ ସହିତ ମନ ଦେଇ କିପରି ଚଳିବ, ଘର କାମ ଓ ନିଜର ଦୈନନ୍ଦିନ କାମ ସହ ଓଡଣା ଦେଇ ଚାଲିବ । ସବୁ ଦିନ ସକାଳୁ ଶାଶୁ, ଶଶୁରଙ୍କୁ ମୁଣ୍ଡିଆ ମାରିବ, ପ୍ରଥମ କାର୍ଯ୍ୟ ଗାଧୋଇ ସାରିଲା ପରେ ଦିଅଁଙ୍କ ଘରେ ଠାକୁରଙ୍କୁ ମୁଣ୍ଡିଆ । ରୋଷେଇ ଘରେ ଖାଦ୍ୟ ପ୍ରସ୍ତୁତ କରିବା ଶାଶୁ ଓ ନଣନ୍ଦଙ୍କ ସହ ମିଶି । ମୁଁ ଅପେକ୍ଷା କଲି ! ମୋ ନନା ବୋହୂକୁ ଧରି ଭୁବନେଶ୍ୱର ଆସିଲେ ଶଶୁରଙ୍କୁ ଦେଖିବା ପାଇଁ । ନେହୁରା ଧରି ସେଠାରେ ଦିନେ ଓଳିଏ ରହିବା ପରେ ଚୌଧୁରୀ ଗଙ୍ଗାଧର ଦାଶ ଯେକି ତତ୍‌କାଳୀନ ନାମଯାଦା ଜମିଦାର ଓ ପ୍ରତିଷ୍ଠିତ ବ୍ୟକ୍ତି, ନନାଙ୍କୁ ପ୍ରସ୍ତାବ ଦେଲେ 'ଭାଇନାଙ୍କ ଅବସ୍ଥା ଏପରି ଏଥିରେ କ୍ୱାଇଁ କ'ଣ ଲଣ୍ଡନ ଯିବା ପାଇଁ ବାହାରିଛନ୍ତି । ଲଣ୍ଡନ ନ ଯାଇ ଏଠାରେ କ'ଣ ଓକିଲାତି ପଢିଲେ ହେବ ନାହିଁ ? ଆମେ ତ ଘର କିଣି ଦେଇଛୁ, ସେ ଘରେ ଆଉ ଟଙ୍କା ଦେଇ ଆଉ ଦୁଇ ବଖରା ଘର ତିଆରି କରିଦେବୁ । ଓକିଲାତି କରିବା ପାଇଁ ଅର୍ଥ ଯୋଗାଇ ଦେବୁ । ଆଇନ ବ୍ୟବସାୟ ପାଇଁ ବହିପତ୍ର କିଣାଇଦେବୁ ଏବଂ ସେ ଆଇନ ବ୍ୟବସାୟରେ ଆତ୍ମନିର୍ଭରଶୀଳ ହେବା ପର୍ଯ୍ୟନ୍ତ ପ୍ରତି ମାସରେ ଘର ଖର୍ଚ୍ଚ ପାଇଁ ଆର୍ଥିକ ସହାୟତା ଦେବୁ ।' ଏହା କହି ସ୍ୱର୍ଗତ ରାମଚନ୍ଦ୍ର ଦାସ (ପଣ୍ଡିତ ଗୋପବନ୍ଧୁଙ୍କ ଗୁରୁ) ଯାହାଙ୍କ ପାଖେ ମୋ ନନା ମୋହରୀର କାମ କରୁଥିଲେ ତାଙ୍କ ଉଦାହରଣ ଦେଲେ । କଳେଇ ପୁଅ ଭାଇ ସ୍ୱର୍ଗତ ହରିହର ମହାପାତ୍ର କିପରି କଟକରେ ଓକିଲାତି ଆରମ୍ଭ କରିଛନ୍ତି ଓ ଭଲ ରୋଜଗାର କଲେଣି ତାଙ୍କର ଉଦାହରଣ ଦେଇ ହରି ଭାଇନାଙ୍କ ଅଫିସ୍‌ରେ ମୁଁ 'ଲ' ଡିଗ୍ରୀ ପରେ ତାଙ୍କ ଅଧୀନରେ ଓକିଲାତି କରିବା ପାଇଁ ନନାଙ୍କୁ ପରାମର୍ଶ ଦେଲେ । ମୋର ନନା ସେତେବେଳକୁ ବୃଦ୍ଧ । ତାଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନୁହେଁ । ତାଙ୍କର ତିନିଟି ପୁଅ ପୁଣି ମଣିଷ ହେବେ । ପାଠପଢା ସାରି ମୋ ଭଉଣୀ ବାହା ହେବାକୁ ଯୋଗ୍ୟ ହୋଇଗଲାଣି । ତାକୁ ସେତେବେଳକୁ ଏଗାର ବର୍ଷ ! ଅନ୍ୟ ପିଲାମାନେ ଯଥା ମୋ ତଳ ଭାଇ ଶ୍ରୀମାନ ଚନ୍ଦ୍ରଶେଖର, ତା ତଳେ ଦୁଇ ଭାଇ ଶ୍ରୀମାନ ଶଶୀଶେଖର ଓ ଶ୍ରୀମାନ ରାଜକିଶୋର ପ୍ରାଥମିକ ବିଦ୍ୟାଳୟ ସାରି ନଥାନ୍ତି । ଏସବୁ ଦୃଷ୍ଟିରୁ ପୁଣି ଶଶୁରଙ୍କ ଅନ୍ତେ ତାଙ୍କର ଜମିଦାରୀ ଓ ଅନ୍ୟାନ୍ୟ ବିତ୍ତ ମୋ ଛଡା ଅନ୍ୟ କେହି ଭୋଗିବା ପାଇଁ ନାହିଁ । ଏ ସବୁର ପ୍ରଲୋଭନ ମୋତେ ମୋ ଶଶୁରଙ୍କର ପ୍ରସ୍ତାବରେ ସମ୍ମତ କରାଇଲା । ମତେ ନନା ଏ ସମସ୍ତ କଥା ବୁଝାଇ ଲଣ୍ଡନ ଯିବାରୁ ମୋତେ ନିବର୍ତ୍ତାଇଲେ । ଗୋପବନ୍ଧୁ, ନୀଳକଣ୍ଠ ଓ ଆଚାର୍ଯ୍ୟ ମହାଶୟଙ୍କ ଆଦର୍ଶରେ ଅନୁପ୍ରାଣୀତ ହୋଇ ମୁଁ ଭଲ ଛାତ୍ରଭାବେ ଦେଶ ପାଇଁ ଯେଉଁ କାର୍ଯ୍ୟ କରୁଛି ତାକୁ ଛାଡି ଲଣ୍ଡନ ଯାଇ ବାରିଷ୍ଟରୀ ପଢିବାର ଆବଶ୍ୟକତା ଅଛି ବୋଲି ମୋର ଯେଉଁ କ୍ଷୀଣ

ବିଶ୍ୱାସ ଥିଲା ତା'ର ସମାପ୍ତି ଘଟାଇଲେ । ମୁଁ ବିବଶ । କାହା ଆଗେ କହିବି । ମୋ ସ୍ତ୍ରୀଙ୍କୁ କହିଲି । ସେ ଏତେ କଥା ବୁଝି ସେତେବେଳେ କିଛି ଉପଦେଶ ଦେବାର ଶକ୍ତି ତାଙ୍କର ନଥିଲା । ୧୪ ବର୍ଷର ବାପ ମା'ଙ୍କର ଅଳିଅଳ ଝିଅ ସଂସାର ବିଷୟରେ ସଂପୂର୍ଣ୍ଣ ଅନଭିଜ୍ଞ । ସେ କେବଳ କହିଲେ 'ନନାଙ୍କୁ ଛାଡିଗଲେ ତାଙ୍କୁ ଆଉ ଦେଖିବାର ଆଶା କରିବ ନାହିଁ । ମୁଁ ଆଉ କିଛି କହିପାରିବି ନାହିଁ । ବୋଉକୁ ପଚାର ।' ତାଙ୍କ କଥା ଅନୁସାରେ ଶାଶୁଙ୍କ ସହିତ କଥା ହେଲି । ସେ ସେତେବେଳକୁ ମୋ ସହିତ ସିଧାସଳଖ କଥା ହେଉ ନଥାନ୍ତି । ପରମ୍ପରାର ଉପାସକ ଶାଶୂ ସ୍ୱାଇଁଙ୍କ ସହିତ ବୁଆର ଆରପଟୁ ମୁଣ୍ଡରେ ଓଢଣା ଦେଇ କଥା ହେବେ ତା ପୁଣି ଜମିଦାର ଘରର ଆଦବ କାଇଦା । ସେ କହି ଉଠିଲେ 'ମୋର ସଂସାରରେ କେହି ନାହିଁ, ମୋ ଝିଅ ରୁକୁଣି ଓ ତୁମେ । ତାଙ୍କ ଦିଅରଙ୍କ ନାମ ଗଙ୍ଗାଧର ଚୌଧୁରୀ ହୋଇଥିବା ଦୃଷ୍ଟିରୁ ସେ ମତେ ପୁଣି ଉପଦେଶ ଦେଲେ ତୁମ ଖୁଡୁ ଶଶୁରକୁ ପଚାର ସେ କ'ଣ କହୁଛନ୍ତି ।' ଶାଶୁଙ୍କ ସହିତ କଥା ହେବା ପରେ ମୋର ସଂପୂର୍ଣ୍ଣ ହୃଦବୋଧ ହେଲା ଏମାନେ ମତେ ମୋ ଯୁବତୀ ସ୍ତ୍ରୀଙ୍କୁ ଛାଡି ଲଣ୍ଡନ ଯିବା ପାଇଁ ମୋର ଯେଉଁ ବିଚାର ତା'ର ସଂପୂର୍ଣ୍ଣ ବିରୋଧ କରୁଛନ୍ତି ଓ ସମସ୍ତେ ଏପରି ଏକ ନିଷ୍ପତ୍ତି ସେମାନଙ୍କ ଭିତରେ ଆଲୋଚନା କରି ମତେ ଭବିଷ୍ୟତ ସମ୍ପତ୍ତି ଭାର କରିବାର ଲୋଭ ଦେଖାଇ ଓ ଆଦର୍ଶ ଗୃହସ୍ଥର କର୍ତ୍ତବ୍ୟ ସଂପାଦନ କରିବାର ପ୍ରଥମ କର୍ତ୍ତବ୍ୟ ଓ ଦାୟିତ୍ୱବୋଧ ସଂପର୍କରେ ନୀତିବାକ୍ୟ ଶୁଣାଉଛନ୍ତି । ସେମାନଙ୍କର ଭିତରି ଉଦ୍ଦେଶ୍ୟ ମୁଁ ବୁଝିପାରି ମୋର ଲଣ୍ଡନ ଯାଇ ବାରିଷ୍ଟର ହେବାର ସ୍ୱପ୍ନ ଏତିକିରେ ସମାପ୍ତ ହେଲା ବୋଲି ଭାବିଲି । ଦୁଇ ତିନି ଦିନ ସେଠାରେ ରହି ସସ୍ତ୍ରୀକ ନନାଙ୍କୁ ଧରି ଭୁବନେଶ୍ୱରରୁ ବିଦାୟ ନେଇ ପୁରୀ ଫେରିଆସି ପରବର୍ତ୍ତୀ ପଦକ୍ଷେପ ପାଇଁ ବ୍ୟବସ୍ଥା ଆରମ୍ଭ କଲି ।

# ଜୀବନର ନୂତନ ଅଧ୍ୟାୟ

ପୁରୀକୁ ଫେରିଆସି ଦେଖିଲି, ତତ୍କାଳୀନ ବେଙ୍ଗଲ ନାଗପୁର ରେଳବାଇ ଜେନେରାଲ ମ୍ୟାନେଜରଙ୍କ ଅଫିସ୍‌ରୁ ଖଣ୍ଡିଏ ପତ୍ର ଆସିଛି କଲିକତା ଗାର୍ଡେନ ରିଚ୍ ଅଫିସ୍‌ରେ ସାକ୍ଷାତ କରିବା ପାଇଁ ରେଳ ବିଭାଗରେ ଏକ ନିଯୁକ୍ତି ସଂପର୍କରେ । ମୁଁ ଆଶ୍ଚର୍ଯ୍ୟ ହେଲି, କାରଣ ଏଥିପାଇଁ ମୁଁ କୌଣସି ଆବେଦନ କରିନଥିଲି । ପଣ୍ଡିତ ନୀଳକଣ୍ଠ ସେତେବେଳକୁ ଗ୍ରାମରେ ରହି ଶ୍ରୀମଦ୍ ଭଗବତ ଗୀତା ଉପରେ ତାଙ୍କର ମୁଖବନ୍ଧ ଲେଖୁଛନ୍ତି । ମୁଁ ପଣ୍ଡିତଜୀଙ୍କୁ ସାକ୍ଷାତ କରିବା ପାଇଁ ଶ୍ରୀରାମଚନ୍ଦ୍ରପୁର ଗ୍ରାମକୁ ଆସିଲି । ସେ ତାଙ୍କର ଦୋତାଲା ଘରର ଉପର ମହଲାର ଏକ ରୁମ୍‌ର ଏକ ରୁଦ୍ଧ ଦ୍ୱାର ଭିତରେ ଲେଖାରେ ବ୍ୟସ୍ତ । ତାଙ୍କର ଧର୍ମପତ୍ନୀ ଶ୍ରୀମତି ରାଧାମଣି ଦେବୀ କହିଲେ ଯେ, ସେ ତାଙ୍କ ଲେଖା ସଂପୂର୍ଣ୍ଣ ନକଲା ପର୍ଯ୍ୟନ୍ତ କୋଠରୀରୁ ବାହାରିବେ ନାହିଁ, ଏପରିକି ଖାଇବା ପାଇଁ ତାଙ୍କ କବାଟର ତଳ ଫାଙ୍କ ବାଟେ ଖାଇବା ଜିନିଷ ପଠା ଯାଉଛି । ସମସ୍ତଙ୍କୁ ସାକ୍ଷାତ ମନା । ୨୪ ଘଣ୍ଟା ତାଙ୍କ ଘରେ ରହିଲା ପରେ ମାଉସୀ (ଶ୍ରୀମତି ରାଧାମଣି ଦେବୀ) ଖାଇବା ଥାଳିଟି ଘର ଭିତରକୁ କବାଟ ଫାଙ୍କ ବାଟେ ପଠାଇଲା ବେଳେ ଖଣ୍ଡିଏ ଛୋଟିଆ କାଗଜରେ ମୋ ନାମ ଲେଖି ଓ ୨୪ ଘଣ୍ଟା ଅପେକ୍ଷା କରିଥିବା କଥା ବଖାଣି ଥାଳି ଉପରେ ରଖି ଦେଲେ । ପ୍ରାୟ ୨ ଘଣ୍ଟା ପରେ ପରେ କବାଟ ଖୋଲିଲା ।

ସେ ସାକ୍ଷାତ କରୁ କରୁ କହିଲେ କେନ୍ଦ୍ର ବ୍ୟବସ୍ଥା ସଭାରେ ଶିକ୍ଷିତ ଓଡ଼ିଆ ଯୁବକମାନଙ୍କୁ ନିଯୁକ୍ତି ସୁଯୋଗ ମିଳୁନାହିଁ ବୋଲି ସେ ଓ ସ୍ୱର୍ଗତ ଭୁବନାନନ୍ଦ ଦାସ ପ୍ରମୁଖ ପ୍ରବୀଣ ସଭ୍ୟମାନେ କ୍ରମାଗତ ଦାବି କରିବା ଫଳରେ ତତ୍କାଳୀନ କେନ୍ଦ୍ର ସରକାରଙ୍କ ରେଳବାଇର ଜଣେ ବ୍ରିଟିଶ ସଭ୍ୟ କିଛି ଶିକ୍ଷିତ ଓଡ଼ିଆ ଯୁବକଙ୍କ ନାମ ସୁପାରିଶ କରିବା ପାଇଁ ତାଙ୍କୁ କହିବାରେ ସ୍ୱର୍ଗତ ଭୁବନାନନ୍ଦ ଦାସ ଓ ପଣ୍ଡିତ ନୀଳକଣ୍ଠ ଅଳ୍ପ କେତେକ ଯୁବକଙ୍କ ନାମ ସହିତ ମୋ ନାମ ମଧ୍ୟ ସୁପାରିଶ କରିଥିଲେ । ପଣ୍ଡିତ ନୀଳକଣ୍ଠ ଓ ଭୁବନାନନ୍ଦ ଦାସ ସେତେବେଳର କେନ୍ଦ୍ର ଆସେମ୍ବ୍ଲିର ଅତି ଟାଣୁଆ ସଭ୍ୟ । ମୋତିଲାଲ ନେହେରୁ, ଭୁଲାଭାଇ ଦେଶାଇ ପ୍ରଭୃତି ସେତେବେଳର କେନ୍ଦ୍ର ବ୍ୟବସ୍ଥା ସଭାର ସ୍ୱରାଜ ଦଳର ନେତୃତ୍ୱ ନେଉଥିଲେ । ସେ ଉଭୟଙ୍କ ସୁପାରିଶ ଉପରେ ଅନେକ ଦିନ ପରେ ଏପରି ଏକ ପତ୍ର ମୋ ନିକଟକୁ

ଆସିଛି । ପଣ୍ଡିତ ନୀଳକଣ୍ଠ ବେଙ୍ଗଲ ନାଗପୁର ରେଳବାଇର ଜେନେରାଲ ମ୍ୟାନେଜରଙ୍କୁ ଏକ ପତ୍ର ଲେଖି ମତେ ଦେଲେ ଓ ନିର୍ଦ୍ଦେଶ ଦେଲେ ପାଟନା ଯିବା ବାଟରେ ତାଙ୍କୁ ସାକ୍ଷାତ କରିବା ପାଇଁ । ଏହି ସୁପାରିଶଟି ଧରି ମୁଁ ପୁରୀ ଫେରିଲି । ପଇସା ପତ୍ର ନାହିଁ, ପୁଣି ପାଟଣା କଲେଜରେ ଅର୍ଥନୀତିରେ ଏମ.ଏ. ପଢିବା ପାଇଁ ପ୍ରବଳ ଇଚ୍ଛା । ନାମ ଲେଖା ସମୟ ଅତିବାହିତ ହୋଇଯାଉଛି । ନଗଲେ ପୁଣି ସେ ସୁଯୋଗ ମଧ୍ୟ ହରାଇବି । ସବୁ କଥା ଭାବି, ନିଷ୍ପତ୍ତି ନେଲି ଏହି ନୂତନ ଅଭିଯାନରେ ଆଗେଇବି । ପଇସା ନାହିଁ । ନନା ତ ଛାଡିବେ ନାହିଁ । ବୋଉ ତ କିଛି ମତ ଦେବ ନାହିଁ । ଶଶୁରଙ୍କୁ ବା ତାଙ୍କ ପରିବାର ଲୋକଙ୍କୁ ଏ ସଂପର୍କରେ କହିବା ନିରର୍ଥକ । ଶେଷରେ ନିଷ୍ପତ୍ତି କରି ନୂଆ ହୋଇ ଆସିଥିବା ମୋ ସ୍ତ୍ରୀକୁ ଏକାନ୍ତରେ କହିଲି ମୁଁ ଏହି ନୂତନ ଅଭିଯାନରେ ଯିବି । ଚାରି ପାଞ୍ଚ ଦିନ ପରେ ତାଙ୍କୁ ଖବର ଦେବି ମୋ ପାଇଁ କୌଣସି ଆଶଙ୍କା କରିବେ ନାହିଁ । ତାଙ୍କୁ କହିଲି ପୁରୀରୁ କଲିକତା ପର୍ଯ୍ୟନ୍ତ ରେଳଭଡା, ତାଙ୍କ ପାଖରେ ଯଦି ଟଙ୍କା ଥାଏ ମତେ ଦେବାପାଇଁ । ମୁଁ କେବଳ ତାଙ୍କ ଠାରୁ ଟ ୧୦ଙ୍କା ଧରି ଖଣ୍ଡିଏ ଖଦଡ ଲୁଗା, ଅଧା ଖଦୀ ସାର୍ଟ ଓ ମୋର ପୁରୁଣା କଟା ଚଟି ହଳକ ଧରି ଠିକ୍ ତା ପର ଦିନ କଲିକତା ଅଭିମୁଖେ ବାହାରିଲି । ହାଓଡାକୁ ରେଳ ଟିକଟ ମୋର ଯାହା ମନେ ପଡୁଛି ପ୍ରାୟ ୯ଟଙ୍କା ଥାଏ । ଟିକଟ ପୁରୀ ଏକ୍ସପ୍ରେସ୍‌ରେ କରି ୧୯୩୬ ମସିହା ଜୁନ୍ ମାସ (ତାରିଖ ମନେ ନାହିଁ) ରାତ୍ର ବାହାରି ତା ପରଦିନ ହାଉଡା ଷ୍ଟେସନରେ ପହଞ୍ଚିଲି । ପାଖରେ ଗୋଟିଏ ଟଙ୍କା । କାହାକୁ ଆଗରୁ ଖବର ଦେଇ ନାହିଁ । ମନ ଭିତରେ ବ୍ୟର୍ଥତାର ଜ୍ୱାଳା । ମୋର ମାମୁଁ ପୁଅ ଭାଇ ସଚ୍ଚି ସେତେବେଳେ ବିଦ୍ୟାସାଗର କଲେଜରେ ପ୍ରଥମ ବାର୍ଷିକ କଳାଛାତ୍ର (First Year Arts) । ବିଦ୍ୟାସାଗର ଛାତ୍ରାବାସରେ କଲେଜ ଷ୍ଟ୍ରୀଟ୍‌ରେ ରହୁଥାଏ । ହାଉଡା ଷ୍ଟେସନ୍‌ରୁ ପଚାରି ପଚାରି ପଦବ୍ରଜରେ କଲେଜ ଛାତ୍ରାବାସରେ ପହଞ୍ଚି ସେ ରହୁଥିବା ରୁମ୍‌ରେ ତାଙ୍କୁ ପାଇଲି । ସେ ମତେ ଦେଖି ଆଶ୍ଚର୍ଯ୍ୟ ହେଲେ, କୌଣସି ସମ୍ବାଦ ନ ଦେଇ ଏପରି ଅବସ୍ଥାରେ ଯାଇ ପହଞ୍ଚିଥିବା ହେତୁ । ମୋର ପରିସ୍ଥିତି, ପାଟଣା କଲେଜରେ ପଢିବାର ପ୍ରବଳ ଇଚ୍ଛା, ପାଟଣା ଯିବା କଥା ଓ ଗାର୍ଡେନରିଚ୍‌ରେ ବେଙ୍ଗଲ ନାଗପୁର ରେଳବାଇ ଜେନେରାଲ ମାନେଜରଙ୍କୁ ପଣ୍ଡିତ ନୀଳକଣ୍ଠଙ୍କ ସୁପାରିଶ ପତ୍ର ଦେବା କଥା ସବୁ ବୟାନ କଲି । ସେ ସବୁ ଶୁଣିଲା ପରେ ମୋ ପାଖରେ ପଇସା ଅଛି କି ପଚାରିବାରେ ଗୋଟିଏ ଟଙ୍କା ଅଛି ବୋଲି ଜଣାଇଲି । ସେ ପୁଣି ପଚାରିଲା ଗାର୍ଡେନ ରିଚ୍‌ରେ ବେଙ୍ଗଲ ନାଗପୁର ରେଲୱେର ଜେନେରାଲ ମ୍ୟାନେଜରଙ୍କୁ କ'ଣ ଏପରି ଧୋତୀ, ହାଫ୍ ସାର୍ଟ ପିନ୍ଧି ଯିବୁ ? ଏ ପ୍ରଶ୍ନର ଉତ୍ତର ଦେବା ପୂର୍ବରୁ ସେ ନିଜ ଆଡୁ କହିଲା 'ଚାଲ ଯିବା ।' ସେତେବେଳକୁ 'ଓମରମୁଲା'

ନାମକ ଏକ ବଡ ଧରଣର ରେଡିମେଡ ପୋଷାକ ଦୋକାନ ନିକଟବର୍ତ୍ତୀ ଜାଗାରେ ଥାଏ । ମୋର ମନେ ଅଛି ମୋ ଭାଇ ବାର ଟଙ୍କା ଦେଇ ମୋ ପାଇଁ ଫିଟ୍ ହେଉଥିବା ଗୋଟାଏ ପ୍ୟାଣ୍ଟ ଓ କୋଟ କିଣି ଦେଇ ମତେ ପିନ୍ଧାଇଲା । ୧୯୩୬ ମସିହା ପର୍ଯ୍ୟନ୍ତ ମୁଁ ପ୍ୟାଣ୍ଟ ପିନ୍ଧି ନଥାଏ ବା ମୋର ଜୋତା ପିନ୍ଧିବାର ସୌଭାଗ୍ୟ ଜୁଟି ନଥାଏ । ୭ ହାତୀ ଖଦଡ ଧୋତୀ ଓ ଖଦୀ ଅଧା କାମିଜ । କଲେଜରେ ପଢିଲା ପରେ ବାଟା ଚଟି ହଳିଏ । ରେଭେନ୍ସା କଲେଜ ବୋର୍ଡିଂରେ କଲେଜ ଦରମା ଓ ମେସ୍ ଖର୍ଚ୍ଚ ମାସିକ ପ୍ରାୟ ତିରିଶ ଟଙ୍କା ଶଶୁର ରାଧାଶ୍ୟାମ ଚୌଧୁରୀ ଦେଉଥାଆନ୍ତି । ପ୍ରଥମ କରି ୧୨ ଟଙ୍କା ମୂଲ୍ୟର ପ୍ୟାଣ୍ଟ କୋର୍ଟ ଓ ତା ତଳେ ହାଫ୍ ସାର୍ଟ, ଗୋଡରେ ଚଟି ପିନ୍ଧାଇ ମୋ ଭାଇ ମତେ ଗାର୍ଡନରିଚ୍ ଟ୍ରାମ୍‌ରେ ନେଲା । କିନ୍ତୁ ଜେନେରାଲ ମାନେଜର ସାହେବ (ନାମ ମନେ ହଠାତ ପଡୁନାହିଁ) ବଙ୍ଗଳାର ପିଅନ ଭିତରକୁ ଛାଡିବାକୁ ନାରାଜ । ମୁଁ ଓ ଭାଇ ତା ସହିତ ଯୁକ୍ତି କରି ଆମକୁ ଦିଲ୍ଲୀରୁ ଚିଠି ଆସିଛି ସାହେବଙ୍କୁ ଦେଖା କରିବା ପାଇଁ କହିଲେ ସୁଦ୍ଧା ସେ ଛାଡିବାକୁ ନାରାଜ । ଠିକ୍ ଏହି ଯୁକ୍ତିତର୍କ ଦରଓ୍ୱାନ ସହିତ ଚାଲୁଥିବା ସମୟରେ ଦେଖିଲୁ ଜେନେରାଲ ମ୍ୟାନେଜର ଏକ ବିରାଟ ବପୁ ବିଶିଷ୍ଟ ବ୍ରିଟିଶ ଅଫିସର ଏବଂ ଏକ ଲମ୍ୱା କଳା କୁକୁର ଫୁଟେ ଲମ୍ୱର ଜିଭ ବାହାରକୁ ବାହାର କରି ଯେପରି ଆମକୁ ଆକ୍ରମଣ କରିବାକୁ ପ୍ରସ୍ତୁତ । ସାହେବ ଇଂରେଜୀରେ କିଏ, କାହିଁକି ଏଠାରେ ଦରଓ୍ୱାନ ସହିତ ଯୁକ୍ତି କରୁଛି ବୋଲି ଏକ ବିରକ୍ତିକର ସ୍ୱରରେ କହିବାରୁ କିଛି ନ କହି ପୂର୍ବରୁ ନୀଳକଣ୍ଠ ଏବଂ ବି.ଦାସଙ୍କ ଚିଠିର ନକଲ ଏବଂ ସଦ୍ୟ ପଣ୍ଡିତ ନୀଳକଣ୍ଠଙ୍କ ଚିଠି ଏକାଠି ବଢାଇ ଦେଲି । ସେ ସବୁ ପଢି ହଠାତ୍ କୋମଳ ହୋଇପଡି ତା ଉପରେ କ'ଣ ଲେଖି ତାଙ୍କ ଅଫିସର ଜଣେ ବରିଷ୍ଠ ଅଫିସରଙ୍କୁ ଲେଖି ଓ ତାଙ୍କ ପାଖରେ ଠିଆ ହୋଇଥିବା ବ୍ୟକ୍ତିଗତ ସହାୟକଙ୍କୁ ନିର୍ଦ୍ଦେଶ ଦେଲେ ଆମ ଦୁହିଁଙ୍କୁ ସେଇ ନିର୍ଦ୍ଦିଷ୍ଟ ଅଫିସରଙ୍କ ନିକଟକୁ ନେଇଯିବାକୁ । ସେଠାରେ ପହଞ୍ଚିବାରେ ସେ ମହାଶୟ ମୋ ସହିତ ୫ ମିନିଟ ଇଂରାଜୀରେ କଥା ହେଲେ । ମନେ ହେଉଥିଲା ସେ ଯେପରି ମୋର ଇଂରାଜୀ କଥାଭାଷା କିପରି ତାହା ଜାଣିବା ତାଙ୍କର ଉଦ୍ଦେଶ୍ୟ ଥିଲା । ମୋର ଇଂରାଜୀ କହିବାର ପ୍ରଣାଳୀ ଓ ତାଙ୍କ ସହିତ କଥାବାର୍ତ୍ତାର ନମ୍ରତା ତାଙ୍କୁ ପ୍ରୀତ କଲା ପରି ମୋର ମନେ ହେଉଥିଲା । ପରେ ମତେ ଇଂରାଜୀ ପାରାଗ୍ରାଫ୍ କୌଣସି ଏକ ପୁସ୍ତକରୁ ଡାକିଲେ ଓ ଜଣେ ଓଡିଶାର ବରିଷ୍ଠ ଅଫିସରଙ୍କୁ ଓଡିଆରେ ଏକ ପାରାଗ୍ରାଫ୍ ଡାକି ମୋ ଇଂରାଜୀ ଓ ଓଡିଆ ହସ୍ତାକ୍ଷର ଓ ବର୍ଣ୍ଣଶୁଦ୍ଧି ପରୀକ୍ଷା କରୁଥିବା ମନେ ହେଲା । ଏ ସବୁ ୧୫ ମିନିଟ ଭିତରେ ସରିଗଲା ଓ ପରେ ସେ ନିଷ୍ପତ୍ତି ଜଣାଇବେ କହି ବିଦା କରିଦେଲେ । ସେତେବେଳକୁ ପ୍ରାୟ ୧୦ଟା ୩୦ ମିନିଟ । ଗାର୍ଡନରିଚ୍‌ରୁ ସଙ୍ଗେ ସଙ୍ଗେ ଟ୍ରାମ୍ ଧରି, କଲେଜ ଫେରି ଆସିଲୁ । ମୋ ଭାଇ

ସଚ୍ଚି ମୋ ପାଇଁ ଖଣ୍ଡିଏ ଟିକଟ ପଞ୍ଜାବ ଏକ୍ସପ୍ରେସ୍‌ରେ (ମନେ ପଡୁଛି) ଧରାଇ ଦେଲା ଆଉ ବାଟରେ ଖାଇବା ପାଇଁ ଯୋଡ଼ିଏ ଟଙ୍କା ଦେଲା । ହାଉଡ଼ା ଷ୍ଟେସନରେ ପହଞ୍ଚିଲା ବେଳକୁ ଗାଡ଼ି ଛାଡ଼ିବାକୁ ଆରମ୍ଭ କଲାଣି । ଶେଷ ଡବାରେ କୌଣସି ମତେ ଉଠି ପାଟଣା ଅଭିଯାନରେ ପ୍ୟାଣ୍ଟ କୋଟ ଖୋଲିବାକୁ ବେଳ ନ ପାଇ ଟିକଟ ଖଣ୍ଡିକ ଓ ଗୋଟିଏ ଟଙ୍କା, ଏତିକି ସମ୍ବଳ ଧରି କେବଳ ଆତ୍ମବିଶ୍ୱାସର ସହିତ ଭବିଷ୍ୟତ ସଂଧାନରେ ଆସ୍ତେ ଛାଡୁଥିବା ପଞ୍ଜାବ ଏକ୍ସପ୍ରେସ୍‌ରେ ଗତି ଆରମ୍ଭ ହେଲା । ବର୍ଦ୍ଧମାନ ଷ୍ଟେସନରେ ଗାଡ଼ି ରହିବାରେ ଦୋକାନରୁ ଚାରି ଅଣାର ଜଳଖିଆ କିଣି ଖାଇ ଦେଇ ସେ ଦିନର ଭୋଜନ ସମାପ୍ତି କରି ପାଖରେ ଏକ ଟଙ୍କା ବାର ଅଣା ଧରି ଚାଲିଲି । ମନରେ ଆଶଙ୍କା ପାଟଣା ଜଙ୍କସନରେ ପହଞ୍ଚିଲେ କିପରି ଯିବି ପୋଷ୍ଟ ଗ୍ରାଜୁଏଟ ହଷ୍ଟେଲକୁ । ଶୁଣିଥାଏ ଜାଗାଟିର ନାମ । ଗଙ୍ଗାନଦୀ କୂଳରେ ଛାତ୍ରାବାସରେ ମୋର କିଛି ବଂଧୁଙ୍କୁ ଜାଣିଥାଏ ।

ରାତ୍ର ସାଢ଼େ ୮ଟା ବେଳେ ପଂଜାବ ଏକ୍ସପ୍ରେସ୍ ପାଟନା ଜଂକ୍ସନରେ ଠିଆ ହେଲା । ମୁଁ ଟିକଟଟି ଦେଇ ବାହାରକୁ ଆସି ଠିଆ ହୋଇଥିବା ତତ୍‌କାଳୀନ ଜୋଡ଼ି ଘୋଡ଼ା ଲାଗିଥିବା ଏକ ଫିଟନ ଗାଡ଼ିକୁ ମତେ ପୋଷ୍ଟ ଗ୍ରାଜୁଏଟ ବୋର୍ଡିଂକୁ ନେବା ପାଇଁ ଅନୁରୋଧ କଲି । ସେ ଠିକଣାଟି ଜାଣିପାରିଲା ନାହିଁ । ତାକୁ ସେଥିପାଇଁ ପାଟଣା ବିଶ୍ୱବିଦ୍ୟାଳୟ ସିନେଟ ହଲ୍ କହିବାରେ ସେ ବୁଝିଲା । ମୋ ହିନ୍ଦୀ କହିବାର ଢଂଗରୁ ସେ ଜାଣିନେଲା ଯେ ମୁଁ ବାହାରରୁ ଆସିଛି । ଏ ନଗର ପାଇଁ ନୂଆ ଲୋକ । ସିନେଟ୍ ହଲ୍ ଠାରେ ମୋର ସେହି ଭାଗ୍ୟକୁ ଦୁଇ ଜଣ ଯୁବକ ପି.ଜି. ହଷ୍ଟେଲ ଆଡ଼େ ଯାଉଥିଲେ । ମୁଁ ତାଙ୍କୁ ଇଂରାଜୀରେ ମୋର ଗନ୍ତବ୍ୟ ସ୍ଥାନର ସଠିକ ବିବରଣୀ ଏହି ଫିଟନ ଚାଳକଙ୍କୁ କହିବାକୁ ଅନୁରୋଧ କରିବାରେ ସେ ତାକୁ ଠିକ୍ ବାଟ କହିଦେଲେ । ସିନେଟ ହଲ୍‌ରୁ ପି.ଜି. ହଷ୍ଟେଲ ଏକ କିଲୋମିଟର । ସେ ତତ୍‌କ୍ଷଣାତ ସେଠାରେ ପହଞ୍ଚାଇଲା । ମୁଁ ଗାଡ଼ିରୁ ଓହ୍ଲାଇ ବଡ଼ ପାଟିରେ ଦୀନବନ୍ଧୁ ଓ ନାରଣ ବୋଲି ଡକା ପକାଇଲି । ଦୁହେଁ ମୋ ଶବ୍ଦ ବାରି ହଠାତ୍ ମୋତେ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ଏପରି ଭାବେ କୌଣସି ଖବର ନ ପଠାଇ କିପରି ଆସିଛୁ ବୋଲି ପଚାରିବାରେ ମୋ ଉତ୍ତର ହେଲା ଓଡ଼ିଆରେ 'ସବୁ ପରେ କହିବି । ମୁଁ କେତେ ଭଡ଼ା ଦେବାକୁ ହେବ ଜାଣିନି । ମୋ ପାଖେ ପଇସା ନାହିଁ । ତୁମେ ଆଗ ଏ ଫିଟନ ବାଲାକୁ ଭଡ଼ା ଦେଇ ମତେ ହଷ୍ଟେଲ ଭିତରକୁ ନିଅ, ମୁଁ ଜଣାଇବି ।' ସେମାନେ ଫିଟନ ବାଲା ସହିତ କଥା ହୋଇ ଭଡ଼ା ଯୋଗାଡ଼ କରି ଦେଇଦେଲେ । କହିଲି ମୋର ନିର୍ଦ୍ଧାରିତ ପାଟଣା ସହର ପି.ଜି. ହଷ୍ଟେଲରେ ପହଞ୍ଚିବା ଇତିବୃତ୍ତି ।

ପାଟଣା କଲେଜରେ ଏମ.ଏ. କ୍ଲାସ୍ ନାମ ଲେଖା ଓ ପରବର୍ତ୍ତୀ କାର୍ଯ୍ୟ । ବନ୍ଧୁମାନେ ରାଣୀଘାଟ ପି.ଜି. ହଷ୍ଟେଲରେ ମୋ ଠାରୁ ସମସ୍ତ କଥା ଶୁଣିଲା ପରେ ପରଦିନ ସକାଳେ ପାଟଣା କଲେଜର ଅର୍ଥନୀତି ବିଭାଗର ମୁଖ୍ୟ ଭାରତର ବିଶିଷ୍ଟ ଅର୍ଥନୀତି ବିଶାରଦ ଡକ୍ଟର ଜ୍ଞାନଚାନ୍ଦଙ୍କ ସରକାରୀ ବାସଭବନକୁ ଯାଇ ନାମ ଲେଖାଇବା ପାଇଁ ଶେଷ ଉଦ୍ୟମ କରିବା ପାଇଁ ସ୍ଥିର ହେଲା । ପରଦିନ ସକାଳ ୯ଟା ପୂର୍ବରୁ ତାଙ୍କ ସହିତ ସାକ୍ଷାତରେ ଓଡିଶାରୁ ମୁଁ କିପରି କେଉଁ ପରିସ୍ଥିତିରେ ଆସିଛି ସମସ୍ତ କଥା ସେ ଆମଠାରୁ ଶୁଣିବା ପରେ କହିଲେ 'ଆଜି ଶେଷ ଦିନ, ଆଉ ସିଟ୍ ନାହିଁ, ଯେଉଁ ଛାତ୍ରଟିକୁ ଆଜି ନାମ ଲେଖାଇବା ପାଇଁ ଇଣ୍ଟିମେସନ ଦିଆଯାଇଛି, ସେ ଯଦି ଦିନ ୧୧ଟା୩୦ ମିନିଟ ସୁଦ୍ଧା ନ ଆସେ, ମତେ କଲେଜରେ ମୋ ଅଫିସ୍‌ରେ ସାକ୍ଷାତ କଲେ ସେଇ ସ୍ଥାନଟିରେ ତୁମ ଆଡମିଶନ କଥା ବିଚାର କରାଯିବ ।' ଏପରି ଆଶ୍ୱାସନା ବାଣୀ ଶୁଣିବା ପରେ ଓଡିଶାରୁ ନାମ ଲେଖାଇ ପୋଷ୍ଟ ଗ୍ରାଜୁଏଟ କରୁଥିବା ଛାତ୍ରମାନଙ୍କଠାରୁ – ଶ୍ରୀ ଦୀନବନ୍ଧୁ ମହାପାତ୍ର, ଶ୍ରୀ ଦୟାନିଧି ଚୌଧୁରୀ, ଶ୍ରୀ ନାରାୟଣ ପଟ୍ଟନାୟକ ଓ ଅନ୍ୟାନ୍ୟ ବନ୍ଧୁମାନେ ଲାଗି କରି ପ୍ରାୟ ଏକ ଶତ ପଚାଶ ଟଙ୍କା ନାମ ଲେଖାଇବା ପାଇଁ ଆଦାୟ କରିଦେଲେ ୧୧ଟା ସୁଦ୍ଧା । ଆମେ ସେ ଟଙ୍କା ନେଇ ୧୧ଟା ୩୦ ମିନିଟ ପୂର୍ବରୁ ପାଟଣା କଲେଜ ଅଫିସ୍ ପାଖେ ଜ୍ଞାନଚାନ୍ଦଙ୍କ ନିର୍ଦ୍ଦେଶ ମୁତାବକ ପହଞ୍ଚିଲୁ । ମୋର ଗୁହାରୀ ବୋଧହୁଏ ଜଗନ୍ନାଥ ଶୁଣିଲେ । ୧୧ଟା ୩୫ ସୁଦ୍ଧା ଯେଉଁ ଛାତ୍ରକୁ ନିର୍ଦ୍ଦେଶ ଥିଲା ଆଡମିଶନ ନେବା ପାଇଁ ସେ ଆସିପାରି ନଥିଲେ । ୧୧ଟା ୪୦ ମିନିଟରେ ଦୀନବନ୍ଧୁ, ନାରଣ ଓ ମୁଁ ଡକ୍ଟର ଜ୍ଞାନଚାନ୍ଦଙ୍କ ଅଫିସ୍‌କୁ ଗଲୁ । ସେ ତତ୍‌କ୍ଷଣାତ ଅଫିସ୍‌ର ସହାୟକଙ୍କଠାରୁ ବୁଝି ମୋ ଆଡମିଶନ ଫର୍ମ ଉପରେ ଅବିଳମ୍ୱେ ଲେଖିଦେଲେ 'ଆଡମିଟ୍' ଏବଂ ନିର୍ଦ୍ଦିଷ୍ଟ ସହାୟକଙ୍କ ହାତରେ ଦେଇ ତତ୍‌କ୍ଷଣାତ ଆଡମିଶନ କରି ତାଙ୍କୁ ଜଣାଇବାକୁ ନିର୍ଦ୍ଦେଶ ଦେଲେ । ଡକ୍ଟର ଜ୍ଞାନଚାନ୍ଦଙ୍କର ଓଡିଆ ଛାତ୍ରଛାତ୍ରୀମାନଙ୍କ ପାଇଁ ଯେଉଁ ଶ୍ରଦ୍ଧା ଓ ସହାନୁଭୂତି ବିଷୟରେ ମୁଁ ଆଗରୁ ସହପାଠୀମାନଙ୍କ ଠାରୁ ଶୁଣିଥିଲି ତାହା ସଂପୂର୍ଣ୍ଣ ରୂପେ ଉପଲବ୍ଧି କରିବାର ସୁଯୋଗ ମିଳିଲା । ୧୯୩୫ ମସିହା ଭୂମିକମ୍ପ (ବର୍ତ୍ତମାନ ପାକିସ୍ତାନ)ରେ ତାଙ୍କ ସ୍ତ୍ରୀ ପ୍ରାଣ ହରାଇ ଥାଆନ୍ତି । କିଛି ଦିନ ପରେ ବାରାଣସୀ ଥିଓସୋଫିକାଲ କଲେଜର ଅଧ୍ୟକ୍ଷାଙ୍କ ସହିତ ରେଜିଷ୍ଟ୍ରେସନ ବିବାହ ହୋଇଥାଏ ବୋଲି ଶୁଣିଥିଲୁ । ତାଙ୍କ ସରକାରୀ ନିବାସ ଅଫିସ ଟେବୁଲ୍ ଉପରେ ଦୁଇଟି ଫଟୋ ଥାଏ । ଏହି ଦୁଇଟି ଫଟୋକୁ ଆମକୁ ଦେଖାଇ ସେ କହିଉଠିଲେ 'ଏ ଫଟୋ ମୋ ସହଧର୍ମିଣୀଙ୍କର ।' ଅନ୍ୟ ଫଟୋଟି ଦେଖାଇ କହିଲେ, 'ଏ ପରିଣତ ବୟସରେ ଏ ମୋର ସହଧର୍ମିଣୀ, ବୃଦ୍ଧ ବୟସରେ ପରିବାର ହରାଇବା ପରେ ଏ ମୋର ସାଥୀ । କିନ୍ତୁ ଆମର କେବଳ

ଶନିବାର ରବିବାର ଦିନ ଦେଖା ସାକ୍ଷାତ ହୁଏ ହୁଏତ ବାରାଣସୀ ବା ପାଟଣାରେ ।' ତାଙ୍କର ଏକଥା କହିଲା ବେଳେ ଆଖି ଛଳ ଛଳ ହୋଇ ଯାଉଥାଏ । ଛାତ୍ରମାନଙ୍କୁ କେତେ ଭଲ ନ ପାଉଥିଲେ ଏହି ହୃଦୟବାନ ଶିକ୍ଷକ ସତେ ! ନିଜର ବ୍ୟକ୍ତିଗତ ଜୀବନ କେଉଁ ବରିଷ୍ଠ ଅଧ୍ୟାପକ ପ୍ରକାଶ କରିବ ? କିନ୍ତୁ ଆଜିକାଲି ଶିକ୍ଷକ ଛାତ୍ର ସଂପର୍କକୁ ଦେଖିଲେ ଗତ ୫୫ ବର୍ଷ ତଳର ସ୍ମୃତି ସ୍ୱତଃ ମନରେ ଜାଗ୍ରତ ହୁଏ । ଡକ୍ଟର ଜ୍ଞାନଚାନ୍ଦ ମୋ ଜୀବନର ଗତି ବଦଳାଇବାରେ ଯେଉଁ ଭୂମିକା ଗ୍ରହଣ କରିଥିଲେ ଆଜି ତାଙ୍କ ସ୍ମୃତିରେ ଗଭୀର ଶ୍ରଦ୍ଧାଞ୍ଜଳୀ ଜ୍ଞାପନ କରୁଛି । ସେ ଥିଲେ ମୋର ଆଦର୍ଶ ।

ବର୍ତ୍ତମାନ ଛାତ୍ରାବସ୍ଥାରେ ଏପରି ଅଭିଯାନ ସ୍ମରଣ କଲାବେଳେ ମୋର ନାତି ନାତୁଣୀମାନେ ବିଶ୍ୱାସ କରିପାରୁନାହାନ୍ତି କିପରି ପ୍ରତିକୂଳ ପରିସ୍ଥିତି ମୁକାବିଲା କରି ଆଗକୁ ଚାଲୁଥିଲି ସାହସର ସହିତ । ଈଶ୍ୱରବିଶ୍ୱାସ ଓ ଆତ୍ମବିଶ୍ୱାସ ସମସ୍ତଙ୍କୁ ସାହସ ଦିଏ ଓ କଷ୍ଟ ସହିବାକୁ ଶକ୍ତି ଦିଏ । ଏହା ମୋ ଜୀବନର ସବୁ ସଂକଟ ବେଳେ ମୁଁ ଅନୁଭବ କରିଛି । ଅନ୍ୟ ପ୍ରତି ପ୍ରତିହିଂସା ପରାୟଣତାର ମନୋବୃତ୍ତି ପରିବର୍ତ୍ତେ ଆତ୍ମବିଶ୍ୱାସ, ସହନଶୀଳତା ଓ ଭଗବତ ବିଶ୍ୱାସ ମଣିଷ ପାଇଁ ସଫଳତା ଆଣିଦେବାର ଏକମାତ୍ର ସୋପାନ ଏକଥା ମୁଁ ସବୁବେଳେ ଅନୁଭବ କରିଛି । ମହାତ୍ମା ଗାନ୍ଧୀ ଓ ଟଲଷ୍ଟୟ ପ୍ରଭୃତି ମହାପୁରୁଷମାନଙ୍କର ଜୀବନୀ ଓ ଭଗବତ ଗୀତାର ଏକାଦଶ ଅଧ୍ୟାୟ ମତେ ସବୁବେଳେ କର୍ତ୍ତବ୍ୟ ପଥରେ ଆଗେଇବାକୁ ନିର୍ଦ୍ଦେଶ ଦେଉଛି ଓ ନିଜକୁ ସଂଯତ କରିବାକୁ ପ୍ରେରଣା ଦେଉଛି ।

ଅର୍ଥନୀତିରେ ଏମ.ଏ. କ୍ଲାସ୍‌ରେ ନାମ ଲେଖା ହୋଇଗଲା । ପରଦିନ ମୋର ଶଶୁର ଓ ପିତାଙ୍କୁ ପତ୍ର ଲେଖି ସବୁ କଥା ଜଣାଇଲି । ମାସକୁ ପଞ୍ଚତିରିଶ ଟଙ୍କା ହେଲେ କଲେଜ ଦରମା ସହିତ ଛାତ୍ରାବାସର ଖର୍ଚ୍ଚ ଚଳିଯିବ ବୋଲି ଶଶୁରଙ୍କୁ ପତ୍ର ଲେଖି ଆଶ୍ୱସ୍ତ ହେଲି । ମୋ ସାଥୀଙ୍କ ଭିତରୁ ଡକ୍ଟର ଦାଶରଥୀ ମହାପାତ୍ର ଓ ଡକ୍ଟର କୈଳାସ ଚନ୍ଦ୍ର ତ୍ରିପାଠୀ ଉଭୟ ପରେ ସ୍ୱାସ୍ଥ୍ୟ ବିଭାଗର ଯୁଗ୍ମ ନିର୍ଦ୍ଦେଶକ ହେଲେ । ମେଡିକାଲ କଲେଜରେ ସେତେବେଳେ ୩ୟ ବର୍ଷରେ ପଢୁଥାଆନ୍ତି । ଶ୍ରୀ ଦୟାନିଧି ଚୌଧୁରୀ ପଦାର୍ଥ ବିଜ୍ଞାନରେ ପାଟଣା ବିଜ୍ଞାନ ମହାବିଦ୍ୟାଳୟରେ ଏମ.ଏସ.ସି.ରେ ମଧ୍ୟ ନାମ ଲେଖାଉଥିଲେ । ଓଡିଶା ହାଇକୋର୍ଟର ଅବସରପ୍ରାପ୍ତ ପ୍ରଧାନ ବିଚାରପତି, ପଶ୍ଚିମବଙ୍ଗରେ ସହକାରୀ ଆକାଉଣ୍ଟାଣ୍ଟ ଜେନେରାଲ ଭାବରେ ଅବସରପ୍ରାପ୍ତ ତ୍ରିଲୋଚନ ବେହେରା, ସ୍ୱର୍ଗତ ମାୟାଧର ମିଶ୍ର (ଓଡିଶା ଅର୍ଥ ବିଭାଗ ପଦସ୍ଥ ଅଫିସର) ମୋର ଏକ ସମୟର ସହପାଠୀ ଭିନ୍ନ ଭିନ୍ନ ବିଷୟରେ ଏମ.ଏ. କରୁଥାଆନ୍ତି । ପୋଷ୍ଟ ଗ୍ରାଜୁଏଟ ହଷ୍ଟେଲରେ ମୁଁ, ସୁକାନ୍ତ ରାୟ, ମାୟାଧର ମିଶ୍ର, ତ୍ରିଲୋଚନ ରହୁଥିଲୁ । ଦୟାନିଧି ଫରାଡେ ହାଉସ୍‌ରେ (ବିଜ୍ଞାନ କଲେଜ

ଛାତ୍ରାବାସ)ରେ ରହେ । ସ୍ୱର୍ଗତ ଶ୍ରଦ୍ଧାକର ସୁପକାର, ସ୍ୱର୍ଗତ ମାନସ ରଞ୍ଜନ ବହିଦାର (ପଶ୍ଚିମ ଓଡିଶାର ଉଭୟ ବରପୁତ୍ର) ଆମ ଛାତ୍ରାବାସକୁ ଲାଗି ମହମ୍ମଡାନ ଛାତ୍ରାବାସରେ ରହୁଥାଆନ୍ତି । ସେ ଉଭୟେ ଆମଠୁ ବର୍ଷେ ସିନିଅର । ସ୍ୱର୍ଗତ ବାଞ୍ଛାନିଧି ଦାଶ (ରିଟାୟର୍ଡ ଆଇ.ଏ.ଏସ.) ପାଟଣା କଲେଜ କ୍ୟାମ୍ପସ ଭିତରେ ଗୋଟିଏ ଛୋଟ ମଠ ଭିତରେ ଏକ ୪/୫ ଫୁଟ ଚଉଡା ଓ ୭/୮ ଫୁଟ ଲମ୍ବାର ଗୋଟେ ଗୋହିରୀ ପରି ଜାଗାରେ ବଡ କଷ୍ଟରେ ଥାଆନ୍ତି ମଠର ମାଲିକଙ୍କ ଦୟାରେ । ସ୍ୱର୍ଗତ ଦୀନବନ୍ଧୁ ମହାପାତ୍ର (ଅର୍ଥ ବିଭାଗ ଯୁଗ୍ମ ଶାସନ ସଚିବ), ସ୍ୱର୍ଗତ ଶ୍ରୀ ନାରାୟଣ ପଟ୍ଟନାୟକ (ଡେପୁଟୀ ସେକ୍ରେଟାରୀ), ସ୍ୱର୍ଗତ ଦିବାକର ଶର୍ମା (ଅବସରପ୍ରାପ୍ତ ଆଇ.ଏ.ଏସ୍.) ଏମ.ଏ.ଫାଇନାଲ କ୍ଲାସ୍‌ରେ ପଢୁଥିଲେ ମଧ୍ୟ ଏକା ଛାତ୍ରାବାସରେ ଥିଲୁ । ଶର୍ମାଙ୍କୁ ମୁଁ ଶର୍ମାଜୀ ବୋଲି ଡାକେ ଓ ସେ ମତେ ପଣ୍ଡିତେ ବୋଲି ସମ୍ବୋଧନ କରନ୍ତି ପୁରୀର ବ୍ରାହ୍ମଣ ବୋଲି ।

୧୯୩୬ ମସିହା ଏପ୍ରିଲ ୧ ତାରିଖରେ ଓଡିଶା ସ୍ୱତନ୍ତ୍ର ପ୍ରଦେଶ ହେଲା । ୧୯୩୧ ଠାରୁ ୧୯୩୪ ମସିହା ଭିତରେ ଭାରତର ସ୍ୱାଧୀନତା ସଂଗ୍ରାମ, ସମଗ୍ର ଭାରତ ବର୍ଷରେ ବ୍ରିଟିଶ ରାଜତ୍ୱ ବିରୁଦ୍ଧରେ ଏକ ସଂକଟ ସୃଷ୍ଟି କରିଥାଏ । ୧୯୩୨ ବେଳକୁ ସଂଗ୍ରାମୀ ହିସାବରେ ୧,୨୦,୦୦୦ ବନ୍ଦୀ, ଲକ୍ଷ ଲକ୍ଷ ଲୋକଙ୍କୁ ଲାଠିମାଡ, ସଂପତ୍ତି ବ୍ୟାଜାପ୍ତି ଓ ଚାକିରୀରୁ ବରଖାସ୍ତ, ଗୃହ ବନ୍ଦୀ ପ୍ରଭୃତି ବ୍ରିଟିଶ ଶାସନର ମୁଖ୍ୟ କାର୍ଯ୍ୟ ହୋଇଥାଏ । ପୁଣି ଗୋଲ ଟେବୁଲ ବୈଠକରେ ଗାନ୍ଧିଜୀ ନିରାଶ ହୋଇ ଫେରିଥାଆନ୍ତି । ଏପରି ବିସ୍ଫୋରକ ପରିସ୍ଥିତିରେ ବ୍ରିଟିଶ ସରକାର ଭାରତୀୟମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ପ୍ରାଦେଶିକ ଶାସନର କିଛି ଅଧିକାର ଦେବା ପାଇଁ ଦ୍ୱୈତ ଆଇନ ବ୍ୟବସ୍ଥା କରି କେନ୍ଦ୍ର ସରକାରରେ ମଧ୍ୟ କିଛି ଭାରତୀୟଙ୍କୁ ସାମିଲ କରିବା ପାଇଁ ସାର୍ ଜନ୍ ସାଇମନ୍‌ଙ୍କ ନେତୃତ୍ୱରେ ସାଇମନ କମିଶନ ବସାଇଥାଆନ୍ତି । କଂଗ୍ରେସ ଏହାର ପୂର୍ଣ୍ଣ ବିରୋଧ କରିବାରୁ ଭାରତ ବ୍ୟାପୀ 'ସାଇମନ ଫେରିଯାଅ' ସ୍ଲୋଗାନରେ ଆକାଶ କମ୍ପୁଥାଏ । କିନ୍ତୁ ଓଡିଶାରେ ଉତ୍କଳ ସମ୍ମିଳନୀ ତରଫରୁ ଓଡିଶାର ସୀମା ନେଇ ଓ ସ୍ୱତନ୍ତ୍ର ପ୍ରଦେଶ ଦାବି କରି ମେମୋରାଣ୍ଡମ ଦିଆଯାଇଥାଏ । ଏହି ପରିସ୍ଥିତିରେ ସାଇମନଙ୍କ ସୁପାରିଶ ଓ ଓଡିଶାର ୩୦ ବର୍ଷର ଆନ୍ଦୋଳନ ଫଳରେ ଓଡିଶା ଏକ ସ୍ୱତନ୍ତ୍ର ପ୍ରଦେଶ ହେବ ବୋଲି ୧୯୩୪ ବେଳକୁ ସୂଚନା ମିଳିଲାଣି । ୧୯୩୪ରେ ଓଡିଶାର ମୁରବି, ଓଡିଆ ଜାତିର ସ୍ୱାଭିମାନ ପାଇଁ ସାରା ଜୀବନ ସଂଗ୍ରାମ କରି ନିଃସ୍ୱ ହୋଇଥିବା ଉତ୍କଳ ଗୌରବ ମଧୁସୂଦନଙ୍କ ପରଲୋକ ହୋଇଗଲା । ସମଗ୍ର ଓଡିଆ ଭାଷାଭାଷୀ ଅଞ୍ଚଳ ଉତ୍କଳ ଗୌରବଙ୍କ ବିୟୋଗ ଯୋଗୁ ଗଭୀର ଶୋକରେ ମ୍ରିୟମାଣ ହୋଇଥାଏ । ସ୍ୱତନ୍ତ୍ର ପ୍ରଦେଶ ପାଇଁ

ଉତ୍କଳ ଗୌରବଙ୍କ ସ୍ୱପ୍ନକୁ ପୂର୍ଣ୍ଣ ସାର୍ଥକ କରିବା ପାଇଁ ନେତୃବର୍ଗ ଶପଥ ନେଉଥିଲେ । ଏହିପରି ଏକ ପରିସ୍ଥିତିରେ ଅବିଭକ୍ତ ଭାରତରେ ୨ଟି ନୂଆ ରାଜ୍ୟ ପ୍ରତିଷ୍ଠା କରିବା ପାଇଁ ବ୍ରିଟିଶ ସରକାର ତରଫରୁ ଘୋଷଣା କରାଗଲା । ଗୋଟିଏ ହିନ୍ଦୁଙ୍କ ରାଜ୍ୟ ଓଡିଶା ଅନ୍ୟଟି ମୁସଲିମ ରାଜ୍ୟ ସିନ୍ଧ ବା ସିନ୍ଧୁ ପ୍ରଦେଶ । ଓଡିଶା ରାଜ୍ୟଟି ଅତ୍ୟନ୍ତ କ୍ଷୁଦ୍ର । ମାଡ୍ରାସ ପ୍ରଦେଶରେ ଥିବା ଆନ୍ଧ୍ର ରାଜ୍ୟର ବିଶାଖାପାଟଣା ଜିଲ୍ଲାରୁ କେତେକ ଓଡିଆ ଭାଷାଭାଷୀ ଅଞ୍ଚଳ ନେଇ କୋରାପୁଟ ଓ ଗଞ୍ଜାମ ଜିଲ୍ଲା ସୃଷ୍ଟି କରାଗଲା । ପୁରୀ, କଟକ, ବାଲେଶ୍ୱର, ଅନୁଗୁଳ ଓ ସମ୍ବଲପୁର ଏପରି ୬ଟି ଜିଲ୍ଲାକୁ ନେଇ ଓଡିଶା ରାଜ୍ୟ ଗଠିତ ହୁଏ ଏବଂ ନିର୍ବାଚନ ପୂର୍ବରୁ ଏକ ଓଡିଆ ଆଡମିନିଷ୍ଟ୍ରେଟିଭ କାଉନ୍‌ସିଲ୍ ନାମରେ ଏକ ଅନ୍ତରୀଣ ଆଡଭାଇଜରୀ ସଂସ୍ଥା ସୃଷ୍ଟି କରାଯାଇଥାଏ । ଏହିପରି ଏକ ପରିସ୍ଥିତିରେ ଓଡିଶା ସ୍ୱତନ୍ତ୍ର ପ୍ରଦେଶ ହେବାର ସ୍ଥିର ହୋଇ, ୧୯୩୫ ମସିହା ଭାରତ ଶାସନ ଆଇନ ଅନୁସାରେ ପ୍ରାଦେଶିକ ବ୍ୟବସ୍ଥା ସଭା ପାଇଁ ରାଜ୍ୟରେ ନିର୍ବାଚନ ହେଲା । ସେତେବେଳେ ପ୍ରଦେଶ କଂଗ୍ରେସର ସଭାପତି ଥିଲେ ସ୍ୱର୍ଗତ ପଣ୍ଡିତ ନୀଳକଣ୍ଠ । କଂଗ୍ରେସ ସଂଗଠନର ପ୍ରମୁଖ ନେତାମାନଙ୍କ ମଧ୍ୟରେ ଥିଲେ ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ, ରାଜକୃଷ୍ଣ ବୋଷ, ଯଦୁମଣି ମଙ୍ଗରାଜ, ଡକ୍ଟର ହରେକୃଷ୍ଣ ମହତାବ, ନନ୍ଦ କିଶୋର ଦାସ, ସମ୍ବଲପୁରର ବୋଧରାମ ଦୁବେ, ପଣ୍ଡିତ ଲକ୍ଷ୍ମୀ ନାରାୟଣ ମିଶ୍ର, ଗଞ୍ଜାମର ବିଶ୍ୱନାଥ ଦାଶ, ଦିବାକର ପଟ୍ଟନାୟକ, ଶଶୀ ଭୂଷଣ ରଥ, ନିରଞ୍ଜନ ପଟ୍ଟନାୟକ, କୋରାପୁଟ ଜିଲ୍ଲାରୁ ରାଧାକୃଷ୍ଣ ବିଶ୍ୱାସ ରାୟ, ରାଧା ମୋହନ ସାହୁ, ସଦାଶିବ ତ୍ରିପାଠୀ, ହରିହର ମିଶ୍ର ପ୍ରମୁଖ ।

ଭାରତ ଶାସନ ଆଇନ ଅନୁସାରେ ଏହା ହେଉଛି ପ୍ରଥମ ନିର୍ବାଚନ । ସାବାଳକ ନିର୍ବାଚନ ପ୍ରଥା ସେତେବେଳେ ନଥାଏ । ଚୌକିଦାରୀ ଟିକସ ଦେଉଥିବା ଓ ନିଜ ନାମରେ ସଂପତ୍ତି ଥିବା ଲୋକ କେବଳ ଭୋଟର । ବିଧାନସଭାର ସଭ୍ୟ ସଂଖ୍ୟା ଥାଏ ୬୦ । କଂଗ୍ରେସ କେବଳ ୩୫ଟି ସ୍ଥାନରୁ ନିର୍ବାଚନ ପାଇଁ ପ୍ରାର୍ଥୀ ଦେଇଥାଏ । ତା ମଧ୍ୟରୁ ୩୪ ଜଣ ପ୍ରାର୍ଥୀ ନିର୍ବାଚିତ ହୋଇଥାଆନ୍ତି । ପୁରୀ ଜିଲ୍ଲାର ପଣ୍ଡିତ ଲିଙ୍ଗରାଜ ମିଶ୍ର, ଜଗବନ୍ଧୁ ସିଂ, ପଣ୍ଡିତ ଗୋଦାବରୀଶ ମିଶ୍ର, ମୋହନ ଦାସ ପ୍ରମୁଖ ନେତାମାନେ ମଧ୍ୟ ନିର୍ବାଚିତ ହେଲେ । କେବଳ ଚମ୍ପାପୁର ଆଶ୍ରମର ଗୋବିନ୍ଦ ମିଶ୍ରଙ୍କ ନୈତିକତା ସଂପର୍କରେ ଗାନ୍ଧିଜୀ କିଛି ଖବର ପାଇ ତାଙ୍କ ଦ୍ୱାରା ପ୍ରକାଶିତ ହରିଜନ ପତ୍ରିକାରେ ପ୍ରକାଶିତ କେତେକ କଟୁ ମନ୍ତବ୍ୟ ଫଳରେ ସେ ନିର୍ବାଚିତ ହୋଇପାରିନଥିଲେ । ନିର୍ବାଚନ ପରେ କଂଗ୍ରେସ ଶାସନ ଦାୟିତ୍ୱ ନେବା ପାଇଁ କେନ୍ଦ୍ର ସ୍ତରରେ ନିଷ୍ପତ୍ତି ନ ହେଉଥିବାରୁ ଓଡିଶାରେ ଏକ ଅନ୍ତରୀଣ ସରକାର ପାରଳା ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର

ଗଜପତିଙ୍କ ନେତୃତ୍ୱରେ ପ୍ରତିଷ୍ଠିତ ହୋଇଥିଲା । ତାଙ୍କୁ ସେତେବେଳର ସାମ୍ବିଧାନିକ ବ୍ୟବସ୍ଥା ଅନୁସାରେ ପ୍ରଧାନମନ୍ତ୍ରୀ କୁହାଯାଉଥିଲା । ପାରଳା ମନ୍ତ୍ରିମଣ୍ଡଳରେ ବ୍ରହ୍ମପୁରର ସ୍ୱର୍ଗତ ଗୋରାଚାନ୍ଦ ପଟ୍ଟନାୟକ ଓ ପୁରୀର ଯୁବକ ଓକିଲ ଲତିଫୁର ରହମାନ ମନ୍ତ୍ରୀ ହେଲେ । କିନ୍ତୁ ତିନି ଚାରି ମାସ ପରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କରିବା ପାଇଁ ନିଷ୍ପତ୍ତି ନେବାରେ ଏବଂ ଦ୍ୱୈତ ଶାସନରେ ପରୀକ୍ଷାମୂଳକ ଭାବେ ଅଭିଜ୍ଞତା ହାସଲ ପାଇଁ କଂଗ୍ରେସ ଜାତୀୟ ସ୍ତରରେ ଏପରି ନିଷ୍ପତ୍ତି ନେଇଥିଲେ । କଂଗ୍ରେସର ବ୍ୟବସ୍ଥା ସଭା ଦଳରେ ହରେକୃଷ୍ଣ ମହତାବଙ୍କ ଚକ୍ରାନ୍ତରେ ପଣ୍ଡିତ ନୀଳକଣ୍ଠଙ୍କୁ କୌଣସି ମତେ ପ୍ରଧାନମନ୍ତ୍ରୀ କରାଇ ନ ଦେଇ ଗଞ୍ଜାମର ବିଶ୍ୱନାଥ ଦାଶଙ୍କୁ ପ୍ରଧାନମନ୍ତ୍ରୀ କରାଗଲା । ତାଙ୍କ ସହିତ ସମ୍ବଲପୁରର ଶ୍ରୀ ବୋଧରାମ ଦୁବେ, କଟକର ଆଡଭୋକେଟ ଶୋଭନ ଖାଁ ପ୍ରଭୃତି ମନ୍ତ୍ରିମଣ୍ଡଳରେ ରହିଲେ । ଏହି ନିର୍ବାଚନ ସଂଗଠନରେ ଏକ ସଂକଟ ସୃଷ୍ଟି କରିବାର ମୂଳଦୁଆ ପଡ଼ିଲା । ପଣ୍ଡିତ ନୀଳକଣ୍ଠ ବିଶ୍ୱନାଥ ଦାଶଙ୍କ ପ୍ରଧାନମନ୍ତ୍ରିତ୍ୱକୁ ବରଦାସ୍ତ କରିପାରିଲେ ନାହିଁ । ଉଭୟଙ୍କ ମଧ୍ୟରେ ମତାନ୍ତର ସୃଷ୍ଟି ହେଲା ଓ ତା'ର ପ୍ରତିକ୍ରିୟା ଦେଶର କଂଗ୍ରେସ ସଂଗଠନ ଉପରେ ଏକ ଅପ୍ରୀତିକର ଅବସ୍ଥା ସୃଷ୍ଟି କଲା ।

# କଲେଜ ଶିକ୍ଷା ଓ
# ମୋ ରାଜନୈତିକ ଜୀବନର ଆରମ୍ଭ

ସେତେବେଳେ ଓଡିଶାରେ ବିଶ୍ୱନାଥ ଦାଶଙ୍କ ପ୍ରଧାନମନ୍ତ୍ରିତ୍ୱରେ ଏକ କଂଗ୍ରେସ ମନ୍ତ୍ରିମଣ୍ଡଳ ଦାୟିତ୍ୱ ନେଇଥାଏ । ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ (କଟକ) ଓ ଶ୍ରୀ ବୋଧରାମ ଦୁବେ (ସମ୍ବଲପୁର) ଦୁଇଜଣ ସହଯୋଗୀ ମନ୍ତ୍ରୀ ଥାଆନ୍ତି । ବିହାରରେ ମଧ୍ୟ ଡକ୍ଟର ଶ୍ରୀକୃଷ୍ଣ ସିଂହଙ୍କ ପ୍ରଧାନମନ୍ତ୍ରିତ୍ୱରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଦାୟିତ୍ୱରେ ଥାଆନ୍ତି । କିନ୍ତୁ ଶ୍ରୀ ଅନୁଗ୍ରହ ନାରାୟଣ ସିହ୍ନା ଥାଆନ୍ତି ସବୁଠାରୁ ପ୍ରତିପତ୍ତିଶାଳୀ ମନ୍ତ୍ରୀ । ରାଜପୁତ ଓ  ଭୂମିହାରଙ୍କ ମଧ୍ୟରେ ତୀବ୍ର ଜାତିଆଣ ପ୍ରତିଦ୍ୱନ୍ଦୀତା ଆମେ ବିହାରୀ ଛାତ୍ରବଂଧୁମାନଙ୍କ ଠାରୁ ଶୁଣୁ । ସେତେବେଳେ ମୁଖ୍ୟମନ୍ତ୍ରୀମାନଙ୍କୁ ପ୍ରଧାନମନ୍ତ୍ରୀ ବୋଲି କୁହାଯାଉଥିଲା । ସମ୍ବିଧାନ ପ୍ରଣୟନ ପରେ ପ୍ରଥମ ନିର୍ବାଚନ ୧୯୫୧ ମସିହାରେ ହୁଏ । ଏହି ନିର୍ବାଚନ ପରଠାରୁ ସମ୍ବିଧାନ କେନ୍ଦ୍ର ସରକାର ମୁଖ୍ୟଙ୍କୁ ପ୍ରଧାନମନ୍ତ୍ରୀ ଓ ରାଜ୍ୟରେ ସରକାରୀ ଦଳର ନେତାଙ୍କୁ ମୁଖ୍ୟମନ୍ତ୍ରୀ ବୋଲି ଆଖ୍ୟା ଦିଆଗଲା ।

ବିହାର ଓଡିଶା ଏକ ପ୍ରଦେଶ ଭାବେ ପ୍ରାୟ ୩୦ ବର୍ଷ ରହିବା ପରେ ଓ ବିହାର-ଓଡିଶାର ରାଜଧାନୀ ପାଟଣାଠାରେ ଥିବା ଦୃଷ୍ଟିରୁ ଓ ବିହାର-ଓଡିଶା ଆସେମ୍ବ୍ଲିରେ ଓଡିଶାର ତତ୍‌କାଳୀନ ନିର୍ବାଚନ ଆଇନ ଅନୁଯାୟୀ ନିର୍ବାଚିତ ସଭ୍ୟମାନେ ପାଟଣାରେ ରହୁଥିବା ଦୃଷ୍ଟିରୁ ବହୁ ଓଡିଆ ବିହାରରେ ବସବାସ କରୁଥାଆନ୍ତି । ଓଡିଶା ପ୍ରଦେଶ ଗଠନ ପୂର୍ବରୁ ପାଟଣା ହାଇକୋର୍ଟ ଅଧୀନରେ ଓଡିଆ ଭାଷାଭାଷୀ ଅଞ୍ଚଳ ଥାଏ । ସେକ୍ରେଟାରିଏଟ୍‌ରେ ବହୁତ ଓଡିଆ ଅଫିସର ଥାଆନ୍ତି । ହାଇକୋର୍ଟରେ ଓଡିଶାର ବହୁ ଆଇନଜୀବୀ ମଧ୍ୟ ଆଇନ ବ୍ୟବସାୟ କରୁଥାଆନ୍ତି । ପୁନଶ୍ଚ ଓଡିଶା ପ୍ରଦେଶ କେବଳ ୭ଟା ଜିଲ୍ଲାକୁ ନେଇ ହୋଇଥିବାରୁ ବିହାରରେ ସିଂହଭୂମ ଜିଲ୍ଲାର ବହୁତ ଓଡିଆ ଭାଷାଭାଷୀ ଅଞ୍ଚଳ ମଧ୍ୟ (ସରାଇକଳା, ଖରସୁଆଁ ପ୍ରଭୃତି) ଓଡିଶାରେ ମିଶିବା ପାଇଁ ଆନ୍ଦୋଳନ ଚାଲିଥାଏ । ମେଡିକାଲ କଲେଜ, ଇଞ୍ଜିନିୟରିଂ କଲେଜ, ସବୁ ସ୍ନାତକୋତ୍ତର କ୍ଲାସ୍ ପାଟଣାରେ । ଓଡିଶାର ଯେତେ ମେଧାବୀ ଛାତ୍ର ଛାତ୍ରୀ ସମସ୍ତେ ପ୍ରାୟ ପାଟଣା ପଢିବାକୁ ଆସୁଥିଲେ । ଓଡିଶା ବିହାରର ଏକ ଡିଭିଜନ

ଭାବେ ରହିଥିବାରୁ ଶିକ୍ଷା, ସଂସ୍କୃତି ଓ ରାଜନୈତିକ ଓ ବ୍ୟବସାୟିକ କ୍ଷେତ୍ରରେ ଓଡିଶାର ବିହାର ସହିତ ସଂପର୍କ ବହୁତ ବ୍ୟାପକ ହୋଇଯାଇଥିଲା । ଉତ୍କଳ ଗୌରବ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁଙ୍କ ଠାରୁ ବ୍ରଜସୁନ୍ଦର ଦାସ, କନିକା ରାଜବାହାଦୂର ପର୍ଯ୍ୟନ୍ତ ବହୁତ ତତ୍କାଳୀନ ଓ ସମ୍ମାନନୀୟ ନେତୃବର୍ଗ, ଜମିଦାର ଓ ଅନେକ ପ୍ରତିପତ୍ତିଶାଳୀ ଲୋକ ବିହାର ଓଡିଶା ବ୍ୟବସ୍ଥା ସଭାରେ ସଭ୍ୟ ଥାଆନ୍ତି । ଉତ୍କଳ ଗୌରବ ମଧୁସୂଦନ ପଞ୍ଚାୟତ ଓ ସହର ବିଭାଗ ମନ୍ତ୍ରୀ ଥାଆନ୍ତି । ସେହିପରି ମାନ୍ଦ୍ରାସ ଆସେମ୍ବ୍ଲିରେ ବିଶ୍ୱନାଥ ଦାଶଙ୍କଠାରୁ ଆରମ୍ଭ କରି ବହୁ ବିଶିଷ୍ଟ ଓଡିଶା ନେତା ସଭ୍ୟ ଥିଲେ । କାରଣ ସେତେବେଳକୁ ଆନ୍ଧ୍ର ପ୍ରଦେଶ ସ୍ୱତନ୍ତ୍ର ରାଜ୍ୟ ନହୋଇ ମାନ୍ଦ୍ରାସ ପ୍ରେସିଡେନ୍ସିର ଏକ ଅଂଶ ଭାବରେ ଥାଏ । ସେତେବେଳେ ସେଣ୍ଟ୍ରାଲ ପ୍ରଭିନ୍‌ସେସ ନାମରେ ଏକ ପ୍ରଭିନସ୍ ମଧ୍ୟ ଥାଏ । ସମ୍ବଲପୁର ଜିଲ୍ଲା ସେହି ପ୍ରଦେଶର ଅଂଶ । ବସ୍ତର ଇଷ୍ଟେଟ ଓ ଫୁଲଝର ଜିଲ୍ଲାମାନଙ୍କରେ ହଜାର ହଜାର ସଂଖ୍ୟାରେ ଓଡିଆ ମଧ୍ୟପ୍ରଦେଶର ଅଧିବାସୀ । ଏମାନଙ୍କ ଛଡା ଶ୍ରୀକାକୁଳମ ଜିଲ୍ଲା (ମାନ୍ଦ୍ରାସ ପ୍ରଦେଶ)ରେ ମଧ୍ୟ ବହୁ ଓଡିଆ ଭାଷାଭାଷୀ ଅଞ୍ଚଳରେ ଓଡିଆମାନେ ବସବାସ କରୁଥିଲେ । ଏବେ ମଧ୍ୟ ଏହି ସବୁ ଅଞ୍ଚଳରେ ବାସ କରୁଛନ୍ତି । ଉତ୍କଳ ଗୌରବ ମଧୁସୂଦନ, ପାରଳା ମହାରାଜା, ଖଲିକୋଟ ରାଜା ବାହାଦୂର, ନିରଞ୍ଜନ ପଟ୍ଟନାୟକ, ହରିହର ମିଶ୍ର, ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ, ବ୍ରଜ ସୁନ୍ଦର ଦାସ, ଗୌରୀ ଶଙ୍କର ରାୟ, ପ୍ରଚାରକ ଅନନ୍ତ ମିଶ୍ର, ଦିବାକର ପଟ୍ଟନାୟକ, ଶଶୀଭୂଷଣ ରଥ, ଚନ୍ଦ୍ରଶେଖର ବେହେରା, ବିଶ୍ୱନାଥ କର, ଗୋରାଚାନ୍ଦ ପଟ୍ଟନାୟକ, ଶ୍ରୀ ଜଗବଂଧୁ ସିଂହ ପ୍ରଭୃତି ନେତାମାନେ ଉତ୍କଳ ସମ୍ମିଳନୀକୁ ଏକ ସର୍ବଦଳୀୟ ମିଳନ ପୀଠ କରି ଏହି ସବୁ ଅଞ୍ଚଳକୁ ଓଡିଶାରେ ମିଶାଇବା ପାଇଁ ମଧ୍ୟ ଆନ୍ଦୋଳନ କରିବା ସହିତ, ଓଡିଆ ଭାଷା, ସଂସ୍କୃତି ଓ ଓଡିଆଙ୍କ ସ୍ୱାର୍ଥ ରକ୍ଷା ପାଇଁ ବିଭିନ୍ନ ସରକାରଙ୍କ ପାଖେ ଦାବି କରୁଥାଆନ୍ତି । ତତ୍କାଳୀନ ବଙ୍ଗ ଦେଶରେ ମେଦିନୀପୁର ଜିଲ୍ଲାର ଧଳଭୂମି ପରି ବହୁ ଅଞ୍ଚଳ ମଧ୍ୟ ଓଡିଆ ଭାଷାଭାଷୀ ଲୋକଙ୍କ ଜନ୍ମ ଓ କର୍ମଭୂମି ଥିବା ଦୃଷ୍ଟିରୁ ସେ ସବୁ ଅଞ୍ଚଳ ମଧ୍ୟ ଭବିଷ୍ୟତ ପୂର୍ଣ୍ଣାଙ୍ଗ ଓଡିଶାର ଅଂଗ ହୋଇ ସମସ୍ତ ଓଡିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ର କରି ଏକ ବିରାଟ ଓଡିଶା ଦେଶ ଗଠନ କରିବା ପାଇଁ ଯେଉଁ ସର୍ବଦଳୀୟ ଆନ୍ଦୋଳନ ଚାଲିଥିଲା, ୧୯୩୬ ମସିହାରେ ତାହା ଆଂଶିକ ପୂରଣ ହେଲେ ମଧ୍ୟ ନୂତନ ପିଢିର ନେତାମାନେ ପଣ୍ଡିତ ଗୋଦାବରୀଶ, ପଣ୍ଡିତ ନୀଳକଣ୍ଠ, ଶଶୀ ଭୂଷଣ ରଥ, ରାଧାନାଥ ରଥ, ଦିବାକର ପଟ୍ଟନାୟକ, ଜୟପୁରର ହରିହର ମିଶ୍ର, ବ୍ରଜସୁନ୍ଦର ଦାସ ପ୍ରଭୃତି ସେ ଦିଗରେ ଉଦ୍ୟମ ଅବ୍ୟାହତ ରଖିଥାଆନ୍ତି । ପଣ୍ଡିତ ଗୋପବନ୍ଧୁଙ୍କର ମହାପ୍ରୟାଣ ହୁଏ ୧୯୨୮

ମସିହାରେ । ଉତ୍କଳ ଗୌରବ ମଧୁସୂଦନ ମଧ୍ୟ ୧୯୩୪ ମସିହାରେ ଇହଧାମରୁ ବିଦାୟ ନେଲେ । ଉଭୟ ଓଡିଶାର ମହାନ ନେତା ଭାବେ ରାଜ୍ୟର ସ୍ୱାଭିମାନ ରକ୍ଷା ଓ ପୂର୍ବ ଗୌରବର ପୁନରୁଦ୍ଧାର ପାଇଁ ଯେଉଁ ନେତୃତ୍ୱ, ଯେଉଁ ପ୍ରେରଣା ଓ ଦିଗ୍‌ଦର୍ଶନ ଏ ଜାତିକୁ ଦେଇ ଯାଇଛନ୍ତି ତାକୁ ହିଁ ଆମର ଜାତୀୟ ସମ୍ପଦ କରି ଆଜି ଆମେ ସମଗ୍ର ଭାରତରେ ଗୌରବରେ ମୁଣ୍ଡ ଟେକି ଆଗେଇ ଚାଲିବା ପାଇଁ ସମର୍ଥ ହୋଇଛୁ । ଜଣେ କଲେଜ ଛାତ୍ର ଭାବେ ମୁଁ ମଧ୍ୟ ଉତ୍କଳ ସମ୍ମିଳନୀ ମଣ୍ଡପରେ ଏହି ମହାନ ନେତାମାନଙ୍କ ପଦାଙ୍କ ଅନୁସରଣ କରିବା ପାଇଁ ପ୍ରେରଣା ପାଇଥିଲି ଏବଂ ଅନେକ ଉତ୍କଳ ସମ୍ମିଳନୀ ଅଧିବେଶନରେ ଛାତ୍ର ଭାବରେ ଯୋଗ ଦେଇ ପରବର୍ତ୍ତୀ ସାଧାରଣ ଜୀବନରେ ଏହିପରି ଓଡିଆ ଭାଷାଭାଷୀ ଅଞ୍ଚଳ ଯଥା ବିହାରର ସରେଇକଳା, ଖରସୂଆଁ ଓ ସିଂହଭୂମ ଜିଲ୍ଲାର ଚକ୍ରଧରପୁର ଓ ଅନ୍ୟାନ୍ୟ ଅଞ୍ଚଳ, ମେଦିନୀପୁର, ଧଳଭୂମି ପ୍ରଭୃତି ଅଞ୍ଚଳ ଭିତରେ ଓ ମଞ୍ଜୁଷା ପ୍ରଭୃତି ଆନ୍ଧ୍ର ପ୍ରଦେଶରେ ବୁଲି ଓଡିଆ ଭାଷାର ସୁରକ୍ଷା ଓ ଓଡିଆ ଭାଷାଭାଷୀ ଲୋକଙ୍କର ସ୍ୱାର୍ଥ ରକ୍ଷା ପାଇଁ କାର୍ଯ୍ୟ କରିବାର ସୁଯୋଗ ପାଇଛି, ଏବେ ମଧ୍ୟ ସେ ଦିଗରେ ମୋର ଉତ୍ସାହ କମି ନାହିଁ । ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର, ଶ୍ରୀ ବସନ୍ତ କୁମାର ପାଣିଗ୍ରାହୀ, ବଂଧୁ କୈଳାଶ ଆଚାର୍ଯ୍ୟଙ୍କ ପରି ଉତ୍କଳ ସମ୍ମିଳନୀର ନୂତନ ନେତୃତ୍ୱ ଏବେ ମଧ୍ୟ ଏ ଦିଗରେ ନେତୃତ୍ୱ ନେଇ ଉପାନ୍ତ ଅଞ୍ଚଳରେ ଓଡିଆ ସ୍ୱାଭିମାନ ରକ୍ଷା କରିବା ପାଇଁ ସଚେତନତା ସୃଷ୍ଟି କରୁଛନ୍ତି । ଏଠାରେ ଡଃ ହରେକୃଷ୍ଣ ମହତାବଙ୍କ 'ପ୍ରତି ବ୍ୟକ୍ତିଗତ ଭାବରେ ମୋର ଶ୍ରଦ୍ଧାଞ୍ଜଳୀ ଦେବାର କଥା । ୧୯୪୭ ମସିହାରେ ବ୍ରିଟିଶ କ୍ଷମତା ହସ୍ତାନ୍ତର ସମୟରେ ଜାମ୍ମୁକାଶ୍ମୀର ଉପରେ ପାକିସ୍ତାନ ଆକ୍ରମଣ କରି ଯେପରି ଅନେକ ଅଞ୍ଚଳ ଦଖଲ କଲେ ଓ ଭାରତ ସରକାର ଅଗତ୍ୟା ସୈନ୍ୟ ପଠାଇ କାଶ୍ମୀରକୁ ଆଂଶିକ ମୁକ୍ତ କଲେ ଏବଂ ଜାମ୍ମୁକାଶ୍ମୀର ପାଇଁ ଭାରତ ପାକିସ୍ତାନ ଭିତରେ ଗତ ୫୨ ବର୍ଷ ଭିତରେ ଚାରି ଥର ଯୁଦ୍ଧ ହୋଇ ଉଭୟ ଦେଶର ବହୁ ଜୀବନ ଓ ଜନଜୀବନ ନଷ୍ଟ ହେବା ସହିତ ଉଭୟ ଦେଶ ଭିତରେ ସ୍ଥାୟୀ ସମଝୋତା ସମ୍ଭବପର ହୋଇ ପାରୁନାହିଁ, ସେତେବେଳେ ଅନ୍ୟାନ୍ୟ ଦେଶୀୟ ରାଜ୍ୟମାନଙ୍କ ସଂପର୍କରେ ସେହିପରି ଆଶଙ୍କା ସୃଷ୍ଟି ହୋଇଥିବା ଦୃଷ୍ଟିରୁ ତତ୍‌କାଳୀନ କେନ୍ଦ୍ର ସ୍ୱରାଷ୍ଟ୍ର ମନ୍ତ୍ରୀ ଭାରତର ଲୌହ ମାନବ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ରାଷ୍ଟ୍ର ନାୟକ ଭାବରେ ବିଚକ୍ଷଣତା ଦେଖାଇ ଭାରତର ସମସ୍ତ ଦେଶୀୟ ରାଜ୍ୟଗୁଡିକୁ ଭାରତ ରାଷ୍ଟ୍ରରେ ମିଶ୍ରଣ କରାଇ ଦେଇ ଅଖଣ୍ଡ ଭାରତର ନିର୍ମାତା ରୂପେ ସମ୍ମାନୀତ ହୋଇଛନ୍ତି । ଦେଶୀୟ ରାଜ୍ୟ ମିଶ୍ରଣର ପ୍ରଥମ ଅଧ୍ୟାୟ ସର୍ଦ୍ଦାର ପଟେଲ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଓ ଜନୈକ ରାଷ୍ଟ୍ରନାୟକ ଉତ୍କଳ କେଶରୀ ଡଃ ହରେକୃଷ୍ଣ ମହତାବଙ୍କ ସହଯୋଗରେ ସମ୍ଭବପର କରି ପାରିଥିଲେ ।

ଓଡିଶା ପ୍ରଦେଶ ଗଠନର ଠିକ୍ ୧୨ ବର୍ଷ ପରେ ସ୍ୱାଧୀନତା ପ୍ରାପ୍ତିର ୬ ମାସ ଭିତରେ ୧୯୪୮ ମସିହା ଜାନୁଆରୀ ୧ ତାରିଖ ଦିନ ଓଡିଶାର ୨୫ଟି ଗଡଜାତ ଶାସନର ରାଜା ମହାରାଜମାନେ କେନ୍ଦ୍ର ସରକାରଙ୍କ ସହିତ ଓଡିଶା ରାଜ୍ୟରେ ମିଶିଯିବା ପାଇଁ ଚୁକ୍ତି ସ୍ୱାକ୍ଷର କଲେ । ଓଡିଶା ଏକ ପୂର୍ଣ୍ଣାଙ୍ଗ ରାଜ୍ୟରେ ପରିଣତ ହୋଇ ୧୩ଟି ଜିଲ୍ଲାରେ ବିଭକ୍ତ ହେଲା । ୧୯୯୪ ମସିହାରେ ବିଜୁ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ ଏହି ୧୩ଟି ଜିଲ୍ଲା ୩୦ ଟି ଜିଲ୍ଲାରେ ପରିଣତ ହୋଇ ବର୍ତ୍ତମାନ ପ୍ରାୟ ୩ କୋଟି ୫୦ ଲକ୍ଷ ଲୋକସଂଖ୍ୟା ବିଶିଷ୍ଟ ଏକ ରାଜ୍ୟ ରୂପେ ଭାରତ ମାନଚିତ୍ରରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଛି ।

ସେ ସଂପର୍କରେ ଅଧିକ ତଥ୍ୟ ଦେବା ମୋର ଉଦ୍ଦେଶ୍ୟ ନୁହେଁ । କିନ୍ତୁ ଯେତେବେଳେ ମୁଁ ପାଟନାରେ ଏମ.ଏ. ପଢିବାକୁ ସକ୍ଷମ ହେଲି ମୋ ମନ ଭିତରେ ସଦ୍ୟ ପ୍ରତିଷ୍ଠିତ ଓଡିଶା ଓ ଉତ୍କଳ ସମ୍ମିଳନୀର ଉପାନ୍ତ ଅଞ୍ଚଳ ମିଶ୍ରଣ ପାଇଁ ଓଡିଆ ଜାତିର ନମସ୍ୟ ନେତୃବୃନ୍ଦଙ୍କ ସହିତ ମୋର ସଂପର୍କ ମନ ଭିତରେ ଏକ ନୂତନ ଉନ୍ମାଦନା ସୃଷ୍ଟି କରିଥିଲା । ସେ ଉନ୍ମାଦନାକୁ କିଞ୍ଚିତ ରୂପରେଖ ଦେବା ପାଇଁ ଓ ପାଟନାର ଓଡିଆ ସମାଜକୁ ସଂଗଠିତ କରି ଓଡିଆ ସମାଜ ଏକ ବଳିଷ୍ଠ ସଂଗଠନ ରୂପେ ଏ ଦିଗରେ କାର୍ଯ୍ୟ କରିବା ଉଦ୍ଦେଶ୍ୟରେ ମୁଁ ଓଡିଶାବାସୀଙ୍କ ଏକମାତ୍ର ସାମାଜିକ ଓ ସାଂସ୍କୃତିକ ସଂଗଠନ 'ଓଡିଶା ଲିଗ୍'ର ଦାୟିତ୍ୱ ନେବା ପାଇଁ ତତ୍କାଳୀନ ବଂଧୁମାନଙ୍କ ଅନୁରୋଧକୁ ସମ୍ମାନ ଦେଇ ଦାୟିତ୍ୱ ନେଲି । ସେତେବେଳେ ତାର ସଭାପତି ଥିଲେ ପାଟନା ହାଇକୋର୍ଟର ବିଶିଷ୍ଟ ଆଡଭୋକେଟ୍ ଶ୍ରୀ ଗଜେନ୍ଦ୍ର ପ୍ରସାଦ ଦାସ । ତାଙ୍କର ଜାମାତା ଡଃ ଗିରିଜା ଶଙ୍କର ଦାସ ମହାପାତ୍ର ଓଡିଶାର ଖ୍ୟାତନାମା ସର୍ଜନ ଓ ସ୍ୱାସ୍ଥ୍ୟ ବିଭାଗର ନିର୍ଦ୍ଦେଶକ ଭାବରେ ବହୁ ସୁନାମ ଅର୍ଜନ କରିଛନ୍ତି । ତାଙ୍କର ଅନ୍ୟ ଦୁଇ ଜାମାତା ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ଓ ବର୍ତ୍ତମାନ ଦିଲ୍ଲୀ ବିଶ୍ୱବିଦ୍ୟାଳୟ ଇଂରାଜି ବିଭାଗର ବରିଷ୍ଠ ପ୍ରଫେସର ଶ୍ରୀ ଜି.ସି. ଦାସ ଓ ରାଜ୍ୟ ସରକାରଙ୍କର ପୂର୍ବତନ ଶିକ୍ଷା ସଚିବ ଶ୍ରୀ ହେମେନ୍ଦ୍ର ନାରାୟଣ ଦାସ ମହାପାତ୍ର । ଗଜେନ୍ଦ୍ର ବାବୁଙ୍କ ବଡ ଭାଇ ସ୍ୱର୍ଗତ ମୁକୁନ୍ଦ ପ୍ରସାଦ ଦାସ ଓଡିଶାର ଆଇନଜୀବୀ, ବିଧାନସଭାର ବାଚସ୍ପତି ଓ ସେ ମଧ୍ୟ ଜଣେ ଓଡିଶା ହାଇକୋର୍ଟର ପ୍ରାକ୍ତନ ଆଡଭୋକେଟ୍ ଜେନେରାଲ । ପ୍ରାକ୍ତନ ବିଚାରପତି ସ୍ୱର୍ଗତ ପୀତାମ୍ବର ମିଶ୍ର ଓ ଅନ୍ୟତମ ହାଇକୋର୍ଟ ବିଚାରପତି ସ୍ୱର୍ଗତ ଗୋପାଳ ଚନ୍ଦ୍ର ଦାସ ଉଭୟ ସେତେବେଳେ ପାଟନା ହାଇକୋର୍ଟରେ ଆଡଭୋକେଟ । ଉଭୟଙ୍କର ମୁଁ ଥାଏ ଅତି ପ୍ରିୟ । ପୀତାମ୍ବର ବାବୁ ପୁରୀ ନିକଟସ୍ଥ ବୀର ପ୍ରତାପପୁର ଶାସନର । ଆମ ପରିବାର ସହିତ ସାମାଜିକ ସ୍ତରରେ ନିକଟ । ଶ୍ରୀ ଗୋପାଳ ଚନ୍ଦ୍ର ଦାସଙ୍କୁ ମୁଁ ହେନା ଭାଇନା ବୋଲି ଡାକୁଥିଲି ।

କାରଣ ମୋର ଭାଇନା ସ୍ୱର୍ଗତ ନ୍ୟାୟପତି ହରିଭାଇନାଙ୍କ ସହିତ ଅତ୍ୟନ୍ତ ଘନିଷ୍ଠ । ଦୁହେଁ ପରସ୍ପରକୁ 'ହେନା' ବୋଲି ସମ୍ବୋଧନ କରୁଥିଲେ । ସେଥିପାଇଁ ମୁଁ ହେନା ଭାଇନା ବୋଲି ଡାକେ ଓ ତାଙ୍କ ସ୍ତ୍ରୀଙ୍କୁ ଭାଉଜ ବୋଲି ସମ୍ବୋଧନ କରେ । ଉଭୟେ ମତେ ତାଙ୍କ ସାନ ଭାଇ ରାଜକିଶୋର ଦାସଙ୍କ ପରି ସ୍ନେହ କରନ୍ତି । ସପ୍ତାହରେ ଥରେ ନିଶ୍ଚିତ ଭାବେ ରାଣୀଘାଟ ସ୍ନାତକୋତ୍ତର ଛାତ୍ରାବାସରୁ ତାଙ୍କ ଘରକୁ ଖାଇବାକୁ ଆସିବା ପାଇଁ ନିର୍ଦ୍ଦେଶ ଥାଏ । ଗଜେନ୍ଦ୍ର ବାବୁ ଥିଲେ ମୋର ଧର୍ମ ବାପା ସଦୃଶ । ସେତେବେଳକୁ ସିନିଅର ଓ ପ୍ରତିଷ୍ଠିତ ଆଇନଜୀବୀ । ବହୁତ ଟଙ୍କା ରୋଜଗାର । ତାଙ୍କର ପ୍ରଥମା କନ୍ୟା ବାଣୀ ସେଇବର୍ଷ ମାଟ୍ରିକୁଲେସନ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ସୁନା ମେଡାଲ ପାଇବା ପାଇଁ ଯୋଗ୍ୟା ହୋଇଥାଆନ୍ତି । ସେ ଆଇ.ଏସ.ସି. ପଢିବା ପାଇଁ ପାଟନା କଲେଜରେ ନାମ ଲେଖାଇ ଥାଆନ୍ତି । ଗିରିଜା ମେଡିକାଲ କଲେଜରେ ପଢିବା ପାଇଁ ପର ବର୍ଷ ପାଟଣା ଆସିଲେ । ପରବର୍ତ୍ତୀ କାଳରେ ଉଭୟଙ୍କର ବିବାହ ହେଲା । ଅନ୍ୟ କନ୍ୟାଙ୍କ ନାମ ବୀଣା । ମୁଁ ପ୍ରତି ଶନିବାର ଅପରାହ୍ନରେ କଲେଜରୁ ଫେରି ତାଙ୍କ ଘରକୁ ଯାଏ ଓ ବ୍ୟାଡ୍‌ମିଣ୍ଟନ ଖେଳେ, ରାତ୍ରଭୋଜନ କରେ । ପାଟଣା ବିଶ୍ୱବିଦ୍ୟାଳୟର କୁଳପତି ସେତେବେଳେ ବିହାରର ବରିଷ୍ଠ ନେତା ଶିକ୍ଷାବିତ୍ ବିଶିଷ୍ଟ ବାରିଷ୍ଟର ଡଃ ସଚ୍ଚିଦାନନ୍ଦ ସିଂହ । ସେ ଦେଖିବାକୁ ମଧ୍ୟ ଏକ ବିରାଟ ପୁରୁଷ । ତାଙ୍କ ବାସଗୃହ ଏକ ରାଜବାଟୀଠାରୁ ଅଧିକ । ଗଜେନ୍ଦ୍ର ବାବୁ ମତେ ନେଇ ସେଠାରେ ଡଃ ସିଂହଙ୍କ ସହିତ ପରିଚୟ କରାଇ ଓଡିଆ ଲୋକଙ୍କ ସ୍ୱାର୍ଥରକ୍ଷା ପାଇଁ ଯାହା ଯେତେବେଳେ ଦରକାର ପଡିବ ସହଯୋଗ କରିବା ପାଇଁ ଅନୁରୋଧ କରି ତାଙ୍କ ସହିତ ସବୁବେଳେ ସଂଯୋଗ ସ୍ଥାପନ ପାଇଁ ନିର୍ଦ୍ଦେଶ ଦେଲେ । ମୁଁ ସେଥିଯୋଗୁଁ ଅଳ୍ପଦିନ ଭିତରେ ତାଙ୍କର ପ୍ରିୟପାତ୍ର ହୋଇପଡିଲି । ସେଇବର୍ଷ ସ୍ୱର୍ଗତ ନ୍ୟାୟପତି ବୀରେନ ଚନ୍ଦ୍ର ଦାସ (Justice B.C. Das) ଓ ବିଶିଷ୍ଟ ବାରିଷ୍ଟର ସ୍ୱର୍ଗତ ମୁରଲିଧର ମହାନ୍ତି ୧୯୩୫ ମସିହାରୁ ବିଲାତରୁ ବାରିଷ୍ଟରି ପଢି ପାଟଣାରେ ଆଇନ ବ୍ୟବସାୟ କରୁଥାଆନ୍ତି ନୂଆ କରି ଓ ଉଭୟ ପାଖାପାଖି ଦୁଇଟି ଘରେ ଥାଆନ୍ତି ଡାକବଙ୍ଗଳା ରୋଡ୍‌ରେ ।

ମୋର ପରିବାରର ଅବସ୍ଥା ସଂପର୍କରେ ଓ ଶଶୁର ଚୌଧୁରୀ ରାଧାଶ୍ୟାମ ଦାଶଙ୍କ ସ୍ୱାସ୍ଥ୍ୟ ସଂପର୍କରେ ମନ ଭିତରେ ବହୁତ ଉଦବେଗ ଥାଏ । ଯେଉଁଦିନ ମୋର ପାଟନା କଲେଜ୍‌ରେ ଏମ.ଏ.ସ୍ନାତକୋତ୍ତର ଶ୍ରେଣୀରେ ପ୍ରବେଶ ହୋଇଗଲା ସେତେବେଳକୁ ପୁରୀ ଛାଡିବାର ୪ ଦିନ ବିତିଗଲାଣି । ମୋର ଖୋଜ ଖବର ନପାଇ ସେମାନଙ୍କ ମାନସିକ ଅଶାନ୍ତି ଓ ଉଦବେଗ ସଂପର୍କରେ ମୁଁ ଯଥେଷ୍ଟ ସଚେତନ ଥାଏ । ସଂଗେ ସଂଗେ ଗୋଟିଏ ତାର ବାର୍ତ୍ତାରେ ଜଣାଇ ଦେଲି ମୋ ନନାଙ୍କୁ ମୋର ପାଟନାରେ

ଆଡ଼ମିଶନ କଥା ଓ ମାସିକ କେତେ ଖର୍ଚ୍ଚ ତାର ଆବଶ୍ୟକତା । ମୋର ମନେ ଅଛି ମୁଁ ପ୍ରଥମ ଚିଠିରେ ସମସ୍ତ କଥା ଜଣାଇ ମୋର ମାସିକ କଲେଜ୍ ଫି ସହିତ ଚଉତିରିଶ ଟଙ୍କା ହେଲେ ଚଳିଯିବ ଏବଂ ଧାର ସୁଝିବା ପାଇଁ ଶହେ କୋଡ଼ିଏ ଟଙ୍କା ଏପରି ଏକଶତ ଚଉବନ ଟଙ୍କା ଦରକାର ବୋଲି ଲେଖିଲି । ଅଳ୍ପଦିନ ଭିତରେ ସେ ଟଙ୍କା ମନିଅର୍ଡରରେ ପାଇଲି । ଆମେ ଚାରିଜଣ ପୋଷ୍ଟ ଗ୍ରାଜୁଏଟ ଛାତ୍ର ସ୍ନାତକୋତ୍ତର ଛାତ୍ରାବାସର ପାଖାପାଖି ରହୁ ଦୋତାଲାରେ । ସ୍ୱର୍ଗତ ଶ୍ରୀ ସୁରେନ୍ଦ୍ର ନାଥ ଶର୍ମା (ଆଇ.ଏ.ଏସ. ରିଟାୟର୍ଡ) ମୋ ପାଖ ଜଣିକିଆ ବଖରାରେ ରହୁଥିଲେ । ମୁଁ ତାଙ୍କୁ ଶର୍ମାଜୀ ବୋଲି ଡାକେ । ତାଙ୍କ ଘର ତତ୍‌କାଳୀନ ବାମରା ଷ୍ଟେଟରେ । ଦୁଇଟି ରୁମ୍ ଛାଡ଼ି ରହୁଥାଆନ୍ତି ଅବସରପ୍ରାପ୍ତ ଶ୍ରୀ ସୁକାନ୍ତ କିଶୋର ରାୟ ଓଡ଼ିଶାର ଅବସରପ୍ରାପ୍ତ ମୁଖ୍ୟ ବିଚାରପତି ଓ ଓଡ଼ିଶାର ଅସ୍ଥାୟୀ ରାଜ୍ୟପାଳ । ଉପର ମହଲାର ଗଙ୍ଗା କୂଳକୁ ଲାଗି ଗୋଟିଏ ରୁମ୍‌ରେ ରହୁଥିଲେ ସ୍ୱର୍ଗତ ମାୟାଧର ମିଶ୍ର (ଓ.ଏଫ.ଏସ. ଆସିଷ୍ଟାଣ୍ଟ କମିଶନର ଥିବା ଅବସ୍ଥାରେ ଅକାଳ ମୃତ୍ୟୁବରଣ କଲେ) । ତଳ ମହଲାରେ ରହନ୍ତି ସ୍ୱର୍ଗତ ତ୍ରିଲୋଚନ ବେହେରା । ସେ ପଶ୍ଚିମବଙ୍ଗରେ ଆସିଷ୍ଟାଣ୍ଟ ଅଡିଟର ଜେନେରାଲ ହୋଇ ଅବସର ନେଲେ । ମୁଁ ସମସ୍ତଙ୍କଠାରୁ ବୟସରେ ଅଳ୍ପ ବଡ଼ । ଅନ୍ୟମାନଙ୍କୁ ନାମ ଧରି ମୁଁ ଡାକେ । ସେମାନେ ମଧ୍ୟ ନାମ ଧରି ମତେ ଡାକନ୍ତି । ମୋର ଆଉ ଜଣେ ଘନିଷ୍ଠ ବନ୍ଧୁ ଦୟାନିଧି ଚୌଧୁରୀ ଫିଜିକ୍ସରେ ଏମ.ଏସ.ସି.ରେ ନାମ ଲେଖାଇ ଫାରାଡେ ହାଉସ୍ (ଛାତ୍ରାବାସର ନାମ) ସାଇନ୍ସ କଲେଜ୍ ପରିସର ମଧ୍ୟରେ ରହୁଥିଲେ । ସେ ମୁଖ୍ୟ ଜଙ୍ଗଲ ରକ୍ଷକ ଭାବେ ଅବସର ନେଇ କଟକରେ ରହୁଛନ୍ତି । ମୋରି ବୟସ ପାଖାପାଖି । ଶ୍ରୀ ବାଞ୍ଛାନିଧି ଦାଶ (I.A.S. Retd.) ପୂର୍ବତନ ପୂର୍ତ୍ତ ବିଭାଗ ସଚିବ ବିଶ୍ୱବିଦ୍ୟାଳୟ ପରିସର ଭିତରେ ଏକ ପୁରୁଣାକାଳର 'ମଠିଆ' (ମଠ)ରେ ୫ ଫୁଟ ଚଉଡ଼ା, ୮ ଫୁଟ ଲମ୍ବର ଏକ କ୍ଷୁଦ୍ର ରୁମରେ ରହୁଥାଆନ୍ତି । ସେ ମୋର ଉପର କ୍ଲାସ୍‌ର ଥିଲେ ମଧ୍ୟ ଅତ୍ୟନ୍ତ ଘନିଷ୍ଠ ସଂପର୍କ । ତାଙ୍କର ସମ୍ବଳ ଥାଏ ଅତ୍ୟନ୍ତ ସୀମିତ । ସେଥିପାଇଁ ଛାତ୍ରାବାସରେ ରହିବା ସମ୍ଭବପର ହେଉନଥିଲା । ଶ୍ରଦ୍ଧାକର ସୁପକାର ପ୍ରଭୃତି ବହୁତ  ବଂଧୁ ମହମ୍ମଡନ ହଷ୍ଟେଲରେ ରହୁଥାଆନ୍ତି କାରଣ ସେ ଛାତ୍ରାବାସରେ ବହୁତ ସ୍ଥାନ ଖାଲି ଥାଏ । ହିନ୍ଦୁ ଛାତ୍ରମାନେ ରହିବାରେ ଅସୁବିଧା ହୁଏନି । ଶ୍ରଦ୍ଧାକର ବାବୁ ମୋ ଠାରୁ ବର୍ଷେ ବଡ଼ । ଦୁହେଁ ଏକ ସମୟରେ ବିଧାନସଭାରେ ଥିଲୁ । ମୁଁ ମନ୍ତ୍ରୀ ଥାଏ । ପରେ ଶ୍ରୀ ଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେବା ପରେ ସେ କିଛି ମାସ ପାଇଁ ତା'ର କୁଳପତି ରହିଲେ । ଆମ ଦୁହିଁଙ୍କ ସଂପର୍କ ଅତି ନିବିଡ଼ । ପଶ୍ଚିମାଞ୍ଚଳରେ ତାଙ୍କର ପ୍ରତିଷ୍ଠା ଅତ୍ୟଧିକ । ସମ୍ବଲପୁର ଜିଲ୍ଲାର ସେ ସର୍ବସମ୍ମାନୀତ ବ୍ୟକ୍ତି, ସାହିତ୍ୟିକ ଓ ରାଜନୀତି ବିଶାରଦ ଓ ଶିକ୍ଷାବିତ୍ ଭାବରେ

ବହୁ ପ୍ରତିଷ୍ଠାର ଅଧିକାରୀ ହୋଇଥିଲେ । ଶ୍ରଦ୍ଧାକର ବାବୁ ସକାଳୁ ଗାଧୁଆ ପ୍ରଭୃତି ନିତ୍ୟକର୍ମ ସାରି ରୁଦ୍ରାକ୍ଷମାଳା, ମଠା ପିନ୍ଧି ଖଡମ ମାଡ଼ି ଗଙ୍ଗା କୂଳକୁ ଆସନ୍ତି । ସୁକାନ୍ତଙ୍କ (ଅବସରପ୍ରାପ୍ତ ମୁଖ୍ୟ ବିଚାରପତି) ପିତା ଥିଲେ ମୋର ଗୁରୁତୁଲ୍ୟ, ସ୍ୱର୍ଗତ ବୀର କିଶୋର ରାୟ ଯେ କି ସେତେବେଳେ ନୂତନ ପ୍ରତିଷ୍ଠିତ ଓଡିଶା ହାଇକୋର୍ଟର ମୁଖ୍ୟ ବିଚାରପତି ଭାବେ ଅତ୍ୟନ୍ତ ପ୍ରତିଷ୍ଠିତ ଆଇନ ବିଶାରଦ ଭାବେ ସମ୍ମାନୀତ । ତାଙ୍କର ସହଧର୍ମିଣୀ ଶ୍ରୀମତି ଲତିକା ଦେବୀ ତତ୍‌କାଳୀନ ଓଡିଶାର ବିଶିଷ୍ଟ ସମାଜସେବୀ ଭାବେ ପ୍ରତିଷ୍ଠା ଲାଭ କରିଥାଆନ୍ତି । ସୁକାନ୍ତ କିନ୍ତୁ ଆମର ଆଉ ଜଣେ ସହପାଠୀ ସ୍ୱର୍ଗତ ତ୍ରିଲୋଚନ ବେହେରାଙ୍କ ଶଶୁର ତତ୍‌କାଳୀନ ରାୟବାହାଦୂର ଉପାଧୀପ୍ରାପ୍ତ ବାଲେଶ୍ୱର ଜିଲ୍ଲାର ଜଣେ ଜମିଦାର ବିଶ୍ୱନାଥ ପରିଜା । ତ୍ରିଲୋଚନ ଘରୁ ପାଉଥିବା ଟ୧୦୦ରୁ ମାୟାଧରଙ୍କୁ ଟ୫୦ ଦେଇ ଅବଶିଷ୍ଟ ନିଜର ଅନ୍ୟାନ୍ୟ ଖର୍ଚ୍ଚ ପାଇଁ ରଖେ । ଏହିପରି ଭାବେ ମାୟାଧର ବୃତ୍ତି ଟ୩୦, ମୋର ଟ୩୪, ସୁକାନ୍ତର ଟ୪୦ ଓ ତ୍ରିଲୋଚନର ଟ୫୦, ଏହିପରି ପ୍ରାୟ ଟ୧୫୪ ଟଙ୍କାରେ ଆମର ମେସ୍ ଖର୍ଚ୍ଚ, କଲେଜ ଦରମା, ଜଳଖିଆ ଓ ସିନେମା ଦେଖା ସବୁ ଚଳିଯାଏ । ଏବେ କେବଳ ମେସ୍ ଖର୍ଚ୍ଚ ବୋଧହୁଏ ମାସିକ ବ୍ୟୟ ଜଣଙ୍କ ପାଇଁ ପ୍ରାୟ ୮୦୦ ଟଙ୍କାରୁ କମ୍ ହେଉନଥିବ ପାଟନା ସହରରେ ।

ବିରେନ ଦାସ ଓ ମୁରଲି ବାବୁଙ୍କ ଘରକୁ ମୁଁ ଅନେକ ସମୟରେ ଯାଏ କାରଣ ସେମାନେ ଲଣ୍ଡନରେ ପାଠ ପଢ଼ି ବାରିଷ୍ଟରୀ କରୁଥାଆନ୍ତି । ମୁରଲୀ ବାବୁ, ଡଃ ସଚ୍ଚିଦାନନ୍ଦ ସିହ୍ନାଙ୍କ ଜୁନିଅର । ସଚ୍ଚିଦାନନ୍ଦ ସିହ୍ନାଙ୍କୁ ଉତ୍କଳ ଗୌରବ ମଧୁସୂଦନଙ୍କ ପରି ବିହାରରେ ସମ୍ମାନ ଦିଆଯାଏ, ବିହାର ରାଜ୍ୟର ମୁରବୀ ଭାବେ (Maker of Bihar) ।

- କଳାହାଣ୍ଡି ଷ୍ଟେଟର ତତ୍‌କାଳୀନ ମହାରାଜାକୁମାର (ବର୍ତ୍ତମାନ ମହାରାଜା ଶ୍ରୀ ପି.କେ.ଦେଓ) ସେତେବେଳେ ପାଟନାରେ ଏମ.ଏ. ପଢୁଥାଆନ୍ତି । ଡାକବଙ୍ଗଳା ରୋଡରେ ଗୋଟିଏ ବଙ୍ଗଳା ଭଡା ନେଇ ରହୁଥାଆନ୍ତି । ତାଙ୍କ ଗାର୍ଡିଆନ ଟ୍ୟୁଟର ଭାବେ ପୂର୍ବତନ ପ୍ରଶାସକ ସ୍ୱର୍ଗତ ଦୁର୍ଗା ପ୍ରସାଦ ତ୍ରିପାଠୀ, ଆଇ.ଏ.ଏସ.ଙ୍କ ପିତା ଶ୍ରୀ ଧର୍ମାନନ୍ଦ ତ୍ରିପାଠୀ ଥାଆନ୍ତି ଓ ବ୍ୟକ୍ତିଗତ ଚିକିତ୍ସକ ଭାବେ ଅବସରପ୍ରାପ୍ତ ଜିଲ୍ଲା ମୁଖ୍ୟ ଚିକିତ୍ସକ (ସି.ଡି.ଏମ.ଓ.) ଭାବେ ସଏଦ ମହମ୍ମଦ ସେଇ ବଙ୍ଗଳାରେ ରହନ୍ତି । ମୁଁ ପ୍ରାୟ ସବୁ ଶନିବାର ତାଙ୍କ ବଙ୍ଗଳାକୁ ଯାଏ ଏବଂ ଅନେକ ଥର ସେଠାରେ ମଧ୍ୟ ତାଙ୍କ ସହିତ ଭୋଜନ କରେ । ଆମ ଦୁହିଁଙ୍କ ଭିତରେ ରେଭେନ୍‌ସା କଲେଜର ବଂଧୁତା ଆହୁରି ଅଧିକ ଘନିଷ୍ଠ ହୋଇଯାଇଥିଲା । ଏପରିକି ସେ ମୋତେ କଳାହାଣ୍ଡି ରାଜ୍ୟର ଦାୟିତ୍ୱ ଦେଉଥିଲେ । ତାଙ୍କ ରାଜ୍ୟରେ ଜଣେ ବରିଷ୍ଠ ସହାୟକ ଭାବେ ଦାୟିତ୍ୱ ନେଇ

ଅଭିଜ୍ଞତା ହାସଲ କଲେ ପରବର୍ତ୍ତୀ ଅବସ୍ଥାରେ ତାଙ୍କ ଶାସନରେ ଭୂମିକା ମଧ୍ୟ ନେବା ପାଇଁ ସମର୍ଥ ହୋଇପାରିବି । ସେ ସମୟରେ ପ୍ରତାପ କେଶରୀ ଦେଓଙ୍କୁ ଆମେ ମହାରାଜା କୁମାର ବୋଲି ସମ୍ବୋଧନ କରୁଥିଲୁ । ତାଙ୍କର ସ୍ୱର୍ଗତ ପିତା ମହାରାଜା ଆର୍ତ୍ତତ୍ରାଣ ଦେଓ ସାଂଘାତିକ ବେମାର ଥାଆନ୍ତି ।

ପାଟଣାରେ ଓଡିଶା ଲିଗ୍ (Orissa League) ସଂଗଠନ ଓଡିଆମାନଙ୍କର ଏକମାତ୍ର ସାମାଜିକ ଓ ସାଂସ୍କୃତିକ ଅନୁଷ୍ଠାନ । ଓଡିଶା ବିହାର ରାଜ୍ୟରୁ ଅଲଗା ହୋଇ ନୂତନ ରାଜ୍ୟରେ ପରିଣତ ହେବା ପରେ ମଧ୍ୟ ବହୁ ଓଡିଆ ଅଫିସର, ଆଇନଜୀବୀ, ଡାକ୍ତର, ଇଂଜିନିୟର ଓ ସରକାରୀ କର୍ମଚାରୀ ଭାବରେ ସେଠାରେ କାର୍ଯ୍ୟରତ ଥାଆନ୍ତି । ସ୍ୱର୍ଗତ ଦୀନବନ୍ଧୁ ମହାପାତ୍ର ପୂର୍ବତନ ଅର୍ଥ ବିଭାଗର ଯୁଗ୍ମ ସଚିବ ଓଡିଶା ଲିଗ୍ର ସଂପାଦକ ଥିଲେ । ମୋର ଏମ.ଏ. ପ୍ରଥମ ବର୍ଷର ଆଡମିଶନ ହେବାର କିଛି ଦିନ ପରେ ମୁଁ ଓଡିଶା ଲିଗ୍ର ଦାୟିତ୍ୱ ନେଲି ଏବଂ ଏହି ଦାୟିତ୍ୱ ନେବା ପରେ ଓଡିଶାର ବହୁ ବିଶିଷ୍ଟ ଲୋକ ଯେଉଁମାନେ ବହୁ ଉଚ୍ଚସ୍ଥାନରେ ସରକାରୀ, ବେସରକାରୀ ସ୍ତରରେ ଥିଲେ ସେମାନଙ୍କ ସହ ପରିଚୟ ଓ ଘନିଷ୍ଠତା ସ୍ଥାପିତ ହେଲା । ସେତେବେଳେ ପ୍ରଥମ କଂଗ୍ରେସ ମନ୍ତ୍ରିମଣ୍ଡଳର ପ୍ରଧାନମନ୍ତ୍ରୀ ଭାବେ ଶ୍ରୀକୃଷ୍ଣ ସିହ୍ନା ଥାଆନ୍ତି ଏବଂ ୨ୟ ସ୍ଥାନରେ ସବୁଠାରୁ ପ୍ରଭାବଶାଳୀ ମନ୍ତ୍ରୀ ଭାବେ ନେତୃତ୍ୱ ନେଉଥିଲେ ସ୍ୱର୍ଗତ ଅନୁଗ୍ରହ ନାରାୟଣ ସିହ୍ନା । ବିହାରର ସର୍ବଶ୍ରେଷ୍ଠ ନେତା ଭାବେ କେବଳ ନୁହେଁ ଭାରତର ଜଣେ ଶ୍ରେଷ୍ଠ ଗାନ୍ଧିବାଦୀ ଜନନାୟକ ଭାବେ ରାଜେନ୍ଦ୍ର ପ୍ରସାଦଙ୍କୁ ସମସ୍ତେ ବିହାର ଗାନ୍ଧୀ ଭାବେ ସମ୍ମାନ ଦେଉଥିଲେ । ପରବର୍ତ୍ତୀ ସମୟରେ ସ୍ୱାଧୀନ ଭାରତର ପ୍ରଥମ ରାଷ୍ଟ୍ରପତି ଭାବେ ଦୁଇଥର ପ୍ରାୟ ୧୦ ବର୍ଷ ଭାରତର ସାମ୍ବିଧାନିକ ମୁଖ୍ୟ ଭାବେ ଭାରତକୁ ଏକ ସାର୍ବଭୌମ ଗଣତାନ୍ତ୍ରିକ ରାଷ୍ଟ୍ର ରୂପେ ଦିଗ୍‌ଦର୍ଶନ ଦେବାରେ ସେ ଥିଲେ ପ୍ରଖ୍ୟାତ ରାଷ୍ଟ୍ର ନାୟକ । ତା ପୂର୍ବରୁ ସମ୍ବିଧାନ ପ୍ରଣୟନ ସଭାର ରାଜେନ୍ଦ୍ର ବାବୁ ଥିଲେ ଅଧ୍ୟକ୍ଷ । ସ୍ୱର୍ଗତ ଜୟପ୍ରକାଶ ନାରାୟଣ ଥିଲେ ସମାଜବାଦୀ ଚିନ୍ତାଧାରାର ଜଣେ ସର୍ବଶ୍ରେଷ୍ଠ ଜନନାୟକ ଏବଂ ତତ୍‌କାଳୀନ କଂଗ୍ରେସରେ ପ୍ରଗତିଶୀଳ କଂଗ୍ରେସ ସମାଜବାଦୀ ଗୋଷ୍ଠୀର ସ୍ରଷ୍ଟା । ତାଙ୍କର ବ୍ୟକ୍ତିତ୍ୱ, ପ୍ରତିଭା, ଦେଶ ପ୍ରତି ଅବଦାନ ସମଗ୍ର ଦେଶର ଯୁବ ଶକ୍ତିକୁ ଅନୁପ୍ରାଣିତ କରୁଥିଲା । ସେତେବେଳର ତାଙ୍କର ପ୍ରଧାନ ସହଯୋଗୀ ଭାବେ ଥିଲେ ଆଚାର୍ଯ୍ୟ ନରେନ୍ଦ୍ର ଦେବ, କମଳା ଦେବୀ ଚଟ୍ଟୋପାଧ୍ୟାୟ, ଏମ.ଆର. ମାଶାନି, ଓଡିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ଓ ସର୍ବୋଦୟ ଦଳର ନେତା ନବକୃଷ୍ଣ ଚୌଧୁରୀ ଓ ଅନ୍ୟମାନେ । ପାଟଣା କଦମକୁଆଁଠାରେ ଜୟପ୍ରକାଶଙ୍କ ବାସଭବନ । ସେହିଠାରେ ହିଁ କଂଗ୍ରେସ ସମାଜବାଦୀ ଗୋଷ୍ଠୀର ନେତାମାନଙ୍କ ତରଫରୁ ଆଲୋଚନା ଚକ୍ର ଅନୁଷ୍ଠିତ ହୁଏ । ମୁଁ

ଅନେକ ସମୟରେ ସେହି ଆଲୋଚନା ଚକ୍ର (Study Circle) ଓ ସମାଜବାଦୀ ଗୋଷ୍ଠୀର ସମାରୋହରେ ଯୋଗ ଦେବାର ସୁଯୋଗ ମଧ୍ୟ ପାଏ ।

ଡକ୍ଟର ସଚ୍ଚିଦାନନ୍ଦ ସିଂହ ଉଦାରପନ୍ଥୀ ରାଜନୀତିଜ୍ଞ । ଜାତୀୟ କଂଗ୍ରେସରେ ପ୍ରଥମେ ଯୋଗ ଦେବା ପରେ ସ୍ୱରାଜ ଦଳ ମୋତିଲାଲ ନେହେରୁଙ୍କ ନେତୃତ୍ୱରେ ଆରମ୍ଭ ହୁଏ । ପରେ ସେ ବିହାର ଓ କେନ୍ଦ୍ର ବ୍ୟବସ୍ଥା ସଭାରେ ମନ୍ତ୍ରୀ ଭାବରେ ଯୋଗ ଦେଲେ ଓ ସ୍ୱରାଜ ପାର୍ଟି କଂଗ୍ରେସକୁ ପୁନର୍ବାର ଫେରି ଆସିଲା ପରେ ସେ କେନ୍ଦ୍ରରେ ଓ ବିହାରରେ ଏକ୍ଜିକ୍ୟୁଟିଭ କାଉନସିଲର ଓ ମନ୍ତ୍ରୀ ଭାବରେ ଥିଲେ ସୁଦ୍ଧା ବିହାରର ବୁଦ୍ଧିଜୀବୀଙ୍କ ପାଇଁ ସେ ଥିଲେ ଏକ (Intellectual giant) ବା ଶ୍ରେଷ୍ଠ ବୁଦ୍ଧିଜୀବୀ । ଚେହେରା ଓ ନିଶ ଦେଖିଲେ ଜଣାପଡେ ତାଙ୍କ ବ୍ୟକ୍ତିତ୍ୱର ଆକର୍ଷଣ । ତାଙ୍କୁ ବିହାରର ନିର୍ମାତା ବୋଲି ଆଖ୍ୟା ଦିଆଯାଇଥିଲା । ସେ ମଧ୍ୟ ଥିଲେ ବିହାରର ଖ୍ୟାତନାମା ବାରିଷ୍ଟର । ତାଙ୍କ ବାସଭବନ ବିହାରର ସବୁ ବିଶିଷ୍ଟ ବୁଦ୍ଧିଜୀବୀ, ତତ୍‌କାଳୀନ ସରକାରୀ କର୍ମକର୍ତ୍ତାମାନଙ୍କର ଏକ ତୀର୍ଥଭୂମି ସଦୃଶ । ଯେ ଯିବ ଅବାଧ କଥା ହେବାର ସୁଯୋଗ ପାଇବା ସହିତ ତାଙ୍କର ଆତିଥ୍ୟ ଗ୍ରହଣ କରିପାରିବ । ତତ୍‌କାଳୀନ ଦରବାରରେ ତାଙ୍କର ଅସାମାନ୍ୟ ପ୍ରଭାବ । ମୋର ସୌଭାଗ୍ୟ ତାଙ୍କ ସହିତ ମୋର ସାକ୍ଷାତ ହେବା ସୁଯୋଗ ମିଳିଲା ଓଡିଶା ଲିଗ୍‌ର ସଭାପତି ମୋର ପିତୃ ପ୍ରତିମ ତତ୍‌କାଳୀନ ପାଟନା ହାଇକୋର୍ଟରେ ପ୍ରତିଷ୍ଠିତ ଆଡଭୋକେଟ ସ୍ୱର୍ଗତ ଗଜେନ୍ଦ୍ର ପ୍ରସାଦ ଦାସଙ୍କ ଜରିଆରେ । ମତେ ସେ ଭଲ ପାଉଥିଲେ । ସ୍ୱର୍ଗତ ମୁରଲିଧର ମହାନ୍ତି ବାରିଷ୍ଟର ବିଲାତରୁ ଫେରି ପାଟନା ହାଇକୋର୍ଟରେ ଆଇନ ବ୍ୟବସାୟ ଆରମ୍ଭ କଲାପରେ ଡକ୍ଟର ସଚ୍ଚିଦାନନ୍ଦ ସିହ୍ନାଙ୍କର ଜୁନିଅର ଭାବେ ତାଙ୍କ ଅଫିସକୁ ପ୍ରାୟ ଯାଆନ୍ତି । ମୁରଲୀ ବାବୁ ବହୁତ ଭଲ ଖାଦ୍ୟ ତିଆରି କରିବାରେ ସିଦ୍ଧହସ୍ତ । ଡକ୍ଟର ସିହ୍ନା ମଝିରେ ମଝିରେ କହନ୍ତି ମୁରଲୀ ବାବୁଙ୍କୁ ଡାକ । ଅନେକ ସମୟରେ ଚା ଓ ସ୍ନାକ୍ସ କରିବା ପାଇଁ ଆଦରରେ କହନ୍ତି ଓ ତାଙ୍କ ହାତରେ ପ୍ରସ୍ତୁତ ଖାଦ୍ୟ ଅତ୍ୟନ୍ତ ରୁଚିକର ବୋଲି ବହୁତ ପ୍ରଶଂସା କରନ୍ତି । ସ୍ୱର୍ଗତ ବାରିଷ୍ଟର ମୁରଲୀ ବାବୁଙ୍କ ସୁପୁତ୍ର ଶ୍ରୀ ଅନଙ୍ଗ ଉଦୟ ମହାନ୍ତି ବର୍ତ୍ତମାନ ବୋଧହୁଏ ଆସାମ ହାଇକୋର୍ଟର ବିଚାରପତି ।

ଶ୍ରୀ ବୀରେନ ଦାସ, ମୁରଲୀ ବାବୁଙ୍କ ସମ ସାମୟିକ । ସେ ମଧ୍ୟ ମୁରଲି ବାବୁଙ୍କ ପାଖପାଖି ଦୁଇଟି ଛୋଟ ବଙ୍ଗଳାରେ ରହୁଥାଆନ୍ତି । ମୁଁ ଅନେକ ସମୟରେ ଉଭୟଙ୍କ ପାଖକୁ ଯାଏ । ମତେ ଉଭୟ ଭଲ ପାଉଥିଲେ । ବୀରେନ ବାବୁ ପରେ ଓଡିଶା ହାଇକୋର୍ଟର ବିଚାରପତି ହେଲେ । ସ୍ୱର୍ଗତ ପିତାମ୍ବର ମିଶ୍ର ସେତେବେଳେ ପାଟନା ହାଇକୋର୍ଟରେ ଉଦୀୟମାନ ଓଡିଆ ଆଇନଜୀବୀ । ପରେ ସେ ଓଡିଶାର ଆଡଭୋକେଟ୍ ଜେନେରାଲ ଓ ଓଡିଶା ହାଇକୋର୍ଟ ବିଚାରପତି ଭାବେ ସୁନାମ

ଅର୍ଜନ କଲେ । ତତ୍‌କାଳୀନ ପାଟନା ହାଇକୋର୍ଟର ଆଉ ଜଣେ ଆଇନଜୀବୀ ଭାବରେ ସୁନାମ ଅର୍ଜନ କରି ଆସୁଥାଆନ୍ତି ଶ୍ରୀ ଗୋପାଳ ଚନ୍ଦ୍ର ଦାସ । ସବୁଜ ସାହିତ୍ୟ ସୃଷ୍ଟିକାରୀ ଗୋଷ୍ଠୀଙ୍କର ସେ ଥିଲେ ଅତ୍ୟନ୍ତ ଅନ୍ତରଙ୍ଗ । ମତେ ସେ ମଧ୍ୟ ଅତି ଆଦର କରୁଥାଆନ୍ତି । ଅନେକ ସମୟରେ ଭାଉଜ ମତେ ଆଗ୍ରହରେ ଖାଇବା ପାଇଁ ଡାକନ୍ତି । ସ୍ୱର୍ଗତ ଗଜେନ୍ଦ୍ର ପ୍ରସାଦ ଦାସ ବାଲେଶ୍ୱର ଜିଲ୍ଲାର ସ୍ୱର୍ଗତ ମୁକୁନ୍ଦ ପ୍ରସାଦ ଦାସ ଓଡିଶା ବିଧାନସଭାର ପ୍ରଥମ ବାଚସ୍ପତିଙ୍କ ସାନ ଭାଇ । ପାଟଣା ହାଇକୋର୍ଟରେ ତାଙ୍କର ନାମ ବହୁତ ପ୍ରତିଷ୍ଠିତ ଆଡଭୋକେଟ୍ ଭାବେ । ସେ ସେତେବେଳେ ଓଡିଶା ସମାଜରେ ସବୁଠାରୁ ସମ୍ମାନୀୟ ବ୍ୟକ୍ତି । ତାଙ୍କ ନିଜର ବିରାଟ ଘର । ସେ ଓଡିଶା ଲିଗ୍‌ର ସଭାପତି । ସବୁବେଳେ ମୁଁ ତାଙ୍କ ଘରକୁ ଓଡିଶା ଲିଗ୍ ସଂପର୍କରେ ଓ ଟିକିଏ ସମୟ ପାଇଲେ ଯାଏ । ସେ ମତେ ପୁତ୍ରସମ ସ୍ନେହ ଓ ଆଦର କରନ୍ତି ।

ପାଟଣାରେ ଏମ.ଏ. ଛାତ୍ର ସମୟର ଗୋଟିଏ ଦୁଇଟି ଅନୁଭୂତି ହଠାତ୍ ମନକୁ ଆସିଛି ଯାହାକି ମତେ ବହୁତ ପ୍ରଭାବିତ କରିଥିଲା ଭବିଷ୍ୟତ ପାଇଁ । ୧୯୩୮ ମସିହା ଜାନୁଆରୀ ମାସରେ ଆମର ଓଡିଶା ଲିଗ୍‌ର ଏକ ବିଶେଷ ସମ୍ମିଳନୀ ପାଇଁ ପାଟଣା ବିଶ୍ୱବିଦ୍ୟାଳୟ ସିନେଟ୍ ହଲରେ ଅନୁଷ୍ଠିତ କରିବା ପାଇଁ ସ୍ୱତନ୍ତ୍ର ଅନୁମତି ମିଳିଲା । ସାର୍ ସାହାନ ଇମାନ ଓଡିଶା ଲିଗ୍‌ର ମୁଖ୍ୟ । ଏହି ସ୍ୱତନ୍ତ୍ର ସମ୍ମିଳନୀରେ ମୁଖ୍ୟ ଅତିଥି ହେବା ପାଇଁ ଗଜେନ୍ଦ୍ର ବାବୁଙ୍କ ସହିତ ତାଙ୍କ ପାଟନାସ୍ଥିତ ବିରାଟ ପ୍ରାସାଦକୁ ଯିବାର ସୁଯୋଗ ମିଳିଲା । ଠିକ୍ ବେଳକୁ ହାସାନ ଇମାମ ପାଟଣା ହାଇକୋର୍ଟରୁ ଫେରି ତାଙ୍କ ଚାମ୍ବରକୁ ଗଲେ ତାଙ୍କ ବ୍ୟକ୍ତିଗତ ସହାୟକଙ୍କୁ ନେଇ । ଦେହରେ ଗାଉନଟି ଥାଏ । ଗଜେନ୍ଦ୍ର ବାବୁ ମତେ ନେଇ ତାଙ୍କୁ ସାକ୍ଷାତ କରିବା ପାଇଁ ଯିବାବେଳେ ତାଙ୍କ ଅଫିସ୍‌କୁ ଯିବା ରୁମ୍‌ରେ ବହୁ ଉଚ୍ଚାର କାରପେଟ୍ ପଡିଥାଏ । ମୁଁ ଏପରି କାରପେଟ୍ ଥିବା ରୁମ୍ କେବେ ଦେଖିନଥିଲି । ଖଦୀଲୁଗା, ହାଫ୍ ସାର୍ଟ ଓ ବାଟା ଚପଲ ମୋର ପ୍ରିୟ ପୋଷାକ । ମୁଁ ସେ ଘର ଭିତରକୁ ପ୍ରବେଶ କଲାବେଳେ ମୋର ପାଦ ପ୍ରାୟ ନ ଇଞ୍ଚ ତଳକୁ ଚାଲିଗଲା ପରି ଲାଗିଲା ଏବଂ ମୁଁ ଆଣ୍ଠେଇ ପଡିଲି । ଗଜେନ୍ଦ୍ର ବାବୁ ମୋ ହାତ ଧରି କହିଲେ 'ଏ ହେଉଛି ଇଟାଲିଆନ କାରପେଟ୍ । ଏହାର ଫର ଉପରକୁ ଏପରି ଦେଖାଯାଉଛି କିନ୍ତୁ ଗୋଡ ପକାଇଲା ବେଳେ ସେ ଦବିଯିବ । ଅଭ୍ୟାସ ନଥିଲେ ଅସାବଧାନତା ଯୋଗୁଁ ପଡିଗଲା ପରି ଲାଗିବ ।' ସେଇଦିନ ମୁଁ ପ୍ରଥମ କରି ଇଟାଲିଆନ କାରପେଟ୍ ଦେଖିବାର ସୁଯୋଗ ପାଇଲି । ଗଜେନ୍ଦ୍ର ବାବୁଙ୍କ ଅନୁରୋଧ ଅନୁସାରେ ସାର ସାହନ ଇମାମ୍ ନିଜର ସମ୍ମତି ଦେଲେ ଓ ଆର୍ଥିକ ସହାୟତା ମଧ୍ୟ ଦେଲେ ।



ଆଉ ଗୋଟିଏ ଦିନର ଅନୁଭୂତି । ଗଜେନ୍ଦ୍ର ବାବୁ ମୋର ଅନୁରୋଧ କ୍ରମେ ମତେ ଦିନେ ପାଟଣା ହାଇକୋର୍ଟକୁ ବାରିଷ୍ଟର ମାନେ କିପରି ମକଦ୍ଦମାମାନ ଜବାବ ସୁଆଲ କରନ୍ତି ଦେଖିବା ପାଇଁ ନେଇଥିଲେ । ତାଙ୍କର ଫୋର୍ଡ କାର ଥାଏ । ମୁଁ ଯେତେବେଳେ ହାଇକୋର୍ଟ ଭିତରକୁ ଗଲି କିଛି ଲୋକ ବିଶେଷ ପରିଷ୍କାର ପୋଷାକ ନଥାଇ ଗହମ ଛତୁକୁ ପାଣିରେ ମିଶାଇ ଆଳୁ ପିଆଜ ଓ ଲୁଣ ଧରି ଖାଉଥିବାର ଦେଖିଲି । ସେମାନେ ହାଇକୋର୍ଟରେ ତାଙ୍କର ଆଡଭୋକେଟ୍ ମାନେ ଆସିଲେ ସେମାନଙ୍କ ଚାମ୍ବରରେ ତାଙ୍କୁ ସାକ୍ଷାତ କରିବା ପାଇଁ ଅପେକ୍ଷା କରୁଛନ୍ତି ବୋଲି ଗଜେନ୍ଦ୍ର ବାବୁ କହିଲେ । ଗଜେନ୍ଦ୍ର ବାବୁଙ୍କ ସହିତ ମୁଖ୍ୟ ବିଚାରପତିଙ୍କ କୋର୍ଟ ରୁମ୍‌କୁ ଗଲି । ପଛରେ ଗୋଟିଏ ଚୌକିରେ ମତେ ବସାଇ ସେ ଆଗକୁ ଗଲେ । ପ୍ରାୟ ଏକ ଘଣ୍ଟା ମୁଁ ସେଠାରେ ବସି ବହୁ ଓକିଲଙ୍କ ଜବାବ ସୁଆଲ କରିବାର ଦେଖିଲି । ପାଟନା ହାଇକୋର୍ଟକୁ ବିଖ୍ୟାତ ବାରିଷ୍ଟରମାନେ ଆସନ୍ତି । ବହୁତ ଫିସ୍ ଚାର୍ଜ କରନ୍ତି, ତାଙ୍କ ଭିତରେ ପି.ଆର. ଦାସ ଅନ୍ୟତମ । ସ୍ୱର୍ଗତ ପୀତାମ୍ବର ମିଶ୍ର ପି.ଆର.ଦାସଙ୍କ ଅଫିସକୁ ପ୍ରଥମ ଅବସ୍ଥାରେ ଯାଉଥିଲେ ଓ ତାଙ୍କ ଅଫିସ୍ ସହିତ ଘନିଷ୍ଠ ସଂପର୍କ । ଆମେ ପ୍ରାୟ ୧୨ଟା ୪୫ ମିନିଟରେ ଚିଫ୍ ଜଷ୍ଟିସ୍‌ଙ୍କ ଇଜଲାସ୍‌ରୁ ଫେରିଲା ବେଳେ ମୁଁ ଗଜେନ୍ଦ୍ର ବାବୁଙ୍କୁ କହିବାରେ ହାସନ ଇମାନଙ୍କ ଚାମ୍ବରକୁ ଦେଖିବା ପାଇଁ ସେ ମତେ ନେଇଗଲେ । ସେଠାରେ ଦେଖିଲି ପ୍ରଥମ ଛତୁ, ପିଆଜ, ଲୁଣ ଖାଉଥିବା ଲୋକଙ୍କ ଭିତରୁ ଜଣେ । ସେ ଅନୁମତି ମାଗିଲା ଦେଖା କରିବା ପାଇଁ । ବୋଧହୁଏ ତାର କେଶ୍ ସଂପର୍କରେ ହୋଇଥିବ । ଗଜେନ୍ଦ୍ର ବାବୁ ମତେ ନେଇ ହସାନ ଇମାମଙ୍କ ଚାମ୍ବରକୁ ଯିବାରେ ଦେଖେ ତ ସେ କଫି ପିଉଛନ୍ତି ଓ ଦୁଇ ତିନି ଜଣ ବସିଛନ୍ତି । ଏହି ମଇଳିମୁଣ୍ଡିଆ ଛତୁ ଧରିଥିବା ଲୋକଟି ପ୍ରବେଶ କରି ଗୋଟିଏ ସୁନାର ମୋହର ଥୋଇ ସଲାମ କଲା । ମୁଁ କିଛି ବୁଝିଲି ନାହିଁ । ତାଙ୍କ ସହିତ ସାକ୍ଷାତର ଦୁଇ ମିନିଟ ପରେ ଗଜେନ୍ଦ୍ର ବାବୁ ମତେ ନେଇ ଆସିଲେ । ମୁଁ ପଚାରିଲି ଏ ମଇଳିମୁଣ୍ଡିଆ ଲୋକର ସୁନାମୋହର ଦେବା କଥା । ଗଜେନ୍ଦ୍ର ବାବୁ କହିଲେ 'ବାରିଷ୍ଟରମାନେ ଫିସ୍ ଆକାରରେ ଗୋଲ୍ଡ ମୋହର ନିଅନ୍ତି । ହାସାନ ଇମାମ ବ୍ରିଟିଶ ଛାଞ୍ଚା ବାରିଷ୍ଟର, ସେମାନେ ସାଧାରଣତଃ ଜୁନିଅରଙ୍କ ମାଧ୍ୟମରେ ଟଙ୍କା ନିଅନ୍ତି । କିନ୍ତୁ ପରାମର୍ଶ ସମୟରେ ଗୋଲ୍ଡ ମୋହର ମଧ୍ୟ ଫିସ୍ ଆକାରରେ ନିଅନ୍ତି । ଏହି ମଇଳିମୁଣ୍ଡିଆ ଲୋକଟି ବୋଧହୁଏ ତାଙ୍କର ଆଗରୁ ପରିଚିତ ଲୋକ ସେଥିପାଇଁ ସିଧା ନେଇ ରଖିଦେଲା ଟେବୁଲ୍ ଉପରେ ।' ପରେ ମୁଁ ନିଜେ ଆଇନ ବ୍ୟବସାୟ କଲାବେଳେ ଜାଣିବାକୁ ପାଇଲି, ବ୍ରିଟେନରେ ତତ୍‌କାଳୀନ ଯେପରି ଗୋଲ୍ଡ ସଭରିନ ହାଉସ୍ ଅଫ୍ ଲର୍ଡସ୍ ପ୍ରିଭି କାଉନସିଲର ଆଇନଜୀବୀମାନେ ଫିସ୍ ନେବାର ପାରମ୍ପରିକ ପ୍ରତିଷ୍ଠିତ ବ୍ୟବସ୍ଥା ଥିଲା, ଲଣ୍ଡନ

ଇନରୁ ଯେଉଁମାନେ ଆଇନ ପଢ଼ି ଭାରତରେ ବାରିଷ୍ଟର ଭାବେ ନିଜକୁ ପରିଚିତ କରାଇଥିଲେ ସେମାନେ ସେହିପରି 'ଗୋଲ୍ଡ ସଭରିନ' ଫିସ୍ ନେଉଥିଲେ । ପରେ ଭାରତରେ ଆଡଭୋକେଟ୍ ଆଇନ ପ୍ରଚଳନ ହେବାରେ ସେସବୁ ବ୍ୟବସ୍ଥା ଓ ବ୍ୟବଧାନ ଉଠିଗଲା । ମୋର ଦୁଇ ବର୍ଷ ବିହାରରେ ରହିବା ଭିତରେ ମନ ଭିତରେ ଏକରକମ ସ୍ଥିର କରିନେଇଥିଲି ଯେ ମୁଁ ଆଇନ ବ୍ୟବସାୟ କରିବି ଏବଂ ପାରିବାରିକ ଅବସ୍ଥା ସ୍ୱଚ୍ଛଳ ନଥିବା ଦୃଷ୍ଟିରୁ ଓ ପରିବାରର ସମସ୍ତ ଦାୟିତ୍ୱ ମୋ ଉପରେ ଥିବା ଦୃଷ୍ଟେ ଆଇନ ବ୍ୟବସାୟରେ ପ୍ରତିଷ୍ଠିତ ହେବା ସହିତ ସାଧାରଣ ଜୀବନରେ ଜନସେବାରେ ନିଜକୁ ଉତ୍ସର୍ଗ କରିବି କଂଗ୍ରେସ ଦଳ ଭିତରେ ରହି । କାରଣ ସେତେବେଳେ କଂଗ୍ରେସ ଦଳ ହିଁ ଭାରତର ବ୍ରିଟିଶ ଶାସନ ବିରୁଦ୍ଧରେ ସ୍ୱତନ୍ତ୍ରତା ହାସଲ କରିବା ପାଇଁ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ସମଗ୍ର ଦେଶକୁ ଧର୍ମ, ସଂପ୍ରଦାୟ, ଜାତି ଓ ପ୍ରାନ୍ତୀୟତାର ଉର୍ଦ୍ଧ୍ୱରେ ରହି ବ୍ରିଟିଶ ଉପନିବେଶବାଦ ବିରୁଦ୍ଧରେ ଦେଶବାସୀଙ୍କୁ ଦିଗ୍‌ଦର୍ଶନ ଦେଉଥିଲେ । ଭାରତର ଶ୍ରେଷ୍ଠ ବୁଦ୍ଧିଜୀବୀମାନଙ୍କର କଂଗ୍ରେସ ଥିଲା ଏକମାତ୍ର ଦଳ । ସବୁ ମତର ଶ୍ରେଷ୍ଠ ଚିନ୍ତାନାୟକମାନଙ୍କର କଂଗ୍ରେସ ଥିଲା ଏକମାତ୍ର ପ୍ଲାଟଫର୍ମ । କଂଗ୍ରେସ ଦଳ ଭିତରେ ପଣ୍ଡିତ ନେହେରୁଙ୍କ ଇଙ୍ଗିତରେ କଂଗ୍ରେସ ସମାଜବାଦୀ ଦଳ, ନେହେରୁ ମଞ୍ଚ ଏପରିକି ଉଗ୍ରପନ୍ଥୀ ଓ କମ୍ୟୁନିଷ୍ଟମାନେ ମଧ୍ୟ କଂଗ୍ରେସର ଶେଷ ମୁକ୍ତି ସଂଗ୍ରାମ ଭାରତ ଛାଡ ଆନ୍ଦୋଳନରେ ପ୍ରଥମ ଅବସ୍ଥାରେ ଯୋଗ ଦେଇଥିଲେ । ଦ୍ୱିତୀୟ ମହାଯୁଦ୍ଧରେ ନାଜି ଆକ୍ରମଣକୁ ପ୍ରତିହିତ କରିନପାରି, ଇଂଲଣ୍ଡ, ଫ୍ରାନ୍ସ, ଇଟାଲି ପ୍ରଭୃତି ଇଉରୋପିଆନ ଗଣତାନ୍ତ୍ରିକ ମିତ୍ର ରାଷ୍ଟ୍ରମାନେ ପରାଜିତ ହେବାର ଆଶଙ୍କା ଦୃଷ୍ଟିରୁ ସୋଭିଏଟ୍ ରୁଷ୍ ହିଟଲର, ମୁସୋଲିନୀ ପ୍ରଭୃତିଙ୍କ ନଗ୍ନ ସାମ୍ରାଜ୍ୟବାଦ ବିରୁଦ୍ଧରେ ମିତ୍ର ଶକ୍ତି ସହିତ ଯୋଗଦେବାରୁ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଏକ ଭିନ୍ନ ଦୃଷ୍ଟିକୋଣରୁ ପ୍ରଥମେ ନାଜି ଶକ୍ତିକୁ ପରାହତ କରିବା ପ୍ରଥମ ଲକ୍ଷ୍ୟ ବୋଲି ରୁଷ୍ ସହିତ ଏକମତ ହୋଇ ଦ୍ୱିତୀୟ ମହାଯୁଦ୍ଧକୁ ଏକ ଜନ ଯୁଦ୍ଧ ଆଖ୍ୟା ଦେଇ ମିତ୍ରଶକ୍ତିକୁ ସହାୟତା କରିବା ପାଇଁ ଏକ ଜନ ସଚେତନତା ସମଗ୍ର ଦେଶରେ ସୃଷ୍ଟି କରିବାର ପ୍ରୟାସ କରି ଭାରତର ଶେଷ ଆନ୍ଦୋଳନରୁ ଅଲଗା ହୋଇଥିଲେ ସୁଦ୍ଧା ତା'ର ବିଶେଷ ପ୍ରତିକ୍ରିୟା ଭାରତରେ ସୃଷ୍ଟି ହୋଇନଥିଲା । ସମଗ୍ର ଦେଶ କଂଗ୍ରେସ ଓ ଗାନ୍ଧିଜୀଙ୍କ ନେତୃତ୍ୱରେ 'କର ବା ମର' ସଂଗ୍ରାମରେ ବ୍ରିଟିଶ ସରକାରଙ୍କୁ ଭାରତବାସୀଙ୍କୁ କ୍ଷମତା ହସ୍ତାନ୍ତର କରିବା ପାଇଁ ଏକ ପ୍ରକାର ବାଧ୍ୟ କରିଥିଲା । ପରବର୍ତ୍ତୀ ଅଧ୍ୟାୟରେ ସେ ସଂପର୍କରେ ମୋର କିଛି ଅନୁଭୂତି ପ୍ରକାଶ କରିବାର ସୁଯୋଗ ମିଳିବ ।

୧୯୩୮ ମସିହା ଜୁନ୍ ମାସ, ଏମ.ଏ. ପରୀକ୍ଷା ସରିଥାଏ । ପାଟଣା ଛାଡିବି, ରେଭେନ୍‌ସା ମହାବିଦ୍ୟାଳୟରେ ଆଇନ ପାଠ ଶେଷ କରି ପୁରୀରେ ଆଇନ ବ୍ୟବସାୟ ଆରମ୍ଭ କରିବି ବୋଲି ମନସ୍ଥ କରିଥାଏ । ଏହିପରି ଏକ ମାନସିକ ସ୍ତରରେ ନିଷ୍ପତ୍ତିକୁ କିଛି ମାତ୍ରାରେ ବିଚଳିତ କରିଥିଲା ତତ୍‌କାଳୀନ ବେଙ୍ଗଲ ନାଗପୁର ରେଲୱେ (ବର୍ତ୍ତମାନ ଦକ୍ଷିଣ ପୂର୍ବ ରେଲୱେ)ର ଏକ ନିଯୁକ୍ତି ପତ୍ର । ଦରମା ମାସିକ ତିନି ଶତ ଟଙ୍କା, ଗୋଟିଏ ସୁପରଭାଇଜରି ଚାକିରୀ । ପଣ୍ଡିତ ନୀଳକଣ୍ଠ ଓ ମିଃ ଭୁବନାନନ୍ଦ ଦାସଙ୍କ ସୁପାରିଶକୁ ଭିତ୍ତି କରି ଓ ଗାର୍ଡନରିଚ୍ ଠାରେ ବେଙ୍ଗଲ ନାଗପୁର ରେଲବାଇଙ୍କ ମୁଖ୍ୟ କାର୍ଯ୍ୟାଳୟରେ ଯେଉଁ ପରୀକ୍ଷା ଦେଇଥିଲି ତାକୁ ଭିତ୍ତି କରି ଏପରି ନିଯୁକ୍ତି । ଏଣେ ମୋର ଶଶୁର, ଚୌଧୁରୀ ରାଧାଶ୍ୟାମ ଦାଶ, ଏ ମଧ୍ୟରେ ସଂପୂର୍ଣ୍ଣ ସୁସ୍ଥ ହୋଇ ମୁଁ ଏମ.ଏ. ପରୀକ୍ଷା ପରେ ଡେପୁଟି ଚାକିରୀଟିଏ ପାଇବା ପାଇଁ ଉଦ୍ୟମ ଆରମ୍ଭ କରିଦେଇଥିଲେ । ସେତେବେଳେ ଲୋକସେବା ଆୟୋଗ ନଥାଏ । ବ୍ରିଟିଶ ସରକାରଙ୍କ ପ୍ରତି ଅନୁକୂଳ ମତ ପୋଷଣ କରୁଥିବା ଜମିଦାର ଗୋଷ୍ଠୀ ତତ୍‌କାଳୀନ ଦରବାରରେ ସ୍ଥାନ ପାଉଥାଆନ୍ତି । ତା ଭିତରେ ଭିଙ୍ଗାରପୁର ଜମିଦାର ପରିବାର ଥିଲେ ଅନ୍ୟତମ । ସେମାନଙ୍କର କଟକରେ ବ୍ରିଟିଶ କମିଶନଙ୍କ ଦରବାରରେ ଆଗ ସ୍ଥାନ । ମୋ ଜାଣିବାରେ କଟକ ଚୌଧୁରୀ ବଜାରରେ ଏହି ପରିବାରର ଗଙ୍ଗା ମନ୍ଦିରଠାରୁ ଆରମ୍ଭ କରି ମାଣିକ ଘୋଷ ବଜାର ଶେଷ ପର୍ଯ୍ୟନ୍ତ ୧୯ଟି କୋଠା ଥାଏ । ଭିଙ୍ଗାରପୁରଠାରୁ ସେମାନେ ଘୋଡାରେ ଆସନ୍ତି । କେହି କେହି ପ୍ରୌଢି ଦେଖାଇ କହିବାର ମୁଁ ଶୁଣିଛି ଯେ ସେମାନେ ଘୋଡାରେ ଭିଙ୍ଗାରପୁରଠାରୁ ତାଙ୍କରି ଜମିଦାରୀ ଭିତର ଦେଇ କଟକ ପର୍ଯ୍ୟନ୍ତ ଆସନ୍ତି । ଏପରିକି କଟକ କମିଶନର କୋଠାରୁ କମିଶନର ସାହେବ ତାଙ୍କ କୋଠାକୁ ଆସୁଥିଲେ । ଚୌଧୁରୀ ବଜାର ଏହି ଭିଙ୍ଗାରପୁର ଚୌଧୁରୀ ଜମିଦାରମାନଙ୍କ ନାମରେ ନାମିତ ହୋଇଛି । ଆଜି ସେଇ ପରିବାର ଜମିଦାରୀ ଉଚ୍ଛେଦ ପରେ ଶତ ଶତ ଅଂଶରେ ବିଭକ୍ତ ହୋଇ ଦୟନୀୟ ଅବସ୍ଥାରେ ନିଜର ଶୋଚନୀୟ ଆର୍ଥିକ ସ୍ଥିତିରେ ପୂର୍ବ ସ୍ମୃତିକୁ କେବଳ ମନେ ପକାଇ ଆତ୍ମତୃପ୍ତି ଲାଭ କରିବା ଛଡା ବାତ୍ୟା ବନ୍ୟା ରିଲିଫ୍ ସମୟରେ କେବଳ ଆମ୍ଭାଭିମାନକୁ ଜଗି ଉପବାସରେ ରହୁଛନ୍ତି ବା ଘରର ଚଳନ୍ତି ଜିନିଷମାନ ବିକ୍ରୟ କରି ଶୋଚନୀୟ ଜୀବନଯାପନ କରୁଛନ୍ତି । ସେ ଯାହା ହେଉ ଏମ.ଏ. ପରୀକ୍ଷାରେ ମୁଁ ଶତକଡା ୫୧ ନମ୍ବର ପାଇ ଉତ୍ତୀର୍ଣ୍ଣ ହେଲି । ସେଥିରେ ମୋର ସବ ଡେପୁଟି ହେବା ପାଇଁ ଯୋଗ୍ୟତା ହେଲା ଶଶୁରଙ୍କ ପ୍ରଚେଷ୍ଟାରେ । ଦରମା ମାସିକ ଏକ ଶତ ଟଙ୍କା । ଡେପୁଟି ଚାକିରୀ ତା ଉପର ପାହ୍ୟା । ତା ଦରମା ମାସିକ ଦୁଇଶହ । ତାକୁ ପାଇବାକୁ ହେଲେ ଅନ୍ୟୁନ ୭ ବର୍ଷ ଲାଗିବ । ଏଣେ ବେଙ୍ଗଲ ନାଗପୁର ରେଲୱେ କଂପାନୀ

ଚାକିରୀ ମାସିକ ୩୦୦ ଟଙ୍କା । ଏପରି ସମୟରେ କଳାହାଣ୍ଡି ମହାରାଜକୁମାର ଶ୍ରୀ ପି.କେ. ଦେଓ ମତେ ତାଙ୍କ ରାଜ୍ୟରେ ଏକ ଉଚ୍ଚ ଚାକିରୀରେ ରଖି ଭବିଷ୍ୟତରେ ସେ ମହାରାଜା ହେଲେ ମୁଁ ତାଙ୍କର ବିଶ୍ୱସ୍ତ ଭାବେ କ୍ରମଶଃ ରାଜ୍ୟର ସର୍ବୋଚ୍ଚ ପ୍ରଶାସନିକ ସ୍ଥାନ ଅଧିକାର କରିବାର ସୁଯୋଗ ପାଇପାରେ ବୋଲି ତାଙ୍କ ଅତ୍ୟନ୍ତ ବିଶ୍ୱସ୍ତ ଗାର୍ଡିଆନ ଟିଉଟର ଭାବେ ସ୍ୱର୍ଗତ ଧର୍ମାନନ୍ଦ ତ୍ରିପାଠୀ ମତେ ପ୍ରସ୍ତାବ ଦେଉଥାଆନ୍ତି । ଧର୍ମାନନ୍ଦ ବାବୁ ଥିଲେ ପ୍ରକୃତରେ ଏକ ସାଧୁପୁରୁଷ, ଧର୍ମବିଶ୍ୱାସୀ ଓ ଅତ୍ୟନ୍ତ ନିଷ୍ଠାପର । ମହାରାଜ କୁମାର ପି.କେ. ଦେଓ ମୋର ଅତ୍ୟନ୍ତ ଘନିଷ୍ଠ । ଏହିପରି ଚାକିରୀର ପ୍ରଲୋଭନ, ମନ ଭିତରେ ଆଇନ ବ୍ୟବସାୟ ଓ ଜନସେବା ଜରିଆରେ ନିଜକୁ ପ୍ରତିଷ୍ଠିତ କରିବାର ଅଭିଳାଷ । ଏପରି ଏକ ଯୁବକ ଜୀବନର ଅଭିଳାଷ ଓ ପ୍ରଲୋଭନ ଭବିଷ୍ୟତ ସ୍ୱପ୍ନକୁ ନେଇ ମନ ଆନ୍ଦୋଳିତ ହେଉଥିବା ଅବସ୍ଥାରେ ଏକ ନାଟକୀୟ ଘଟଣା ଜୀବନର ସ୍ରୋତକୁ ଏକ ଅନିଶ୍ଚିତ ଭବିଷ୍ୟତକୁ ନେଇଗଲା ।

୧୯୩୮ ଜୁଲାଇ ପ୍ରଥମ ସପ୍ତାହ, ଦିନ ମନେ ପଡୁ ନାହିଁ । ହଠାତ୍ ମୋର ଜ୍ୟେଷ୍ଠ ଭ୍ରାତାସମ ଓ ରାଜନୈତିକ ଦିଗ୍‌ଦର୍ଶକ ଭାବେ ଯାହାକୁ ମୁଁ ସ୍କୁଲ ଛାତ୍ର ସମୟରୁ ସମ୍ମାନ ଦେଇ ଆସିଥିଲି ଶ୍ରୀ ଅଶୋକ ଦାଶ, ଗୋଟିଏ ତାରବାର୍ତ୍ତା ପଠାଇଲେ ଯଥାଶୀଘ୍ର ଓଡିଶା ଫେରି ଯିବା ପାଇଁ କାରଣ ଥିଲା ଓଡିଶାରେ ଛାତ୍ର ସମାଜ ସେମାନଙ୍କର କେତେକ ଦାବି ନେଇ ଗଭୀର ଅସନ୍ତୋଷ ପ୍ରକାଶ କରି ଏକ ଆନ୍ଦୋଳନାତ୍ମକ କାର୍ଯ୍ୟକ୍ରମ ହାତକୁ ନେଉଛନ୍ତି । ଓଡିଶାରେ ରାଜ୍ୟସ୍ତରୀୟ ଛାତ୍ର ସଂଗଠନ ନଥିବାରୁ, ନିଖିଳ ଭାରତ ଛାତ୍ର ସଂଘର ରାଜ୍ୟ ଶାଖା ଗଠନ କରାଯିବ ଏବଂ ସେହି ଛାତ୍ର ସଂଘ ଜରିଆରେ ଛାତ୍ର ଆନ୍ଦୋଳନକୁ ଦିଗ୍‌ଦର୍ଶନ ଓ ନେତୃତ୍ୱ ନେବା ପାଇଁ ମୋର ଓଡିଶା ଫେରିଯିବାର ଆବଶ୍ୟକତା ସେ ଜରୁରୀ ମନେ କରୁଛନ୍ତି । ଅଶୋକ ଭାଇନା ସେତେବେଳେ ରେଭେନ୍‌ସା କଲେଜର ଆଇନ ଶିକ୍ଷାର ଦ୍ୱିତୀୟ ବର୍ଷର ଛାତ୍ର । ସେ ଥିଲେ ଜଣେ ପ୍ରବୀଣ ବିପ୍ଳବୀ । ବଙ୍ଗଦେଶର ଛାତ୍ର ଆନ୍ଦୋଳନର ନେତା ଓ ଗୁପ୍ତ ବିପ୍ଳବୀ ସଂଗଠନ 'ଅନୁଶୀଳନ'ର ନେତୃବୃନ୍ଦଙ୍କ ସହିତ ଘନିଷ୍ଠ ସଂପର୍କ । ସେଥିପାଇଁ କଲିକତା ପୁଲିସ ତାଙ୍କ ପ୍ରତି ବହୁତ ନିଷ୍ଠୁର ବ୍ୟବହାର କରିଥିଲେ । କଲିକତାରେ ଛାତ୍ର ଥିଲାବେଳେ ସେ ଯେପରି ପୁଲିସର ବର୍ବରତାର ସମ୍ମୁଖୀନ ହୋଇଥିଲେ ତାହା ଶୁଣିଲେ ରୁମ ଟାଙ୍କୁରି ଉଠେ । ଆମ୍ଭମାନଙ୍କୁ ସେ ଏହି ବଂଗ ବିପ୍ଳବୀମାନଙ୍କର ଆନ୍ଦୋଳନ ସଂପର୍କରେ ବହୁତ ରୋମାଞ୍ଚକର ତଥ୍ୟ ଦେଇ ଅନୁପ୍ରାଣିତ କରୁଥିଲେ । ଆମର ବୈଠକ ଥିଲା ମୋର ମାମୁଁ ପୁଅ ଭାଇ, ପୂର୍ବତନ କେନ୍ଦ୍ର ମନ୍ତ୍ରୀ ଓ ବିଶିଷ୍ଟ ଆଇନଜୀବୀ ଶ୍ରୀ ବିବୁଧେନ୍ଦ୍ର ମିଶ୍ରଙ୍କ କୁଣ୍ଠାଇବେଣ୍ଟ ସାହି ସ୍ଥିତ ଘରର କୋଠରୀକୁ ଲାଗି ଗୋଟିଏ ଛୋଟ ବଖରାରେ । ସେଠାରେ ସୂରଜ ମଲ୍ଲ

ସାହାଙ୍କ ସହିତ ବହୁ ଛାତ୍ର, ରାଜନୈତିକ କର୍ମୀମାନଙ୍କର ବୈଠକ ହୁଏ । ଅଶୋକ ଭାରନା ଆମର ନେତା ଓ ଦିଗ୍‌ଦର୍ଶକ । ସେ ମଧ୍ୟ ଜଣେ ଅତ୍ୟନ୍ତ ମେଧାବୀ ଛାତ୍ର ଥିଲେ । ପଣ୍ଡିତ ନୀଳକଣ୍ଠଙ୍କ ଜ୍ୟେଷ୍ଠପୁତ୍ର ଭାବେ କେବଳ ନୁହେଁ ସମସ୍ତ ଛାତ୍ର ସମାଜ ତାଙ୍କୁ ଜଣେ ପ୍ରଖର ବୁଦ୍ଧିଜୀବୀ ଭାବେ, ଛାତ୍ରନେତା ଭାବେ ସମ୍ମାନ କରୁଥିଲେ । ଏପରି ଜଣେ ନେତାଙ୍କଠାରୁ ପୁନଶ୍ଚ ଜାଣିବାକୁ ପାଇଥାଏ ଯେ କଟକ ମେଡିକାଲ ସ୍କୁଲ ଛାତ୍ରମାନେ କେତେକ ଦାବି ନେଇ ମଧ୍ୟ ଆନ୍ଦୋଳନ ଆରମ୍ଭ କରିବା ପାଇଁ ପ୍ରସ୍ତୁତ ହେଉଛନ୍ତି । ଏପରି ସମ୍ବାଦ ପାଇବା ପରେ ମୋର ଚାକିରୀ କରିବାର ସ୍ୱପ୍ନ ଆପେ ଆପେ ମିଳାଇଗଲା । ମୁଁ ଏକ ସପ୍ତାହ ଭିତରେ କଟକରେ ପହଞ୍ଚି ସଂଗେ ସଂଗେ ରେଭେନ୍‌ସା କଲେଜରେ ଆଇନ ଶ୍ରେଣୀରେ ଆଡମିଶନ୍ ନେଇଗଲି । ସେତେବେଳକୁ ଶ୍ରୀ ରାମଚନ୍ଦ୍ର ଦାସ (Dr. Sreeram Ch. Das, Prof. Utkal University), ଶ୍ରୀ ପ୍ରଫୁଲ୍ଲ ପଟ୍ଟନାୟକ (କେନ୍ଦ୍ର ପାର୍ଲାମେଣ୍ଟର ସଚିବ), ଶ୍ରୀ ସଚି ରାଉତରାୟ (ବିଶିଷ୍ଟ ବିପ୍ଳବୀ କବି), ବୈଦ୍ୟନାଥ ରଥ (ପୂର୍ବତନ ଏମ.ପି.), ବିବୁଧେନ୍ଦ୍ର ମିଶ୍ର (ପୂର୍ବତନ କେନ୍ଦ୍ର ମନ୍ତ୍ରୀ ଓ ବରିଷ୍ଠ ଆଇନଜୀବୀ), ଶ୍ରୀ ନୀଳମଣି ରାଉତରା, ଶ୍ରୀ ବୀରେନ ମିତ୍ର ଓ ବିଜୁ ପଟ୍ଟନାୟକ (ପୂର୍ବତନ ମୁଖ୍ୟମନ୍ତ୍ରୀ ଗଣ), ଶ୍ରୀ ମନମୋହନ ମିଶ୍ର (ବିଶିଷ୍ଟ କବି ଓ ଜନନାୟକ), ଶ୍ରୀ ରାମକୃଷ୍ଣ ପତି (କମ୍ୟୁନିଷ୍ଟ ନେତା ଓ ପୂର୍ବତନ ବିଧାୟକ), ଶ୍ରୀ ଦୁର୍ଗା ଚରଣ ମହାନ୍ତି (କମ୍ୟୁନିଷ୍ଟ ଦଳ ରାଜ୍ୟ ସଂପାଦକ), ଶ୍ରୀ ଗୁରୁ ଚରଣ ପଟ୍ଟନାୟକ, ଶ୍ରୀ ରାମଚନ୍ଦ୍ର ମିଶ୍ର, ଶ୍ରୀ ବଳରାମ ମହାନ୍ତି, ଶ୍ରୀ ସୂରଜ ମଲ ସାହା (ବିଶିଷ୍ଟ ଶିକ୍ଷାବିତ, ପୂର୍ବତନ ଏମ.ପି.), ସ୍ୱର୍ଗତ ଗିରିଜା ଶଙ୍କର ବହିଦାର (ବିଶିଷ୍ଟ ଆଇନଜୀବୀ) ଶ୍ରୀ ଉଦୟନାଥ ମିଶ୍ର (ପୂର୍ବତନ ନିର୍ଦ୍ଦେଶକ, ସରକାରୀ ଛାପା ନିର୍ଦ୍ଦେଶାଳୟ) ପ୍ରଭୃତି ଛାତ୍ରମାନଙ୍କ ଭିତରେ ନେତୃତ୍ୱ ନେଉଥିଲେ । ବିଜୁ ପଟ୍ଟନାୟକ ରେଭେନ୍‌ସା କଲେଜରୁ ବିଜ୍ଞାନରେ (ଆଇ.ଏସ.ସି.) ପଢୁଥିବାବେଳେ ବିମାନ ଚାଳନା ଶିକ୍ଷା କଲେ ଏବଂ ଦିଲ୍ଲୀ ଫ୍ଲାଇଙ୍ଗ କ୍ଲବ (ସଫଦରଜଙ୍ଗ) ରେ ବିମାନ ଚାଳନାରେ ଦକ୍ଷତା ଅର୍ଜନ କରି ପ୍ରତ୍ୟକ୍ଷ ରାଜନୀତିକୁ ଆସିବା ପୂର୍ବରୁ ଏକ ଶ୍ରେଷ୍ଠ ବୈମାନିକ (Ace Pilot) ଭାବେ ଭାରତରେ ଖ୍ୟାତି ଅର୍ଜନ କରି ପଣ୍ଡିତ ନେହେରୁଙ୍କର ଅତ୍ୟନ୍ତ ପ୍ରିୟପାତ୍ର ହେଲେ । ସେ ସଂପର୍କରେ ଅଧିକ ପରବର୍ତ୍ତୀ ଜୀବନର ଅନୁଭୂତି ନେଇ ତଥ୍ୟର ଅବତାରଣା କରାଯିବ ।

ସେତେବେଳେ ଓଡିଶାରେ ପ୍ରଥମ କଂଗ୍ରେସ ମନ୍ତ୍ରିମଣ୍ଡଳ । ସ୍ୱର୍ଗତ ବିଶ୍ୱନାଥ ଦାଶ ପ୍ରଥମ କଂଗ୍ରେସ ପ୍ରଧାନମନ୍ତ୍ରୀ । ପଣ୍ଡିତ ନୀଳକଣ୍ଠ ଦାଶ ଓଡିଶା ପ୍ରଦେଶ କଂଗ୍ରେସ କମିଟିର ସଭାପତି । ପଣ୍ଡିତ ଗୋଦାବରୀଶ ମିଶ୍ର ବିଧାୟକ । ମନ୍ତ୍ରିମଣ୍ଡଳରେ କେବଳ ୩ ଜଣ ମନ୍ତ୍ରୀ ସ୍ୱର୍ଗତ ନିତ୍ୟାନନ୍ଦ କାନୁନ୍‌ଗୋ ଓ ସମ୍ବଲପୁରସ୍ଥ ବିଶିଷ୍ଟ ଆଇନଜୀବୀ ଶ୍ରୀ

ବୋଧରାମ ଦୁବେ । ପଣ୍ଡିତ ନୀଳକଣ୍ଠଙ୍କ କଟକ ବାଙ୍କାବଜାରସ୍ଥିତ ନବଭାରତ ପ୍ରେସ୍ ଥାଏ ରାଜ୍ୟ ରାଜନୀତିରେ ପଣ୍ଡିତ ନୀଳକଣ୍ଠଙ୍କ ସମର୍ଥକ ଗୋଷ୍ଠୀର ପ୍ରାଣ କେନ୍ଦ୍ର । ନବଭାରତ ମାସିକ ମାଗାଜିନ ସେଠାରୁ ପ୍ରକାଶ ପାଉଥାଏ । ପରେ ନବଭାରତ ନାମକ ଏକ ଦୈନିକ ଖବର କାଗଜ ମଧ୍ୟ ପ୍ରକାଶ କରାଇଲେ । ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ମାସିକ ନବଭାରତ ଓ ରାଜନୈତିକ ଆନ୍ଦୋଳନର ମୁଖ୍ୟ ବାହକ ରୂପେ ଆତ୍ମପ୍ରକାଶ କଲା ଦୈନିକ ନବଭାରତ । ଡକ୍ଟର ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ନନ୍ଦ କିଶୋର ଦାସ, ଭାଗୀରଥି ମହାପାତ୍ର, ଶଶୀ ଭୂଷଣ ରଥ (ବ୍ରହ୍ମପୁର ଦୈନିକ ଆଶାର ପ୍ରତିଷ୍ଠାତା ସଂପାଦକ), ଦିବାକର ପଟ୍ଟନାୟକ, ଉମାଚରଣ ପଟ୍ଟନାୟକ, ରାଧାକୃଷ୍ଣ ବିଶ୍ୱାସରାୟ, ରାଧା ମୋହନ ସାହୁ, ପୁରୀର ଜଗନ୍ନାଥ ରଥ, କେନ୍ଦ୍ରାପଡାର ଯଦୁମଣି ମଙ୍ଗରାଜ, କଟକର ରାଜକୃଷ୍ଣ ବୋଷ, ପ୍ରାଣକୃଷ୍ଣ ପଢିଆରୀ ପ୍ରମୁଖ ରାଜ୍ୟ କଂଗ୍ରେସର କର୍ଣ୍ଣଧାର ରୂପେ ପ୍ରତିଷ୍ଠା ଅର୍ଜନ କରିଥାଆନ୍ତି । କଂଗ୍ରେସ ଭିତରେ ଦୁଇଟି ମୁଖ୍ୟ ଗୋଷ୍ଠୀ । ପଣ୍ଡିତ ନୀଳକଣ୍ଠ, ଗୋଦାବରୀଶ, ଯଦୁମଣି ମଙ୍ଗରାଜ, ରାଧାକୃଷ୍ଣ ବିଶ୍ୱାସ ରାୟ, ଦିବାକର ପଟ୍ଟନାୟକ, ରାଧା ମୋହନ ସାହୁ ଓ ଶଶୀ ଭୂଷଣ ରଥ ପ୍ରଭୃତି ଗୋଟିଏ ବଳିଷ୍ଠ ଗୋଷ୍ଠୀ ଏବଂ ଡଃ ହରେକୃଷ୍ଣ ମହତାବ, ନିତ୍ୟାନନ୍ଦ କାନୁନ୍‌ଗୋ, ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ରାଜକୃଷ୍ଣ ବୋଷ ପ୍ରଭୃତି ଅନ୍ୟ ଗୋଷ୍ଠୀର ନେତୃତ୍ୱ ନେଉଥାଆନ୍ତି ।

୧୯୩୭ ମସିହାରେ ନିର୍ବାଚନରେ ପ୍ରଥମ ଥର ପାଇଁ ଦ୍ୱୈତ ଶାସନକୁ (Montagu Chemsford Reform) ପରୀକ୍ଷା ସ୍ୱରୂପ ଗ୍ରହଣ କରିବା ପାଇଁ ଭାରତୀୟ ଜାତୀୟ କଂଗ୍ରେସ ନୀତିଗତ ଭାବରେ ଗ୍ରହଣ କରି ବିଧାନସଭା ଓ କେନ୍ଦ୍ର ଆଇନ ସଭା ନିର୍ବାଚନରେ ଭାଗ ନେବା ପାଇଁ ସ୍ଥିର କରିବାରେ ନିର୍ବାଚନ ଓଡିଶାରେ ହେଉଥାଏ । ଓଡିଶା ପ୍ରଦେଶର ଜନ୍ମ ୧୯୩୬ ମସିହା ଏପ୍ରିଲ ମାସ । ଓଡିଶା ପ୍ରଦେଶର ଏକବର୍ଷ ନ ପୂରୁଣୁ ଏହି ସାଧାରଣ ନିର୍ବାଚନ । ପଣ୍ଡିତ ନୀଳକଣ୍ଠ ସେତେବେଳକୁ କେନ୍ଦ୍ର ବିଧାନସଭା (ସେଣ୍ଟ୍ରାଲ ଆସେମ୍ବ୍ଲି)ର ଜଣେ ବରିଷ୍ଠ ସଭ୍ୟ ଓ କେନ୍ଦ୍ର କଂଗ୍ରେସ ବିଧାୟକ ଦଳର ସଂପାଦକ ଭାବେ ପ୍ରତିଷ୍ଠା ଅର୍ଜନ କରିଥାଆନ୍ତି । ସେତେବେଳର ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ଭାବରେ ସେ ନିର୍ବାଚନର ସମସ୍ତ ଦାୟିତ୍ୱ ନେଇଥିଲେ । ସର୍ଦ୍ଦାର ପଟେଲଙ୍କର ସେ ଥିଲେ ବିଶ୍ୱସ୍ତ । ତାଙ୍କର ନେତୃତ୍ୱରେ ନିର୍ବାଚନ ହୋଇ ଓଡିଶା କଂଗ୍ରେସ ବିପୁଳ ବିଜୟ ହାସଲ କରି ୩୬ଟି ଆସନରେ ପ୍ରତିଦ୍ୱନ୍ଦ୍ୱିତା କରି ୩୫ଟି ଆସନରେ ଜୟଯୁକ୍ତ ହୋଇଥିଲା । ପଣ୍ଡିତ ନୀଳକଣ୍ଠଙ୍କର ସଂପୂର୍ଣ୍ଣ ବିଶ୍ୱାସ ଥିଲା ସେ ରାଜ୍ୟର ପ୍ରଥମ କଂଗ୍ରେସ ପ୍ରଧାନମନ୍ତ୍ରୀ

ହେବେ । କିନ୍ତୁ ରାଜନୀତିର ଚକ୍ର ଘୂରିବାକୁ ଆରମ୍ଭ କଲା । ସେତେବେଳେ ରେଭେନ୍‌ସା କଲେଜ ହଲ୍‌ରେ ବିଧାନସଭା ବୈଠକ ହେଉଥାଏ । ବିଧାନସଭାର ସଭ୍ୟସଂଖ୍ୟା ଥିଲା ୬୦ । କଂଗ୍ରେସ ଦଳ ସଂପୂର୍ଣ୍ଣ ସଂଖ୍ୟାଗରିଷ୍ଠତା ହାସଲ କଲାପରେ ପଣ୍ଡିତ ନୀଳକଣ୍ଠ ପ୍ରଧାନମନ୍ତ୍ରୀ ହେଉଛନ୍ତି ବୋଲି ସମସ୍ତଙ୍କର ବିଶ୍ୱାସ ଥିଲା । ବିଶ୍ୱନାଥ ଦାଶ ପ୍ରଥମ ଥର ପାଇଁ ମାଡ୍ରାସ ବିଧାନସଭା ଛାଡ଼ି ଓଡ଼ିଶା ବିଧାନସଭାର ସଭ୍ୟ ହୋଇଥାଆନ୍ତି । ଆନ୍ଧ୍ରପ୍ରଦେଶ ସେତେବେଳେ ମାଡ୍ରାସ ପ୍ରେସିଡେନ୍ସି ସହିତ ଯୋଡ଼ି ହୋଇଥାଏ । ଗଞ୍ଜାମ ଓ କୋରାପୁଟ ମାଡ୍ରାସ ପ୍ରଦେଶ ସହିତ ସାମିଲ ଥାଏ । ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ନୂତନ ଭାବେ ୭ଟି ଜିଲ୍ଲା ଯଥା ପୁରୀ, କଟକ, ବାଲେଶ୍ୱର, ଗଞ୍ଜାମ, କୋରାପୁଟ, ସମ୍ବଲପୁର ଓ ଅନୁଗୁଳ । କଟକରେ ସାମୟିକ ରାଜଧାନୀ । ବାରବାଟୀ କିଲ୍ଲା ମଇଦାନରୁ ଏକ ପାର୍ଶ୍ୱରେ ଆଜବେଷ୍ଟସ୍ ଘର ଭିତରେ ସାମୟିକ ଭାବେ ସଚିବାଳୟ ଚାଲୁଥାଏ । ପାରଳାଖେମୁଣ୍ଡି ମହାରାଜା, ଗୋରାଚାନ୍ଦ ପଟ୍ଟନାୟକ, ବ୍ରଜସୁନ୍ଦର ଦାସ ପ୍ରଭୃତି ଉତ୍କଳ ସମ୍ମିଳନୀର ବିଶିଷ୍ଟ ନେତୃବୃନ୍ଦ ବିଧାନସଭା ବିରୋଧି ଦଳର ନେତୃତ୍ୱ ନେଉଥାଆନ୍ତି । ସମ୍ବଲପୁରର ପଣ୍ଡିତ ଲକ୍ଷ୍ମୀ ନାରାୟଣ ମିଶ୍ର ଜଣେ ଶ୍ରେଷ୍ଠ ସ୍ୱାଧୀନତା ସଂଗ୍ରାମୀ, ଭାଷାବିତ୍, ପ୍ରଭାବଶାଳୀ ବକ୍ତା ଓ ସମ୍ବଲପୁର ଅଞ୍ଚଳର ଶ୍ରେଷ୍ଠ ନେତା ଭାବେ ପଣ୍ଡିତ ନୀଳକଣ୍ଠଙ୍କର ପ୍ରମୁଖ ସମର୍ଥକ ଭାବେ ନିଜର ପ୍ରଭାବ ପଶ୍ଚିମାଞ୍ଚଳରେ ପ୍ରତିଷ୍ଠା କରିଥାଆନ୍ତି । ଡକ୍ଟର ମହତାବ ସେତେବେଳକୁ ଜଣେ ଅତ୍ୟନ୍ତ ପ୍ରଭାବଶାଳୀ ନେତାଭାବେ ଦ୍ୱିତୀୟ ପର୍ଯ୍ୟାୟ ସ୍ୱାଧୀନତା ସଂଗ୍ରାମ ଅସହଯୋଗ ଆନ୍ଦୋଳନର ବାଲେଶ୍ୱର ଜିଲ୍ଲାର ନେତୃତ୍ୱରେ ରାଜ୍ୟରେ ପ୍ରଭାବଶାଳୀ ନେତା ଭାବେ ଯୁବ ସମାଜର ପ୍ରେରଣାର ଉତ୍ସ ଭାବେ ଯୁବଗୋଷ୍ଠୀର ନେତୃତ୍ୱ ନେଉଥାଆନ୍ତି । ତାଙ୍କର ବିଚକ୍ଷଣତା ଓ ସଂଗଠନ ଶକ୍ତି କେବଳ ପଣ୍ଡିତ ନୀଳକଣ୍ଠଙ୍କ ସମ୍ମୁଖୀନ ହୋଇପାରିବ । ପଣ୍ଡିତ ନୀଳକଣ୍ଠ ଥରେ ପ୍ରଧାନମନ୍ତ୍ରୀ ହୋଇପଡ଼ିଲେ ରାଜ୍ୟ ନେତୃତ୍ୱ ତାଙ୍କ ହାତରୁ ଖସିବା ସମ୍ଭବପର ହେବ ନାହିଁ । ତାଙ୍କୁ ଦୂରେଇଦେଲେ ମହତାବ ରାଜ୍ୟର ସବୁଠାରୁ ପ୍ରଭାବଶାଳୀ ନେତା ହେବାର ବାଟ ସୁଗମ ହୋଇଯିବ । ଏହିପରି ଦୃଶ୍ୟପଟକୁ ଆଖି ଆଗରେ ରଖି ଦୂରଦର୍ଶୀ ମହତାବ ଏକ ସୁଚିନ୍ତିତ ପ୍ରସ୍ତାବ ଆଗତ କଲେ ଯେ ବିଧାନ ସଭା କଂଗ୍ରେସ ଦଳର ନେତୃତ୍ୱ ଯେ ନେବ ସେ ବିଧାନସଭା ସଦସ୍ୟ ହେବା ଆବଶ୍ୟକ । ଏପରି ଏକ ପ୍ରସ୍ତାବ କଂଗ୍ରେସ କାର୍ଯ୍ୟକାରୀ କମିଟି ବିଶେଷତଃ ପଣ୍ଡିତ ନେହେରୁଙ୍କର ସମ୍ମତି ପାଇବାରେ ମହତାବ ବାବୁ ସକ୍ଷମ ହୋଇପାରିଥିଲେ । ନୀଳକଣ୍ଠ ବାବୁ ଓ ତାଙ୍କ ସମର୍ଥକମାନେ ଏପରି ହଠାତ୍ ଏକ ରାଜନୈତିକ ବୋମା ତାଙ୍କ ବିରୁଦ୍ଧରେ ଉଦ୍ଦିଷ୍ଟ ବୋଲି ଆଗରୁ କଳନା କରିପାରିନଥିଲେ । ଏହା ଫଳରେ

ପଣ୍ଡିତ ନୀଳକଣ୍ଠ କିଛି ପ୍ରତିକାର ବ୍ୟବସ୍ଥା ଗ୍ରହଣ କଲା ପୂର୍ବରୁ ବିଧାନସଭା କଂଗ୍ରେସ ଦଳରେ ଏପରି ଏକ ପ୍ରସ୍ତାବ ଗୃହୀତ ହୋଇଗଲା । କମ୍ୟୁନିଷ୍ଟ ନେତା ନିମାପଡା ବିଧାୟକ ମୋହନ ଦାସ ପଣ୍ଡିତ ନୀଳକଣ୍ଠଙ୍କ ଦକ୍ଷିଣ ହସ୍ତ ଓ ବୁଦ୍ଧିଦାତା ଭାବେ କାର୍ଯ୍ୟ କରୁଥିଲେ ସୁଦ୍ଧା ମହତାବ ବାବୁ ବୁଦ୍ଧି ଓ ବିଚକ୍ଷଣତା ବଳରେ ସମସ୍ତଙ୍କୁ ବୋକା ବନେଇ ଦେଇ, ବିଶ୍ୱନାଥ ଦାଶଙ୍କୁ ବିଧାନସଭା କଂଗ୍ରେସ ଦଳର ନେତା ରୂପେ ନିର୍ବାଚିତ କରାଇବାରେ ସଫଳତା ହାସଲ କରିଥିଲେ । ଏହି ଘଟଣା ପରେ ପଣ୍ଡିତ ନୀଳକଣ୍ଠ ଅତ୍ୟନ୍ତ ମ୍ରିୟମାଣ ହୋଇ ବିଶ୍ୱନାଥ ଦାଶ ମନ୍ତ୍ରିମଣ୍ଡଳ ଯେପରି ଅସୁବିଧାର ସମ୍ମୁଖୀନ ହେବ ସେଥିପାଇଁ ଉଦ୍ୟମ ଆରମ୍ଭ କଲେ । ସ୍ୱାଧୀନତା ପୂର୍ବରୁ ପ୍ରଥମ ଓଡିଆ ମନ୍ତ୍ରିମଣ୍ଡଳରେ ୩ ଜଣ ମନ୍ତ୍ରୀ ହୋଇ ମନ୍ତ୍ରିମଣ୍ଡଳ ଚାଲିଲା । ସ୍ୱର୍ଗତ ଚିନ୍ତାମଣି ମିଶ୍ର (ଡଃ ବୈଦ୍ୟନାଥ ମିଶ୍ରଙ୍କ ଶଶୁର) ଜଣେ ଅତ୍ୟନ୍ତ ବୁଦ୍ଧିମାନ, ପ୍ରଭାବଶାଳୀ ଓ ପ୍ରଚଣ୍ଡ ମେଧାଶକ୍ତିର ଅଧିକାରୀ ଥିଲେ । ତାଙ୍କର ଶକ୍ତିଶାଳୀ ଲେଖନୀ ଓ ପ୍ରଚଣ୍ଡ ପ୍ରତିଭା ଯୋଗୁଁ ପଣ୍ଡିତ ନୀଳକଣ୍ଠଙ୍କ ସ୍ଥାପିତ ନବଭାରତ ପ୍ରେସ୍‌ରୁ ମାସିକ ଓ ଦୈନିକ ନବଭାରତ ବାହାରୁଥାଏ । ପଣ୍ଡିତ ନୀଳକଣ୍ଠଙ୍କ ରାଜନୈତିକ ଜୀବନର ଉଲ୍ଲେଖନୀୟ ଶେଷ ଅଧ୍ୟାୟର ଅୟମାରମ୍ଭ ହୁଏ ଓ ଶେଷରେ ଓଡିଶା ରାଜନୀତିରେ ନୀଳକଣ୍ଠ ଯୁଗର ଏକ ଐତିହାସିକ ପରିବେଶ ସୃଷ୍ଟି କରେ । ଏପରି ଏକ ପରିସ୍ଥିତିରେ ଛାତ୍ର ଆନ୍ଦୋଳନର ଭୂମିକା ଓ ସେଥିରେ ମୋର ଓ ମୋ ସହିତ ବଂଧୁମାନଙ୍କର ଓଡିଶା ରାଜନୈତିକ କ୍ଷେତ୍ରରେ ପ୍ରତ୍ୟକ୍ଷ ଯୋଗ ସଂପର୍କରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିବାରେ ସହାୟକ ହୋଇଥିଲେ ବୋଲି ମୋର ବିଶ୍ୱାସ ।

ଅଶୋକ ଭାଇନାଙ୍କ ନିର୍ଦ୍ଦେଶ ମତେ ମୁଁ ଓଡିଶାକୁ ଫେରି ଆସି ରେଭେନ୍‌ସା କଲେଜରେ ଚାଲୁଥିବା ଆଇନ କଲେଜରେ ନାମ ଲେଖାଇଲି ୧୯୩୮ ମସିହା ଜୁଲାଇ ମାସରେ । ସେତେବେଳେ ମଧୁସୂଦନ ଆଇନ ମହାବିଦ୍ୟାଳୟ ସ୍ଥାପିତ ହୋଇନଥାଏ । କିଛି ବର୍ଷ ପରେ ରେଭେନ୍‌ସା କଲେଜରେ ଚାଲୁଥିବା ଆଇନ ମହାବିଦ୍ୟାଳୟ କଟକ ରେଳଷ୍ଟେସନ ନିକଟବର୍ତ୍ତୀ ବର୍ତ୍ତମାନ କୋଠୀକୁ ସ୍ଥାନାନ୍ତରିତ ହେଲା ଓ ଉତ୍କଳ ଗୌରବ ମଧୁସୂଦନଙ୍କ ନାମରେ ନାମିତ ହୋଇଥିଲା । ଏବେ ସେହି ମହାବିଦ୍ୟାଳୟ କଟକ ରେଳଷ୍ଟେସନ ଛକରେ ନିଜସ୍ୱ କୋଠାରେ ଅବସ୍ଥାପିତ ହୋଇ ଏକ ସ୍ୱୟଂଚାଳିତ ମହାବିଦ୍ୟାଳୟ ରୂପେ ପ୍ରତିଷ୍ଠା ଲାଭ କରିଛି ।

ସେତେବେଳେ ମିଷ୍ଟର ବାନାର୍ଜୀ ନାମରେ ଜଣେ କଲିକତା ବାସିନ୍ଦା ବରିଷ୍ଠ ଆଇନଜୀବୀ ଲ ପ୍ରଫେସର ଥାଆନ୍ତି । କେତେକ ସମସ୍ୟା ନେଇ ଆଇନ ମହାବିଦ୍ୟାଳୟର ଛାତ୍ରଛାତ୍ରୀମାନେ ଆନ୍ଦୋଳନ ଚଳାଇବା ପାଇଁ ସ୍ଥିର କରି ଶ୍ରେଣୀ ବର୍ଜନ ଓ ବାନାର୍ଜୀଙ୍କୁ ବିଦାୟ କରିବା ପାଇଁ ଆନ୍ଦୋଳନ ଚଳାଇଥାଆନ୍ତି । ଶେଷରେ

ଏପରି ପରିସ୍ଥିତି ହେଲା ଯାହା ଫଳରେ ମିଃ ବାନାର୍ଜୀ ଆଇନ ମହାବିଦ୍ୟାଳୟରୁ ବିଦାୟ ନେଲେ । ଏହି ସମୟରୁ ରାଜ୍ୟର ବିଭିନ୍ନ ମହାବିଦ୍ୟାଳୟ ଛାତ୍ରମାନଙ୍କୁ ସଂଗଠିତ କରି ଭାରତୀୟ ଛାତ୍ରସଂଘର ଓଡିଶାରେ ଏକ ରାଜ୍ୟ ଶାଖା ଗଠନ କରିବାର ଉଦ୍ୟମ ହେଉଥାଏ । କେନ୍ଦ୍ରରେ ବିଶିଷ୍ଟ ଛାତ୍ରନେତାମାନେ ତାମିଲନାଡୁରେ ଜଣେ ଯୁବକ ଯେକି ଦୀର୍ଘ ୧୨ ବର୍ଷ ଲଣ୍ଡନରେ ପଢି ଶେଷରେ ବାରିଷ୍ଟର ହୋଇ ଭାରତକୁ ଆସି ନିଖିଳ ଭାରତ ଛାତ୍ର ସଂଘ (A.I.S.F)ର ସଭାପତି ଥାଆନ୍ତି । ସେ ଜଣେ କମ୍ୟୁନିଷ୍ଟ ମତବାଦର ଯୁବକ ଯଦିଓ ତାଙ୍କର ବାପା କେନ୍ଦ୍ରରେ ପଣ୍ଡିତ ନେହେରୁଙ୍କ ମନ୍ତ୍ରିମଣ୍ଡଳରେ ମନ୍ତ୍ରୀ ଥିଲେ । ମୋହନ କୁମାର ମଙ୍ଗଳମଙ୍କ ସୁପୁତ୍ର ଶ୍ରୀ କୁମାର ମଙ୍ଗଳମ କେନ୍ଦ୍ର ମନ୍ତ୍ରିମଣ୍ଡଳର ଜଣେ ବରିଷ୍ଠ ମନ୍ତ୍ରୀ ଥିଲେ । ୩ ପୁରୁଷ ଧରି ଏହି ପରିବାର କେନ୍ଦ୍ରର ବିଭିନ୍ନ ଦଳର ମନ୍ତ୍ରିମଣ୍ଡଳରେ ସ୍ଥାନ ପାଇ ଆସିଛନ୍ତି । ମୋହନ କୁମାରମଙ୍ଗଳମଙ୍କ ମାତା ମଧ୍ୟ ଲୋକସଭାର ସଦସ୍ୟା ଥିଲେ । ସେମାନେ ସ୍ୱାଧୀନ ତାମିଲନାଡୁର ଏକ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ପରିବାର । ଓଡିଶାରେ ଛାତ୍ରସଂଘର ଦାୟିତ୍ୱ ନେବା ପାଇଁ ଦୁଇଟି ଗୋଷ୍ଠୀ ମଧ୍ୟରେ ଗୋଟିଏ କମ୍ୟୁନିଷ୍ଟ ଆନ୍ଦୋଳନର ପ୍ରମୁଖ ଯୁବକଗଣ, ଅନ୍ୟଟି କଂଗ୍ରେସ ଗୋଷ୍ଠୀର । ଅଶୋକ ଭାଇନା ଏବଂ ମୋତିଲାଲ ତ୍ରିପାଠୀ, ଶ୍ରୀ ବିବୁଧେନ୍ଦ୍ର ମିଶ୍ର, ଶ୍ରୀ ସୂରଜ ମଲ ଶାହା, ଉଦୟ ନାଥ ମିଶ୍ର, ନୀଳମଣି ରାଉତରା, ଫକୀର ମିଶ୍ର (ସର୍ବୋଦୟ ନେତା), ରାମହରି ରଥ, ବଳରାମ ମହାନ୍ତି ପ୍ରଭୃତି ଅଶୋକ ବାବୁଙ୍କ ନେତୃତ୍ୱରେ କଂଗ୍ରେସ ମତବାଦୀ । ଶ୍ରୀ ସଚ୍ଚି ରାଉତରା, ଶ୍ରୀ ଦୁର୍ଗା ଚରଣ ମହାନ୍ତି, ଶ୍ରୀ ଗୁରୁ ଚରଣ ପଟ୍ଟନାୟକ, ରାମକୃଷ୍ଣ ପତି, ସ୍ୱର୍ଗତ ବିଜୟ ଦାସ (ବ୍ରହ୍ମପୁର) ପ୍ରଭୃତି କମ୍ୟୁନିଷ୍ଟ ମତବାଦର ଥାଆନ୍ତି । କବି ମନମୋହନ ମିଶ୍ର ସେତେବେଳକୁ କମ୍ୟୁନିଷ୍ଟ ମତବାଦର ଜଣେ ନିଷ୍ଠାପର ବିଶ୍ୱାସୀ ଥିଲେ ମଧ୍ୟ 'କାଡର' ସଭ୍ୟ ହୋଇନଥାନ୍ତି । ସଚି ରାଉତରା ଓ ମନମୋହନ ମିଶ୍ର ସେମାନଙ୍କର ବକ୍ତୃତା ଓ କବିତାମାନ ଦ୍ୱାରା ଛାତ୍ରମାନଙ୍କୁ ଏକାଠି କରିବାରେ ବହୁତ ପ୍ରେରଣା ଦେଉଥାନ୍ତି । ବୀରେନ ମିତ୍ର ସେତେବେଳେ କମ୍ୟୁନିଷ୍ଟ ଦଳ ସହିତ ମାନସିକ ସ୍ତରରେ ଏକ ଥିଲେ ମଧ୍ୟ କଂଗ୍ରେସ ଦଳରେ ଥିଲେ । ବହୁ ଆଲୋଚନା ପରେ ମୁଁ ଓଡିଶା ଛାତ୍ର ସଂଘର ସାଧାରଣ ସଂପାଦକର ଦାୟିତ୍ୱ ନେଲି । ଯୁଗ୍ମ ସଂପାଦକ ଭାବେ ନୀଳମଣି ରାଉତରାଙ୍କୁ ଦାୟିତ୍ୱ ଅର୍ପଣ କରାଗଲା । ଉପରୋକ୍ତ ଅନ୍ୟାନ୍ୟମାନେ ପରବର୍ତ୍ତୀ ସମୟରେ ରାଜ୍ୟର ବିଭିନ୍ନ ରାଜନୈତିକ ଦଳର ନେତୃତ୍ୱ ନେଇ ଉଚ୍ଚ ପଦବୀରେ ଅଧିଷ୍ଠିତ ହେଲେ । ସ୍ୱର୍ଗତ ବିଜୟାନନ୍ଦ ପଟ୍ଟନାୟକ ଛାତ୍ର ଅବସ୍ଥାରୁ ରେଭେନ୍‌ସା କଲେଜର ଜଣେ ସାହସୀ ଯୁବକ, ବିଶିଷ୍ଟ ଖେଳଓ୍ୱାର୍ଡ ଭାବେ ପ୍ରତିଷ୍ଠିତ ହୋଇଥାଆନ୍ତି । ସେ ଫୁଟବଲରେ ବ୍ୟାକ୍‌ରେ ଥାଆନ୍ତି ଏବଂ ତାଙ୍କର କିକ୍ ତାଙ୍କ ବ୍ୟାକ୍

ପୋଷ୍ଟରୁ ପ୍ରତିପକ୍ଷ ଦଳର ବ୍ୟାକ୍ ପୋଷ୍ଟ ପର୍ଯ୍ୟନ୍ତ ଯାଏ । ପ୍ରତ୍ୟକ୍ଷ ରାଜନୀତିରେ ଯୋଗ ଦେଉନଥିଲେ ମଧ୍ୟ ଆମ ସହିତ ସଂପୂର୍ଣ୍ଣ ସହଯୋଗ କରୁଥିଲେ ଓ ମଝିରେ ମଝିରେ ଆର୍ଥିକ ସହାୟତା ଯୋଗାଡ କରିଦେଉଥିଲେ । ଆଇ.ଏସ.ସି. ଶ୍ରେଣୀରୁ ସେ ବିମାନଚାଳନା ଶିକ୍ଷାରେ ମନୋନିବେଶ କରି ଦିଲ୍ଲୀରେ (ସଫଦରଜଙ୍ଗ) ଦିଲ୍ଲୀ ଫ୍ଲାଇଙ୍ଗ କ୍ଲବ୍‌ରୁ ଏକ ବିଶିଷ୍ଟ ବୈମାନିକ ଭାବେ ସର୍ବଭାରତୀୟ କ୍ଷେତ୍ରରେ ଏସ୍. ପାଇଲଟ୍ ଭାବେ ସୁଖ୍ୟାତି ଅର୍ଜନ କରି, ଦ୍ୱିତୀୟ ମହାଯୁଦ୍ଧ ସମୟରେ ଶ୍ରେଷ୍ଠ ବୈମାନିକ ଭାବେ ଭାରତର ସାମରିକ ବଡଲାଟଙ୍କୁ ବର୍ମା ନେଇଥିଲେ । ପରେ ପଣ୍ଡିତ ନେହେରୁ ଓ ନେହେରୁ ପରିବାର ସହିତ ତାଙ୍କର ଘନିଷ୍ଠତା ହୁଏ । ପଣ୍ଡିତ ନେହେରୁ ତାଙ୍କୁ ଜଣେ ସାହସିକ ଜାତୀୟବାଦୀ ଶ୍ରେଷ୍ଠ ବୈମାନିକ ଭାବେ ବହୁତ ଭଲ ପାଉଥିଲେ । ନେପାଳ ରାଜାଙ୍କ ବିରୁଦ୍ଧରେ ପ୍ରଜା ପରିଷଦ (ନେପାଳୀ କଂଗ୍ରେସ) ନେତାମାନଙ୍କୁ ନେପାଳରୁ ଭାରତକୁ ସାହସର ସହିତ ନେପାଳ ସରକାରଙ୍କ ଆଖିରେ ଧୂଳି ଦେଇ ଆଣିବା ହେଉଛି ବିଜୁ ପଟ୍ଟନାୟକଙ୍କ ସଫଳତା । ପରେ ପରେ ଇଣ୍ଡୋନେସିଆ ସ୍ୱାଧୀନତା ସଂଗ୍ରାମର ବିଦ୍ରୋହୀ ନେତାଙ୍କୁ ଯେପରି ସାହସିକତା ପ୍ରଦର୍ଶନ କରି ଜାକର୍ତ୍ତାରୁ ଉଡାଜାହାଜରେ ମୁକ୍ତ କରାଇ ନେଇ ଆସି ଦିଲ୍ଲୀରେ ପଣ୍ଡିତ ନେହେରୁଙ୍କ ଇଙ୍ଗିତ କ୍ରମେ ପହଞ୍ଚାଇଥିଲେ, ସେତେବେଳେ ସମଗ୍ର ପୃଥିବୀରେ ତାଙ୍କର ଦେଶପ୍ରେମ ଓ ସାହସିକତାର ଭୂରି ଭୂରି ପ୍ରଶଂସା କରାଯାଇଥିଲା । ତାଙ୍କୁ ଇଣ୍ଡୋନେସିଆର ସର୍ବଶ୍ରେଷ୍ଠ ରାଷ୍ଟ୍ରୀୟ ସମ୍ମାନ ଓ ପୁରସ୍କାର ପ୍ରଦାନ କରାଯାଇଥିଲା ଇଣ୍ଡୋନେସିଆ ମୁକ୍ତି ସଂଗ୍ରାମର ସଫଳତା ପରେ । ଭାରତ ଛାଡ ଆନ୍ଦୋଳନ ବେଳେ ବିଜୁବାବୁ ବହୁ ଅଣ୍ଡରଗ୍ରାଉଣ୍ଡ ନେତାଙ୍କୁ ବିଶେଷ କରି ଜୟ ପ୍ରକାଶ ନାରାୟଣ, ଅରୁଣା ଆସଫ ଅଲ୍ଲୀଙ୍କୁ ଭାରତର ବିଭିନ୍ନ ସ୍ଥାନକୁ ଗୋପନରେ ନବା ଆଣିବା କରୁଥିଲେ । ଶେଷରେ ଧରାପଡି ପ୍ରାୟ ଦୁଇ ବର୍ଷ ଜେଲବରଣ କରି ଭାରତର ସ୍ୱାଧୀନତା ପୂର୍ବରୁ ଜଣେ ବିଶିଷ୍ଟ ଯୁବ ନେତା ଓ ସ୍ୱାଧୀନତା ସଂଗ୍ରାମୀ ଭାବେ ନେହେରୁ ପରିବାରର ଅତି ନିକଟ ହୋଇପାରିଥିଲେ । ପରବର୍ତ୍ତୀ ସମୟରେ ସ୍ୱାଧୀନ ଭାରତର ନବ ନିର୍ମାଣ କାର୍ଯ୍ୟରେ ନେତୃତ୍ୱ ନେଇ ଓଡିଶାର ଦ୍ୱିତୀୟ ଥର ମୁଖ୍ୟମନ୍ତ୍ରୀ, ବିରୋଧୀ ଦଳର ନେତା, କେନ୍ଦ୍ରମନ୍ତ୍ରୀ ଭାବେ ଓ ରାଷ୍ଟ୍ରୀୟ ଜନ ନାୟକ ଭାବେ ଓଡିଶାର ସ୍ୱାଭିମାନ ବଜାୟ ରଖି ଆମ ରାଜ୍ୟକୁ ସର୍ବଭାରତୀୟ ସ୍ତରରେ ଏକ ସମୃଦ୍ଧ ରାଜ୍ୟରେ ପରିଣତ କରିବା ପାଇଁ ତାଙ୍କର ସାହସିକ ପଦକ୍ଷେପ, ନେତୃତ୍ୱ ତାଙ୍କୁ ଆଜି ସର୍ବଭାରତୀୟ ସ୍ତରରେ ଅମର କରି ରଖିଛି । ଆନ୍ତର୍ଜାତିକ ସ୍ତରରେ ବିଜ୍ଞାନକୁ ଲୋକାଭିମୁଖୀ କରିବା ଉଦ୍ଦେଶ୍ୟରେ ଏବଂ ଅତି କଠିନ ବୈଜ୍ଞାନିକ ବିଚାରକୁ ସାଧାରଣ ଲୋକଙ୍କୁ ବୋଧଗମ୍ୟ କରିବା ସକାଶେ ପୁସ୍ତକ ରଚନା କରୁଥିବା ବୈଜ୍ଞାନିକମାନଙ୍କୁ

ଆନ୍ତର୍ଜାତିକ ସମ୍ମାନ ଦେବା ପାଇଁ ଭାରତବର୍ଷରେ କଳିଙ୍ଗ ପୁରସ୍କାର ସୃଷ୍ଟି କରି ବିଜୁ ପଟ୍ଟନାୟକ ଓଡିଶାକୁ ଆନ୍ତର୍ଜାତୀକ ସ୍ତରରେ ପରିଚିତ କରାଇଥିବା ଏକମାତ୍ର ଓଡିଆ । ଏ ଜାତି ବଞ୍ଚିଥିବା ପର୍ଯ୍ୟନ୍ତ ବିଜୁ ପଟ୍ଟନାୟକଙ୍କ ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଥିବ । ମୋର ସୌଭାଗ୍ୟ ମୁଁ ଜଣେ ଛାତ୍ର ନେତା ଭାବେ ୧୯୩୮ ମସିହାଠାରୁ ତାଙ୍କ ସହିତ ଯେଉଁ ବ୍ୟକ୍ତିଗତ ଘନିଷ୍ଠତା ଆରମ୍ଭ ହୋଇଥିଲା, ତାହା ତାଙ୍କର ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ଅବ୍ୟାହତ ରହିଥିଲା । ରାଜନୀତିରେ ଆମ ଭିତରେ ମତଭେଦ ହୋଇଛି । ୧୯୬୧ ମସିହାଠାରୁ ଆମେ ଅଲଗା ରାଜନୈତିକ ଦଳ ଭିତରେ ବିଧାନସଭା ଭିତରେ ଓ ବାହାରେ ରାଜନୈତିକ ମତଭେଦ ପ୍ରକାଶ କରିଛୁ । କିନ୍ତୁ ତାହା ଆମର ବ୍ୟକ୍ତିଗତ ସଂପର୍କକୁ କେବେ ଆଘାତ ଦେଇ ନାହିଁ । ତାଙ୍କଠାରୁ ମୁଁ ବୟସରେ ୧୫ ମାସ ବଡ କିନ୍ତୁ କଲେଜରେ ସେ ମୋ ଠାରୁ ଏକ ବର୍ଷ ସିନିଅର । ସେ ୧୯୩୧ ମସିହାରେ ରେଭେନ୍ସା କଲେଜରେ ବିଜ୍ଞାନରେ ଆଇ.ଏସ.ସି. ପ୍ରଥମ ବର୍ଷରେ ଯୋଗ ଦେଲେ । ମୁଁ ୧୯୩୨ ମସିହାରେ ବିଜ୍ଞାନରେ ଆଇ.ଏସ.ସି ପ୍ରଥମ ବର୍ଷରେ ଯୋଗ ଦେଲି । ବିଜୁ ପଟ୍ଟନାୟକଙ୍କ ଜୀବନୀ ଲେଖିବାର ଅଭିପ୍ରାୟ ନଥିଲେ ସୁଦ୍ଧା ମୁଁ ଆଜି ୬୨ ବର୍ଷ ପୂର୍ବରୁ ସ୍ମୃତିରୁ ଖିଏ ଉଦ୍ଧାର କରି ଏଠାରେ ଲିପିବଦ୍ଧ କରିବାକୁ ଚାହେଁ ଯେ ଆମେ ଯେଉଁ ୧୫,୧୬ ଜଣ ଶିକ୍ଷିତ ଯୁବକ ଛାତ୍ର ଆନ୍ଦୋଳନରୁ ଏକତ୍ର କାର୍ଯ୍ୟ କରି ଏ ରାଜ୍ୟର ସାଧାରଣ ଜୀବନରେ ପ୍ରତ୍ୟକ୍ଷ ଯୋଗ ଦେଇଥିଲୁ ସେମାନଙ୍କ ମଧ୍ୟରୁ ୪ଜଣ ମୁଖ୍ୟମନ୍ତ୍ରୀ, କେନ୍ଦ୍ରମନ୍ତ୍ରୀ ଓ ରାଷ୍ଟ୍ରୀୟ ସ୍ତରରେ ପ୍ରତିଷ୍ଠିତ ହେବାର ଯୋଗ୍ୟତା ହାସଲ କରିଛନ୍ତି । ସେମାନଙ୍କ ମଧ୍ୟରେ ବିଜୁ ପଟ୍ଟନାୟକ, ନୀଳମଣି ରାଉତରା ଅନ୍ୟତମ । ବୀରେନ ମିତ୍ର ଉପମୁଖ୍ୟମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ଭାବରେ ଓଡିଶାରେ ଗରିବର ବନ୍ଧୁ ଭାବରେ ଶୀର୍ଷ ସ୍ଥାନକୁ ଯାଇଥିଲେ । ବହୁ ପରେ ପ୍ରତ୍ୟକ୍ଷ ରାଜନୀତିକୁ ଆସିଥିଲେ ଆଉ ଜଣେ ବନ୍ଧୁ ସେ ହେଉଛନ୍ତି ସ୍ୱର୍ଗତ ବିନାୟକ ଆଚାର୍ଯ୍ୟ । ଏଠାରେ ମୁଁ କହି ରଖିବାକୁ ଚାହେଁ ଯେ, ୧୯୬୧ ମସିହା ପରଠାରୁ ଓଡିଶା ରାଜନୀତିରେ ରାଜ୍ୟରେ ଶୀର୍ଷ ସ୍ଥାନକୁ ଯାଇଥିବା ପ୍ରାୟ ସମସ୍ତେ ଛାତ୍ରନେତା ଭାବେ ଜୀବନ ଆରମ୍ଭ କରିଛନ୍ତି । ଶ୍ରୀମତୀ ନନ୍ଦିନୀ ଶତପଥୀ ଓ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ସେମାନଙ୍କ ମଧ୍ୟରେ ଅନ୍ୟତମ । ଯେଉଁ କତିପୟ ଛାତ୍ର ବନ୍ଧୁ ଆମେ ଏକାଠି କାର୍ଯ୍ୟ କରିବାର ସୁଯୋଗ ପାଇଥିଲୁ ପ୍ରାୟ ସମସ୍ତେ ରାଜ୍ୟର ରାଜନୀତିଜ୍ଞ ଓ ସାହିତ୍ୟିକ ଓ ସାଂସ୍କୃତିକ କ୍ଷେତ୍ରରେ ନିଜ ନିଜ କ୍ଷେତ୍ରରେ ପ୍ରତିଷ୍ଠା ପ୍ରତିପାଦନ କରିଛନ୍ତି । ସେମାନଙ୍କ ବିଭିନ୍ନ କ୍ଷେତ୍ରରେ ରାଜ୍ୟ ପ୍ରତି ଅବଦାନ ମୁଁ କ୍ରମଶଃ ପ୍ରକାଶ କରିବାକୁ ସକ୍ଷମ ହେବି । ଆଜି କେବଳ ରାଜ୍ୟର ଛାତ୍ର ଆନ୍ଦୋଳନ ଓ ସେତେବେଳର ରାଜନୈତିକ କ୍ଷେତ୍ରରେ ସେଇ ଆନ୍ଦୋଳନର ପ୍ରାସଙ୍ଗିକତା ସଂପର୍କରେ ଅଳ୍ପ କିଛି କହିବା ପ୍ରାସଙ୍ଗିକ ହେବ ଭାବୁଛି ।

ମୁଁ ଆଗରୁ ସୂଚନା ଦେଇଛି ୧୯୩୭ ସାଧାରଣ ନିର୍ବାଚନେ ପରେ ବିଶ୍ୱନାଥ ଦାଶ ଯେଉଁ ପରିସ୍ଥିତିରେ ରାଜ୍ୟର ପ୍ରଧାନମନ୍ତ୍ରୀ ଦାୟିତ୍ୱ ନେଲେ ଏବଂ ପଣ୍ଡିତ ନୀଳକଣ୍ଠ ଓ ତାଙ୍କର ସହକର୍ମୀମାନଙ୍କ ମନରେ କିପରି ଦାରୁଣ ଧକ୍କା ଲାଗିଲା । ପଣ୍ଡିତ ନୀଳକଣ୍ଠ କେନ୍ଦ୍ର ଆସେମ୍ବ୍ଲି ସଭ୍ୟ ଥାଆନ୍ତି । ଡଃ ମହତାବ ବିଶ୍ୱନାଥ ଦାଶଙ୍କୁ ମୁଖ୍ୟମନ୍ତ୍ରୀ କରିବାରେ ଯେଉଁ ସଫଳତା ଲାଭ କଲେ ସେ ତାଙ୍କର ଭବିଷ୍ୟତ ସ୍ୱାର୍ଥ ଦୃଷ୍ଟିରୁ ଏବଂ ରାଜ୍ୟ ରାଜନୀତିକ କ୍ଷେତ୍ରରେ ପଣ୍ଡିତ ନୀଳକଣ୍ଠଙ୍କ ବ୍ୟକ୍ତିତ୍ୱ ଓ ସଂଗଠନ ଶକ୍ତି ସହିତ ସଂଘର୍ଷରେ ତାଙ୍କୁ ହଟାଇବା ସହଜସାଧ୍ୟ ହେବ ନାହିଁ ଏବଂ ପଣ୍ଡିତ ନୀଳକଣ୍ଠ କ୍ଷମତାରେ ରହିଲା ପରେ ମହତାବଙ୍କ ନେତୃତ୍ୱ ନେବାର ଆକାଂକ୍ଷା ସହଜରେ ଫଳପ୍ରଦ ହେବାରେ ବହୁ ରାଜନୈତିକ ପ୍ରତିବନ୍ଧକ ସୃଷ୍ଟି ହେବ । ଏହା ହିଁ ଥିଲା ଦୂରଦୃଷ୍ଟି, ସଂପୂର୍ଣ୍ଣ ହରେକୃଷ୍ଣ ମହତାବଙ୍କ ଯୋଜନା । ଏହା ଫଳରେ କିନ୍ତୁ କଂଗ୍ରେସ ଭିତରେ ଗଭୀର ମତଭେଦ ସୃଷ୍ଟି ହେଲା ଏବଂ ସେଇ ମତଭେଦ ପରବର୍ତ୍ତୀ ପ୍ରଦେଶ କଂଗ୍ରେସ କମିଟି ନିର୍ବାଚନରେ ପ୍ରତିଫଳିତ ହୋଇ ନୀଳକଣ୍ଠଙ୍କ ନେତୃତ୍ୱର ପରାଜୟ ଘଟିଲା ଓ ବିଶ୍ୱନାଥ ଦାଶ ହରେକୃଷ୍ଣ ମହତାବଙ୍କ ସହିତ ରହି ପଣ୍ଡିତ ନୀଳକଣ୍ଠଙ୍କୁ କଂଗ୍ରେସ ରାଜନୈତିକ ଦୃଶ୍ୟପଟରୁ ଦୂରେଇ ଦେଲେ । ସେ ରାଜ୍ୟ ଶାସନ ଦାୟିତ୍ୱ ଓ କଂଗ୍ରେସ ସଂଗଠନ ଦାୟିତ୍ୱ ଉଭୟରୁ ବଞ୍ଚିତ ହେଲେ । ଶ୍ରୀ ନବକୃଷ୍ଣ ଚୌଧୁରୀ, ଶ୍ରୀମତୀ ମାଳତୀ ଚୌଧୁରୀ, ନିତ୍ୟାନନ୍ଦ କାନୁନ୍‌ଗୋ, ଭାଗୀରଥୀ ମହାପାତ୍ର, ନନ୍ଦ କିଶୋର ଦାସ (ବାଚସ୍ପତି) ନେତୃବର୍ଗଙ୍କ ସହିତ ପ୍ରମୁଖ ନେତୃବର୍ଗ ଓ ଯୁବ ସଂପ୍ରଦାୟ ମହତାବଙ୍କ ସହିତ ରହିଲେ ।

ସେତେବେଳେ ପ୍ରଥମେ କଟକ ମେଡିକାଲ ସ୍କୁଲ ଓ ପରେ ରେଭେନ୍‌ସା ମହାବିଦ୍ୟାଳୟରେ କେତେକ ଛାତ୍ର ସମସ୍ୟା ନେଇ ଛାତ୍ର ଧର୍ମଘଟ ଆରମ୍ଭ ହୁଏ । ଡଃ ପ୍ରାଣକୃଷ୍ଣ ପରିଜା ସେତେବେଳେ ରେଭେନ୍‌ସା କଲେଜର ଅଧ୍ୟକ୍ଷ, ଡଃ ବଳଭଦ୍ର ପ୍ରସାଦ ପଶ୍ଚିମ ଛାତ୍ରାବାସର ୱାର୍ଡେନ । ଶ୍ରୀରାମଚନ୍ଦ୍ର ଦାଶ ପଶ୍ଚିମ ଛାତ୍ରାବାସରେ ରହି ଆଇନ ସହିତ ଅର୍ଥନୀତି ସ୍ନାତକ କ୍ଲାସ୍‌ର ଛାତ୍ର । ଶ୍ରୀ ପ୍ରଫୁଲ୍ଲ ପଟ୍ଟନାୟକ ଯେ କି ପରବର୍ତ୍ତୀ ସମୟରେ ଲୋକସଭା ସେକ୍ରେଟାରିଏଟରେ ଅତିରିକ୍ତ ସଚିବ ହୋଇ ବହୁ ପ୍ରତିଷ୍ଠା ଅର୍ଜନ କରି ଅବସର ନେବା ପରେ ବର୍ତ୍ତମାନ ଭୁବନେଶ୍ୱରରେ ଅବସ୍ଥାନ କରୁଛନ୍ତି ସେ ମଧ୍ୟ ପଶ୍ଚିମ ଛାତ୍ରାବାସର ଛାତ୍ର । ଶ୍ରୀରାମବାବୁ ଛାତ୍ର ଧର୍ମଘଟର ଦୃଢ଼ ବିରୋଧ କରୁଥିଲେ । କିଛି ଘଟଣା ନେଇ ଶ୍ରୀରାମବାବୁଙ୍କ ରୁମ୍‌ରେ ନିଆଁ ଲାଗିଗଲା ଓ ସେଇ ଘଟଣା ନେଇ ଅନୁସଂଧାନ ହେବାରୁ ତାଙ୍କୁ କେନ୍ଦ୍ର କରି ଶେଷରେ ଛାତ୍ର ଧର୍ମଘଟ ଓ ଉତ୍ତେଜନା ଏପରି ଆକାର ଧାରଣ କଲା ଯେ ଉତ୍ତେଜିତ ଛାତ୍ରମାନେ ନିଆଁହୁଳା ନେଇ ଏକ ଶୋଭାଯାତ୍ରାରେ ଅଧ୍ୟକ୍ଷ ଡଃ ପରିଜାଙ୍କ ସରକାରୀ

ବାସଭବନକୁ ପୋଡିଦେବା ପାଇଁ ଗଲେ । ପୁଲିସ୍‌ର ଶିକାର ହୋଇ ଅନେକ ମଧ୍ୟ ଗିରଫ ହେଲେ । ରେଭେନ୍‌ସା କଲେଜ ପୋର୍ଟିକୋ ଉପରେ ଉଡୁଥିବା ଇଉନିୟନ ଜ୍ୟାକ୍ (ବ୍ରିଟିଶ ସରକାରଙ୍କ ପତାକା) ମଧ୍ୟ ପୋଡି ଦିଆଗଲା । ସେଥିରେ ବିବୁଧେନ୍ଦ୍ର ମିଶ୍ର, ନୀଳମଣି ରାଉତରା, ମୁଁ ଓ ଅନ୍ୟମାନେ ପ୍ରମୁଖ ଭାଗ ନେଇଥିଲୁ । ଏହି ସବୁ ଘଟଣା ପରେ ଶ୍ରୀରାମ ଦାଶ ମଧ ପୁଲିସ୍ ସହାୟତାରେ ଛାତ୍ରାବାସରେ ଜୀବନ ସଂକଟାପନ୍ନ ଆଶଙ୍କା କରି ଛାତ୍ରାବାସ ଛାଡି ଚାଲିଗଲେ । ଆସ୍ତେ ଆସ୍ତେ ସମଗ୍ର ରାଜ୍ୟରେ ଛାତ୍ର ଆନ୍ଦୋଳନ ବ୍ୟାପକ ହେବାକୁ ଲାଗିଲା । ସଚ୍ଚି ରାଉତରାଙ୍କ ନେତୃତ୍ୱରେ 'ଅଗ୍ନି' ବୋଲି ଏକ ପୃଷ୍ଠିଆ ସମ୍ବାଦ ପ୍ରଚାରପତ୍ର ଦୈନିକ ପ୍ରକାଶ ପାଇଲା ଓ ସେଥିରେ ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାଶ ଶରବ୍ୟ ହେଲେ । ସେ ପ୍ରଚାରପତ୍ରଟି ବିଶ୍ୱନାଥ ଦାଶଙ୍କ ବାଙ୍କାବଜାର ସରକାରୀ ବାସଭବନ ଓ ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ନିଜ ବାଖରାବାଦ ବାସଭବନର ଗେଟ୍ ଭିତରେ ପକାଇଦେବା ଓ କଟକ ସହରରେ ରାତ୍ରିରେ ସବୁଆଡେ ବିକ୍ରୟ କରିବା ବା ବାଣ୍ଟିବାର ଦାୟିତ୍ୱ ମଧ୍ୟ ନିର୍ଦ୍ଦିଷ୍ଟ ଛାତ୍ର ଗୋଷ୍ଠୀଙ୍କ ଦାୟିତ୍ୱରେ ଥାଏ । ପ୍ରବୀଣ ଆଡଭୋକେଟ୍ ମଧୁସୂଦନ ମହାନ୍ତିଙ୍କ ଘର (ପୁରୁଣା କଲେଜ ରୋଡ୍ ସ୍ଥିତ ବାସଭବନ) ଆମ ପରି କେତେକ ପ୍ରମୁଖ ଛାତ୍ରନେତାଙ୍କ ଆଶ୍ରୟସ୍ଥଳୀ ହୋଇଥାଏ । ସଚ୍ଚି ରାଉତରା, ବିବୁଧେନ୍ଦ୍ର ମିଶ୍ର, ସୂରଜ ମଲ ଶାହା, ରାମହରି ରଥ ପ୍ରମୁଖ ଅନେକ ଆମ ସହିତ ସେଠାରେ ରହିବା ପାଇଁ ମଧୁବାବୁ ଗୋଟିଏ ରୁମ୍ ସ୍ୱତନ୍ତ୍ର ଭାବେ ଛାଡି ଦେଇଥାଆନ୍ତି । ସମାଜ କାଗଜ ସେତେବେଳେ ସେଇ ପୁରୁଣା କଲେଜ ଲେନ୍‌ରେ ଛପା ହେଉଥାଏ । ପଣ୍ଡିତ ଲିଙ୍ଗରାଜ ମିଶ୍ର ଓ ରାଧାନାଥ ବାବୁ, ସମାଜ କାଗଜର ସଂପାଦକ ଓ ମ୍ୟାନେଜର ଭାବେ ଦାୟିତ୍ୱ ତୁଲାଉଥାଆନ୍ତି । ବିଶ୍ୱନାଥ ବାବୁ ସମାଜ ଓ ଲୋକ ସେବକ ମଣ୍ଡଳ ସହିତ ଓତଃପ୍ରୋତ ଭାବେ ଜଡିତ ଥିବା ହେତୁ ସମାଜ କାଗଜ ବିଶ୍ୱନାଥ ଦାଶ ମନ୍ତ୍ରିମଣ୍ଡଳର ଦୃଢ ସମର୍ଥନ କରୁଥାଏ ଏବଂ ଆମ ଆନ୍ଦୋଳନର ସମାଲୋଚନା କରୁଥାଏ । ତା ସତ୍ତ୍ୱେ ଆନ୍ଦୋଳନ ତୀବ୍ର ଆକାର ଧାରଣ କରି ସମଗ୍ର ରାଜ୍ୟରେ ଏକ ଅସାଧାରଣ ପରିସ୍ଥିତି ସୃଷ୍ଟି କଲା । ରାଜ୍ୟ ବାହାରୁ ମିଲିଟାରୀ ପୋଲିସ ଆସି ଆମ ଶୋଭାଯାତ୍ରା ଉପରେ ଅମାନୁଷିକ ଆକ୍ରମଣ କରିବା ଫଳରେ ଶହ ଶହ ଛାତ୍ର ଆହତ ହେଲେ । ଅନେକ ଛାତ୍ରନେତା କଟକ ମେଡିକାଲ ସ୍କୁଲ୍ ହସ୍‌ପିଟାଲରେ ପଡିଲେ । ସେତେବେଳକୁ ମେଡିକାଲ ସ୍କୁଲ ଛାତ୍ର ଧର୍ମଘଟ ଅତି ଉତ୍କଟ ରୂପ ଧାରଣ କରିଥାଏ । ନୃସିଂହ ସାମନ୍ତସିଂହାର, ମୋତିଲାଲ ତ୍ରିପାଠୀ, ମହମ୍ମଦ ଓ ଅନ୍ୟାନ୍ୟ ଅନେକ ତାର ନେତୃତ୍ୱ ନେଉଥାଆନ୍ତି । ପୁରୀ ଜିଲ୍ଲାର ଛାତ୍ରମାନେ ପ୍ରମୁଖ ଅଂଶଗ୍ରହଣ କରୁଥିଲେ । ମେଡିକାଲ ଧର୍ମଘଟ ପୂର୍ବରୁ ରେଭେନ୍‌ସା କଲେଜ ଧର୍ମଘଟ, ଡଃ ପରିଜାଙ୍କ

ସରକାରୀ ବାସଗୃହ ଉପରେ ଆକ୍ରମଣ, ଶ୍ରୀରାମ ଦାଶଙ୍କ ରୁମ୍‌ରେ ନିଆଁ ଲଗାଇବା ଘଟଣା ଓ ବିଶେଷ କରି ଇଉନିଅନ ଜାକ୍ ପୋଡା ଘଟଣା ନେଇ ବିବୁଧେନ୍ଦ୍ର ମିଶ୍ର ଓ ସୂରଜ ମଲ ସାହାଙ୍କୁ ପାଟଣା ବିଶ୍ୱବିଦ୍ୟାଳୟ ପରୀକ୍ଷା ଦେବାରୁ ବଞ୍ଚିତ କରି, ବିଶ୍ୱବିଦ୍ୟାଳୟରୁ ଏକ୍ସପେଲ୍ କରିଦେଇଥାଆନ୍ତି । ଏହି ଘଟଣାକୁ ନେଇ ଛାତ୍ର ଆନ୍ଦୋଳନ ଆହୁରି ତୀବ୍ର ଆକାର ଧାରଣ କରି ରାଜ୍ୟ ସରକାରଙ୍କର ମୁଣ୍ଡବ୍ୟଥାର କାରଣ ହୋଇଥାଏ । ଏହା ହେଉଛି ନିଖିଳ ଉତ୍କଳ ଛାତ୍ର ସଂଘ ନେତୃତ୍ୱରେ ରାଜ୍ୟରେ ପ୍ରଥମ ଐତିହାସିକ ଛାତ୍ର ଆନ୍ଦୋଳନ । ଏହି ଆନ୍ଦୋଳନରେ ପ୍ରମୁଖ ଭାଗ ନେଉଥିବା ମନମୋହନ ମିଶ୍ର, ଫକୀର ମିଶ୍ର, ରାମହରି ରଥ, ବିବୁଧେନ୍ଦ୍ର ମିଶ୍ର, ରାମଚନ୍ଦ୍ର ମିଶ୍ର, ଦୁର୍ଗା ଚରଣ ମହାନ୍ତିଙ୍କ ସହିତ ଥିଲେ ବିଶ୍ୱନାଥ ପଶାୟତ । ଶ୍ରୀ ନୀଳମଣି ରାଉତରା ଓ ବିଶ୍ୱନାଥ ପଶାୟତ ଛାତ୍ର ସଂଘର ଜଏଣ୍ଟ ସେକ୍ରେଟାରୀ । ଆନ୍ଦୋଳନରେ ପୁଲିସ୍ ଆମ୍ଭମାନଙ୍କୁ ବହୁତ ସ୍ଥାନରେ ଖୋଜୁଥାଏ । କିନ୍ତୁ ଶେଷରେ ଆମେ ଜାନକୀନାଥ ସ୍ୱରାଜ ଭବନରେ ବିଭିନ୍ନ ଦିଗରୁ ଦୌଡାଦୌଡି ହୋଇ ପୁଲିସ୍ ଆଖିରେ ଧୂଳି ଦେଇ ଆଶ୍ରୟ ନେବାରେ ସଫଳ ହେଲୁ । ମଙ୍ଗଳାବାଗ ଛକସ୍ଥିତ ପୋଲିସ ଥାନା ଆଗରେ ମେଡିକାଲ ସ୍କୁଲ୍‌ଠାରୁ ଏକ ବିରାଟ ଛାତ୍ର ଶୋଭାଯାତ୍ରା ଆସୁଥିବାବେଳେ ଅଶୋକ ଭାଇନା ଓ ସଚି ରାଉତରାଙ୍କୁ ପୁଲିସ୍ ଗିରଫ କରିବା ସମ୍ବାଦ ମୁଁ ପାଇଲା ପରେ ମହମ୍ମଦ ମତେ ମୁଣ୍ଡରେ ତାଙ୍କ ଲୁଙ୍ଗିକୁ ଘୋଡାଇ ଦେଇ କେବଳ ଅଣ୍ଡରଓ୍ୱାରଟିଏ ପିନ୍ଧି ପୁଲିସ୍ ପାର୍ଟିକୁ ଅତିକ୍ରମ କରି ଶେଷରେ ହରିହର ଭାଇନାଙ୍କ ଘରେ ପହଞ୍ଚାଇ ଦେଇଥିଲେ । ସେଠାରେ ପ୍ରୋଟେକସନ୍ ମିଳିବାର ଆଶଙ୍କା ଥିବାରୁ ସେଠାରେ ନ ରହି ମତେ ଜାନକୀ ନାଥ ସ୍ୱରାଜ ଭବନକୁ ନିଆଯାଇଥିଲା । ମଧ୍ୟରାତ୍ରିରେ ବିଜୁଳି ଆଲୁଅ ନଥାଏ । ସାଧା ପୋଷାକ ପୁଲିସ୍ ଜଗିଥାଆନ୍ତି । ପ୍ରଫେସର ବର୍ଦ୍ଧନଙ୍କ ଘର ପାଖେ ଆମେ ପହଞ୍ଚି ସେଠାରୁ କୌଶଳ କ୍ରମେ ଜାନକୀ ନାଥ ସ୍ୱରାଜ ଭବନ ଗେଟ୍ ଭିତରେ ପଶିଗଲା ପରେ ଭିତରେ ଥିବା ଆହତ ଛାତ୍ରମାନେ ଗେଟ୍ ତାଲା ପକାଇଦେଲେ । ମୁଁ ସେଠାରେ ପହଞ୍ଚିଲା ବେଳକୁ ନୀଳମଣି ରାଉତରା ଓ ମନମୋହନ ମିଶ୍ର ପ୍ରଭୃତି ମଧ୍ୟ ପହଞ୍ଚି ମତେ ନୀଳମଣିଙ୍କୁ ଭର୍ତ୍ତି କରାଇ ଦେଇ ବାହାରରୁ ତାଲା ପକାଇ ଦେଲେ । ପରେ ନେତାଜୀ ସେବାସଦନ ଆମ ପାଇଁ ନିରାପଦ ହେବ ନାହିଁ ବୋଲି ଖବର ପାଇବା ପରେ ଗୋଟିଏ ବନ୍ଦ ଘୋଡା ଗାଡିରେ ଓଡିଆ ବଜାରର ଏକ ମୁସଲିମ୍‌ପଡାର ଗୋଟିଏ ଛୋଟିଆ ଘରେ ତା ପରଦିନ ରାତ୍ର ୧୧ଟା ବେଳେ ଆମକୁ ବଂଧୁମାନେ ନେଇଗଲେ । ରାତ୍ର ପ୍ରାୟ ୧୨ଟା ପରେ ଡକ୍ଟର ହରେକୃଷ୍ଣ ମହତାବ କେଉଁଠାରୁ ଖବର ପାଇ ଆମ ସହିତ ସାକ୍ଷାତ କଲେ । ସେତେବେଳକୁ ସୁବାଷ ଚନ୍ଦ୍ର ବୋଷ କଂଗ୍ରେସର ସଭାପତି ଭାବରେ ଡଃ ହରେକୃଷ୍ଣ

ମହତାବ୍‌ଙ୍କୁ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟ ମନୋନୀତ କରିଥାଆନ୍ତି । ଡଃ ମହତାବ ମତେ ଓ ନୀଳମଣି ବାବୁଙ୍କୁ ପୁଲିସ୍ ପାଖେ ଆତ୍ମସମର୍ପଣ କରି ଆନ୍ଦୋଳନକୁ ପ୍ରତ୍ୟାହାର କରିବା ପାଇଁ ପ୍ରବର୍ତ୍ତାଇଲେ ଓ ସେ ନିଜେ ଦାୟିତ୍ୱ ନେଇ ଛାତ୍ରମାନଙ୍କ ଦାବି ସଂପର୍କୀୟ ସମସ୍ତ ସମସ୍ୟା ଓ ବିବୁଧେନ୍ଦ୍ର ମିଶ୍ର ଓ ସୂରଜ ମଲଙ୍କ ଏକ୍ସପଲ୍ସନ ବିଷୟ ସବୁ ବିଚାର କରି ଏକ ସମ୍ମାନଜନକ ସମାଧାନ କରାଇ ଦେବେ ବୋଲି ନିର୍ଭର ପ୍ରତିଶ୍ରୁତି ଦେଲେ । ବହୁ ସମୟ ଆଲୋଚନା ପରେ ପରିସ୍ଥିତିକୁ ଅଧିକ ଗୁରୁତର ନହେବା ପାଇଁ ଆମେ ରାଜି ହେଲୁ କାରଣ ଅନେକ ଛାତ୍ର ନେତା ପୁଲିସ୍‌ର ନିର୍ମମ ଆଚରଣ ଓ ନିର୍ମମ ଲାଠି ଚାର୍ଜ ଫଳରେ ଆଘାତ ପ୍ରାପ୍ତ ହୋଇଥାଆନ୍ତି । ଅଶୋକ ଭାଇନା ଓ ସଚ୍ଚି ରାଉତରା ଆଗରୁ ଗିରଫ ହୋଇ କଟକ ଜେଲ୍‌କୁ ଯାଇଥାଆନ୍ତି । ପଣ୍ଡିତ ନୀଳକଣ୍ଠଙ୍କ ବିଶ୍ୱନାଥ ଦାଶ ମନ୍ତ୍ରିମଣ୍ଡଳ ବିରୁଦ୍ଧରେ ଛାତ୍ର ଆନ୍ଦୋଳନକୁ ସମର୍ଥନ ଦେଉଥିବାର ଆଶଙ୍କା କରି ଏପରି ଏକ ଗୁରୁତର ଆଇନ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି ହୋଇଥିବା ଓ ତା'ର ଆଶୁ ସମାଧାନ ନହେଲେ ରାଜ୍ୟରେ ଏକ ଗୁରୁତର ସମସ୍ୟା ଉପୁଜିପାରେ ବୋଲି ମହତାବ ବାବୁଙ୍କର ଏପରି ବ୍ୟାକୁଳତା ବୋଲି ମୋର ଧାରଣା ଥିଲେ ମଧ୍ୟ ଏ ପରିସ୍ଥିତିକୁ ଆଉ ଆୟତ୍ତ ଆମେ କରିପାରିବୁ ନାହିଁ ବୋଲି ଆମ ଦୁହିଁଙ୍କ ମନରେ ଆଶଙ୍କା ଥିବାରୁ ଆମେ ମହତାବ ବାବୁଙ୍କ ପ୍ରସ୍ତାବରେ ସମ୍ମତି ଦେଇ, ପରଦିନ ଡକ୍ଟର ରଜନୀକାନ୍ତ ଘୋଷଙ୍କ ଗୌରୀ ଶଙ୍କର ପାର୍କ ସାମ୍ନା ନର୍ସିଂ ହୋମକୁ ଯାଇ, କଟକ ସହର ପୁଲିସ୍ ଇନିସ୍‌ପେକ୍ଟର ଗଙ୍ଗାଧର ଦ୍ୱିବେଦୀଙ୍କୁ ଖବର ଦେଇ ଆମ ନାମରେ ଗିରଫ ୱାରେଣ୍ଟ ବଳରେ ଗିରଫ କରିବା ପାଇଁ ଜଣାଇ ଦିଆଗଲା । ନିକଟସ୍ଥ ପାର୍କ ହୋଟେଲ୍‌ରୁ ସେଇ ଦିନ ଅପରାହ୍ନ ୫ଟା ବେଳେ ପ୍ରେସ୍ ସମ୍ମିଳନୀ ଡାକି ଆମେ ପ୍ରେସ୍‌କୁ ଆନ୍ଦୋଳନ ସ୍ଥଗିତ ହେଲା ବୋଲି ସାମ୍ବାଦିକମାନଙ୍କୁ ଜଣାଇ ଗିରଫ ହେଲୁ । ଆମ ସହିତ ବ୍ରହ୍ମପୁର ସହରର ବିଶିଷ୍ଟ ବରିଷ୍ଠ କମ୍ୟୁନିଷ୍ଟ ନେତା ବିଜୟ ଦାସ ଉପସ୍ଥିତ ଥିବାରୁ ତାଙ୍କୁ ମଧ ଗିରଫ କରାଗଲା । ସନ୍ଧ୍ୟାବେଳକୁ ଦେଖାଗଲା ଯେ କଟକର ବିଭିନ୍ନ ସ୍ଥାନରୁ ପ୍ରାୟ ଅଧିକାଂଶ ଛାତ୍ର ନେତାମାନଙ୍କୁ ଗିରଫ କରାଯାଇ ଲାଲବାଗ ଥାନାକୁ ଅଣାଯାଇଛି । ଲାଲବାଗ୍ ଥାନା ହାଜତରେ ରାତ୍ର କଟାଇବାକୁ ପଡିଲା । ଅର୍ଦ୍ଧରାତ୍ରରେ ନୀଳମଣି ରାଉତରା ବାଥରୁମ୍ ଯିବାକୁ କହିବାରେ ସେଠାରେ ଥିବା ଜଣେ ଖ୍ରୀଷ୍ଟିଆନ ପୋଲିସ୍ ଏସ.ଇ. ନୀଳମଣି ବାବୁଙ୍କ ଦୁଇ ହାତ ଓ ଦୁଇ ଗୋଡରେ ଲୁହା ବଳା ପିନ୍ଧାଇ ବାଥ୍‌ରୁମ୍‌କୁ ଯିବାକୁ ନିର୍ଦ୍ଦେଶ ଦେବାରେ ତିନିଟି କନ୍‌ଷ୍ଟେବଲ ତାଙ୍କ ହାତ ଓ ଗୋଡରେ ଲୁହା ବଳା ଓ ଚେନ୍ ଦେବାରୁ ଆମେ ସମସ୍ତେ ପ୍ରତିବାଦ କରି ସେ ବାଥ୍‌ରୁମ୍ ଯିବାକୁ ମନା କରି ତାଙ୍କୁ ଦେଇଥିବା ବଳା ସବୁକୁ ଖୋଲି ଦେବାକୁ ଦାବି କରିବାରେ କନଷ୍ଟେବଲ

ଖୋଲିଦେଲା । ସେଇ ହାଜତ ଭିତରେ ପରିସ୍ରା କରି ରାତ୍ର ଯାପନ କଲା ପରେ ତା ପରଦିନ ଆମେ ୧୬ ଜଣ ଗିରଫ ହୋଇଥିବା ଛାତ୍ରନେତାମାନଙ୍କୁ ତତ୍‌କାଳୀନ ସବ୍‌ଡିଭିଜନାଲ୍ ଅଫିସର ସ୍ୱର୍ଗତ ଜଗତ ବନ୍ଧୁ ମହାପାତ୍ରଙ୍କ କୋର୍ଟରେ ହାଜର କରାଗଲା । ସେଠାରେ ଆମେ ତାଙ୍କ ଆଗରେ ରାତ୍ର ଘଟଣା, ବେଡି ଲଗାଇ କିପରି ଦାଗୀ ଆସାମୀ ଭାବରେ ବ୍ୟବହାର କରାଯାଇଥିଲା ସବୁ ବର୍ଣ୍ଣନା କଲା ପରେ ସେ ଆମକୁ ଜାମିନ୍‌ରେ ଯିବା ପାଇଁ ନିର୍ଦ୍ଦେଶ ଦେଲେ । କିନ୍ତୁ ଆମେ ଜାମିନ୍‌ରେ ଯିବା ପାଇଁ ସମ୍ମତ ନୋହୁଁ ବୋଲି କହିବାରେ ସମସ୍ତଙ୍କୁ କଟକ ଜେଲ୍‌କୁ ପଠାଇ ଦିଆଗଲା । କିନ୍ତୁ ଜଗତବନ୍ଧୁ ବାବୁ ଆମ ଅଭିଯୋଗ ଉପରେ ସେଇଦିନ ଅନୁସଂଧାନ କରିବାରୁ ସେଇ ପୁଲିସ୍ ଅଫିସରକୁ ଲାଲବାଗ୍ ଥାନାରୁ ଅପସାରିତ କରାଯାଇଥିଲା । ସେଇ ନୀଳମଣି ବାବୁ ପରବର୍ତ୍ତୀ ସମୟରେ ପ୍ରାୟ ପନ୍ଦର ବର୍ଷରୁ ଉର୍ଦ୍ଧ୍ୱ ପୁଲିସ୍ ବିଭାଗର ମନ୍ତ୍ରୀ ଭାବେ ପୁଲିସ୍ ଫୋର୍ସକୁ ଦିଗ୍‌ଦର୍ଶନ ଦେଲେ ଓ ଶେଷରେ ରାଜ୍ୟର ଉଭୟ ଉପ-ମୁଖ୍ୟମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ମଧ୍ୟ ତୁଲାଇଲେ ।

ଛାତ୍ର ଆନ୍ଦୋଳନର ପରିସମାପ୍ତି ଘଟିବା ପରେ ମୁଁ ଆଇନ ବ୍ୟବସାୟକୁ ଯିବା ପୂର୍ବରୁ ଆଉ ଗୋଟିଏ ଘଟଣା ଉଲ୍ଲେଖ କରିବା ପ୍ରାସଙ୍ଗିକ ମନେ କରୁଛି । ମୁଁ ଆଇନ ପାଠ୍ୟକ୍ରମର ଦ୍ୱିତୀୟ ପର୍ଯ୍ୟାୟରେ ଅଧ୍ୟୟନ କରୁଥାଏ । ରେଭେନ୍‌ସା ମହାବିଦ୍ୟାଳୟର ଚାଉଳିଆଗଞ୍ଜ ଡାକ ଘର ନିକଟସ୍ଥ ଏକ ଦକ୍ଷିଣ ଭାରତୀୟ ହୋଟେଲ୍ ପାଖରେ ମୁଁ, ଅଶୋକ ଭାଇନା ଓ ରାଜ୍ୟର ଜଣେ ଆଦର୍ଶ ଚିକିତ୍ସକ ଓ ସମ୍ମାନନୀୟ ସାଧୁପୁରୁଷ ଡାକ୍ତର ଶରତ ମିଶ୍ରଙ୍କ ସାନ ଭାଇ ଶ୍ରୀ ଉପେନ୍ଦ୍ର ମିଶ୍ର ଏକାଠି ଗୋଟିଏ ଗୁଜରାଟୀ ବ୍ୟବସାୟୀଙ୍କ ବସା ଘରେ ରହୁଥାଉ । ସେଇ ସମୟରେ ରେଭେନ୍‌ସା ମହାବିଦ୍ୟାଳୟରେ ପ୍ରଥମ ଥର ପାଇଁ ଛାତ୍ର ସଂସଦ ଗଠନ କରାଯାଉଥାଏ ଛାତ୍ରମାନଙ୍କ ଦାବି ଫଳରେ । ପରିଜା ସାହେବ ସେତେବେଳେ ରେଭେନ୍‌ସା କଲେଜ ଅଧ୍ୟକ୍ଷ । ଆମେ ତାଙ୍କୁ ଗୁରୁକୁଳ ଆଶ୍ରମର ସନ୍ନ୍ୟାସୀଙ୍କ ପରି ସମ୍ମାନ କରୁ, କାରଣ ସେ କେବଳ ରାଜ୍ୟର ନୁହେଁ ଭାରତର ଜଣେ ବିଶିଷ୍ଟ ବୈଜ୍ଞାନିକ, ଆଦର୍ଶ ଗୁରୁ ଏବଂ ମଣିଷ ପରି ମଣିଷ । ସମଗ୍ର ରାଜ୍ୟରେ ଶିକ୍ଷିତ ସମାଜରେ ତାଙ୍କ ପ୍ରତି ପ୍ରଗାଢ ସମ୍ମାନ । ତାଙ୍କ ବ୍ୟକ୍ତିତ୍ୱ ପ୍ରତି ସମସ୍ତଙ୍କର ସମ୍ମାନ । ଅନ୍ୟାୟଟିଏ ବୋଲି ଉପଲବ୍ଧି କଲେ ମଧ୍ୟ ପରିଜା ସାହେବଙ୍କ ସାମ୍‌ନାରେ କେହି ସେହି ଅନ୍ୟାୟର ପ୍ରତିରୋଧ କରିବାର ସାହସ କରୁନଥିଲେ । ଛାତ୍ର ଇଉନିୟନ ପ୍ରତିଷ୍ଠା ପରେ ଇଉନିୟନ ଛାତ୍ରଛାତ୍ରୀମାନଙ୍କର ଏକମାତ୍ର ମୁଖପାତ୍ର ଭାବେ କାର୍ଯ୍ୟ କରିବ ବୋଲି ଆମ ଛାତ୍ର ସଂଘ ନେତାମାନଙ୍କର ବିଶ୍ୱାସ ଥିଲା ।

ସେହି ବିଶ୍ୱାସକୁ ଆଧାର କରି ଆମେ ଛାତ୍ର ସଂଘ ତରଫରୁ ସଂପାଦକ ପାଇଁ କବି ଶ୍ରୀ ମନମୋହନ ମିଶ୍ରଙ୍କୁ ପ୍ରାର୍ଥୀ ଦେଲୁ । ପଶ୍ଚିମ ଛାତ୍ରାବାସର ସଂପାଦକ ଭାବେ ମତେ ପ୍ରାର୍ଥୀ କରାଯାଇଥିଲା କିନ୍ତୁ ପରିଜା ସାହେବ ଶ୍ରୀରାମ ଦାଶଙ୍କୁ ସମର୍ଥନ କରୁଥାଆନ୍ତି । ଶ୍ରୀ ପ୍ରଫୁଲ୍ଲ ପଟ୍ଟନାୟକ ମଧ୍ୟ ଶ୍ରୀରାମ ବାବୁଙ୍କ ସମର୍ଥକ । ସେ ପଶ୍ଚିମ ଛାତ୍ରାବାସରେ ରହୁଥାଆନ୍ତି । ମନମୋହନ ବାବୁଙ୍କ ସହପାଠୀ ଥାଆ ସପକ୍ଷରେ, ବିପୁଳ ସମର୍ଥନ ଛାତ୍ର ଛାତ୍ରୀମାନଙ୍କର । ମନମୋହନ ଜଣେ ପ୍ରଚଣ୍ଡ ଅଗ୍ନିସ୍ଫୁଲିଙ୍ଗ ବକ୍ତା ଭାବରେ, କବିତା ରଚନା କରିପାରି ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରିବାରେ ବିଖ୍ୟାତ । ପରବର୍ତ୍ତୀ ସମୟରେ ସେ ରାଜ୍ୟରେ ଜଣେ ବିପ୍ଳବୀ କବି ଭାବରେ ପ୍ରତିଷ୍ଠିତ ହେଲେ । ସାଧାରଣ ଜୀବନରେ କଟକ ମ୍ୟୁନିସିପାଲିଟିର ଚେୟାରମ୍ୟାନ ମଧ୍ୟ ରହିଥିଲେ । କିନ୍ତୁ ସାମ୍ୟବାଦୀ ରାଜନୀତିରେ ବିଶ୍ୱାସ ରଖି ସେ ଜଣେ ନକ୍ସଲପନ୍ଥୀ ଭାବରେ ନାନା ଆନ୍ଦୋଳନ ସହିତ ସଂପୃକ୍ତ ହୋଇ ଶେଷରେ ପୁରୀ ଲୋକସଭା ମଣ୍ଡଳୀରୁ ସ୍ୱାଧୀନ ପ୍ରାର୍ଥୀ ଭାବରେ ଛିଡା ହୋଇ ଏକାକୀ କେବଳ କବିତା ଗାଇ ବକ୍ତୃତା ଦେଇ ବହୁ ଜନ ସମର୍ଥନ ପାଉଥିଲେ । କିନ୍ତୁ କୌଣସି ରାଜନୈତିକ ସଂଗଠନ ବା ଦଳରେ ବେଶୀ ଦିନ ରହିବା ତାଙ୍କ ସପକ୍ଷରେ ସମ୍ଭବପର ହୋଇପାରୁନଥିଲା । ତାଙ୍କର ଉଗ୍ରପନ୍ଥୀ ମନୋଭାବ, ନିଜସ୍ୱ ମତରେ ଅଟଳ ରହି ଅନ୍ୟମାନଙ୍କୁ ବା ଦଳୀୟ ଶୃଙ୍ଖଳା ଭିତରେ ନିଜକୁ ଆବଦ୍ଧ ରଖିବା ବା ଆତଙ୍କଷ୍ଟ କରିବାର ପ୍ରକୃତି ମଧ୍ୟ ନଥିଲା । ସେ ଯାହା ହେଉ ମୋର ସେତେବେଳେ ଛାତ୍ରସଂଘ ତରଫରୁ ପ୍ରଥମ ନିର୍ବାଚନ ଓଡିଶାର ଶ୍ରେଷ୍ଠ ମହାବିଦ୍ୟାଳୟ ପରିସର ଭିତରେ । ନିର୍ବାଚନ ପୂର୍ବ ରାତ୍ରି, ଯାହା ମୋର ମନେ ପଡୁଛି, ଏକ ବିରାଟ ମଶାଲ ଶୋଭାଯାତ୍ରା କଲେଜ ଚାରିପଟେ ନାନା ସ୍ଲୋଗାନ ଦେଇ ଯାଉଥିବାବେଳେ କିଛି ଛାତ୍ର ଅଧ୍ୟକ୍ଷ ପରିଜା ସାହେବଙ୍କ ବଙ୍ଗଳା ଭିତରେ ହଠାତ୍ ପ୍ରବେଶ କଲେ । ଶହ ଶହ ଛାତ୍ର, ହାତରେ ମଶାଲ ପୁଣି ରାତ୍ର । ପରିଜା ସାହେବ ଯେତେ ବୁଝାଇଲେ ମଧ୍ୟ ଛାତ୍ରମାନେ ବୁଝିଲେ ନାହିଁ । ତାଙ୍କ ବଙ୍ଗଳାରେ ନିଆଁ ଲଗାଇ ଦେବା ଆଶଙ୍କା କରି ପୁଲିସ୍‌କୁ ଟେଲିଫୋନ କରିବାରେ ସଶସ୍ତ୍ର ବାହିନୀ ଆସି ଲାଠି ପ୍ରହାର କରି ଛାତ୍ରମାନଙ୍କୁ ଛିନଛତ୍ର କରିଦେଲେ ଏବଂ ଅନେକ ଛାତ୍ରଙ୍କୁ ଗିରଫ କରିଦେଲେ । ତା ପରଦିନ ସକାଳେ ଏହି ଗିରଫଦାରୀର ପ୍ରତିବାଦରେ ରେଭେନ୍‌ସା କଲେଜ ମୁଖ୍ୟ ଫାଟକ ପାଖରୁ ଏକ ବିରାଟ ଶୋଭାଯାତ୍ରା ହାଇକୋର୍ଟ ଆଡକୁ ଯାଉଥିବାବେଳେ ପୁନର୍ବାର ନିର୍ମମ ଲାଠି ମାଡ ଚାଲିଲା ରାଣୀହାଟ ଛକ ପାଖେ । ୬ ଫୁଟ୍ ଉଚ୍ଚ ସଶସ୍ତ୍ର ପୁଲିସ୍ ବାହିନୀ ଏପରି ନିର୍ମମ ଭାବେ ଲାଠି ଚାର୍ଜ କଲେ ଯେ ଫଳରେ ଶହ ଶହ ଛାତ୍ର ଖଣ୍ଡିଆ ଖାବରା ହୋଇ ଇତସ୍ତତ ଦୌଡିଲେ । ସେ ଲାଠିଚାର୍ଜ ଯେ ଦେଖିଛି ବର୍ତ୍ତମାନ ସ୍ମରଣ କଲେ ରୁମ ଟାଙ୍କୁରି ଉଠିବ ।

ସେତେବେଳେ ଥିଲେ ଓଡ଼ିଶାର ପ୍ରଧାନମନ୍ତ୍ରୀ ସ୍ୱର୍ଗତଃ ବିଶ୍ୱନାଥ ଦାଶ ଓ ମନ୍ତ୍ରିମଣ୍ଡଳରେ ପ୍ରଧାନମନ୍ତ୍ରୀଙ୍କୁ ମିଶାଇ ତିନିଜଣ ସଭ୍ୟ । ଶ୍ରୀ ବୋଧରାମ ଦୁବେ ଶିକ୍ଷାମନ୍ତ୍ରୀ ଓ ଶ୍ରୀ ନିତ୍ୟାନନ୍ଦ କାନୁନଗୋ ଉନ୍ନୟନ ବିଭାଗ ଦାୟିତ୍ୱ ତୁଲାଉ ଥାଆନ୍ତି ଡେଭଲପମେଣ୍ଟ ବିଭାଗ ମନ୍ତ୍ରୀ ଭାବେ । ବୋଧରାମ ବାବୁଙ୍କର ବିଶେଷ ଅକ୍ତିଆର ନଥାଏ । ସେ ଜଣେ ଅତି ଭଦ୍ର ଲୋକ, ପଶ୍ଚିମାଞ୍ଚଳର ପ୍ରତିନିଧି ଓ ବିଶିଷ୍ଟ ଆଇନଜୀବୀ । ବିଶ୍ୱନାଥ ଦାଶ ରହିଥାଆନ୍ତି ସମସ୍ତଙ୍କ ଆଖିରେ ସବୁଠାରୁ ଶକ୍ତିଶାଳୀ ରାଜନୀତିଜ୍ଞ । ତାଙ୍କର ପ୍ରଶାସନିକ ସଂସ୍ଥା ଉପରେ ବିଶେଷ ପ୍ରଭାବ ଥାଏ ଓ ଜ୍ଞାନୀ ଲୋକ । ସେ ଧରି ନେଇଥାଆନ୍ତି ଓଡ଼ିଶାର ଛାତ୍ର ଆନ୍ଦୋଳନ ଏକ ରାଜନୀତିକ ଆନ୍ଦୋଳନ ଓ ଏହାର କେନ୍ଦ୍ର ବିନ୍ଦୁ ପଣ୍ଡିତ ନୀଳକଣ୍ଠ । ସେଥିପାଇଁ ନିଷ୍ଠୁର ଭାବେ ଛାତ୍ର ସମାଜ ବିରୁଦ୍ଧରେ ପୁଲିସ୍‌କୁ ଲଗାଇ ଥାଆନ୍ତି ଓ ସମସ୍ତ ଶକ୍ତି ପ୍ରୟୋଗ କରି ଛାତ୍ର ନେତାମାନଙ୍କୁ ଦମନ କରିବାର ସମସ୍ତ ଉପାୟ କରି ଚାଲିଥାଆନ୍ତି । ଆମର ସେତେବେଳେ କବି ସଚ୍ଚି ରାଉତରାଙ୍କ ସଂପାଦକତ୍ୱରେ ଏକ ଦୈନିକ ପତ୍ର ପ୍ରକାଶ କରି ରାଜ୍ୟବ୍ୟାପି ଛାତ୍ର ଆନ୍ଦୋଳନ, ଧର୍ମଘଟ, ଶୋଭାଯାତ୍ରା ଓ କଲେଜ ସ୍କୁଲ ସମସ୍ତ ବନ୍ଦ କରିବା ପାଇଁ ବ୍ୟାପକ କାର୍ଯ୍ୟକ୍ରମ ହାତକୁ ନିଆଗଲା । ଆମେ ସବୁ ପୁଲିସ୍‌କୁ ଗିରଫ କରିବାର ସୁଯୋଗ ଦେଲୁ ନାହିଁ, ଆମକୁ ଧରାଇ ଦେବା ପୁଲିସ୍ ଅଫିସରଙ୍କୁ ଗିରଫ ପରେ ପୁରସ୍କୃତ କରାଯାଇ ପ୍ରମୋଶନ ଦିଆଯିବ ବୋଲି ସରକାରୀ ଘୋଷଣା ପ୍ରକାଶ ପାଇଲା । କଟକର ଏସ.ପି. ଜଣେ ବ୍ରିଟିଶ ସାହେବ ଓ ମୁଖ୍ୟ ସଚିବ ମଧ୍ୟ ବ୍ରିଟିଶ ସାହେବ ମିଷ୍ଟର ଡାଇନ୍ । ତାଙ୍କ ମତରେ ଆମ ନେତୃତ୍ୱରେ ସଂଗଠିତ ଛାତ୍ର ଆନ୍ଦୋଳନ ବ୍ରିଟିଶ ସରକାରଙ୍କୁ ହଟାଇବା ଉଦ୍ଦେଶ୍ୟରେ ପ୍ରଣୋଦିତ । ସେଥିପାଇଁ ମୁଖ୍ୟମନ୍ତ୍ରୀ, ମୁଖ୍ୟ ଶାସନ ସଚିବ, କଟକ ପୁଲିସ୍ ଅଧ୍ୟକ୍ଷ ଏବଂ କଟକର କମିଶନର ସମସ୍ତେ ନିଜ ନିଜ ମତରେ ଅଟଳ ରହି ଛାତ୍ର ନେତାଙ୍କ ସହିତ ଆଲୋଚନା କରିବାକୁ ମଧ୍ୟ ପ୍ରସ୍ତୁତ ଥାଆନ୍ତି । ଏପରି ଅବସ୍ଥାରେ ଛାତ୍ରମାନଙ୍କୁ ସଂଗଠିତ କରି ଆନ୍ଦୋଳନକୁ ଅଧିକ ବ୍ୟାପକ ଓ ଶକ୍ତିଶାଳୀ କରିବା ଥିଲା ଆମ ପାଇଁ ଏକ ବିରାଟ ଆହ୍ୱାନ । ସକାଳ ହେଲେ ଛାତ୍ରମାନେ ଗ୍ରୁପ୍‌ରେ ଯାଇ ଚାନ୍ଦା ଆଣିବେ । ସନ୍ଧ୍ୟାବେଳକୁ 'ଅଗ୍ନି' ପ୍ରଚାରପତ୍ର ଛପା ହୋଇ ବଣ୍ଟାଯିବ ଓ ସଭା, ଶୋଭାଯାତ୍ରାମାନ ବାହାରିବ । ଏ ସବୁ ପାଇଁ ଅର୍ଥ ଲୋଡା ଯାହାକି ଆମ ପାଇଁ ବଡ ପ୍ରତିବନ୍ଧକ । ମେଡିକାଲ ସ୍କୁଲ ଛାତ୍ରମାନେ ଆମ ସହିତ ଧର୍ମଘଟରେ ସହଯୋଗ କଲା ପରେ, ଆମ ଆନ୍ଦୋଳନ ପୁନର୍ବାର ବ୍ୟାପକ ହେଲା । ସରକାରୀ କଳକୁ ଆମେ ପ୍ରାୟ ଅଚଳ ଅବସ୍ଥାକୁ ନେଇ ଆଣିଲୁ । ମୁଁ, ନୀଳମଣି ରାଉତରା, ବିବୁଧେନ୍ଦ୍ର ମିଶ୍ର, ଅଶୋକ ଦାସ ସମେତ ଡାକ୍ତର ମୋତିଲାଲ ତ୍ରିପାଠୀ, ସ୍ୱର୍ଗତ ସାଂସଦ ଡଃ ନୃସିଂହ ଚରଣ ସାମନ୍ତସିଂହାର ଓ

ରାମକୃଷ୍ଣ ପତି ପ୍ରମୁଖ, ଆନ୍ଦୋଳନର ଅଗ୍ରଭାଗରେ ଥାଉ । ଦୁଇ ଜଣ ତତ୍‌କାଳୀନ ଡାକ୍ତରୀ ଛାତ୍ରଙ୍କୁ ଛାଡିଦେଲେ ଆମକୁ ଆଶ୍ରୟ ଦେଉଥିଲେ ଏକମାତ୍ର ବ୍ୟକ୍ତି ବିଶିଷ୍ଟ ଆଇନଜୀବୀ ଓ ଯୁବ ନେତା ଓ ସମାଜସେବୀ ମଧୁସୂଦନ ମହାନ୍ତି । ତାଙ୍କର ସହାୟତା ଓ ଆଶ୍ରୟଦାନ ଖାଦ୍ୟ ଓ ଶକ୍ତି ମତେ ଆର୍ଥିକ ସହାୟତା ଆମ୍ଭମାନଙ୍କୁ ଏହି ଆନ୍ଦୋଳନରେ ସଫଳତା ହାସଲ କରିବାରେ ଅନେକ ସହାୟକ ହୋଇଥିଲା । ଏହା ହେଉଛି ଓଡିଶାର ପ୍ରଥମ ଐତିହାସିକ ସଂଗଠିତ ଛାତ୍ର ଆନ୍ଦୋଳନ - ଏକ ଶକ୍ତିଶାଳୀ ସରକାର ବିରୁଦ୍ଧରେ । ଛାତ୍ରସଂଘର ସଫଳତା ଉପରେ ପରବର୍ତ୍ତୀ ଅବସ୍ଥାରେ ରାଜ୍ୟର କମ୍ୟୁନିଷ୍ଟ ପାର୍ଟିରେ ଅନେକ ଛାତ୍ରସଂଘ ନେତାମାନେ ଯୋଗ ଦେଲେ । ବର୍ତ୍ତମାନ ରାଜ୍ୟ କମ୍ୟୁନିଷ୍ଟ ପାର୍ଟିର ପ୍ରାୟ ସମସ୍ତ ପ୍ରମୁଖ ଛାତ୍ର ନେତା, କମ୍ୟୁନିଷ୍ଟ ଆନ୍ଦୋଳନର ପ୍ରମୁଖ ଭାବରେ ଅଛନ୍ତି । ଅଳ୍ପ ଆମେ କେଇ ଜଣ ନୀଳମଣି ବାବୁ, ମୁଁ, ବିବୁଧେନ୍ଦ୍ର ମିଶ୍ର, ସୂରଜ ମଲ ଶାହା, ବୀରେନ ମିତ୍ର ପ୍ରଭୃତି କଂଗ୍ରେସରେ ଯୋଗ ଦେଇ, ପରବର୍ତ୍ତୀ ରାଜନୈତିକ ଜୀବନରେ ପ୍ରମୁଖ ଅଂଶ ଗ୍ରହଣ କରିଥିଲୁ । ବିଭିନ୍ନ ଦଳରେ ଥିଲେ ମଧ୍ୟ ଆମ ଭିତରେ ଛାତ୍ର ସଂଘ ଆନୁକୂଲ୍ୟରେ ଓଡିଶାର ଐତିହାସିକ ଛାତ୍ର ଆନ୍ଦୋଳନ ୧୯୩୮ ଠାରୁ ୧୯୪୦ ଦୁଇ ବର୍ଷ ଆମ ରାଜ୍ୟର ରାଜନୀତିକ କ୍ଷେତ୍ରରେ ଯୁବ ନେତୃତ୍ୱ ସୃଷ୍ଟି କରିବାରେ ସହାୟକ ହୋଇଥିଲା । ୬୦ ବର୍ଷରୁ ଉର୍ଦ୍ଧ୍ୱ ଏହି ଐତିହାସିକ ଛାତ୍ର ଆନ୍ଦୋଳନ ଓଡିଶାର ରାଜନୀତିକ ଇତିହାସରେ ଏକ ମାଇଲଖୁଣ୍ଟ । ଏହା ପ୍ରକୃତ ଆମ ରାଜ୍ୟରେ ଏକ ନୂତନ ଇତିହାସ ସୃଷ୍ଟି କରି ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ୧୯୬୧ ମସିହାରେ ପ୍ରବୀଣ କଂଗ୍ରେସ ନେତା ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ ଓ ପଣ୍ଡିତ ନୀଳକଣ୍ଠ ପ୍ରଭୃତିଙ୍କ ନେତୃତ୍ୱକୁ ବଦଳାଇ ରାଜ୍ୟରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କରି ଓଡିଶା ରାଜନୀତିକୁ ଏକ ନୂତନ ଦିଗଦର୍ଶନ ଦେଇଥିଲା । ମୁଁ ଯାହା ଆଗରୁ ସୂଚନା ଦେଇଛି ଆମ ଭିତରୁ ଚାରି ଜଣ ମୁଖ୍ୟମନ୍ତ୍ରୀ ହେଲେ । ଆମେ ସମସ୍ତେ ଦୀର୍ଘ କାଳ ମନ୍ତ୍ରୀ ଭାବରେ ଦାୟିତ୍ୱ ନେଇ ରାଜ୍ୟ ବିକାଶରେ ପ୍ରମୁଖ ଅଂଶ ଗ୍ରହଣ କଲୁ । ଏହି ଛାତ୍ରନେତାଙ୍କ ଭିତରୁ ଅନେକ ବିଧାନସଭା, ମ୍ୟୁନିସିପାଲିଟି, ପଞ୍ଚାୟତ ସମିତି, ଜିଲ୍ଲା ପରିଷଦ ଓ ବିଭିନ୍ନ ରାଜନୈତିକ ସଂସ୍ଥାମାନଙ୍କରେ ଦାୟିତ୍ୱ ନେଇ ରାଜ୍ୟର ସାମାଜିକ, ସାଂସ୍କୃତିକ ଓ ଏପରିକି ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଅନେକ ପ୍ରତିଷ୍ଠା ଅର୍ଜନ କରିଛନ୍ତି । ମୂଳତଃ କହିବାକୁ ଗଲେ ଏହି ଛାତ୍ର ଆନ୍ଦୋଳନର ନେତୃତ୍ୱରେ ଥିବା କେତେକ ବନ୍ଧୁ କେନ୍ଦ୍ରୀୟ ରାଜନୀତିରେ ଓଡିଶାରୁ ପ୍ରତିନିଧିତ୍ୱ କରିବାରେ ସକ୍ଷମ ହୋଇଛନ୍ତି । ଆଇନଜୀବୀ, ସାଂସଦ, ରାଜ୍ୟସଭା ସଦସ୍ୟ, ବିଶ୍ୱବିଦ୍ୟାଳୟ ପ୍ରଭୃତିର ସଂଚାଳକ ଭାବରେ ଗୁରୁ ଦାୟିତ୍ୱ ତୁଲାଇଛନ୍ତି । ପରବର୍ତ୍ତୀ ସମୟର ସ୍ମୃତିଚାରଣ ବେଳେ ଏହି ସ୍ରୋତର ଓ ପରିବର୍ତ୍ତନର

ଅଧିକ ସୂଚନା ମିଳିବ ବୋଲି ମୋର ବିଶ୍ୱାସ । ଏବର ଛାତ୍ର ଆନ୍ଦୋଳନ ନିର୍ଦ୍ଦିଷ୍ଟ ବ୍ୟକ୍ତିବିଶେଷଙ୍କ ସ୍ୱାର୍ଥ ପାଇଁ ଉଦ୍ଦିଷ୍ଟ । ନିର୍ଦ୍ଦିଷ୍ଟ ବ୍ୟକ୍ତି ନିଜ ସ୍ୱାର୍ଥ ସାଧନ ପାଇଁ, ପ୍ରବଳ ଅର୍ଥ, ଗୁଣ୍ଡାମୀ, ଅସ୍ତ୍ର ବ୍ୟବହାର, ଯୁକ୍ତିହୀନ ସଂଘର୍ଷ ଅଯଥା ସମୟ ଅପଚୟ କରି ଜାତୀୟ ଜୀବନର ନୈତିକ ଦିଗକୁ ନଷ୍ଟଭ୍ରଷ୍ଟ କରୁଛନ୍ତି । ଆଦର୍ଶ ନାହିଁ, ମୂଲ୍ୟବୋଧ ନାହିଁ ବା କୌଣସି ନିର୍ଦ୍ଦିଷ୍ଟ ଆଦର୍ଶ ହାସଲ କରିବା ପାଇଁ ଉତ୍ସର୍ଗୀକୃତ ଉଦ୍ୟମ ନାହିଁ, କେବଳ ଆର୍ଥିକ ପେଟ୍ରୋନେଜ୍‌ରେ କେବଳ ବ୍ୟକ୍ତିଗତ ସ୍ୱାର୍ଥ ପାଇଁ ଶକ୍ତି ଅପଚୟ ହୋଇଥିବା ଦୃଷ୍ଟିରୁ ତା'ର କୌଣସି ଗୁରୁତ୍ୱ ସମାଜରେ ବା ରାଜନୀତି କ୍ଷେତ୍ରରେ ଉପଲବ୍ଧ ହୋଇ ପାରୁନାହିଁ । ଶିକ୍ଷା, ଶିଷ୍ଟାଚାର, ନମ୍ରତା, ନୈତିକତା ଓ ମୂଲ୍ୟବୋଧ ଆଜି ଛାତ୍ରମାନଙ୍କୁ ଉଦ୍‌ବୁଦ୍ଧ କରିପାରୁନାହିଁ । ସାଧାରଣ ଜନମତ ଏମାନଙ୍କୁ କୌଣସି ଗୁରୁତ୍ୱ ଦେବାପାଇଁ ପ୍ରସ୍ତୁତ ନୁହେଁ । କିନ୍ତୁ ସେମାନେ ବ୍ୟକ୍ତିକୈନ୍ଦ୍ରିକ ରାଜନୈତିକ ଅସ୍ତ୍ର ଭାବେ ନିଜ ନିଜର ଭବିଷ୍ୟତକୁ କ୍ଷତିଗ୍ରସ୍ତ କରୁଛନ୍ତି । ଏହା ହିଁ ବର୍ତ୍ତମାନ ଛାତ୍ର ସମାଜକୁ ଏକ ଲକ୍ଷ୍ୟଭ୍ରଷ୍ଟ ଅସାମାଜିକ ଗୋଷ୍ଠୀ ଭାବେ ପରିଚିତ କରାଇ ଦେଇଛି । କେବଳ ବ୍ୟକ୍ତିଗତ ସ୍ୱାର୍ଥ ପାଇଁ ଅର୍ଥ ବ୍ୟୟ କରି ସଂଘର୍ଷ କରିବା ଏକମାତ୍ର ଲକ୍ଷ୍ୟ । ଏପରି କହି, କେହି କେହି ରାଜନୈତିକ ନେତା ତାଙ୍କ କ୍ଷମତା ଲାଳସା ମେଣ୍ଟାଉଛନ୍ତି । ଏହା ଫଳରେ ରାଜନୀତିରେ ଅପରାଧିକରଣର ଏକ ବାତାବରଣ ସୃଷ୍ଟି ହେଲାଣି । ଆଜି ରାଜନୀତି କ୍ଷେତ୍ରରେ ଅପରାଧୀମାନଙ୍କୁ ଯେପରି ପ୍ରଶୟ ଦିଆଯାଉଛି ବିହାର ଓ ଉତ୍ତରପ୍ରଦେଶ ନିର୍ବାଚନରେ ତାହା ସ୍ପଷ୍ଟ ହୋଇଛି । ଜାତୀୟ ଖବରକାଗଜମାନଙ୍କରେ ପ୍ରକାଶ ପାଉଥିବା ତଥ୍ୟ ଅନୁସାରେ ବହୁ ରାଜ୍ୟରେ ବିଧାନସଭା ପାଇଁ ପ୍ରାର୍ଥୀମାନଙ୍କ ମଧ୍ୟରେ ୧୫/୨୦ଟି ଗୁରୁତର ଅପରାଧରେ ଦଣ୍ଡିତ ହୋଇଥିବା ଏବଂ ସେହିପରି ଗୁରୁତର ଅପରାଧରେ ଗିରଫ ହୋଇ ଜେଲ ହାଜତରେ ରହିଥିବା ଲୋକମାନେ ମଧ୍ୟ ନିର୍ବାଚନ ଲଢୁଛନ୍ତି । ଏପରି ବିହାରରେ ପ୍ରାର୍ଥୀ ହୋଇଥିବା ଅନେକ ପ୍ରାର୍ଥୀ ସେମାନଙ୍କ ନିର୍ବାଚନ ପ୍ରଚାରରେ ତାଙ୍କ ସିକ୍ୟୁରିଟି ପାଇଁ ୮/୧୦ଜଣ ବନ୍ଧୁକଧାରୀ ଅପରାଧୀମାନଙ୍କୁ ଧରି ପ୍ରଚାର କରୁଛନ୍ତି । ଏପରିକି ସୁଦୂର ଗ୍ରାମରେ ବସବାସ କରୁଥିବା ଗ୍ରାମବାସୀମାନେ ସେମାନଙ୍କ ଭୟରେ ସେମାନଙ୍କ ଭୋଟ ଅଧିକାର ସାବ୍ୟସ୍ତ କରିବାପାଇଁ ନିର୍ବାଚନ କେନ୍ଦ୍ରକୁ ଆସିବାକୁ ଡରୁଛନ୍ତି । ଚଳିତ ବିଧାନସଭା ନିର୍ବାଚନରେ ୩ ପର୍ଯ୍ୟାୟରେ ହେଉଥିବା ଭୋଟରେ ହିଂସାକାଣ୍ଡ ଘଟି ୨୧ଜଣଙ୍କ ମୃତ୍ୟୁ ଘଟିଥିଲା ଓ ୫୦ରୁ ଊର୍ଦ୍ଧ୍ୱ ଲୋକ ବିଭିନ୍ନ ଚିକିତ୍ସାଳୟରେ ଚିକିତ୍ସା ପାଇଁ ଭର୍ତ୍ତି ହୋଇଥିଲେ । ଯେଉଁମାନେ ମୃତ୍ୟୁବରଣ କଲେ ସେମାନେ ନିରୀହ ଲୋକ ଓ କୌଣସି ଦଳର କର୍ମୀ ନୁହଁନ୍ତି । କ୍ରମଶଃ ଏହିପରି ସଂଘର୍ଷ ଅନ୍ୟ ପ୍ରାନ୍ତକୁ ବ୍ୟାପିଲାଣି । ସାରା ଦେଶରେ ଏ ବ୍ୟାଧିର ନିରାକରଣ ନହେଲେ ଜାତୀୟ ରାଜନୈତିକ

ବ୍ୟବସ୍ଥାରେ ଅପରାଧୀମାନେ ମାରଣାସ୍ତ୍ର ସାହାଯ୍ୟରେ ନିର୍ବାଚନ ନିୟନ୍ତ୍ରଣ କରିବେ ଏବଂ ବ୍ୟବସ୍ଥାସଭାମାନ ଏହିପରି ଗୁରୁତର ଅପରାଧୀମାନଙ୍କ ନିୟନ୍ତ୍ରଣକୁ ଆସିବ । ଛାତ୍ରସମାଜ ଏଥିପ୍ରତି ସଚେତନ ରହି ଏପରି ରାଜନୈତିକ ଅପରାଧିକରଣ ବ୍ୟବସ୍ଥାର ଦୃଢ଼ ପ୍ରତିବାଦ କରିବା ଆବଶ୍ୟକ । ରାଜନୈତିକ ନେତାମାନଙ୍କ ବ୍ୟକ୍ତିଗତ ସ୍ୱାର୍ଥରୁ ନିଜକୁ ମୁକ୍ତ କରି ଆମ ସମୟରେ ଛାତ୍ର ନେତାମାନେ ରାଜନୀତିରେ ଓତୋପ୍ରୋତ ଭାବେ ଜଡ଼ିତ ଥିଲେ ମଧ୍ୟ ଏପରି କୁତ୍ସିତ ପରମ୍ପରାର ଶିକାର ହୋଇନଥିଲେ ଏବଂ ରାଜନୈତିକ ଅପରାଧୀକରଣ ବ୍ୟବସ୍ଥାର ବିରୋଧ କରିବା ସହିତ ଏକ ନୈତିକ ବାତାବରଣ ଅବ୍ୟାହତ ରଖିବାକୁ ଉଦ୍ୟମ କରି ଆସିଥଛନ୍ତି । ଘୋର ବିରୋଧ ସତ୍ତ୍ୱେ ବନ୍ଧୁକ ହତିଆର ବ୍ୟବହାର ଦୂରର କଥା କୌଣସି ବ୍ୟକ୍ତିଗତ ତିକ୍ତତା ସୃଷ୍ଟି କରିବାର ଉଦ୍ୟମକୁ ପ୍ରୋତ୍ସାହନ ଦେଉନଥିଲେ ।

୧୯୪୦ ମସିହାରେ ମୋର ଆଇନ ପଢ଼ା ସମାପ୍ତ ହେଲା । ମୁଁ ସେତେବେଳେ ଦ୍ୱିତୀୟ ଥର ପାଇଁ କଟକ ଜେଲ୍‌ରୁ ମୁକ୍ତି ପାଇଥାଏ । ଆମ ନାମରେ କେତେଗୁଡ଼ିଏ ମିଥ୍ୟା ଅଭିଯୋଗରେ କଟକ କୋର୍ଟମାନଙ୍କରେ ଫୌଜଦାରୀ ମକଦ୍ଦମା ପ୍ରଶାସନ ତରଫରୁ ହୋଇଥାଏ । ଆମ ପାଖେ ପଇସା ନଥାଏ । ପୁଣି ମୁଁ ମୋ ଶଶୁର ଚୌଧୁରୀ ରାଧାଶ୍ୟାମ ଦାଶଙ୍କ ଆର୍ଥିକ ସହାୟତାରେ ପଢୁଥାଏ । ମୋର ଗିରଫ ନେଇ ଉଭୟ ଶଶୁର ଚୌଧୁରୀ ରାଧାଶ୍ୟାମ ଦାଶ ଓ ତାଙ୍କ ସାନଭାଇ ଚୌଧୁରୀ ଗଙ୍ଗାଧର ଦାଶ ବିରକ୍ତ ହେବାରୁ ମୁଁ ସେମାନଙ୍କଠାରୁ ଆର୍ଥିକ ସହାୟତା ଗ୍ରହଣ କରିବାକୁ ମନା କରିଦେଇ ବହୁତ ଆର୍ଥିକ ଦୁରବସ୍ଥାରେ ସମୟ କଟାଉଥାଏ । ଦିନରେ ଥରେ କୌଣସି ମତେ ମୋର ଘନିଷ୍ଠ ବନ୍ଧୁ ବିରେନ ମିତ୍ରଙ୍କ ଘରେ ଲୁଚି କରି ଖାଇ ଦେଉ ଆମେ ତିନିଜଣ, (ମୁଁ, ବିବୁଧେନ୍ଦ୍ର ମିଶ୍ର ଓ ବଳରାମ ମହାନ୍ତି) । ରାତିରେ ୩ ଖଣ୍ଡ ରୁଟି ଓ ପିଆଜ ଗୋଟିଏ ଲେଖାଏ କଟକ ଗୌରୀ ଶଙ୍କର ପାର୍କ ଦେ'ଙ୍କ ହୋଟେଲରୁ ଦୁଇ ଅଣାରେ ମିଳିଯାଏ । ଆମେ ୩ଜଣ ଭିଙ୍ଗାରପୁର ଚୌଧୁରୀଙ୍କ କାଠଗଡା ସାହି କୋଠାରେ ତାକୁଇ ଖାଇଦେଇ ରାତ୍ର କଟାଉ । ସେ ଦୁଇ ଅଣାଟି ସେଇ କୋଠାର ଜଗୁଆଳୀ ଆମକୁ ଦିଏ ଧାର ସୂତ୍ରେ । ଲୁଗା ଓ ସାର୍ଟ ଖଣ୍ଡିଏ ଛଡା ଅନ୍ୟ କିଛି ପରିଧାନ ପାଇଁ ନଥାଏ । ସେ ଦୁଇ ତିନି ଦିନରେ ମଇଳା ହୋଇଗଲେ ଆମେ ଗାଧୁଆ ଘରେ କବାଟ କିଳି ଲୁଗା ସାର୍ଟକୁ ସନଲାଇଟ୍ ସାବୁନରେ ସଫା କରି ଖରାରେ ଶୁଖାଇଦେଇ ଶୁଖିଗଲେ ପୁନର୍ବାର ପିନ୍ଧୁ । ରେଭେନ୍‌ସା କଲେଜଠାରୁ ଚାଉଳିଆଗଂଜ ଚାଲି କରି ଯିବା ଓ କୋର୍ଟରେ ମୁଦାଲା ହୋଇ ନିଜ ନିଜର ଓକିଲ ନେଇ ଲଢ଼ିବା ସମ୍ଭବପର ହୁଏ ନାହିଁ । ଏଥିପାଇଁ ସ୍ଥିର କଲୁ କଟକର ପ୍ରବୀଣ ଆଇନଜୀବୀ ଓ ପରବର୍ତ୍ତୀ ଓଡିଶା ହାଇକୋର୍ଟ ବିଚାରପତି ଶ୍ରୀ ରାଜ କିଶୋର ଦାସଙ୍କ

ପାଖରେ ଆଶ୍ରୟ ନେବୁ । ଆମେ ଛାତ୍ରନେତାମାନେ ରାଜ କିଶୋର ବାବୁଙ୍କ ସହିତ ଆଲୋଚନା କଲା ପରେ ସେ ବିନା ଖର୍ଚ୍ଚରେ ସମସ୍ତ ଦାୟିତ୍ୱ ନେଇ ଆମ୍ଭମାନଙ୍କ ପାଇଁ କୋର୍ଟରେ ଲଢିବେ ବୋଲି ପ୍ରତିଶ୍ରୁତି ଦେବାରେ ଆମେ ସବୁ ଆଶ୍ୱସ୍ତ ହେଲୁ । ତାଙ୍କର ସହଯୋଗ, ସ୍ନେହ, ଆଶୀର୍ବାଦ ଏ ଜୀବନରେ ଭୁଲିବାର ନୁହେଁ । ରାଜୁବାବୁଙ୍କ ଚାମ୍ବରକୁ ଆମର ସବୁ ସଂଧ୍ୟାରେ ଆସିବା କଥା । ଆମ୍ଭମାନଙ୍କ ବିରୁଦ୍ଧରେ ଡକ୍ଟର ପରିଜାଙ୍କ ଘରେ ଅଗ୍ନିକାଣ୍ଡ ଘଟାଇବା ଓ ଘର ଆକ୍ରମଣ କରି ତାଙ୍କ ପରିବାର ଲୋକଙ୍କ ଜୀବନ ସଂକଟାପନ୍ନ କରିବା ପ୍ରଭୃତି ବହୁ ଗୁରୁତର ଅଭିଯୋଗକୁ ନେଇ ବିଚାର କରାଯାଉଥାଏ । ଡକ୍ଟର ପରିଜାଙ୍କୁ ରାଜୁବାବୁ ପ୍ରାୟ ତିନି ଦିନ ଡକରେ ଠିଆ କରାଇ ଜେରା କରାଇଲେ । ଖରାଦିନ, ପ୍ରଚଣ୍ଡ ଖରା । ପରିଜା ସାହେବ ଜେରାବେଳେ ମୁଣ୍ଡ ଉପରେ ଓଦା ତଉଲିଆ ଦେଇ ରାଜୁବାବୁଙ୍କ ପ୍ରଶ୍ନର ଉତ୍ତର ଦେଉଥାଆନ୍ତି । ସେଇ ସମୟରେ ରାଜୁ ବାବୁଙ୍କ ଆଇନ ଶାସ୍ତ୍ରରେ ପାରଦର୍ଶୀତା ଓ କୋର୍ଟରେ ଜବାବ ସୁଆଲ କରିବାର ଶୈଳୀ ସଂପର୍କରେ ତାଙ୍କର ପ୍ରତିଭାର ପରିଚୟ ଆମେ ପାଇଥିଲୁ । ସେ ମଧ୍ୟ ତାଙ୍କ ଆତ୍ମଜୀବନୀରେ ଏ ସଂପର୍କରେ କେତେକ ଉପାଦେୟ ବିବରଣୀ ଦେଇ ଆମମାନଙ୍କ ସହିତ ତାଙ୍କର ସ୍ନେହପୂର୍ଣ୍ଣ ସଂପର୍କ ଓ ସେ କିପରି ଆମ୍ଭମାନଙ୍କ ତରଫରୁ ତାଙ୍କର ଦକ୍ଷତା ପ୍ରମାଣିତ କରିଥିଲେ ସେ ସଂପର୍କରେ ବିଶେଷ ଭାବେ ଉଲ୍ଲେଖ କରିଛନ୍ତି । ଶ୍ରୀମତି ଅନ୍ନପୂର୍ଣ୍ଣା ଶତପଥୀ ନାମକ ଜଣୈକା ଷ୍ଟେନୋ ଟାଇପିଷ୍ଟ, ରାଜୁବାବୁଙ୍କ ଚାମ୍ବରରେ କାମ କରୁଥାଆନ୍ତି । ତାଙ୍କର ଆମ ସହିତ ଛାତ୍ର ଆନ୍ଦୋଳନରେ ସଂପୃକ୍ତ ଥିବା ବଂଧୁ ଶ୍ରୀ ଗିରୀଜା ଶଙ୍କର ବହିଦାରଙ୍କ ସହିତ ବିବାହ ସଂପନ୍ନ ହେଲା କଟକ ସହରରେ । ଆମ୍ଭେମାନେ ଏହି ବାହାଘରର ସମସ୍ତ ବ୍ୟବସ୍ଥା କରିଥିଲୁ । ବିଶେଷ କରି ସୂରଜ ମଲ୍ଲ ସାହା ଓ ବିବୁଧେନ୍ଦ୍ର ମିଶ୍ର ଉଭୟ ଗିରୀଜା ବାବୁଙ୍କର ସହପାଠୀ ଥିବାରୁ ଏ ବିବାହ ଉତ୍ସବ ସହିତ ବିଶେଷ ସଂଯୋଜକ ଭାବେ କାର୍ଯ୍ୟ କରୁଥିଲେ । ମଙ୍ଗଳକୃତ୍ୟ କାର୍ଯ୍ୟଟି କଟକର ବରିଷ୍ଠ ଆଡଭୋକେଟ୍ ହରିହର ମହାପାତ୍ରଙ୍କ (ମୋ ଭାଇନା) ବାସ ଭବନରେ ତାଙ୍କ ସହଧର୍ମିଣୀ ହରିପ୍ରିୟା ଦେବୀଙ୍କ ସହଯୋଗରେ ସଂପାଦିତ ହୋଇଥିଲା । କାରଣ କେତେକ ସାମାଜିକ କାରଣ ଦୃଷ୍ଟେ ଏ ବିବାହ ପ୍ରତି ଅର୍ଣ୍ଣପୂର୍ଣ୍ଣାଙ୍କ ପରିବାର ଓ ଗିରିଜା ବାବୁଙ୍କ ପରିବାରଙ୍କ ସମ୍ମତି ନଥିଲା ଜାତିଆଣ ବିଭେଦ ନେଇ । ଅର୍ଣ୍ଣପୂର୍ଣ୍ଣା ଥିଲେ ବ୍ରାହ୍ମଣ ଘର ଝିଅ ଓ ଗିରିଜା ବହିଦାର ଥିଲେ ଖଣ୍ଡାୟତ । ଜଣେ ବ୍ରାହ୍ମଣ ଝିଅ ତାଙ୍କ ଘରେ ବୋହୂ ହୋଇ ତାଙ୍କର ଶଶୁର ଓ ଶାଶୁଙ୍କର ଚରଣ ସେବା କରିବ ଏହା ଖଣ୍ଡାୟତ ପରିବାରରେ ସେତେବେଳେ ସମ୍ଭବପର ହୋଇପାରୁନଥିଲା । ଏବେ ଏହିସବୁ, ତତ୍‌କାଳୀନ ସଂସ୍କାର, ଦୂର ହେବା ଉପରେ । ଶିକ୍ଷାର ବିସ୍ତାର ଓ ସମୃଦ୍ଧ ରାଷ୍ଟ୍ରମାନଙ୍କ ସଂସ୍କୃତିର

ସଂସ୍ପର୍ଶରେ ଆସି ଭାରତରେ ଏହି ସବୁ ଜାତିଆଣ ପ୍ରତିବନ୍ଧକ କ୍ରମଶଃ ଦୂର ହେବାରେ ସହାୟକ ହୋଇଛି ଯଦିଓ ରାଜନୈତିକ କ୍ଷେତ୍ରରେ କ୍ଷମତା ବିସ୍ତାର ପାଇଁ ଜାତିଆଣ ପ୍ରଥା ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛି । ଆମେ କତିପୟ ଯୁବକ ସାହସର ସହିତ ଏପରି ସଂସ୍କାରମୂଳକ କାର୍ଯ୍ୟ କରାଇବାରେ ଆଗଭର ହୋଇଥିବା ଦୃଷ୍ଟେ ବହୁ ସମାଲୋଚନାର ସମ୍ମୁଖୀନ ହେବାକୁ ପଡିଲା । ଏପରିକି ତତ୍‌କାଳୀନ ପୁଲିସ୍ ଇନିସପେକ୍ଟର ସ୍ୱର୍ଗତ ଗଙ୍ଗାଧର ଦ୍ୱିବେଦୀ (ସୁରେନ୍ଦ୍ର ଦ୍ୱିବେଦୀଙ୍କ ଜେଜେ) ଆମକୁ ବିବାହ ଶୋଭାଯାତ୍ରା ନେବାକୁ ଲାଇସେନ୍ସ ଦେବାକୁ ମନା କଲେ । ଆମର ବିଶେଷ ଅନୁରୋଧରେ ସର୍ତ୍ତ ରଖିଲେ ଯଦି ଆମେ ପଣ୍ଡିତ ନୀଳକଣ୍ଠଙ୍କ ଠାରୁ ଏହି ବିବାହରେ କିଛି ସାମାଜିକ ବ୍ୟବସ୍ଥାର ଉଲ୍ଲଘଂନ କରାଯାଉନାହିଁ ବୋଲି ଲେଖିପାରୁ ତେବେ ଆମକୁ ଅନୁମତି ମିଳିବ । ଆମେ ସବୁ ପଣ୍ଡିତ ନୀଳକଣ୍ଠଙ୍କ ନିକଟକୁ ଯାଇ ଏ ସଂପର୍କରେ ତାଙ୍କର ମତ ଲୋଡିବାରୁ, ସେ ନିଜେ ଜଣେ ସମାଜ ସଂସ୍କାରକ ଭାବେ ସତ୍ୟବାଦୀ ସ୍କୁଲ 'ନିଶ' ଆନ୍ଦୋଳନର ନେତୃତ୍ୱ ନେଇ ହରିଜନ ଛାତ୍ରଙ୍କୁ ବ୍ରାହ୍ମଣ ପିଲାଙ୍କ ଛାତ୍ରାବାସରେ ଏକାଠି ରଖିଥିବା ଓ ଏକାଠି ଭୋଜନର ସୁଯୋଗ ସୃଷ୍ଟି କରିଥିବା କଥା ସ୍ମରଣ କରାଇବାରେ ଏହି ବିବାହରେ ସାମାଜିକ ଶୃଙ୍ଖଳାର କୌଣସି ପ୍ରତିବନ୍ଧକ ନାହିଁ ବୋଲି ତାଙ୍କର ସ୍ପଷ୍ଟ ମତ ଦେଇ ଆମକୁ ଉତ୍ସାହିତ କରି କହିଲେ ଯେ ହିନ୍ଦୁ ବିବାହ ଏକ ପବିତ୍ର ବନ୍ଧନ । କେବଳ ଯଜ୍ଞ ଓ ଅଗ୍ନିକୁ ସାକ୍ଷୀ ରଖି ଏହି ବନ୍ଧନ ସଂପୂର୍ଣ୍ଣ ହୁଏ ଏବଂ ସପ୍ତପଦୀର ଆବଶ୍ୟକତା ଓ ଅନ୍ୟାନ୍ୟ ବ୍ୟବସ୍ଥାର ମୌଳିକ ଅର୍ଥ ଓ ତଥ୍ୟ ସମ୍ବଳିତ ଏକ ସମୀକ୍ଷା କରି ଫୋନରେ ଗଙ୍ଗାଧର ଦ୍ୱିବେଦୀ ମହାଶୟଙ୍କୁ ସବୁ ବୁଝାଇ ଦେବାରେ ସେ ବିବାହ ପ୍ରୋସେସନ୍‌ରେ ଯିବା ପାଇଁ ଲାଇସେନ୍ସ ଦେଲେ ଏବଂ ପୁଲିସ ସହାୟତା ମଧ୍ୟ ଦେଲେ । ପରେ ଗିରୀଜା ବାବୁ ଓଡିଶାର ଜଣେ ସୁନାମଧନ୍ୟ ଆଇନଜୀବୀ ଭାବରେ କଟକ ହାଇକୋର୍ଟରେ ସୁନାମଧନ୍ୟ ଆଡଭୋକେଟ୍ ଓ କଟକର ସରକାରୀ ଓକିଲ ଭାବେ ବହୁ ଖ୍ୟାତି ଅର୍ଜନ କରି କିଛି ବର୍ଷ ତଳେ ଇହଧାମ ତ୍ୟାଗ କରିଛନ୍ତି । ଏହି ବିବାହ ବ୍ୟବସ୍ଥାଟି ସେତେବେଳେ କଟକ ସହରରେ ଏକ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା କାରଣ ଛାତ୍ରନେତାମାନେ ରେଭେନ୍‌ସା ମହାବିଦ୍ୟାଳୟର ଅନେକ ଛାତ୍ରୀଙ୍କ ଗହଣରେ ଶୋଭାଯାତ୍ରାରେ ଯାଇ ଏହି ଅସବର୍ଣ୍ଣ ବିବାହ ସଂପୂର୍ଣ୍ଣ କରିବାରେ ସମର୍ଥ ହୋଇଥିଲେ । ବହୁ ସାମାଜିକ ପ୍ରତିବନ୍ଧକ ସତ୍ତ୍ୱେ, ରାଜୁବାବୁଙ୍କ ଆଇନ ସହାୟତା, ତାଙ୍କର ବାଗ୍ମିତା ଓ ବଡ ବଡ ଫୌଜଦାରୀ ମକଦ୍ଦମାରେ ତାଙ୍କର ସୁନାମ ଏପରି ବ୍ୟାପିଥିଲା ଯେ ଆମେ ବିଶେଷ କରି ମୁଁ ଓ ଶ୍ରୀ ବିବୁଧେନ୍ଦ୍ର ମିଶ୍ର, ଆଇନ ବ୍ୟବସାୟ କରିବା ପାଇଁ ମନେ ମନେ ସ୍ଥିର କରିଦେଲୁ ।

ଏହି ସମୟରେ ଆଉ ଗୋଟିଏ ଉଲ୍ଲେଖନୀୟ ଅଧ୍ୟାୟ ଆମମାନଙ୍କର ଜୀବନର ଗତି ବଦଳାଇବାକୁ ସୁଯୋଗ ଦେଲା । ୧୯୩୮ ମସିହା ହରିପୁର କଂଗ୍ରେସ ଅଧିବେଶନ । ଆମେ ଓଡିଶାର ଛାତ୍ରସଂଘ ତରଫରୁ ୪ ଜଣ ପ୍ରତିନିଧି ଭାବରେ କଂଗ୍ରେସ ଅଧିବେଶନରେ ଯୋଗ ଦେବାକୁ ଯାଇଥିଲୁ । ସେତେବେଳକୁ ଭାଷଣ ଦେବାରେ ମୁଁ, ବିବୁଧେନ୍ଦ୍ର ମିଶ୍ର, ମନମୋହନ ମିଶ୍ର ବିଶେଷ ଖ୍ୟାତି ଅର୍ଜନ କରିଥାଉ । ଆମେ ୪ ଜଣ ହେଲୁ ମୁଁ, ବିବୁଧେନ୍ଦ୍ର ମିଶ୍ର, ସୂରଜମଲ ସାହା ଓ ମନମୋହନ ମିଶ୍ର । ଶ୍ରୀ ଉଦୟନାଥ ମିଶ୍ର ମଧ୍ୟ ଆମ ସହ ଯାଇଥିଲେ । ଶେଷ ନାମଧାରୀ ଉଦୟନାଥ ଜଣେ ଅତ୍ୟନ୍ତ ଉଦୀୟମାନ ଛାତ୍ର । ବହୁତ ବୁଦ୍ଧିମାନ । ପ୍ରଚ୍ଛଦପଟରେ ବୁଦ୍ଧି ଦେଇ ଅନେକ ସମୟରେ ଆମକୁ ପ୍ରଭାବିତ କରିପାରୁଥିଲେ । ସେ ଥିଲେ ଅଶୋକ ଭାଇନାଙ୍କର ଜଣେ ଦୃଢ ସମର୍ଥକ ଓ ପଣ୍ଡିତ ନୀଳକଣ୍ଠ ଗୋଷ୍ଠୀର ଜଣେ ଆଦର୍ଶଗତ ଦୃଢବିଶ୍ୱାସୀ । ସବୁବେଳେ ହସ ହସ ମୁହଁ କିନ୍ତୁ ବୁଦ୍ଧି ଖେଳରେ ଆମ ଗୋଷ୍ଠୀର ଦୃଢ ସମର୍ଥକ । ପରେ ଅବଶ୍ୟ ସେ ସରକାରୀ ଚାକିରୀରେ ଯୋଗ ଦେଇ ସରକାରୀ ଛାପାଖାନା ସଂସ୍ଥା ଯାହାକି ଏବେ Director, Govt. Printing and Stationery ଭାବରେ ନାମିତ, ସେତେବେଳେ Director Govt. Press ଭାବରେ ସରକାରୀ ଚାକିରୀରୁ ଅବ୍ୟାହତି ନେଇଛନ୍ତି । ତାଙ୍କର କନ୍ୟା ରାଜ୍ୟ ପୁଲିସ୍ ବାହିନୀର ସର୍ବୋଚ୍ଚ (D.G. Police) ଙ୍କୁ ବିବାହ କରିଥିଲେ । ଉଦୟନାଥ ବାବୁ (ମୁଁ ତାଙ୍କୁ ଉଦି ବୋଲି ଡାକେ) ଆମ ସହିତ ତତ୍କାଳୀନ ରାଜନୀତିରେ କିପରି ଗୋଟି ଚଳାଇବାକୁ ହେବ ପରାମର୍ଶ ଦେବା ପାଇଁ ଯାଇଥିଲେ । ଆମେ ମହାରାଷ୍ଟ୍ରର ବିଦର୍ଭ ଅଞ୍ଚଳର ରାଜନୈତିକ କେନ୍ଦ୍ର ନାଗପୁରଠାରେ ରହିଲୁ । ନାଗପୁର ବିଶ୍ୱବିଦ୍ୟାଳୟର କୁଳପତି ଡକ୍ଟର କାମାତ ସେତେବେଳେ ସୁବାଷ ବାବୁଙ୍କର ଦୃଢ ସମର୍ଥକ । ଆମେ ୪/୫ଜଣ ଓଡିଶାରୁ ନେତାଜୀଙ୍କ ସମର୍ଥକ ଭାବେ ଆସିଛୁ ସୁଦୂର ଓଡିଶାରୁ ଜାଣି ଆମର ରହିବା ପାଇଁ ନାଗପୁର ମୁଖ୍ୟ ରାସ୍ତାର ଏକ ନୂତନ ତିଆରି ଦୋତାଲା କୋଠାରେ ସମସ୍ତ ସୁବିଧା କରାଇଦେଲେ । ଭାରତର ରାଜନୀତି ସେତେବେଳକୁ ଅତି ଉତ୍ତେଜନାପୂର୍ଣ୍ଣ ହୋଇଥାଏ । ସୁବାଷ ବାବୁ ଗାନ୍ଧିଜୀଙ୍କ ପରାମର୍ଶ ନ ମାନି ମହାତ୍ମା ଗାନ୍ଧୀଙ୍କର ମନୋନୀତ କଂଗ୍ରେସ ସଭାପତି ପାଇଁ ପ୍ରାର୍ଥୀ ହୋଇଥିବା ଡକ୍ଟର ପଟ୍ଟାଭି ସୀତାରାମାୟାଙ୍କ ବିରୁଦ୍ଧରେ ପ୍ରତିଦ୍ୱନ୍ଦ୍ୱିତା କରି ସଭାପତି ନିର୍ବାଚିତ ହୋଇଥାଆନ୍ତି । ଗାନ୍ଧିଜୀ ହରିଜନ ପତ୍ରିକାରେ କ୍ଷୋଭ ପ୍ରକାଶ କରି ମତ ଦେଇଥାଆନ୍ତି 'ଡକ୍ଟର ପଟ୍ଟାଭିଙ୍କ ପରାଜୟ ମୋର ପରାଜୟ ବୋଲି ଭାବିବାକୁ ହେବ ।' ଗାନ୍ଧିଜୀଙ୍କ ଏହି ମତ କଂଗ୍ରେସରେ ତୀବ୍ର ଆନ୍ଦୋଳନ ସୃଷ୍ଟି କରୁଥାଏ । କଂଗ୍ରେସ କାର୍ଯ୍ୟକାରୀ କମିଟିର ପ୍ରାୟ ସମସ୍ତ ସଦସ୍ୟ ଇସ୍ତଫା ଦେବା ପାଇଁ ପ୍ରସ୍ତୁତ ରହିଥାଆନ୍ତି । ଗାନ୍ଧିଜୀ ପଣ୍ଡିତ

ନେହେରୁଙ୍କୁ ପରାମର୍ଶ ଦେଉଥିଲେ, ସୁବାଷ ବୋଷଙ୍କୁ କାର୍ଯ୍ୟକାରୀ କମିଟି ଗଢିବା'ରେ ସଂପୂର୍ଣ୍ଣ ସ୍ୱାଧୀନତା ଦିଆଯାଉ । ସେ ନିଜେ ଆଉ ସେଥିରେ ସୁବାଷ ବୋଷଙ୍କୁ କୌଣସି ଦିଗ୍‌ଦର୍ଶନ ଦେବାକୁ ମନା କରିଦେଇଥିଲେ । ଭାରତବର୍ଷର ସବୁ ବାମପନ୍ଥୀ ଦଳ ସୁବାଷ ବୋଷଙ୍କୁ ସମର୍ଥନ ଜଣାଉଥାଆନ୍ତି । ସେମାନଙ୍କ ମଧ୍ୟରେ କମ୍ୟୁନିଷ୍ଟ ଆନ୍ଦୋଳନର ସର୍ବୋଚ୍ଚ ସମ୍ମାନନୀୟ ନେତା ଶ୍ରୀ ପି.ସି. ଯୋଶୀ, ବିଶିଷ୍ଟ ଗାନ୍ଧିବାଦୀ ଜୟପ୍ରକାଶ ନାରାୟଣ, ସମାଜବାଦୀ ନେତାଗଣ, ଏମ.ଆର. ମାଶାନୀ, ଅଚ୍ୟୁତ ପଟ୍ଟବର୍ଦ୍ଧନ, ଶ୍ରୀମତି କମଳାଦେବୀ ଚଟ୍ଟୋପାଧ୍ୟାୟ ପ୍ରମୁଖ ଥାଆନ୍ତି ସୁବାଷ ବାବୁଙ୍କ ପ୍ରମୁଖ ସହଯୋଗୀ ଭାବରେ । ନାଗପୁର ବିଶ୍ୱବିଦ୍ୟାଳୟ ଛାତ୍ର ଇଉନିଅନର ସମସ୍ତ କର୍ମକର୍ତ୍ତା ଓ ସମଗ୍ର ଭାରତର ସମାଜବାଦରେ ବିଶ୍ୱାସ କରୁଥିବା ଛାତ୍ରସମାଜ ନେତାଜୀଙ୍କ ପଛରେ ଦୃଢ ଭାବରେ ଥାଆନ୍ତି । ପ୍ରଥମ ସଭା ହୁଏ ନାଗପୁରଠାରେ । ସେ ସଭାରେ ନେତାଜୀ ସୁବାଷ ବୋଷ ଉଦ୍‌ବୋଧନ ଦେବେ । କଂଗ୍ରେସ କାର୍ଯ୍ୟବାହୀ କମିଟିର କୋଷାଧ୍ୟକ୍ଷ ଓ ମହାତ୍ମାଜୀଙ୍କ ବିବେକ ରକ୍ଷକ ଭାବେ ପରିଚିତ ଯମୁନାଲାଲ ବଜାଜଙ୍କ ସୁପୁତ୍ର ରାଧାକୃଷ୍ଣ ବଜାଜ ସେ ସଭାରେ ସଭାପତିତ୍ୱ କରୁଥିବାର ପ୍ରଚାର କରାଯାଇଥାଏ । ଅପରାହ୍ନ ୧ଟା ୩୦ ମିନିଟରେ ଶୋଭାଯାତ୍ରା ଆରମ୍ଭ ହେବାର ମଧ୍ୟ ପ୍ରଚାର ହୋଇଥାଏ । କୁଳପତି ବିଶ୍ୱବିଦ୍ୟାଳୟର ଛାତ୍ରମାନଙ୍କୁ ଶୋଭାଯାତ୍ରାରେ ଯୋଗ ଦେବା ପାଇଁ ୧ଟା ସମୟରେ ଛୁଟି କରିଦେଇଥାଆନ୍ତି । ଦିନ ଗୋଟାକ ବେଳେ କଲିକତାରୁ ସ୍ୱତନ୍ତ୍ର ଟ୍ରେନ ଯୋଗେ ହଜାର ହଜାର ଛାତ୍ର ଆସି ପହଞ୍ଚିଲେ । ଆମେ ପାଞ୍ଚଜଣ (ମତେ ମିଶାଇ) ଖଣ୍ଡିଏ ଟାକ୍ସିରେ ନାଗପୁର ଠାରୁ ଓ୍ୱର୍ଦ୍ଧା ଗଲୁ ମହାତ୍ମାଜୀଙ୍କ ଆଶ୍ରମକୁ । ସେଠାରୁ ସବୁ ଖବର ନେଇ ନେତାଜୀଙ୍କ ସଭାକୁ ଯିବୁ । ପ୍ରଥମେ ନେତାଜୀ ରହୁଥିବା କୁଳପତି ଡଃ କାମାତଙ୍କ ବାସଭବନକୁ ଗଲୁ । ଦେଖିଲୁ ବୈଠକଖାନାର ସାମ୍ନା ବାରଣ୍ଡାରେ ବସିଛନ୍ତି ପି.ସି. ଯୋଶୀ ଓ ଜୟ ପ୍ରକାଶ ନାରାୟଣ । ଖବର ଦେଲୁ ସୁବାଷ ବାବୁଙ୍କ ସହିତ ସାକ୍ଷାତ କରିବା ପାଇଁ । ଖବର ପାଇ ସୁବାଷ ବୋଷ ତତ୍‌କ୍ଷଣାତ ବାହାରକୁ ଆସି ଆମକୁ ଓଡିଆରେ ପ୍ରଶ୍ନ କଲେ 'ପଣ୍ଡିତ ନୀଳକଣ୍ଠ କିପରି ଅଛନ୍ତି ?' ଆମେମାନେ କେଉଁଠାରେ ରହୁଚୁ ବୋଲି ପଚାରି ତାଙ୍କ ସଭାକୁ ଯିବାକୁ ଅନୁରୋଧ କଲେ । ଆମେ ହଁ କରି ସେଠାରୁ ଓ୍ୱାର୍ଦ୍ଧା ବାହାରିଲୁ । କିଛି ବାଟ ଯିବା ପରେ ଗୋଟେ କାର ବେଶ୍ କ୍ଷିପ୍ର ଗତିରେ ପଛରେ ଆସୁଛି ଓ ଆମ ଗାଡିର ଆଗକୁ ଚାଲିଯିବାକୁ ଚେଷ୍ଟା କରୁଛି । ରାସ୍ତା ସେତେବେଳେ ପିଚୁ ହୋଇନଥାଏ । ଖରାଦିନ, ବାଲି ଉଡୁଥାଏ । ଆମ ଗାଡି କିଛି ସମୟ ପଛ ଗାଡିର ଗତି ଅବରୋଧ କରିବା ପରେ ତାଙ୍କ ଗାଡି ଆମ ଗାଡିକୁ ଅତିକ୍ରମ କରି ହଠାତ୍ ରହିଗଲା । ପଣ୍ଡିତ ନେହେରୁ, ଅବଦୁଲ ଗଫର ଖାଁ (ଫ୍ରଣ୍ଟିଅର ଗାନ୍ଧୀ) ଓ

ରାଜେନ୍ଦ୍ର ପ୍ରସାଦ ଗାଡିରେ ଥାଆନ୍ତି । ପଣ୍ଡିତ ନେହେରୁଙ୍କର ମୁହଁ ଧୂଳିରେ ନାଲି ପଡିଯାଇଥାଏ ଓ ସେ ଭୀଷଣ ରାଗି ଆମ ଗାଡି ତାଙ୍କ ଗାଡିକୁ କାହିଁକି ବାଟ ଦେଲା ନାହିଁ ବୋଲି କହି ଡ୍ରାଇଭରଙ୍କୁ ମାଡ ଦେବା ପାଇଁ ଚମକି ଆସିଲା ବେଳେ ପ୍ରଣ୍ଡିଅର ଗାନ୍ଧୀ ତାଙ୍କୁ ରୋକିଦେଇ 'ବଚା ଲୋକ ହେ, ଇନକୋ ଛୋଡ୍ ଦିଜିଏ' ବୋଲି କହି ପଣ୍ଡିତଜୀଙ୍କୁ ଗାଡି ଭିତରକୁ ନେଇ ଗାଡି ତାଙ୍କର କ୍ଷିପ୍ର ଗତିରେ ଚାଲିଲା । ଆମର ସେଇଟା ହେଉଛି ଭାରତର ବିଶିଷ୍ଟ ଜନନାୟକ ପଣ୍ଡିତ ଜୀ ଓ ପ୍ରଣ୍ଡିଅର ଗାନ୍ଧୀ ଓ ଭାରତର ପ୍ରଥମ ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦଙ୍କ ସହିତ ଅତି ନିକଟରୁ ସାକ୍ଷାତ ଓ ଗାଳି ଶୁଣିବାର ସୁଯୋଗ । ଆମେ ଶେଷରେ ଯାଇ ଗାନ୍ଧିଜୀଙ୍କ ଓ୍ୱାର୍ଦ୍ଧା ଆଶ୍ରମରେ ପହଞ୍ଚିଲୁ । ଗାନ୍ଧିଜୀଙ୍କର ସେଦିନ ଉପବାସ । ସେ ଆଶ୍ରମର ଏକ ଛୋଟ ଘରେ ଏକ ଖଟିଆରେ ବିଶ୍ରାମ କରୁଥାଆନ୍ତି । ସବୁଠାରୁ ଆଶ୍ଚର୍ଯ୍ୟର କଥା ଆମ ଭିତରୁ ମନମୋହନ ମିଶ୍ର, ଯେକି ଗାନ୍ଧିଜୀଙ୍କ ତୀବ୍ର ସମାଲୋଚକ ଓ ତାଙ୍କ ନାମରେ ଗୀତ ରଚନା କରି ସୁବାଷ ବାବୁଙ୍କ ପ୍ରଶଂସାରେ ଶତମୁଖ ହୋଇଥାଆନ୍ତି, ସେ ଗାନ୍ଧିଜୀଙ୍କ ଖଟିଆର ନିକଟରେ ସାଷ୍ଟାଙ୍ଗ ହୋଇ ପ୍ରଣିପାତ କଲେ । ଗାନ୍ଧିଜୀ ଆଙ୍ଗୁଠିଟି ମୁହଁରେ ଦେଇ କିଛି କଥା ନ କହିବାର ସୂଚନା ଦେଉଥାଆନ୍ତି । ମହାଦେବ ଦେଶାଇ ବିରକ୍ତ ହୋଇ ମନମୋହନ ମିଶ୍ରଙ୍କୁ ଉଠାଇ ବାହାରକୁ ନେଇଗଲେ । ପରେ ମନମୋହନଙ୍କୁ ଏପରି ସାଷ୍ଟାଙ୍ଗ ହେବାର କାରଣ କ'ଣ ବୋଲି ପଚାରିବାରେ ସେ ଉତ୍ତର ଦେଲେ ଗାନ୍ଧିଜୀଙ୍କ ବ୍ୟକ୍ତିତ୍ୱ ମୋ ଉପରେ ଏପରି ଏକ ଛାୟା ବିସ୍ତାର କଲା ଯେ ମୁଁ ମନ୍ତ୍ରମୁଗ୍ଧ ହୋଇପଡି ସାଷ୍ଟାଙ୍ଗ ପ୍ରଣିପାତ କଲି । ମୁଁ କିଛି ଜାଣେନା ଏପରି ପ୍ରତିକ୍ରିୟା ମୋ ମନରେ ଗାନ୍ଧିଜୀଙ୍କୁ ଦର୍ଶନ କରୁ କରୁ କାହିଁକି ହେଲା । (ଆମେ ସବୁ ଜାଣିଥିଲୁ ମନମୋହନ କିପରି ଉପରେ ପ୍ରଚଣ୍ଡ ଅଗ୍ନିକାଣ୍ଡ ସୃଷ୍ଟି କରି ଓ ଉନ୍ମାଦନା ଜାଗ୍ରତ କରିବାର କବିତା ରଚନା କରି ପରବର୍ତ୍ତୀ ଅବସ୍ଥାରେ ଶାନ୍ତ ଓ ସୌମ୍ୟ ଚେହେରା, ହସ ହସ ମୁହଁରେ ସ୍ନେହପୂର୍ଣ୍ଣ ବ୍ୟବହାରରେ ନିଜର ପ୍ରତିଭା ନମ୍ରତାର ସହିତ ପ୍ରକାଶ କରନ୍ତି)

ଆମେ କେବଳ ମହାତ୍ମାଜୀଙ୍କ ବ୍ୟକ୍ତିତ୍ୱର ଯେଉଁ ଆକର୍ଷଣ ଓ ପ୍ରଭା ତା ଦେଖି ନମ୍ରତାର ସହିତ ପ୍ରଣାମ କରି ଓ୍ୱାର୍ଦ୍ଧା ଆଶ୍ରମ ତ୍ୟାଗ କରି ଚାଲିଲୁ ସଭାସ୍ଥଳୀକୁ । ସେତେବେଳକୁ ସଭା ଆରମ୍ଭ ହେଇଥାଏ । ପଣ୍ଡିତଜୀ ସଭାରେ ମୁଖ୍ୟ ବକ୍ତା । ଯମୁନା ଲାଲ ବଜାଜ ସଭାପତି । ସମାନ୍ତରାଳ ସଭାରେ ସୁବାଷ ବାବୁଙ୍କ ଭାଷଣ ଅଗ୍ନିବର୍ଷଣ କରୁଥାଏ । ଏହି ସଭାରେ ଶ୍ରୋତାଙ୍କ ସଂଖ୍ୟା ପଣ୍ଡିତ ନେହେରୁଙ୍କ ସଭାର ଲୋକସଂଖ୍ୟାର ଦୁଇ ଗୁଣ । ମୁକ୍ତ ବାମପନ୍ଥୀ ଦଳର ନେତୃବର୍ଗ ସୁବାଷ ବାବୁଙ୍କ ସଭାମଣ୍ଡପରେ ବସି ଥାଆନ୍ତି । ପ୍ରାୟ ୨୫,୦୦୦ ଛାତ୍ର ଛାତ୍ରୀ ସଭାର ଶେଷ ଭାଗରେ ଛିଡା ହୋଇ ଶାନ୍ତି ରକ୍ଷା କରି ସୁବାଷ ବାବୁଙ୍କ ଉଦ୍ଦେଶ୍ୟରେ ସ୍ଲୋଗାନ ମାନ

ଦେଉ ଥାଆନ୍ତି । ସଭା ସରିଲା ପରେ ଆମେ ନାଗପୁର ଫେରି ଆସିଲୁ । ବହୁ ରାତ୍ର ହୋଇଥାଏ । ତା ପରଦିନ ଆମ ଭିତରେ ଆଲୋଚନା ହେଲା । ମନମୋହନ ମିଶ୍ର କହି ଉଠିଲେ 'ମୁଁ ନେତାଜୀଙ୍କୁ ସମର୍ଥନ କରିବି କିନ୍ତୁ କମ୍ୟୁନିଷ୍ଟ ପଲିସିରେ ଯୋଗ ଦେବି ।' ସେଥିପାଇଁ ବଳିଷ୍ଠ ଯୁକ୍ତି ଦେଖାଇ ଆଉ କୌଣସି କଥା ଶୁଣିବାକୁ ନାରାଜ । ଉଦୟନାଥଙ୍କ ଯୁକ୍ତିଥିଲା ଆମେ ନେତାଜୀଙ୍କୁ ଓଡିଶା ନିମନ୍ତ୍ରଣ କରିବା । ସେଠାରେ ତାଙ୍କ ସମର୍ଥନରେ ଜନମତ ଦେଖି ଦରକାର ହେଲେ ନେତାଜୀଙ୍କ ଦ୍ୱାରା ସଦ୍ୟ ପ୍ରତିଷ୍ଠିତ 'ଫରଓ୍ୱାର୍ଡ ବ୍ଲକ' ଅଗ୍ରଗାମୀ ସଂସ୍ଥାରେ ଯୋଗ ଦେବା । ତା ପୂର୍ବରୁ ପଣ୍ଡିତ ନୀଳକଣ୍ଠଙ୍କ ସହିତ ପରାମର୍ଶ କରି ତାଙ୍କର ଏଥିପ୍ରତି ସମର୍ଥନ ପାଇବା ପାଇଁ ଚେଷ୍ଟା କରିବା । ଏଥିରେ ମୁଁ, ବିବୁଧେନ୍ଦ୍ର ଓ ସୂରଜମଲ ଶାହା ସ୍ୱୀକୃତ ହେଲୁ । ମନମୋହନ କିନ୍ତୁ ଆମ ଠାରୁ ତୀବ୍ର ମତଦ୍ୱୈଧ ମଧ୍ୟରେ କଟକ ଫେରିଆସି ଓଡିଶାରେ କମ୍ୟୁନିଷ୍ଟ ଆନ୍ଦୋଳନରେ ଭାଗ ଦେବାକୁ ପ୍ରତିଜ୍ଞା କଲେ ।

ଏ ସଭାରେ ଆଉ ଗୋଟିଏ ଯୁଗାନ୍ତକାରୀ ନିଷ୍ପତ୍ତି ସ୍ପଷ୍ଟ ହୋଇଗଲା । ଯଦି କଂଗ୍ରେସ କାର୍ଯ୍ୟକାରୀ ସଭ୍ୟମାନେ ସୁବାଷ ବୋଷଙ୍କୁ ସହଯୋଗ କରିବେ ନାହିଁ, କେତେଜଣ କଂଗ୍ରେସ ଛାଡିବା ପାଇଁ ପ୍ରସ୍ତୁତ ହେବେ ଏବଂ ଏକ ଦଳ ଗଠନ କରି ସମସ୍ତ ସମାଜବାଦୀ ଦଳଙ୍କ ବ୍ରିଟିଶ ସରକାର ବିରୁଦ୍ଧରେ ପ୍ରତ୍ୟକ୍ଷ ସଂଗ୍ରାମ କରିବା ପାଇଁ ନେତୃତ୍ୱ ନେବେ । ସେଇଠାରେ ଫରଓ୍ୱାର୍ଡ ବ୍ଲକ୍ ସଂପର୍କରେ ଆମେ ସୂଚନା ମଧ୍ୟ ପାଇଲୁ । ଆଗେ ପଣ୍ଡିତ ନୀଳକଣ୍ଠଙ୍କ ସହିତ ପରାମର୍ଶ କରି ଫରଓ୍ୱାର୍ଡ ବ୍ଲକରେ ଯୋଗ ଦେଇ ନେତୃବର୍ଗଙ୍କ ସହିତ ସବୁ ସମାଜବାଦୀ ଶକ୍ତିଙ୍କ ସହ ସଂଗ୍ରାମ କରିବା ପାଇଁ ପ୍ରସ୍ତୁତ ରହିଲୁ । ସୁବାଷ ବାବୁଙ୍କ ସହିତ ତା ପରଦିନ ସକାଳୁ ଦେଖା କରିବାରେ ସେ ପୁଣି କହିଲେ 'ପଣ୍ଡିତଜୀଙ୍କୁ ମୋର ନମସ୍କାର ଦେବେ । ମୁଁ ଓଡିଶା ଯିବାର ପ୍ରୋଗ୍ରାମ କରିବି । ସେତେବେଳେ ଆପଣମାନଙ୍କ ସହିତ ଆଲୋଚନାର ସୁଯୋଗ ମିଳିବ ।' ଆମେ ତାପରେ ଓଡିଶା ଫେରିଆସିଲୁ । କଟକରେ ପହଞ୍ଚିଲା ପରେ ମନମୋହନ କମ୍ୟୁନିଷ୍ଟ ଆନ୍ଦୋଳନରେ ଯୋଗ ଦେଲେ । ଆମ ସହିତ ତାଙ୍କର ସଂପର୍କ ଆଉ ରହିଲା ନାହିଁ । ଆମେ ଓଡିଶା ରାଜନୈତିକ ଅବସ୍ଥା ଅନୁଧ୍ୟାନ କରି ପଣ୍ଡିତ ନୀଳକଣ୍ଠଙ୍କ ସହିତ ଆଲୋଚନା ଅପେକ୍ଷାରେ ରହିଲୁ ।

ସେତେବେଳକୁ ବାଙ୍କା ବଜାରରେ 'ନବଭାରତ' ପ୍ରେସ୍ ଚାଲୁଥାଏ । ନୀଳକଣ୍ଠ ବାବୁ ସେଠାକୁ ସବୁଦିନ ଆସୁଥାଆନ୍ତି । ଦୈନିକ 'ନବଭାରତ'କୁ ଅଗ୍ର ଲେଖା ଦିଅନ୍ତି । ଅନ୍ୟସବୁ ସମ୍ବାଦ ଓ ଲେଖାମାନ ସଂଶୋଧନ କରି ବାଙ୍କା ବଜାରସ୍ଥ ତାଙ୍କ ଘରକୁ ଫେରିଯାଉଥିଲେ । ସେତେବେଳକୁ ଅଶୋକ ଭାଇନାଙ୍କ ସହିତ ଘରୋଇ ବିଷୟ ନେଇ ତାଙ୍କ ମତାନ୍ତର ଆରମ୍ଭ ହୋଇଥାଏ । ସେ କିନ୍ତୁ ଆମ ଗୋଷ୍ଠୀର ମୁଖ୍ୟ

ଥିବା ଏବଂ ତାଙ୍କୁ ଆମେ ଆମର ନେତା ଭାବେ ସମ୍ମାନ ଦେଉଥିବା ହେତୁ ସେ ନବଭାରତ ପ୍ରେସ୍‌କୁ ଆସୁଥାଆନ୍ତି । ମୁଁ ଆଇନ ପାଶ୍ କରିଥାଏ । ଏକ କନ୍ୟାର ପିତା ମଧ୍ୟ ହେଇଯାଇଥାଏ । କୌଣସି ଆୟର ପନ୍ଥା ନ ଥାଏ । ଘରେ ନନା, ବୋଉ, ଭଉଣୀ ତିନି ଭାଇ ମଧ ଥାଆନ୍ତି । ସେମାନେ ବିଭିନ୍ନ କଲେଜ ଓ ସ୍କୁଲମାନଙ୍କରେ ଅଧ୍ୟୟନ କରୁଥାଆନ୍ତି । ପୁଣି ନେତାଜୀଙ୍କୁ ନାଗପୁରଠାରେ ଦେଇଥିବା ପ୍ରତିଶ୍ରୁତି କିପରି ପାଳନ କରିବି ସେଥିପାଇଁ ମାନସିକ ସ୍ତରରେ ପ୍ରସ୍ତୁତି ପାଇଁ ସବୁ ଉଦ୍ୟମ ଅବ୍ୟାହତ ରଖିଥାଏ ।

ରାଜ୍ୟରେ ରାଜନୈତିକ ବାତାବରଣ ଅତ୍ୟନ୍ତ ଉଦ୍‌ବେଗଜନକ । କଂଗ୍ରେସରେ ପଣ୍ଡିତ ନୀଳକଣ୍ଠଙ୍କ ନେତୃତ୍ୱରେ ଗୋଟିଏ ଗୋଷ୍ଠୀ ବିଶ୍ୱନାଥ ଦାଶ ସରକାରକୁ କ୍ଷମତାଚ୍ୟୁତ କରିବା ପାଇଁ ସମସ୍ତ ଉଦ୍ୟମ କରୁଥାଆନ୍ତି । ପୁରୀ ଜିଲ୍ଲା କଂଗ୍ରେସ ସ୍ୱର୍ଗତ ଜଗନ୍ନାଥ ରଥଙ୍କ ନେତୃତ୍ୱରେ ନୀଳକଣ୍ଠଙ୍କ ସହିତ କାର୍ଯ୍ୟ କରୁଥାଆନ୍ତି । ଗଂଜାମର ସ୍ୱର୍ଗତ ଜନନାୟକ ଶ୍ରୀ ଦିବାକର ପଟ୍ଟନାୟକଙ୍କ ନେତୃତ୍ୱ ଓ ସ୍ୱର୍ଗତ ଶଶୀଭୂଷଣ ରଥଙ୍କ ଉଦ୍ୟମରେ ଗଂଜାମ ଜିଲ୍ଲା କଂଗ୍ରେସ କମିଟି ଓ ସ୍ୱର୍ଗତ ରାଧାକୃଷ୍ଣ ବିଶ୍ୱାସରାୟଙ୍କ ନେତୃତ୍ୱରେ କୋରାପୁଟ ଜିଲ୍ଲା କଂଗ୍ରେସ କମିଟିର ଅନ୍ୟତମ ନେତା ସ୍ୱର୍ଗତ ରାଧାମୋହନ ସାହୁ ଓ ସଦାଶିବ ତ୍ରିପାଠୀ ପ୍ରଭୃତି ନୀଳକଣ୍ଠଙ୍କ ସହିତ ରହିଥାଆନ୍ତି । ଅନ୍ୟପଟେ ଡକ୍ଟର ହରେକୃଷ୍ଣ ମହତାବ, ଶ୍ରୀ ନବକୃଷ୍ଣ ଚୌଧୁରୀ, ଗୋପବନ୍ଧୁ ଚୌଧୁରୀ, ଶ୍ରୀମତୀ ମାଳତୀ ଚୌଧୁରୀ, ରାଜକୃଷ୍ଣ ବୋଷ, ଭାଗୀରଥୀ ମହାପାତ୍ର ପ୍ରଭୃତି ଏକ ବଳିଷ୍ଠ ଗୋଷ୍ଠୀ ବିଶ୍ୱନାଥ ଦାଶଙ୍କ ନେତୃତ୍ୱରେ ଥିବା ମନ୍ତ୍ରିମଣ୍ଡଳକୁ କ୍ଷମତାସୀନ ରଖିବା ପାଇଁ ଉଦ୍ୟମ କରୁଥାଆନ୍ତି । ପ୍ରଦେଶ କଂଗ୍ରେସ କମିଟି ନିର୍ବାଚନ ସମୟ ନିକଟ ହୋଇଥିବା ଦୃଷ୍ଟିରୁ ଯେଉଁ ଗୋଷ୍ଠୀ ନିର୍ବାଚନରେ ପ୍ରଦେଶ କଂଗ୍ରେସକୁ ଅକ୍ତିଆର କରିବ ସରକାରଙ୍କ ଭାଗ୍ୟ ନିୟନ୍ତ୍ରଣ କରିବାର ସୁଯୋଗ ପାଇବ ବୋଲି ଉଭୟ ଶିବିରରେ ପ୍ରବଳ ଉଦ୍ୟମ ଚାଲିଥାଏ । ପୁରୀଜିଲ୍ଲାରୁ ମୁଁ ଅଶୋକ ଭାଇନାଙ୍କ ନେତୃତ୍ୱରେ ଅନେକ ଛାତ୍ରନେତା ନୀଳକଣ୍ଠଙ୍କ ଗୋଷ୍ଠୀ ସହିତ ସଂପର୍କ ରଖିଥାଉଁ । ଆମେ ଓଡିଶାକୁ ଫେରିଆସି ମନମୋହନଙ୍କୁ ବାଦ୍ ଦେଇ ସୁବାଷ ଚନ୍ଦ୍ର ବୋଷଙ୍କ ଓଡିଶା ଗସ୍ତ ପାଇଁ ଆୟୋଜନ କରିବାରେ ଲାଗିପଡିଲୁ । ପଣ୍ଡିତ ନୀଳକଣ୍ଠ ସୁବାଷବାବୁଙ୍କ କାର୍ଯ୍ୟକାରୀ କମିଟିରେ ସଭ୍ୟ ନ ହୋଇ ପାରି ବିବ୍ରତ ହୋଇପଡିଥିଲେ । ଆମେ ତାଙ୍କ ସହିତ ଆଲୋଚନା କଲା ପରେ ଓ ତାଙ୍କୁ ସୁବାଷ ବାବୁ କେତେ ସମ୍ମାନ ଦିଅନ୍ତି ସେ ସଂପର୍କରେ ଆମର ଅନୁଭୂତି ଜଣାଇବା ପରେ, ପଣ୍ଡିତ ନୀଳକଣ୍ଠ ସୁବାଷ ବାବୁଙ୍କ ଓଡିଶା ଗସ୍ତ ସଂପର୍କରେ ସମସ୍ତ ଆୟୋଜନର ଦାୟିତ୍ୱ ନେଲେ । ପୁରୀଠାରୁ ତାଙ୍କର ଗସ୍ତ ଆରମ୍ଭ ହେବାର ସ୍ଥିର ହେଲା । କିନ୍ତୁ

ପ୍ରଥମେ ତାଙ୍କୁ କଟକ ଷ୍ଟେସନରେ ସଂବର୍ଦ୍ଧନା ଦେବାର ମଧ୍ୟ ନିଷ୍ପତ୍ତି ନିଆଗଲା । ଗରମ ଦିନ, ପୁରୀ ଏକ୍ସପ୍ରେସ୍‌ରେ ସେ କଲିକତାରୁ ଟ୍ରେନରେ ଆସିବାର ଥାଏ । ଏକ୍ସପ୍ରେସ୍ ଟ୍ରେନ୍ କଟକ ଷ୍ଟେସନରେ ପହଞ୍ଚିବାର ସମୟ ଭୋର ୫/୩୦ ମିନିଟ୍ । ସେତେବେଳେ କଟକ ଷ୍ଟେସନରେ ବେଶି ଲୋକ ଆସିବେ ତାଙ୍କୁ ସମ୍ବର୍ଦ୍ଧନା ଦେବା ପାଇଁ । ଆମକୁ ଭାରି ଚିନ୍ତା କିପରି ଏକ ବିରାଟ ଜନସମୁଦ୍ର ରେଳ ଷ୍ଟେସନ ପ୍ଲାଟଫର୍ମରେ ସମ୍ବର୍ଦ୍ଧନା ଜଣାଇବେ । କଟକରେ ପ୍ରଚାର ଆଗରୁ ହୋଇଥାଏ । ଆଜିକାଲି ପରି ସେତେବେଳର ଲୋକସଂପର୍କ ବିଭାଗ ସେପରି ସଚେତନ ନଥାଏ । ତାଙ୍କର ଶୁଣିବା ଓ କହିବା ଯିକର ସବୁ ସେତେ ଶକ୍ତିଶାଳୀ ନଥାଏ । ଯାହାହେଉ କଟକ ସହରବାସୀ ସୁବାଷ ବାବୁଙ୍କ ପାଇଁ ପ୍ରୋସେସନ ଓ ଜନସଭାର ନିର୍ଦ୍ଦିଷ୍ଟ ସୂଚନା ବିଷୟରେ ଆଗରୁ ଅବହିତ ଥିଲେ କର୍ମୀମାନଙ୍କର ପ୍ରଚାର ଫଳରେ । ୧୯୩୯ ମସିହା ମେ ମାସ । ନିର୍ଦ୍ଧାରିତ ସମୟରେ ଷ୍ଟେସନରେ ପୁରୀ ଏକ୍ସପ୍ରେସ୍ ପହଞ୍ଚିଲା ବେଳକୁ ନୀଳକଣ୍ଠ ବାବୁ ବିବ୍ରତ ହୋଇ କହି ଉଠିଲେ 'କେବଳ ୧୫୦ରୁ ୨୦୦ ଲୋକ ରେଳ ଷ୍ଟେସନରେ ପହଞ୍ଚିଛନ୍ତି । ଏଥିରେ କ'ଣ ସମ୍ବର୍ଦ୍ଧନା ହେବ ?' ସୁବାଷ ବାବୁ ମଧ୍ୟ ଜାଣିଥିଲେ କଟକ ସହର ଲୋକ ପାହାନ୍ତି ପ୍ରହରରୁ ଷ୍ଟେସନରେ ବେଶି ସଂଖ୍ୟାରେ ଉପସ୍ଥିତ ରହିବା ସମ୍ଭବପର ନୁହେଁ । ଆମେ ଉପସ୍ଥିତ ଥିବା ସମସ୍ତେ ସୁବାଷ ବାବୁଙ୍କ ବଗିକୁ ଆଗେ ଟ୍ରେନରୁ ଅଲଗା କରାଇ ଏକ ସ୍ୱତନ୍ତ୍ର ପ୍ଲାଟଫର୍ମରେ ଲଗାଇଦେଲୁ । ସୁବାଷ ବାବୁ ବଗି ଖୋଲି ନୀଳକଣ୍ଠ ବାବୁଙ୍କୁ କହିଲେ ସକାଳ ଏ ପର୍ଯ୍ୟନ୍ତ ହୋଇନାହିଁ । ମତେ ଘଣ୍ଟାଏ ଲାଗିବ ପ୍ରାତଃକର୍ମ ସାରିବା ପାଇଁ । ୭ଟା ୩୦ ମିନିଟରେ ଷ୍ଟେସନରୁ ଶୋଭାଯାତ୍ରା ଆରମ୍ଭ ହେବ । ସେ ନିଜେ ଏ ପ୍ରସ୍ତାବ ଦେବା ପରେ ଆମେ ଆସ୍ୱସ୍ତ ହେଲୁ । ପ୍ରାୟ ସାତଟା ବେଳକୁ ଜନସମୁଦ୍ର ମାଡି ଆସିଲେ । ପ୍ରୋସେସନ ଆରମ୍ଭ ହେବା ବେଳକୁ ପ୍ରାୟ ୧୦ ହଜାର ଲୋକଙ୍କର ବିରାଟ ଜନ ସମାଗମ ହୋଇଗଲା । ପୁରୀ ଗଜପତି ତତ୍‌କାଳୀନ ଗଜପତି ମହାରାଜା ଶ୍ରୀରାମଚନ୍ଦ୍ର ଦେବଙ୍କୁ ଅନୁରୋଧ କରି ତାଙ୍କ ପାଟ ହାତୀକୁ ଅଣାଯାଇଥିଲା, ସୁବାଷ ବାବୁ ଓ ନୀଳକଣ୍ଠ ବାବୁଙ୍କୁ ଶୋଭାଯାତ୍ରାର ଅଗ୍ରଭାଗରେ ନେବା ପାଇଁ । ମୋର ବିବେଚନାରେ ଏପରି ଏକ ବର୍ଣ୍ଣାଢ୍ୟ ଶୋଭାଯାତ୍ରା ଓ ଜନସମୁଦ୍ର କଟକରେ କେବେ ଦେଖାଯାଇନଥିଲା ବା ଗତ ୫୦ ବର୍ଷ ଭିତରେ ଏପରି ଉତ୍ସାହ ପ୍ରକାଶ ପାଇନାହିଁ । ଏକେ ତ ସୁବାଷ ବାବୁଙ୍କ ଜନ୍ମସ୍ଥାନ କଟକ ପୁଣି ସେ କଂଗ୍ରେସ ସଭାପତି ନିର୍ବାଚନରେ ମହାତ୍ମାଗାନ୍ଧୀଙ୍କ ପ୍ରାର୍ଥୀ ପଟ୍ଟାଭି ସୀତାରାମାୟାଙ୍କୁ ହରାଇ ସଭାପତି ହୋଇଥାଆନ୍ତି । ହରିପୁର କଂଗ୍ରେସରେ ୧୦୩ ଡିଗ୍ରୀ ଟେଂପରେଚରରେ ଷ୍ଟ୍ରେଚରରେ ତାଙ୍କୁ କଂଗ୍ରେସ ଅଧିବେଶନକୁ ଅଣାଯାଇଥାଏ । ପଣ୍ଡିତ ନେହେରୁଙ୍କ ସହିତ ମହାତ୍ମା ଗାନ୍ଧୀଙ୍କ

ନିର୍ଦ୍ଦେଶରେ କୌଣସି କାର୍ଯ୍ୟକାରୀ ସଭାପତି ତାଙ୍କ ସହିତ ସହଯୋଗ କରୁନଥାଆନ୍ତି । କିନ୍ତୁ ଭାରତର ସବୁ ଅଗ୍ରଗାମୀ ବାମପନ୍ଥୀ ଦଳ ତାଙ୍କୁ ବିପୁଳ ସମର୍ଥନ ଦେଉଥାଆନ୍ତି । ତାଙ୍କ ମଧ୍ୟରେ କମ୍ୟୁନିଷ୍ଟ ଦଳ ଓ ଜୟପ୍ରକାଶ ନାରାୟଣଙ୍କ ନେତୃତ୍ୱରେ ସମାଜବାଦୀ ଗୋଷ୍ଠୀ ସୁବାଷ ବାବୁଙ୍କୁ ଦୃଢ ସମର୍ଥନ ଜଣାଉଥାଆନ୍ତି ଯାହା ଫଳରେ କଟକ କାହିଁକି ସମଗ୍ର ଓଡିଶାର ଯୁବଶକ୍ତି ସୁବାଷ ବାବୁଙ୍କ ପଛରେ ହାର୍ଦ୍ଦିକ ସମର୍ଥନ ଜଣାଉଥାଆନ୍ତି । କଟକରେ ସୁବାଷ ବାବୁଙ୍କ ଶୋଭାଯାତ୍ରାରେ ଲକ୍ଷାଧିକ ଲୋକ ନୃତ୍ୟଗାନ କରି ସ୍ଲୋଗାନ ଦେଇ ଯେପରି ଶୃଙ୍ଖଳାର ସହିତ ଚାଲୁଥାଆନ୍ତି, କଟକ କମିଶନର କୋଠୀ ପର୍ଯ୍ୟନ୍ତ, ଯେ ଦେଖିନାହିଁ ସେ ବିଶ୍ୱାସ କରିପାରିବ ନାହିଁ । ମୁଁ, ଅଶୋକ ଭାଇନା, ବିବୁଧେନ୍ଦ୍ର, ସୂରଜ ମଲ, ବଳରାମ ଓ ଅନ୍ୟ ଛାତ୍ରନେତାମାନେ ପ୍ରୋସେସନର ଅଗ୍ରଭାଗରେ ଚାଲୁଥାଉ ସ୍ଲୋଗାନ ଦେଇ ଯେପରି ଆମ ପାଇଁ ଏକ ବହୁ ଦିନର ରାଜନୈତିକ ଆକାଂକ୍ଷା ପୂରଣ ହୋଇଛି । ରାସ୍ତାର ଉଭୟ ପାର୍ଶ୍ୱରେ ହାତୀ ଉପରକୁ ସ୍ତ୍ରୀ ଲୋକମାନେ ପ୍ରଚୁର ପୁଷ୍ପ ବୃଷ୍ଟି କରୁଥାଆନ୍ତି । ନୀଳକଣ୍ଠ ବାବୁ ଅଭିଭୂତ ହୋଇ ପଡିଥିଲେ ଏପରି ଲକ୍ଷାଧିକ ଲୋକଙ୍କର ଉତ୍ସାହ ଓ ଭାବପ୍ରବଣତା ଦେଖି । ସେ ଦିନ ଅପରାହ୍ନରେ ସ୍ଥିର ହେଲା ରାତ୍ରର ବିଳମ୍ବ ପ୍ରହରରେ ସୁବାଷ ବାବୁ ପୁରୀ ଯିବେ । ଆମକୁ ପଣ୍ଡିତ ନୀଳକଣ୍ଠ ଦାୟିତ୍ୱ ଦେଲେ ସେଇଦିନ ସନ୍ଧ୍ୟାବେଳେ ପୁରୀ ଯାଇ ତାଙ୍କର ସମ୍ବର୍ଦ୍ଧନା ବ୍ୟବସ୍ଥା କରିବା ପାଇଁ । ମୁଁ, ବିବୁଧେନ୍ଦ୍ର ଓ ସୂରଜ ମଲ ବାବୁ ପୁରୀ ଆସି ସମସ୍ତ କଲେଜ ଓ ସ୍କୁଲ ତା ପରଦିନ ବନ୍ଦ କରାଇଲୁ ନେତାଜୀଙ୍କ ସମ୍ବର୍ଦ୍ଧନାରେ ଯୋଗ ଦେବା ପାଇଁ । ପରଦିନ ସକାଳେ ନେତାଜୀଙ୍କ ସ୍ୱାସ୍ଥ୍ୟରେ ସାମାନ୍ୟ ଅବନତି ଘଟିଥିଲେ ମଧ୍ୟ ତାଙ୍କୁ ହାତୀ ଉପରେ ବସାଇ ବଡ ଦାଣ୍ଡରେ ଏକ ବିରାଟ ଶୋଭାଯାତ୍ରାରେ ନିଆଗଲା । ସବୁ ସ୍କୁଲ୍, କଲେଜ ବନ୍ଦ, ହଜାର ହଜାର ସଂଖ୍ୟାରେ ଛାତ୍ରମାନେ ଶୋଭାଯାତ୍ରାରେ ଲାଇନ କରି ଚାଲିଥାଆନ୍ତି ଡାକ୍ତରଖାନା ଛକଠାରୁ । ବ୍ୟାଣ୍ଡପାଟି ତାଳେ ତାଳେ ଯେପରି ହାତୀ ପାଦ ପକାଇ ବିରାଟ ଜନ ସମୁଦ୍ର ସହିତ ନିଜକୁ ହଜାଇ ଦେଇଥାଏ । ପୁରୀର ଏହି ଶୋଭାଯାତ୍ରା ବଡଦାଣ୍ଡରେ ଜନସମୁଦ୍ର ଯେପରି ପୁରୀର ରଥଯାତ୍ରାର ଭିଡକୁ ଉପେକ୍ଷା କରୁଥାଏ । ସୁବାଷ ବାବୁ ଓଡିଆରେ ସମସ୍ତଙ୍କ ସହିତ କଥା କହିବାକୁ ଉଦ୍ୟମ କରୁଥାଆନ୍ତି । ପାଇକପଡା ଇଷ୍ଟେଟର ମୋଚିସାହି ଛକଠାରେ ବିରାଟ ଦ୍ୱିତଳ କୋଠାରେ ସୁବାଷ ବାବୁ ଓ ତାଙ୍କ ସହିତ ଆସିଥିବା ନେତୃବର୍ଗ ରହିଲେ । ନେତାଜୀ ପ୍ରୋସେସନ ପରେ କହି ଉଠିଲେ, 'ଅନେକ ଦିନରୁ ମାଛ ଖାଇ ନାହିଁ, ଆଜି ମାଛ ଝୋଳ ପ୍ରସ୍ତୁତ କରାଯାଉ ।' ତାଙ୍କ ଇଙ୍ଗିତରେ ମତେ ନୀଳକଣ୍ଠ ବାବୁଙ୍କ ଦ୍ୱାରା ଆୟୋଜିତ ଭୋଜିରେ ପ୍ରଚୁର ମାଛ ତରକାରୀ ବିଭିନ୍ନ ପ୍ରକାରେ ପ୍ରସ୍ତୁତ ହୋଇଥିବା ଦେଖି ସୁବାଷ ବାବୁ ଓ ତାଙ୍କ

ସହକର୍ମୀମାନେ ଗଭୀର ସନ୍ତୋଷ ପ୍ରକାଶ କରି କହି ଉଠିଲେ 'ଏପରି ଭୋଜନ ଓ ମାଛ ତରକାରୀ ମୁଁ ବଙ୍ଗଳାରେ ମଧ୍ୟ ଖାଇବାର ସୁଯୋଗ ପାଇନାହିଁ ।' ଲୋକ ଲାଗି ରହିଥାଆନ୍ତି । ତାଙ୍କୁ ବିଶ୍ରାମ ନଥାଏ । ଅପରାହ୍ନରୁ ସଭା କାର୍ଯ୍ୟ ଆରମ୍ଭ ହେବ । ପ୍ରଥମ ସଭା ଚନ୍ଦନପୁରଠାରେ ଅପରାହ୍ନ ୪ଟା ବେଳେ । ଆମେ ସବୁ ସଭାର ଆୟୋଜନ କରୁଥାଉ । କିନ୍ତୁ ଆମର ଉଦ୍ୟମକୁ ବଳି ଯାଉଥାଏ ଜନସାଧାରଣଙ୍କ ସ୍ୱତଃସ୍ଫୂର୍ତ୍ତ ଉତ୍ସାହ ଓ ସହଯୋଗ । ଚନ୍ଦନପୁରଠାରେ ପଇଡ ପାଣି ପିଇ ସାରି ସୁବାଷ ବାବୁ କହି ଉଠିଲେ ପୃଥିବୀରେ ଏପରି ଗୋଟିଏ ଫଳରେ ଫୁଡ ଓ ଡ୍ରିଙ୍କ ଉଭୟ ଥାଇ ଏପରି ଆରାମଦାୟକ ଥଣ୍ଡା ପାନୀୟ ଓ ତା ସହିତ ପଇଡର ନାଳୀ ଖାଇବା ଅନ୍ୟସ୍ଥାନରେ ଦେଖା ଯାଏ ନାହିଁ ଭାରତର ସମୁଦ୍ରତଟ ସ୍ଥାନ ଛଡା । ପ୍ରାୟ ୧୦,୦୦୦ ଲୋକ କେବଳ ସଭାର ଖବର ପାଇ ରୁଣ୍ଡ ହୋଇଥାଆନ୍ତି ପ୍ରଚଣ୍ଡ ଖରାରେ ବିଭିନ୍ନ ସଂକୀର୍ତ୍ତନ ସହିତ ଶୋଭାଯାତ୍ରାରେ ଆସି । ପଣ୍ଡିତ ନୀଳକଣ୍ଠ, ସଭାପତି ଭାବରେ ନିର୍ଦ୍ଦେଶ ଦେଲେ ସୁବାଷ ବାବୁ ଓଡିଆ ଭାଷାରେ ତାଙ୍କର ଉଦବୋଧନ ଦେବେ । ସୁବାଷ ବାବୁ ପ୍ରଥମେ କହିଲେ 'ବହୁବର୍ଷ ପରେ ମୁଁ ଆଜି ପ୍ରଥମ କରି ଓଡିଆ ଭାଷାରେ ଏପରି ଏକ ବିରାଟ ସଭାରେ ଅଭିଭାଷଣ ଦେବାର ସାହସ କରୁଛି । ଭୁଲ ହୋଇପାରେ ଆପଣମାନେ କ୍ଷମା କରିବେ ।' ଏତିକି କହିବାବେଳେ ବିରାଟ ଜନତା ହରିବୋଲ ଦେଇ କହିଲେ, ଆପଣଙ୍କ ଓଡିଆ ବହୁତ ଭଲ ଲାଗୁଛି କହନ୍ତୁ ଆମେ ସବୁ ବୁଝିବୁ । କି ଧି ଶକ୍ତି ଓ ଦୃଢମନା ସୁବାଷ ବାବୁ ! ତାଙ୍କର ମାନସିକ ଦୃଢତା ଏପରି ଥିଲା ଯେ ସେ ଉପସ୍ଥିତ ବିରାଟ ଜନତାକୁ ଦୀର୍ଘ ୪୫ ମିନିଟ କାଳ ମନ୍ତ୍ରମୁଗ୍ଧ କଲାପରି ରଖିପାରିଥିଲେ ଓଡିଶାରେ ତାଙ୍କର ପ୍ରଥମ ସଭା ସ୍ଥଳରେ । ପରେ ସତ୍ୟବାଦୀ, ପିପିଲି ଓ କଟକଠାରେ ବିରାଟ ଜନସଭାମାନଙ୍କରେ ଓଡିଆ ଛଡା ଅନ୍ୟ ଭାଷାରେ ସେ କହିନଥିଲେ ।

ଗ୍ରୁପ୍ ଆଲୋଚନା ବେଳେ ମଧ୍ୟ ସରଳ ଓଡିଆ କଟକି ଭାଷାରେ କହୁଥିଲେ । ପିଲାଦିନେ ତାଙ୍କ ଜନ୍ମସ୍ଥାନ ଓଡିଆ ବଜାରର କୋଠା ପାଖେ ଯେଉଁ ବରା ଦୋକାନରୁ ସେ ବରା ଖାଉଥିଲେ, ସେ ବରା ଦୋକାନୀକୁ ଚିହ୍ନି ତା ନା' ଧରି ଡାକି ଗରମ ବରା ଦେବାକୁ ବରାଦ କରିଥିଲେ । ବରାଦୋକାନୀ ତା ଜୀବନ ସାର୍ଥକ ହେଲା ବୋଲି ଗର୍ବରେ ବହୁତ ବରା ଗରମ ଗରମ କରି ଆଣି ସମସ୍ତଙ୍କ ପାଇଁ ଯୋଗାଇବାରେ ତାର ଯେଉଁ ଆଗ୍ରହ ତାହା ବର୍ଣ୍ଣନା କରିବା ସମ୍ଭବ ନୁହେଁ ।

କଟକରେ ପ୍ରଚାର ହେଲା ଯେ, ସୁବାଷ ବାବୁ ଏତେ ବଡ ବିରାଟ ରାଷ୍ଟ୍ରୀୟ ନେତା ହେଲେ ମଧ୍ୟ ପିଲାଦିନର ବରା ଦୋକାନୀ ପାଖରୁ ବରା ଖାଇବା ଭୁଲିଲେ ନାହିଁ । ଏପରି ଦୁଇ ଦିନ ଓଡିଶା ଗସ୍ତରେ ଆସି ପୁରୀ ଓ କଟକ ଜିଲ୍ଲାରେ ନାହିଁନଥିବା

ଉତ୍ସାହ ଭିତରେ ବିରାଟ ଜନସଭାକୁ ଉଦ୍‌ବୋଧନ ଦେଇ ସୁବାଷ ବାବୁ ଫେରିଲା ପରେ, ପଣ୍ଡିତ ନୀଳକଣ୍ଠଙ୍କ ସହିତ ଦୀର୍ଘ ଆଲୋଚନା ପରେ ଓଡିଶାରେ 'ଫରୱାର୍ଡ ବ୍ଲକ' ସଂଗଠନ ଆରମ୍ଭ କରିବାର ସ୍ଥିର ହେଲା । ୧୯୩୯ ଜୁନ୍ ମାସରେ ଓଡିଶାରେ ଫରୱାର୍ଡ ବ୍ଲକ୍ ପ୍ରତିଷ୍ଠା ଓ ନୀଳକଣ୍ଠ ବାବୁ ତା'ର ସଭାପତି ଭାବେ କାର୍ଯ୍ୟ ଆରମ୍ଭ କରନ୍ତି । ମୁଁ ଏହି ସମୟ ଭିତରେ ପୁରୀ ଜିଲ୍ଲା ଫରୱାର୍ଡ ବ୍ଲକ ସଂଗଠନର ସଭାପତି ଥାଏ । ଶ୍ରୀ ବିବୁଧେନ୍ଦ୍ର ମିଶ୍ରଙ୍କ ପିତାଙ୍କ ଘର କୁଣ୍ଡାଇବେଣ୍ଟ ସାହି ଜେନାରୀଗଛ ନିକଟସ୍ଥ କୋଠାରେ ଆମର ସବୁଦିନ ଗୁପ୍ତ ବୈଠକ ବସେ । ମାଟିମଣ୍ଡପ ସାହିରେ ହରିହର ପୂଜାପଣ୍ଡାଙ୍କ ଭିଣୋଇଙ୍କ ନାମରେ ସବୁ ଡାକ ଆସିବାର ଆଗରୁ ସ୍ଥିର ହୋଇଥାଏ । କାରଣ ସେ ଜଣେ ଶ୍ରୀମନ୍ଦିର ସେବାୟତ ଓ ରାଜନୀତି ସହିତ ଜୀବନରେ କେବେ ଜଡିତ ନ ହୋଇଥିବାରୁ ତାଙ୍କ ନାମରେ ଚିଠିପତ୍ର ଆସିଲେ ସନ୍ଦେହର ଅବକାଶ ରହିବନି ବିଚାରି ଏପରି କରାଯାଇଥାଏ ଅଶୋକ ଭାଇନାଙ୍କ ପରାମର୍ଶରେ । ଆମେ ସବୁ ଯେ କୌଣସି ପରିସ୍ଥିତିର ମୁକାବିଲା କରିବା ପାଇଁ ପ୍ରସ୍ତୁତ ଥାଉ । ରାଜ୍ୟରେ ପାରଳାଖେମୁଣ୍ଡି ମହାରାଜାଙ୍କ ମୁଖ୍ୟମନ୍ତ୍ରିତ୍ୱରେ ଗଠିତ ମନ୍ତ୍ରିମଣ୍ଡଳର ଉଦ୍ଦେଶ୍ୟ ଥାଏ ସୁବାଷ ବାବୁଙ୍କ ସେନାବାହିନୀ ଭାରତକୁ ପ୍ରବେଶ କଲେ ତାଙ୍କୁ ସହଯୋଗ କରି ଦିଲ୍ଲୀ ଆକ୍ରମଣ କରାଯିବାର ଯୋଜନା କାର୍ଯ୍ୟକାରୀ କରାଯିବାରେ ସହାୟକ ହେବା । କଲିକତାରେ ସୁବାଷ ବାବୁଙ୍କ ନିର୍ଦ୍ଦେଶରେ ତାଙ୍କ ବଡ ଭାଇ କଲିକତା ହାଇକୋର୍ଟର ବିଶିଷ୍ଟ ବାରିଷ୍ଟର ଶରତ ବୋଷଙ୍କ ଦାୟିତ୍ୱରେ ଏକ ମନ୍ତ୍ରିମଣ୍ଡଳ ମଧ୍ୟ ସେଇ ଉଦ୍ଦେଶ୍ୟ ନେଇ ଗଠିତ ହୋଇଥାଏ । ଆସାମରେ ଓ ବିହାର ପ୍ରଦେଶରେ ଅନୁରୂପ ସରକାରମାନ ଗଠନ କରାଯାଉଥାଏ ।

ସୁବାଷ ବାବୁ ଓଡିଶାରୁ ଫେରିଯିବା ପରେ ସାରା ଦେଶରେ ଫରୱାର୍ଡ ବ୍ଲକ ସଂଗଠନକୁ କଂଗ୍ରେସର ଏକ ସମାନ୍ତରାଳ ବାମପନ୍ଥୀ, ସଂଗ୍ରାମୀ ସଂଗଠନ ରୂପେ ଗଢିବା ପାଇଁ ଓ ଏହି ସଂଗଠନ ମାଧ୍ୟମରେ କଂଗ୍ରେସ ତା'ର ସମାଜବାଦୀ ଆଦର୍ଶରୁ ଯେପରି ବିଚ୍ୟୁତ ନହୁଏ ସେହି ଉଦ୍ଦେଶ୍ୟରେ ସାରା ଦେଶରେ ଜନମତ ସଂଗଠିତ କରିବାରେ ତୋଫାନି ଗସ୍ତ ଆରମ୍ଭ କରିଦେଲେ । ଏ ମଧ୍ୟରେ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହୋଇଥାଏ ଏବଂ ଜର୍ମାନୀର ନାଜୀ ସୈନ୍ୟ ବାହିନୀ ମିତ୍ରଶକ୍ତି (ଆମେରିକା, ଇଂଲଣ୍ଡ ଓ ଫ୍ରାନ୍ସ) ସୈନ୍ୟବାହିନୀକୁ ଇଉରୋପରେ ଯୁଦ୍ଧ କ୍ଷେତ୍ରରେ ଛିନ୍ନଛତ୍ର କରି ଏକ ଭୟାବହ ପରିସ୍ଥିତି ସୃଷ୍ଟି କରୁଥାଆନ୍ତି । ଫ୍ରାନ୍ସ ସୈନ୍ୟବାହିନୀ ଫ୍ରାନ୍ସ ଦେଶରେ ବହୁ ସଂଖ୍ୟାରେ ମୃତାହତ ହୋଇ ଜର୍ମାନୀର ନାଜି ସୈନ୍ୟବାହିନୀ ଆଗରେ ଆତ୍ମସମର୍ପଣ କରିବାକୁ ବାଧ୍ୟ ହେଉଥାଆନ୍ତି । ଏହି ସମୟରେ ବ୍ରିଟିଶ ସରକାର ଭାରତ ବାସୀଙ୍କ ସହଯୋଗ ପାଇଁ କଂଗ୍ରେସକୁ ପ୍ରସ୍ତାବ ଦେବାରେ, ମହାତ୍ମା ଗାନ୍ଧୀ

ମିତ୍ରଶକ୍ତିଙ୍କୁ ଯୁଦ୍ଧରେ ସହଯୋଗ ପାଇଁ ବ୍ରିଟିଶ ସରକାର ଯୁଦ୍ଧ ପରେ ଭାରତକୁ କ୍ଷମତା ହସ୍ତାନ୍ତର କରିବାର ସର୍ତ୍ତ ରଖିଲେ । ଚର୍ଚ୍ଚିଲଙ୍କ ପ୍ରଧାନମନ୍ତ୍ରିତ୍ୱରେ ଜାତୀୟ ସରକାର କୌଣସି ସର୍ତ୍ତ ଆରୋପ ନକରି ମିତ୍ରଶକ୍ତିର ସହାୟତା ଓ ସହଯୋଗର ପ୍ରତିଶ୍ରୁତି ପାଇଁ ବାଧ୍ୟ କରିବାରେ କଂଗ୍ରେସ ସାରା ଦେଶର କ୍ଷମତା ହସ୍ତାନ୍ତର କରିବା ସର୍ତ୍ତରେ ବ୍ରିଟିଶ ସରକାରଙ୍କୁ ରାଜି କରାଇବା ପାଇଁ ଏକ ଶକ୍ତିଶାଳୀ ଜନମତ ସୃଷ୍ଟି କରିବା ପାଇଁ ଗାନ୍ଧିଜୀ ମୁସ୍‌ଲିମ୍ ଲିଗ୍‌ର ନେତା ମହମ୍ମଦ ଅଲ୍ଲୀ ଜିନ୍ନାଙ୍କ ସହିତ ଆଲୋଚନା ଆରମ୍ଭ କଲେ । ମହମ୍ମଦ ଅଲ୍ଲୀ ଜିନ୍ନା ଭାରତର ଏହି ପରିସ୍ଥିତିର ସୁଯୋଗ ନେଇ, ଏକ ମୁସଲିମ୍ ରାଷ୍ଟ୍ର ଗଠନ କରି ଭାରତକୁ ହିନ୍ଦୁସ୍ଥାନ ଓ ପାକିସ୍ଥାନ ଦୁଇଟି ସ୍ୱାଧୀନ ରାଷ୍ଟ୍ରରେ ପରିଣତ କରିବା ପାଇଁ ଜିଦ୍ ଧରିଲେ । ବ୍ରିଟିଶ ସରକାରଙ୍କ ପ୍ରରୋଚନାରେ କଂଗ୍ରେସର କ୍ଷମତା ହସ୍ତାନ୍ତର ଦାବିକୁ ପ୍ରତିହିତ କରିବା ଲାଗି ଜିନ୍ନା ଏପରି ପଦକ୍ଷେପ ନେବା ପାଇଁ ସୁଯୋଗ ନେଲେ । ହିନ୍ଦୁ ମୁସଲମାନ ସଂପ୍ରଦାୟମାନଙ୍କ ମଧ୍ୟରେ ଏହି ଦୁଇ ରାଷ୍ଟ୍ର ଗଠନ ଓ ସ୍ୱାଧୀନ ମୁସଲିମ୍ ରାଷ୍ଟ୍ର ହେଲେ, ମୁସଲମାନମାନେ ଭାରତରେ ହିନ୍ଦୁମାନଙ୍କର ପଦାନତ ହୋଇ ରହିବେ ନାହିଁ, ସମ୍ମାନର ସହ ଏକ ନୂତନ ସ୍ୱାଧୀନ ମୁସଲିମ୍ ରାଷ୍ଟ୍ର ନିୟନ୍ତ୍ରଣରେ ରହିବ, ଏହି ଧ୍ୱନୀ ଏକ ଧର୍ମବିଶ୍ୱାସ ଉପରେ ପ୍ରତିଷ୍ଠିତ ହେଲା । କ୍ରମଶଃ ସାଂପ୍ରଦାୟିକ ତିକ୍ତତା ବୃଦ୍ଧି ପାଇ ସଂଘର୍ଷରେ ପରିଣତ ହେଲା ଓ ପଞ୍ଜାବଠାରୁ ଆରମ୍ଭ କରି ବଙ୍ଗଳା ଦେଶ ପର୍ଯ୍ୟନ୍ତ ବ୍ୟାପିଲା । ବହୁ ହିନ୍ଦୁ ଓ ମୁସଲମାନ ଏପରି ହିଂସାଜନିତ ସଂଘର୍ଷରେ ପ୍ରାଣବଳୀ ଦେଲେ । ଗାନ୍ଧିଜୀଙ୍କ ସମସ୍ତ ନିବେଦନ ସତ୍ତ୍ୱେ ନରହତ୍ୟା ଓ ନରସଂହାର କ୍ରମଶଃ ଉଭୟ ସଂପ୍ରଦାୟକୁ ଅତ୍ୟନ୍ତ ବିବାଦୀୟ ଅବସ୍ଥାକୁ ଟାଣିନେଲା । ଶେଷରେ ଗାନ୍ଧିଜୀ ଓ ଜାତୀୟ କଂଗ୍ରେସ ବ୍ରିଟିଶ ସରକାର କ୍ଷମତା ହସ୍ତାନ୍ତର କରୁ ନଚେତ ଭାରତ ଛାଡ ଦାବିରେ ୧୯୪୨ ଅଗଷ୍ଟ ୮ ତାରିଖରେ ବମ୍ବେଠାରେ ଏକ ବିରାଟ ଜନସଭାରେ ମହାତ୍ମା ଗାନ୍ଧୀଙ୍କ ନିର୍ଦ୍ଦେଶରେ ବ୍ରିଟିଶ ସରକାରଙ୍କୁ ୧୫ ଦିନିଆ ଚରମ ପତ୍ର ଦେଇ ପ୍ରସ୍ତାବ ଗ୍ରହଣ କଲା । କିନ୍ତୁ ଚର୍ଚ୍ଚିଲ ଜିନ୍ନାଙ୍କ ଉପରେ ନିର୍ଭର କରି ଓ ମୁସଲିମ୍ ସଂପ୍ରଦାୟର ସହଯୋଗକୁ ଆହୁରି କଂଗ୍ରେସ ବିରୁଦ୍ଧରେ ଦୃଢୀଭୂତ କରିବା ପାଇଁ କଂଗ୍ରେସ ଦଳକୁ ସଙ୍ଗେ ସଙ୍ଗେ ବେଆଇନ ଘୋଷଣା କରି ମହାତ୍ମା ଗାନ୍ଧୀଙ୍କୁ ଗିରଫ କରି ଆଗା ଖାଁ ରାଜବାଟିରେ ଅନ୍ତରୀଣ ବନ୍ଦୀ କଲେ ଓ ପଣ୍ଡିତ ନେହେରୁ, କଂଗ୍ରେସ ସଭାପତି ମୌଲାନା ଆଜାଦ, ରାଜେନ୍ଦ୍ର ପ୍ରସାଦ, ସର୍ଦ୍ଦାର ପଟେଲ, ଓଡିଶାର ହରେକୃଷ୍ଣ ମହତାବ, ଆଚାର୍ଯ୍ୟ କୃପାଲିନୀ, ଶଙ୍କର ରାଓ ଦେଶମୁଖ ପ୍ରଭୃତି ସମସ୍ତ କଂଗ୍ରେସ କାର୍ଯ୍ୟକାରୀ ସମିତିର ସଭ୍ୟମାନଙ୍କୁ ଗୁଜରାଟର ଅହମ୍ମଦନଗର ଦୁର୍ଗରେ ବନ୍ଦୀ କରି ଦେଲେ ଅଗଷ୍ଟ ୯ ତାରିଖରେ । ପରେ ପରେ ଭାରତ ଛାଡ ଆନ୍ଦୋଳନ ଆରମ୍ଭ ହେଲା । ସମଗ୍ର

ଦେଶରେ ପ୍ରାୟ ଏକ ଲକ୍ଷ ସ୍ୱାଧୀନତା ସଂଗ୍ରାମୀ ବନ୍ଦୀ ହେଲେ । ସମଗ୍ର ଭାରତବର୍ଷ ବ୍ରିଟିଶ ସରକାର ବିରୁଦ୍ଧରେ ଏକ ହୋଇ କ୍ଷମତା ହସ୍ତାନ୍ତର ପାଇଁ ଏପରି ପରିସ୍ଥିତି ସୃଷ୍ଟି କଲେ ଯେ, ଭାରତବର୍ଷ ଏକ ରଣଭୂମିରେ ପରିଣତ ହେଲା । ଅରାଜକତା ଓ ଶାସନ ବ୍ୟବସ୍ଥା ସଂପୂର୍ଣ୍ଣ ଭୁଷୁଡ଼ି ପଡ଼ିଲା । କଂଗ୍ରେସ ହାତରେ ସେନା ନଥିଲେ କି ଅସ୍ତ୍ର ନଥିଲା । କିନ୍ତୁ ମହାତ୍ମାଜୀଙ୍କ ନୈତିକ ଶକ୍ତି ଓ ଭାରତବାସୀଙ୍କ ଉପରେ ତାଙ୍କର ନେତୃତ୍ୱର ଶକ୍ତି, କଂଗ୍ରେସ ନେତାମାନଙ୍କ ତ୍ୟାଗ ଓ କଂଗ୍ରେସକର୍ମୀମାନଙ୍କର ଲକ୍ଷ ଲକ୍ଷ ସଂଖ୍ୟାରେ ଜେଲ ବରଣ ସମଗ୍ର ଦେଶକୁ ଏକ ଆଗ୍ନେୟଗିରିରେ ପରିଣତ କରିଦେଲା । ଏପରିକି ସୋଭିଏଟ ରୁଷ୍ର ଜର୍ମାନ ଶକ୍ତି ବିରୁଦ୍ଧରେ ଯେଉଁ ସଂଗ୍ରାମର ବିଭତ୍ସତା ଐତିହାସିକମାନେ ବର୍ଣ୍ଣନା କରିଛନ୍ତି, ୧୦ ଲକ୍ଷ ସୋଭିଏତ ସୈନ୍ୟ ଓ ରୁଷ୍‌ବାସୀଙ୍କ ଲେନିନ୍‌ଗ୍ରାଡ଼କୁ ରକ୍ଷା କରିବା ପାଇଁ ଜୀବନ ଦାନର ଯେଉଁ ଦେଶପ୍ରାଣତା ଓ ମାତୃଭୂମିର ରକ୍ଷା ଲାଗି ଚରମ ତ୍ୟାଗଠାରୁ ଆହୁରି ଅଧିକ ନିଷ୍ଠୁରତା ଓ ଅତ୍ୟାଚାର ମଧ୍ୟ ଭାରତବାସୀଙ୍କ ନୈତିକ ତ୍ୟାଗ ଓ ଆତ୍ମବଳୀଦାନ ଆଗରେ ନ୍ୟୁନ ହୋଇପଡ଼ିଲେ । ଶେଷରେ ସୋଭିଏତ ରୁଷ୍ର ଲକ୍ଷ ଲକ୍ଷ ସୈନ୍ୟବାହିନୀଙ୍କର ଜୀବନ ଦାନ ଫଳରେ ନାଜି ସୈନ୍ୟ ସୋଭିଏତ ହାତରେ ପରାସ୍ତ ହେଲେ । ସୋଭିଏତ ଶକ୍ତିର ସହାୟତାରେ ମିତ୍ରଶକ୍ତି ଜୟଯୁକ୍ତ ହୋଇଥିବାରୁ ସୋଭିଏଟ ଓ ଆମେରିକା ସରକାରଙ୍କ ମିଳିତ ଉଦ୍ୟମ ଫଳରେ ବ୍ରିଟିଶ ସରକାର ଭାରତକୁ କ୍ଷମତା ହସ୍ତାନ୍ତର କରିବା ପାଇଁ ସଚିବ ସାର୍ ପେଥିକ ଲରେନ୍ସ ଓ ପରବର୍ତ୍ତୀ ଅବସ୍ଥାରେ କ୍ରିପ୍ସ ମିଶନ ଓ ଶେଷରେ ମାଉଣ୍ଟ ବେଟେନଙ୍କୁ ପଠାଇ ଏକ ଫର୍ମୁଲା ବାହାର କଲେ ଏବଂ ଗାନ୍ଧିଜୀଙ୍କ ପରାମର୍ଶକୁ ଶେଷରେ ଗ୍ରହଣ ନକରି ପଣ୍ଡିତ ନେହେରୁଙ୍କ ନେତୃତ୍ୱରେ ଏକ ମିଳିତ ସରକାର ମୁସ୍‌ଲିମ୍ ଲିଗ୍ ସହିତ ୧୯୪୬ ମସିହାରେ କ୍ଷମତାକୁ ଆସିଲା । ଅଳ୍ପ ସମୟ ପରେ ଏହି ସରକାର ମଧ୍ୟ ସମସ୍ୟା ସମାଧାନ ଦିଗରେ କୌଣସି କାର୍ଯ୍ୟକାରୀ ପନ୍ଥା ଗ୍ରହଣ ନକରିବାରୁ ବ୍ରିଟିଶ ସରକାର ମାଉଣ୍ଟବେଟେନଙ୍କ ଫର୍ମୁଲାକୁ କାର୍ଯ୍ୟକାରୀ କରିବା ପାଇଁ କଂଗ୍ରେସ ନେତୃମଣ୍ଡଳୀକୁ ଏକ ପ୍ରକାର ରାଜି କରାଇ ଶେଷରେ ଭାରତବର୍ଷକୁ ହିନ୍ଦୁସ୍ଥାନ ଓ ପାକିସ୍ଥାନ ଦୁଇଟି ରାଷ୍ଟ୍ରରେ ବିଭକ୍ତ କରିବା ଓ ଉଭୟ ରାଷ୍ଟ୍ରର ସୀମା ନିର୍ଦ୍ଧାରଣ କରିବା ପାଇଁ ମିଷ୍ଟର ରେଡ୍‌କ୍ଲିଫ୍‌ଙ୍କୁ ଦାୟିତ୍ୱ ଦେଲେ ଓ ପରିଶେଷରେ ଚର୍ଚ୍ଚିଲଙ୍କର ସାଧାରଣ ନିର୍ବାଚନରେ ପରାଜୟ ଘଟିବା ପରେ ଲେବର ପାର୍ଟି ସରକାରକୁ ଦାୟିତ୍ୱ ଦେବାରେ କ୍ଷମତା ହସ୍ତାନ୍ତର ପାଇଁ ଅଗଷ୍ଟ ୧୯୪୭, ୧୫ ତାରିଖ ପୂର୍ବରୁ ସୀମା ନିର୍ଦ୍ଧାରଣ କାର୍ଯ୍ୟ ଶେଷ କରି ଦୁଇଟି ସ୍ୱାଧୀନ ରାଷ୍ଟ୍ର ପ୍ରତିଷ୍ଠା କରିବା ପାଇଁ ତାରିଖ ସ୍ଥିର କରିବା ଫଳରେ କ୍ଷମତା ହସ୍ତାନ୍ତର ହେଲା ଓ ଭାରତ ୧୯୪୭ ମସିହା ଅଗଷ୍ଟ ୧୪ ତାରିଖ ରାତ୍ର ୧୨ଟାରେ ଏକ ସ୍ୱାଧୀନ

ସାର୍ବଭୌମ ରାଷ୍ଟ୍ରରେ ପରିଣତ ହୋଇ ସମ୍ବିଧାନ ପ୍ରଣୟନ ପାଇଁ ସମ୍ବିଧାନ ପ୍ରଣୟନ ସଭା ଉପରେ ଦାୟିତ୍ୱ ନ୍ୟସ୍ତ କରାଗଲା । ଏ ସଂପର୍କରେ ଆଉ ତଥ୍ୟ ଦେବାର ଆବଶ୍ୟକତା ଉପଲବ୍ଧି କରୁନାହିଁ କାରଣ ମୋର ନିଜର ଏହି ସ୍ୱାଧୀନତା ସଂଗ୍ରାମରେ ନିଜସ୍ୱ ଅବଦାନ ସଂପର୍କରେ କିଛି ସୂଚନା ଦେବା ଆବଶ୍ୟକ ମନେ କରୁଛି ।

ମୁଁ ଆଗରୁ ସୂଚନା ଦେଇଛି ଯେ, ୧୯୩୬ ସାଧାରଣ ନିର୍ବାଚନରେ ଓଡିଶା ସମେତ ଭାରତ ବର୍ଷର ପ୍ରାୟ ସବୁ ପ୍ରଦେଶରେ ଭାରତୀୟ ଜାତୀୟ କଂଗ୍ରେସ ଆଶାତୀତ ଭାବେ ନିର୍ବାଚନରେ ସଫଳତା ହାସଲ କରିଥାଏ । କଂଗ୍ରେସ ଛଡା ଅନ୍ୟ କୌଣସି ରାଜନୈତିକ ଦଳର ସ୍ଥିତି ପ୍ରାୟତଃ ତୁଳନୀୟ ଅବସ୍ଥାରେ ନଥିଲା । ୧୯୩୯ ସେପ୍ଟେମ୍ବର ମାସରେ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହୋଇଥିଲା । ଭାରତୀୟ ଜନମତ ନାଜିବାଦ ବିରୁଦ୍ଧରେ ଥିଲେ ମଧ୍ୟ, ବ୍ରିଟିଶ ସରକାରଙ୍କ ସହିତ ସହଯୋଗ କରିବା ପାଇଁ, ବ୍ରିଟିଶ ଔପନବେଶିକ ଶୃଙ୍ଖଳାରୁ ମୁକ୍ତିଲାଭ ପାଇବା ପରେ ଆତ୍ମସମ୍ମାନର ସହିତ ମିତ୍ରଶକ୍ତି ସହିତ ସହଯୋଗ କରିବ ବୋଲି ସ୍ପଷ୍ଟ ଜନମତ ପ୍ରକାଶ କରିଥିଲା ଏବଂ ସ୍ୱାଧୀନତା ସଂଗ୍ରାମର ପ୍ରଥମ ପଦକ୍ଷେପ ସ୍ୱରୂପ ସବୁ ପ୍ରଦେଶରୁ ମନ୍ତ୍ରିମଣ୍ଡଳ ପରିତ୍ୟାଗ କରିବାକୁ ନିର୍ଦ୍ଦେଶ ଦେଲା । ଓଡିଶାରେ ସେତେବେଳେ ସ୍ୱର୍ଗତ ବିଶ୍ୱନାଥ ଦାଶଙ୍କ ନେତୃତ୍ୱରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଥାଏ । ମିଃ ଡେନ ସାହେବ ମୁଖ୍ୟ ଶାସନ ସଚିବ ଥିଲେ । କିନ୍ତୁ କେନ୍ଦ୍ର ସରକାର ମିଃ ଡେନଙ୍କୁ ରାଜ୍ୟର ରାଜ୍ୟପାଳ ନିଯୁକ୍ତ କରିବାରେ ବିଶ୍ୱନାଥ ବାବୁ ତା'ର ଘୋର ପ୍ରତିବାଦ ଜଣାଇ ତାକୁ ପ୍ରତ୍ୟାହାର ନ କଲେ, ତାଙ୍କ ମନ୍ତ୍ରିମଣ୍ଡଳ ଇସ୍ତଫା ଦେବ ବୋଲି ଧମକ ମଧ୍ୟ ଦେଇଥାନ୍ତି । ଜଣେ ମୁଖ୍ୟମନ୍ତ୍ରୀଙ୍କ ଅଧୀନରେ କାର୍ଯ୍ୟରତ ମୁଖ୍ୟ ଶାସନ ସଚିବଙ୍କୁ ମୁଖ୍ୟମନ୍ତ୍ରୀଙ୍କ ଉପରେ ରାଜ୍ୟପାଳ ରୂପେ ଅବସ୍ଥାପିତ କରିବା ଏବଂ ତାଙ୍କ ନିର୍ଦ୍ଦେଶରେ ମୁଖ୍ୟମନ୍ତ୍ରୀ ଶାସନ କରିବା ଏକ ନୀତିବିରୁଦ୍ଧ ଓ ଅଗଣତାନ୍ତ୍ରିକ ବ୍ୟବସ୍ଥା ବୋଲି ବିଶ୍ୱନାଥ ଦାଶ ଦୃଢତାର ସହିତ ତାର ବିରୋଧ କରି ଇସ୍ତଫା ଦେଲେ । ଏପରି ଦୃଢତା ଭାରତୀୟ ରାଜନୈତିକ ପରମ୍ପରାରେ ପ୍ରଥମ ବୋଲି ସେତେବେଳେ ଧରାଯାଇଥିଲା ।

ବ୍ରିଟିଶ ସରକାର ଭାରତୀୟଙ୍କ ସହଯୋଗ ଆଶା କରି ସେତେବେଳେ ଚର୍ଚ୍ଚିଲଙ୍କ ନେତୃତ୍ୱରେ ଜାତୀୟ ସରକାର ଯୁଦ୍ଧ ଚାଲିଥିବାବେଳେ ଭାରତକୁ କ୍ଷମତା ହସ୍ତାନ୍ତର କରିବାର କୌଣସି ଆଗ୍ରହ ପ୍ରକାଶ ନକରି ନିଷ୍ଠୁର ଦମନ ନୀତି ଗ୍ରହଣ କରିବାରେ କଂଗ୍ରେସ ଅଗତ୍ୟା ଭାରତ ଛାଡ ଆନ୍ଦୋଳନ ଆରମ୍ଭ କଲା ୧୯୪୨ ଅଗଷ୍ଟ ୯ ତାରିଖରେ ବମ୍ବେର ଏକ ବିରାଟ ଜନସଭାରେ ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ । ସମଗ୍ର ଭାରତ ବର୍ଷ ଏକ ରଣଭୂମିରେ ପରିଣତ ହେଲା । ସମଗ୍ର ଦେଶ ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ ବ୍ରିଟିଶ ଔପନବେଶିକ ଦାସତ୍ୱରୁ ମୁକ୍ତି ପାଇବା ସକାଶେ ଚରମ ତ୍ୟାଗ

କରିବା ପାଇଁ ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ ଏହି ବିରାଟ ଦେଶବ୍ୟାପୀ ସଂଗ୍ରାମରେ ଯୋଗ ଦେଇ ବ୍ରିଟିଶ ପୋଲିସ ଓ ସୈନ୍ୟବାହିନୀର ସମସ୍ତ ନିଷ୍ଠୁରତା ବିରୁଦ୍ଧରେ ଚରମ ତ୍ୟାଗ ପାଇଁ ହଜାର ହଜାର ସଂଖ୍ୟାରେ ଜେଲ୍ ବରଣ କଲେ, ଲାଠି ବନ୍ଧୁକର ସମ୍ମୁଖୀନ ହେଲେ ଓ ଶହ ଶହ ସଂଖ୍ୟାରେ ମୃତ୍ୟୁବରଣ କଲେ ଦେଶମାତୃକାର ମୁକ୍ତି ପାଇଁ । ସମଗ୍ର ପୃଥିବୀ ଜାଣିଲା ଯେ ଭାରତବାସୀ ଆଉ ବ୍ରିଟିଶ ଶୃଙ୍ଖଳକୁ ସ୍ୱୀକାର କରିବା ପାଇଁ ପ୍ରସ୍ତୁତ ନୁହନ୍ତି । ଠିକ୍ ତାର ଅବ୍ୟବହିତ ପୂର୍ବରୁ ସୁବାଷ ବାବୁ ସମଗ୍ର ଜଗତ ଜାଣିବା ପାଇଁ ଏକ ଗୁରୁତର ଆଧ୍ୟାତ୍ମିକ ସାଧନାରେ ନିମଗ୍ନ ଥାଇ, ୧୯୪୧ ଜାନୁଆରୀ ପହିଲା ଦିନ ମହାପରାକ୍ରମୀ ବ୍ରିଟିଶ ସରକାରଙ୍କ ସୈନ୍ୟବାହିନୀ, ପୁଲିସ୍ ଓ ଗୋଇନ୍ଦା ସଂସ୍ଥା ଆଖିରେ ଧୂଳି ଦେଇ ଭାରତ ଭୂଇଁରୁ ଚାଲିଯାଇ ଜର୍ମାନ ଦେଶରେ ହିଟଲରଙ୍କ ସହିତ ଆଲୋଚନା କଲେ । ସେଠାରେ ରହୁଥିବା ସ୍ୱାଧୀନତା ଆନ୍ଦୋଳନର ଅନ୍ୟ ଜଣେ ପ୍ରମୁଖ ଯୋଦ୍ଧା ରାସବିହାରୀ ଘୋଷଙ୍କ ସହିତ ନାଜି ଡିକ୍ଟେଟର ହିଟଲରଙ୍କ ସହଯୋଗରେ ଭାରତୀୟ ଜାତୀୟ ସୈନ୍ୟବାହିନୀ ଜରିଆରେ ଭାରତର ସଂଗ୍ରାମକୁ କ୍ଷିପ୍ରତର କରି ସ୍ୱାଧୀନତା ହାସଲ ପାଇଁ ଭାରତର ପୂର୍ବ ଦିଗରୁ ସୈନ୍ୟ ଚାଳନା କରି ଦିଲ୍ଲୀ ଆକ୍ରମଣ କରିବାର ସମସ୍ତ ଉଦ୍ୟମ କରୁଥାଆନ୍ତି ଏବଂ ସେଇ ଦିଲ୍ଲୀ ଚଲୋ ଅଭିଯାନକୁ ମଦତ ଦେବା ପାଇଁ ଆସାମ, ଓଡିଶା, ବଙ୍ଗଦେଶ ଓ ବିହାରରେ ମିଳିତ ମନ୍ତ୍ରିମଣ୍ଡଳ ସହାୟକ ହେବ ବୋଲି ଫରୱାର୍ଡ ବ୍ଲକ ନିର୍ଦ୍ଦେଶରେ ଅବସ୍ଥାପିତ ହୋଇ ଦିଲ୍ଲୀ ଅଭିଯାନକୁ ଆହୁରି ମଜବୁତ କରି ବ୍ରିଟିଶ ସରକାର କ୍ଷମତା ହସ୍ତାନ୍ତର କରି ଭାରତ ଛାଡି ଯିବାକୁ ବାଧ୍ୟ ହେବେ ବୋଲି ସମସ୍ତ ଯୋଜନା ପ୍ରସ୍ତୁତ କରିବାର ଲକ୍ଷ୍ୟ ରଖି ବ୍ରିଟିଶ ସରକାରଙ୍କର ଯୁଦ୍ଧ ଉଦ୍ୟମକୁ ସାହାଯ୍ୟ ଦେବା ପାଇଁ କେବଳ ବାହାରକୁ ଦେଖାଇ ମନ୍ତ୍ରିମଣ୍ଡଳମାନ କ୍ଷମତାରେ ରହିବାର ବ୍ୟବସ୍ଥା କରୁଥାଆନ୍ତି । କେତେବେଳେ ନେତାଜୀଙ୍କର ଏ ଆଭିମୁଖ୍ୟ ଧରାପଡିଯିବ ଓ ଏହି ସରକାରମାନେ ବରଖାସ୍ତ ହୋଇ ଧରାପଡିବେ ଓ ଆମେ ସବୁ ଜୀବନର ଆଶା ତ୍ୟାଗ କରିବା ଛଡା ଅନ୍ୟ ଉପାୟ ନଥିବ ବୋଲି ଜାଣି ସୁଦ୍ଧା ଏହି ଉଦ୍ୟମ ସଫଳ ଦିଗରେ ଗୁପ୍ତ ସଂଗଠନ ଚଳାଉଥାଉ ।

ହଠାତ୍ ସୁବାଷ ବାବୁଙ୍କ ଅନ୍ତର୍ଦ୍ଧାନ ଖବର ପ୍ରଚାରିତ ହେବାର ଜାଣି ଆମେ ମୁକୁନ୍ଦ ବାବୁଙ୍କଠାରୁ ସଠିକ ଖବର ନେବା ପାଇଁ ତାଙ୍କ ରହିଥିବା ଲାଲ ମୋହନ ହୋଟେଲକୁ ଯିବାବେଳେ ଦେଖିଲୁ ସେ ରୁମ୍‌ଟି ସିଲ୍ ହୋଇ ପୁଲିସ୍ ଅକ୍ତିଆରରେ ଅଛି । ସେଠାରୁ ଫେରି ଆସି ବିବୁଧେନ୍ଦ୍ର ବାବୁଙ୍କ ଘରେ କାର୍ଯ୍ୟପନ୍ଥା ନିର୍ଣ୍ଣୟ କଲୁ । ଗୁପ୍ତ ଭାବରେ ଆମକୁ କୋଡ ଭାଷାରେ କିଛି ସୂଚନା ମିଳୁଥାଏ । ଭାରତ ଉପକୂଳରେ ପୁରୀ ସମୁଦ୍ର ତଟରେ ଜାପାନୀ ଯୁଦ୍ଧ ଜାହାଜ ଚଳାଚଳର ସମ୍ବାଦ ମିଳୁଥାଏ ଏବଂ ଓଡିଶା

ଉପକୂଳରେ ବୋମା ବର୍ଷଣ ହେବାର ଆଶଙ୍କା ମଧ୍ୟ ଥାଏ । ଆମମାନଙ୍କୁ ଏକ ଗୁପ୍ତ ବ୍ୟାଚ ଦିଆଯାଇଥାଏ ଯେଉଁଥିରୁ ଆମେ ସବୁ ଚିହ୍ନଟ ହୋଇପାରିବୁ । ଏହିପରି ସିକ୍ରେଟ କାର୍ଯ୍ୟକ୍ରମରେ ଆମେ ଗୁପ୍ତ ଭାବରେ କାର୍ଯ୍ୟ କରୁଥିବାବେଳେ; ମିତ୍ରପକ୍ଷ ସୈନ୍ୟବାହିନୀ ସମସ୍ତ ଯୁଦ୍ଧକ୍ଷେତ୍ରରେ ପରାଜୟ ସ୍ୱୀକାର କଲେ ଓ ନାଜି ସୈନ୍ୟ ବାହିନୀ ବ୍ରିଟେନ ଉପରେ ଆକ୍ରମଣ କରି କରଗତ କରିନେବା ପାଇଁ ମଧ୍ୟ ପ୍ରଚାର ଆମ୍ଭମାନଙ୍କୁ ବିଶେଷ ଉତ୍ସାହ ଦେଉଥାଏ । ଏହି ସମୟରେ ନାଜି ସେନା ବ୍ରିଟେନ ଉପରେ ଆକ୍ରମଣ ନକରି ରୁଷ ଉପରେ ଭୀଷଣ ଆକ୍ରମଣ ଚଳାଇ ଲେନିନ୍‌ଗ୍ରାଡ ଆକ୍ରମଣ କରିବା ଯୋଗୁଁ ପ୍ରଚଣ୍ଡ ଯୁଦ୍ଧ ଆରମ୍ଭ ହେଲା । ସେଥିରେ ପ୍ରାୟ ୧୦ ଲକ୍ଷ ରୁଷ୍ ସୈନ୍ୟ ଓ ସାଧାରଣ ଲୋକ, ସ୍ୱେଚ୍ଛାସେବୀ ବାହିନୀ ରୁଷ୍‌କୁ ରକ୍ଷା କରିବା ପାଇଁ ଜୀବନ ଉତ୍ସର୍ଗ କଲେ ବୋଲି ଐତିହାସିକମାନେ କହନ୍ତି । ଦୁର୍ଭାଗ୍ୟବଶତଃ ଏହି ପ୍ରଚଣ୍ଡ ମହାସମରର ଶେଷ ଭାଗକୁ ନାଜି ବାହିନୀ ରୁଷ୍‌ର ପ୍ରତି ଆକ୍ରମଣରେ ପରାଜୟ ସ୍ୱୀକାର କଲେ ୧୯୪୩ ମସିହାରେ । ଠିକ୍ ଏହି ପରାଜୟ ପରେ ନାଜି ବାହିନୀର ନୈତିକତା ଭାଙ୍ଗିଗଲା ଏବଂ ମିତ୍ର ବାହିନୀର ସାହସ ବୃଦ୍ଧି ପାଇ ସେମାନେ ନାଜି ଆକ୍ରମଣ ଆଶଙ୍କାରୁ ମୁକ୍ତ ହେଲେ । ପୃଥିବୀର ସାମରିକ ଇତିହାସରେ ରୁଷ୍‌ବାହିନୀର ସାହସ, ଦେଶ ପ୍ରେମ ଓ ସମରଶକ୍ତି ଅମର ଅକ୍ଷରରେ ଲିପିବଦ୍ଧ ହୋଇ ରହିବ । ମିତ୍ରଶକ୍ତିର ବିଜୟ କେବଳ ଯେ ରୁଷ୍‌ବାସୀଙ୍କ ସାହସ ଓ ଶକ୍ତିର ବିଜୟ ଏଥିରେ ଦ୍ୱିମତ ନାହିଁ ।

ଭାରତରେ ତାର ପ୍ରତିକ୍ରିୟା ପ୍ରକାଶ ପାଇଲା । ମିତ୍ରଶକ୍ତିର କ୍ରମଶଃ ପରାଜୟର ସୂଚନା ମିଳିବା ପରେ ଭାରତବାସୀଙ୍କ ମନରେ ଅସୀମ ଆନନ୍ଦର ଲହରୀ ଖେଳିଯାଇଥାଏ । ଭାରତର ମୁକ୍ତି ସଂଗ୍ରାମ ନିଶ୍ଚିତ ସଫଳତା ହାସଲ କରିବ ବୋଲି ଆତ୍ମବିଶ୍ୱାସରେ ଭାରତବାସୀ ବିହ୍ୱଳ । ଓଡିଶାରେ ଏ ମଧ୍ୟରେ ହଠାତ ଆମ ଅଫିସ୍ ଉପରେ ସିକ୍ରେଟ ପୁଲିସ୍ ଆକ୍ରମଣ କରି ସମସ୍ତ କାଗଜପତ୍ର ଜବତ କରିଲା ରାତି ଅଧରେ । ସମସ୍ତ ପୁରୀବାସୀ ସେତେବେଳେ ନିଦ୍ରାମଗ୍ନ ଓ ସମସ୍ତ ସହର ଅନ୍ଧକାର । କ'ଣ ଘଟୁଛି କେହି ଜାଣିବାର ଅବକାଶ ନାହିଁ । ବିବୁଧେନ୍ଦ୍ର, ସୂରଜମଲ ଗିରଫ ହେଲେ ବୋଲି ରାତି ଅର୍ଦ୍ଧରେ ମତେ ଖବର ମିଳିଲା ଜଣେ ସ୍ତ୍ରୀ ଲୋକଠାରୁ । ମୁଁ ହଠାତ ଉଠି ଭବିଷ୍ୟତକୁ କ'ଣ ହେବ କିଛି ନ ବିଚାରି ସେଇ ଅନ୍ଧକାର ରାତ୍ରରେ ମୁଣ୍ଡ ଉପରେ ଖଣ୍ଡିଏ ଚାଦର ଦେଇ ଦୌଡିଲି ଗଳିକନ୍ଦି ଦେଇ ପୁରୀ ରେଳ ଷ୍ଟେସନକୁ, ତାଳଚେର ଗାଡି ଧରି ଭୁବନେଶ୍ୱର ଅଭିମୁଖେ ଯିବାପାଇଁ । ପୁଲିସ୍ ଜାଣିପାରିଲା ନାହିଁ । ମତେ ଗିରଫ କରିବାକୁ ଆସିଲା ବେଳେ ମୁଁ ନ ଥିବା ଜାଣି ସେମାନେ ମଧ୍ୟ ଭୁବନେଶ୍ୱରରେ ମତେ ଗିରଫ କରିବା ପାଇଁ ଭୁବନେଶ୍ୱର ଆସିଲା ବେଳକୁ ମୁଁ ମିଳିତ

ମନ୍ତ୍ରୀମାନଙ୍କ କର୍ଣ୍ଣଧାର ପଣ୍ଡିତ ଗୋଦାବରୀଶଙ୍କ ଘରେ ଆଶ୍ରୟ ନେଇସାରିଛି । ଦିବାକର ପଟ୍ଟନାୟକ ମଧ୍ୟ ପୁଲିସ୍ ଗିରଫରୁ ରକ୍ଷା ପାଇବା ପାଇଁ ସେଇ କୋଠାରେ । ଯଦୁମଣି ମଙ୍ଗରାଜ ମଧ୍ୟ ସେଠାରେ ଅଛନ୍ତି । କିନ୍ତୁ ସେ ସ୍ୱାଧୀନ ଜନସଂଘର ବିଧାୟକ ଥିବାରୁ ଏବଂ ଏହି ଦଳଟି ବ୍ରିଟିଶ ଶକ୍ତିକୁ ଯୁଦ୍ଧରେ ସହାୟତା କରୁଥିବାରୁ ଗିରଫର ଆଶଙ୍କା ନଥାଏ । ପଣ୍ଡିତ ଗୋଦାବରୀଶ ମତେ ରକ୍ଷା କରିବା ପାଇଁ ମୁଁ ନିଜକୁ ଗୁପ୍ତ ଭାବରେ ତାଙ୍କୁ ଖବର ଦେଉଛି ବୋଲି କହି ମତେ ଗିରଫ କରାଇ ଦେଲେ ନାହିଁ । ସେତବେଳକୁ ମୋର ପିତା ଅତ୍ୟନ୍ତ ବୃଦ୍ଧ, ୮୦ ବର୍ଷ ଟପିଥାଏ । ମୋର ୨ଟି କନ୍ୟା ହୋଇଥାଆନ୍ତି । ଘରର ଆର୍ଥିକ ଅବସ୍ଥା ଅତ୍ୟନ୍ତ ଦୟନୀୟ । ମୁଁ ଗିରଫ ହୋଇଗଲେ ନନାଙ୍କ ମୃତ୍ୟୁ ଅବଶ୍ୟମ୍ଭାବୀ ଏବଂ ପିଲାମାନେ ଖାଇବାକୁ ପାଇବେ ନାହିଁ ଏ କଥା ଜାଣି ସୁଦ୍ଧା, ମୁଁ ଏପରି ଅବସ୍ଥାରେ ଗିରଫ ହେବା ଉଚିତ ହେବ ନାହିଁ, ପୁଣି ଯେତେବେଳେ ମିତ୍ରଶକ୍ତିଙ୍କର ବିଜୟ ସମ୍ଭାବନା ଉଜ୍ଜ୍ୱଳ ହୋଇ ଆସୁଛି ଏବଂ ଭାରତର ସ୍ୱାଧୀନତା ପୁଣି ଅନିଶ୍ଚିତ ଆଶଙ୍କାରେ ଆସି ଭାରତବାସୀଙ୍କ ମନକୁ ଆଶଙ୍କାରେ ଭରିଦେଲାଣି ଏହି ପରିସ୍ଥିତିରେ ମୁଁ ପ୍ରାୟ ୬ ମାସ ଆତ୍ମଗୋପନ କରି ଗୋଦାବରୀଶ ବାବୁଙ୍କ ଘରେ ରହିଲି । ଏ ମଧ୍ୟରେ ମିତ୍ରଶକ୍ତିଙ୍କ ବିଜୟ ଘଟିଲା । ନାଜି ସୈନ୍ୟ ସଂପୂର୍ଣ୍ଣ ପରାହତ ହେଲେ । ହିଟଲରଙ୍କ ମୃତ୍ୟୁ ଘଟିଲା, ନାଜି କମାଣ୍ଡର କାରାରୁଦ୍ଧ ହେଲେ ।

କିନ୍ତୁ ପରେ ପରେ ଚର୍ଚ୍ଚିଲ ସରକାରଙ୍କ ଇସ୍ତଫା ଫଳରେ ବ୍ରିଟେନରେ ସାନି ନିର୍ବାଚନ ହେଲା । ସେଥିରେ ଚର୍ଚ୍ଚିଲଙ୍କ ଜାଠ ଦଳ ହାରିଗଲେ ଓ ଲେବର ପାର୍ଟି ସରକାର ଗଢ଼ି ଆଟଲୀଙ୍କ ନେତୃତ୍ୱରେ ଏକ ନୂତନ ମନ୍ତ୍ରିମଣ୍ଡଳ ଗଢାଯାଇ ଭାରତ ସହିତ କ୍ଷମତା ହସ୍ତାନ୍ତର ପାଇଁ ନାନା ସୂତ୍ର ଉଦ୍‌ଭାବନ କରି ସାର୍ ଲରେନ୍ସ ଭାରତ ଆସିଲେ । ତାଙ୍କର ମିଶନ ଫଳପ୍ରଦ ନହେବାରୁ କ୍ରିପ୍‌ସ୍ ନେତୃତ୍ୱରେ ଆଉ ଗୋଟିଏ ମିଶନ ଭାରତୀୟ ଜାତୀୟ କଂଗ୍ରେସ ସହିତ ଆଲୋଚନା କଲେ । ଫଳସ୍ୱରୂପ ମୁସ୍‌ଲିମ୍ ଲିଗ୍ ସହିତ ଏକ ଅସ୍ଥାୟୀ ମିଳିତ ମନ୍ତ୍ରିମଣ୍ଡଳ ପଣ୍ଡିତ ନେହେରୁଙ୍କ ନେତୃତ୍ୱରେ ଅଧିଷ୍ଠିତ ହେଲେ ମଧ୍ୟ ଚାରି ପାଞ୍ଚ ମାସ ମଧ୍ୟରେ ଭାଙ୍ଗିଗଲା । ଜିନ୍ନା ଓ ମୁସ୍‌ଲିମ୍ ଲିଗ୍ କୌଣସି ମତେ ସ୍ୱତନ୍ତ୍ର ସ୍ୱାଧୀନ ପାକିସ୍ତାନ ଛଡ଼ା ଅନ୍ୟ କୌଣସି ପ୍ରସ୍ତାବରେ ସ୍ୱୀକୃତ ହେଲେ ନାହିଁ । ହିନ୍ଦୁ ମୁସଲମାନଙ୍କ ଭିତରେ ହତ୍ୟାର ବିଭୀଷିକା ଭାରତବର୍ଷକୁ ଏକ ଯୁଦ୍ଧ ଭୂମିରେ ପରିଣତ କଲା । ଶେଷକୁ ଗାନ୍ଧିଜୀଙ୍କ ଆମରଣ ଅନଶନ କଲିକତାରେ ସମଗ୍ର ଭାରତବାସୀଙ୍କୁ ଆତଙ୍କିତ କଲେ ମଧ୍ୟ ଜିନ୍ନା ଓ ମୁସ୍‌ଲିମ୍ ଲିଗ୍ ସେଥିପ୍ରତି ଭ୍ରୁକ୍ଷେପ କଲେ ନାହିଁ । ଗାନ୍ଧିଜୀଙ୍କ ନୂଆଖାଲି ଯାତ୍ରାରେ ବହୁ ସଂଖ୍ୟାରେ ମୁସଲମାନ ଓ ହିନ୍ଦୁ ଯୋଗ ଦେଇ ଆଉ ସଂଘର୍ଷ କରିବେ ନାହିଁ ବୋଲି

ପ୍ରତିଶ୍ରୁତି ଦେଲେ ମଧ୍ୟ ସଂଘର୍ଷର ଅବସାନ ନ ଘଟିବାରୁ ବ୍ରିଟିଶ ସରକାର ଶେଷରେ ଲର୍ଡ ମାଉଣ୍ଟବ୍ୟାଟେନଙ୍କୁ ଅସୀମ କ୍ଷମତା ଦେଇ ଭାରତ ଓ ପାକିସ୍ତାନ ଦୁଇ ଭାଗରେ ବିଭକ୍ତ ହେବାର ବାଟ ଖୋଲି ଦେବାର ସୂଚନା ଦେଲେ । ମହାତ୍ମା ଗାନ୍ଧୀଙ୍କ ଅନିଚ୍ଛା ସତ୍ତ୍ୱେ କଂଗ୍ରେସ ମୌଲାନା ଆଜାଦଙ୍କ ନେତୃତ୍ୱରେ କାର୍ଯ୍ୟକାରୀ କମିଟିରେ ଏହି ପ୍ରସ୍ତାବ ଗ୍ରହଣ କରି ଅଗଷ୍ଟ ୧୪ ତାରିଖ ୧୯୪୭ ମସିହା ସୁଦ୍ଧା କ୍ଷମତା ହସ୍ତାନ୍ତର ପାଇଁ ଚୂଡାନ୍ତ ନିଷ୍ପତ୍ତି ନେଲେ । ସମସ୍ତ ରାଜବନ୍ଦୀ ଖଲାସ ହେଲେ । ନଚେତ କୁନି(ବିବୁଧେନ୍ଦ୍ର ମିଶ୍ର) ଓ ସ୍ୱରାଜ (ସୂରଜମଲ ସାହା) ରାଜବନ୍ଦୀଭାବେ ରାଜଦ୍ରୋହ ଅପରାଧରେ ମୃତ୍ୟୁ ବା ଦ୍ୱୀପାନ୍ତର ଜେଲବରଣ କରିଥାଆନ୍ତେ । ଏହିପରି ଅବସ୍ଥାରେ ଆମେ ସବୁ ପୁଣି ଏକାଠି ହୋଇ ରାଜ୍ୟ ରାଜନୀତିରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିବା ପାଇଁ ସଂକଳ୍ପବଦ୍ଧ ହେଲୁ ।

ମୋର ପଣ୍ଡିତ ଗୋଦାବରୀଶଙ୍କ ଘରେ ଆତ୍ମଗୋପନରେ ରହିବାର ପ୍ରାୟ ଦୁଇ ମାସ ଭିତରେ ଖବର ପାଇଲି ଯେ ମୋର ସାନଭାଇ ଶ୍ରୀମାନ ଚନ୍ଦ୍ରଶେଖର ବ୍ରହ୍ମପୁର ଜେଲ୍‌ରେ ଅତି ସାଂଘାତିକ ରୋଗରେ ଆକ୍ରାନ୍ତ ହୋଇ ବ୍ରହ୍ମପୁର ସହର ମୁଖ୍ୟ ଚିକିତ୍ସାଳୟରେ ଚିକିତ୍ସିତ ହେଉଛନ୍ତି । ସେ ମୋ ସହିତ ଦେଖା କରିବା ପାଇଁ ବିଶେଷ ଇଚ୍ଛୁକ । ସେତେବେଳକୁ ମୋ ବିରୁଦ୍ଧରେ ଗିରଫ ପରୱାନା ୱାପସ କରା ଯାଇନଥାଏ । ଖବର ମିଳୁଥାଏ ଯେ ବ୍ରହ୍ମପୁର ଜେଲ୍‌ରେ ବିବୁଧେନ୍ଦ୍ର ଓ ସୂରଜମଲଙ୍କ ବିରୁଦ୍ଧରେ ରାଜଦ୍ରୋହ ଅଭିଯୋଗ ପତ୍ର ତିଆରି ଚାଲିଛି । ମୁଁ ବ୍ରହ୍ମପୁର ଗଲେ ନିଶ୍ଚିତ ଗିରଫ ହେବି ଏବଂ ଖବର ଦେବାକୁ ବି ଲୋକ ମିଳିବା ସମ୍ଭବପର ହେବନି । ତା ସତ୍ତ୍ୱେ ମୁଁ ବ୍ରହ୍ମପୁର ଟ୍ରେନରେ ଯାଇ ସନ୍ଧ୍ୟାବେଳେ ମୋର ଜନୈକ ବନ୍ଧୁ ଶ୍ରୀ ଦୀନବନ୍ଧୁ ମହାପାତ୍ର, ବ୍ରହ୍ମପୁର ତହସିଲଦାରଙ୍କ ଘରେ ତାଙ୍କୁ ଦେଖା କରି ବ୍ରହ୍ମପୁର ଚିକିତ୍ସାଳୟରେ ଚନ୍ଦ୍ର ସହିତ ସାକ୍ଷାତ ପାଇଁ ସାହାଯ୍ୟ କରିବା ପାଇଁ ଅନୁରୋଧ କରିବାରେ ସେ ତାଙ୍କର ଅକ୍ଷମତା ପ୍ରକାଶ କଲେ । 'ଚନ୍ଦ୍ର ଜଣେ ରାଜବନ୍ଦୀ । ବର୍ତ୍ତମାନ ସମଗ୍ର ଦେଶ ଏକ ଜରୁରୀକାଳୀନ ପରିସ୍ଥିତି ଭିତରେ ଗତି କରୁଛି । ଭାରତଛାଡ ଆନ୍ଦୋଳନରେ ବିନା ବିଚାରରେ ବନ୍ଦୀ ଥିବା ରାଜନୈତିକ ଲୋକଙ୍କ ସହିତ ସାକ୍ଷାତ କରିବା ଉପରେ ବହୁତ କଟକଣା ଅଛି । ପୁରୀ ଜିଲ୍ଲାପାଳ ଜଣେ ବ୍ରିଟିଶ ନାଗରିକ । ତାଙ୍କଠାରୁ ଲିଖିତ ଅନୁମତି ନ ମିଳିଲେ ସାକ୍ଷାତ କରିବା ସମ୍ଭବ ନୁହେଁ । ଏଥିପାଇଁ ସେ ଦୁଃସାହସ କରିବାର ଶକ୍ତି ମୋର ନାହିଁ ।' ତାଠାରୁ ଏପରି ଉତ୍ତର ମୁଁ ଆଶା କରିନଥିଲି । କାରଣ ଆମେ ପାଟଣାରେ ଏମ.ଏ. ଅର୍ଥନୀତିରେ ଛାତ୍ର ଥିଲୁ, ଏକ ଛାତ୍ରାବାସରେ ରହୁଥିଲୁ ଓ ଅତ୍ୟନ୍ତ ବ୍ୟକ୍ତିଗତ ସଂପର୍କ ଥିଲା । ସାମାଜିକ ଅବସ୍ଥାରେ ସେ ମଧ୍ୟ ମୋର ସଂପର୍କୀୟ ଥିଲେ । ମୁଁ ସେଥିପାଇଁ ସାହସ କରି ଅନୁରୋଧ କଲି

ମତେ ମୁଖ୍ୟ ଚିକିତ୍ସକ ସହିତ ଚିହ୍ନା କରାଇଦେଲେ ମୁଁ ନିଜେ ସାକ୍ଷାତର ବ୍ୟବସ୍ଥା କରିବି । ସେ ରାଜି ହୋଇ ମୁଖ୍ୟ ଚିକିତ୍ସକ ଜଣେ ବଂଗୀୟ ଡାକ୍ତରଙ୍କୁ ଟେଲିଫୋନ କରି ମତେ ତାଙ୍କ ସହିତ କଥା ହେବାର ସୁଯୋଗ ଦେଲେ । ମୁଁ ତାଙ୍କୁ ସମସ୍ତ କଥା କହିବାରେ ସେ କହିଲେ ଜିଲ୍ଲାପାଳଙ୍କଠାରୁ ଲିଖିତ ଅନୁମତି ପତ୍ର ତାଙ୍କ ନିକଟକୁ ନ ଆଣିବା ପର୍ଯ୍ୟନ୍ତ ସାକ୍ଷାତ କରି କଥା ହେବା ସମ୍ଭବପର ହେବ ନାହିଁ । ବହୁ ଅନୁନୟ ବିନୟରେ କହିବା ପରେ ସେ ଚନ୍ଦ୍ର ରହୁଥିବା କ୍ୟାବିନ ଦୁଆର ପାଖେ ଛିଡା ହୋଇ କେବଳ ଦେଖିବା ପାଇଁ ରାଜି ହେଲେ । ମୁଁ ଦେଖା କରି ଚିକିତ୍ସା କରୁଥିବା ଡାକ୍ତରଙ୍କଠାରୁ ଯାହା ବୁଝିଲି ତାର ଅବସ୍ଥା ଅତ୍ୟନ୍ତ ଗୁରୁତର ଓ ତତ୍କ୍ଷଣରେ ଏକ ଅପରେସନ ଆବଶ୍ୟକ ଯାହାକି ବ୍ରହ୍ମପୁରରେ ନହୋଇ କଟକ ନେବାକୁ ହେବ । ସେମାନେ କେବଳ ଔଷଧ ଦେବା ଛଡା ଅନ୍ୟ କିଛି କରିପାରିବେ ନାହିଁ । ଜିଲ୍ଲାପାଳଙ୍କୁ ଅନୁରୋଧ କରି କଟକ ନେବାର ବ୍ୟବସ୍ଥା କରିବା ପାଇଁ ସେ ପରାମର୍ଶ ଦେଲେ । ସେତେବେଳକୁ ରାତ୍ର ପ୍ରାୟ ୧୦ଟା ହେଲାଣି । ଜିଲ୍ଲାପାଳ ଛତ୍ରପୁରଠାରେ ରହନ୍ତି । ରାତ୍ରରେ ସାକ୍ଷାତ କରିବାର ପ୍ରଶ୍ନ ନାହିଁ । ଯାହା ହେଉ ତା ପରଦିନ ସକାଳ ୮ଟା ସୁଦ୍ଧା ଛତ୍ରପୁର ଜିଲ୍ଲାପାଳଙ୍କ ବାସଭବନଠାରେ ଜିଲ୍ଲାପାଳଙ୍କ ସାକ୍ଷାତ ପାଇଁ ଅପେକ୍ଷା କରି ଠିଆ ହୋଇଥାଏ । ମୋର ଅଳ୍ପ ଦାଢି ହୋଇଥାଏ । ଗାଧୁଆ ପାଧୁଆ ନହୋଇ ମୁଁ ମଧ୍ୟ ଅସୁସ୍ଥ ପରି ଦେଖାଯାଉଥାଏ । ମନ ଭିତରେ ଆଶଙ୍କା ଥାଏ ଯଦି ମୋ ନାମ ସେ ଜାଣିଥିବ ମତେ ସଂଗେ ସଂଗେ ଗିରଫ କରିବା ପାଇଁ ନିର୍ଦ୍ଦେଶ ଦେବ ଓ ବ୍ରହ୍ମପୁର ଜେଲ୍‌କୁ ଗଲେ ଚନ୍ଦ୍ର ସହିତ ସାକ୍ଷାତ ଓ ଚିକିତ୍ସା ବ୍ୟବସ୍ଥା କରିବାର ମୋର ଉଦ୍ୟମ ସଂପୂର୍ଣ୍ଣ ବିଫଳ ହେବ । ଏପରି ଆଶଙ୍କାରେ ଅପେକ୍ଷା କଲାବେଳେ ଜିଲ୍ଲାପାଳ ତଳକୁ ଆସି ମତେ ଦେଖି ପ୍ରଶ୍ନ କଲେ ଇଂରାଜୀରେ ମୋର ପରିଚୟ ଓ ଆସିବାର ଉଦ୍ଦେଶ୍ୟ ନେଇ । ମୁଁ ସଂଗେ ସଂଗେ ଇଂରାଜୀରେ ଉତ୍ତର ଦେଲି "My distress has brought me to seek your assistance to save the life of a brother whose condition is reported to be serious at the City Hospital, Berhampur. I seek your permission just to see him at this critical stage." ସେ ମହାଶୟ କେବଳ ଗୋଟିଏ ପ୍ରଶ୍ନ କଲେ ମୋର ଚନ୍ଦ୍ର ସହିତ କି ସଂପର୍କ । ମୁଁ ତତ୍‌କ୍ଷଣାତ ଉତ୍ତର ଦେଲି "Chandra is my younger brother. My father is over eighty, unable to move out on account of being mentally unstable; that compelled me to run to your place to seek your benign consent." ଜିଲ୍ଲାପାଳଙ୍କ ନାମ ହଠାତ ମନେ ପଡୁ ନାହିଁ । ପ୍ରାୟ ୩୦/୩୨ ବର୍ଷର ଯୁବକ ମୋ ଇଂରାଜୀ ଉତ୍ତର ଓ ମୋର ମନର ଭାବ ଦେଖି ତତ୍‌କ୍ଷଣାତ ମୁଖ୍ୟ ଚିକିତ୍ସକଙ୍କୁ ଫୋନରେ ନିର୍ଦ୍ଦେଶ ଦେଲେ "Detenue Chandra

Sekhar Mohapatra permitted to see his elder brother, who has come from Bhubaneswar." ତାଙ୍କୁ ଏଣେ ନିର୍ଦ୍ଦେଶ ଦେଇ ମତେ କହିଲେ ସଂଗେ ସଂଗେ ବ୍ରହ୍ମପୁର ଯାଇ ଚନ୍ଦ୍ର ସହିତ ସାକ୍ଷାତ କରିବା ପାଇଁ । ମୁଁ ବ୍ରହ୍ମପୁର ସିଟି ହସ୍ପିଟାଲରେ ପହଞ୍ଚିଲାବେଳକୁ ମୁଖ୍ୟ ଚିକିତ୍ସକ ଉପସ୍ଥିତ ଥାଆନ୍ତି ନିର୍ଦ୍ଦେଶ କ୍ରମେ ସମସ୍ତ ସହଯୋଗ କରିବା ପାଇଁ । ମତେ ଦେଖି ସେ କହି ଉଠିଲେ 'ଆପଣ ବଡ ସାହସୀ ମୁଁ ଦେଖୁଛି । ମୁଁ ପ୍ରସ୍ତୁତ ହେବା ପୂର୍ବରୁ ଜିଲ୍ଲାପାଳଙ୍କଠାରୁ ମତେ ନିର୍ଦ୍ଦେଶ ଆସିଛି ଆପଣ ପହଞ୍ଚିଲା ପରେ ଭାଇଙ୍କ ସହିତ ସାକ୍ଷାତ କରାଇ ଦେବା ପାଇଁ । 'ମୁଁ କହି ଉଠିଲି, ଏ ଜାତି ସେଥିପାଇଁ ୧୫୦ ବର୍ଷ ହେବ ସମଗ୍ର ଭାରତବର୍ଷକୁ ଶାସନ କବଳରେ ରଖିଛି । ଆମେ ସରକାରୀ ସ୍ତରରେ ଥାଇ ମଧ୍ୟ ନିଜର ନୈତିକତା, ବିଚାର ବୁଦ୍ଧି ହରାଇ ଅତ୍ୟନ୍ତ ହୀନମନ୍ୟତାର ଶିକାର ହୋଇପଡିଛୁ । ମୁଁ ଏତିକି କହି ଚନ୍ଦ୍ର ସହିତ ସାକ୍ଷାତ ଆଲୋଚନା କଲି ମୁଖ୍ୟ ଚିକିତ୍ସିକଙ୍କ ସାମ୍ନାରେ ଏବଂ ସେ ତୁରନ୍ତ ଜଣେ ବିଶ୍ୱସ୍ତ ତହିଆ କର୍ମଚାରୀ ଭାବରେ ତାଙ୍କ ସହକର୍ମୀ ଚିକିତ୍ସକଙ୍କ ସହିତ ସବୁ ପ୍ରକାର ବ୍ୟବସ୍ଥା କରିବାରେ ତ୍ରୁଟି କଲେ ନାହିଁ । ଯାହା ଫଳରେ ଏକ ସପ୍ତାହ ଭିତରେ ସେ ସୁସ୍ଥ ହୋଇ ଜେଲ୍‌କୁ ଫେରିଗଲେ । ମୋର ମଧ୍ୟ ଗିରଫ ହେବା ଆଶଙ୍କା ଦୂର ହେଲା । ଏସବୁ ଘଟିଲା ୧୯୪୩ ମସିହା ମାର୍ଚ୍ଚ ବା ଏପ୍ରିଲ ମାସରେ । ମୁଁ ଭୁବନେଶ୍ୱର ଫେରିବାର ପରଦିନ ପଣ୍ଡିତ ଗୋଦାବରୀଶଙ୍କ ସହିତ ସାକ୍ଷାତ କରିବା ପାଇଁ ଆସିବା ବେଳେ ଦେଖିଲି ତାଙ୍କ ଅଫିସ୍‌ରେ ତତ୍‌କାଳୀନ ମୁଖ୍ୟ ସଚିବ ମିଃ ମ୍ୟାକଡୋନାଲ୍ଡ କେତେକ ଫାଇଲ ଧରି ଆଲୋଚନା କରୁଛନ୍ତି । ପଣ୍ଡିତଜୀଙ୍କ ଘର ଅଫିସରେ ୩ ଫୁଟ x ୨ ଫୁଟର ଖଣ୍ଡିଏ କାଠର ଟେବୁଲ, ସାଧା ଚଉକିଟିଏ ଏବଂ ଆଉ କିଛି ଆସବାବ ପତ୍ର ନାହିଁ । ଚିଫ୍ ସେକ୍ରେଟାରୀ ମଧ୍ୟ ଫାଇଲ କାମ କରାଇବାବେଳେ ବସିବା ପାଇଁ ଚୌକି ନଥାଏ । ଯଦୁମଣି ମଙ୍ଗରାଜ ତଳେ ଥାଆନ୍ତି । ମାକଡୋନାଲ୍ଡଙ୍କୁ ଦେଖି ସେ ତଳ ମହଲାର ଗୋଟିଏ ରୁମ୍‌ରେ ଲୁଙ୍ଗିଟିଏ ପିନ୍ଧି ବସି ମତେ କହିଲେ, ଦେଖ ଗଙ୍ଗାଧର, ଗୋଦାବରୀଶ କେବଳ ଏହି ସାହେବମାନଙ୍କୁ ଶିକ୍ଷା ଦେବାକୁ ଏବଂ ସେମାନେ ମନ୍ତ୍ରୀଙ୍କ ଅଧୀନସ୍ଥ ବୋଲି ତାଙ୍କ ମନରେ ସବଅର୍ଡିନେଟ ବୋଲି ଧାରଣା ସୃଷ୍ଟି କରିବା ପାଇଁ ଏପରି ବ୍ୟବସ୍ଥା କରିଛନ୍ତି । ମୁଁ ତାହା ଯୁକ୍ତିଯୁକ୍ତ ବୋଲି ବିବେଚନା କରିନପାରି ଉତ୍ତର ଦେଲି 'ଭାରତୀୟ ସଂସ୍କୃତିରେ ଯେଉଁ ଲୋକ ଘରକୁ ଆସେ ଦେଖା କରିବା ପାଇଁ ବା ନିର୍ଦ୍ଦେଶ କ୍ରମେ ତାକୁ ଦେଖା ଦେବା ଓ ଆଲୋଚନା କଲାବେଳେ ଅତିଥିର ମର୍ଯ୍ୟାଦା ଦେବା ଆବଶ୍ୟକ । କାରଣ ଅତିଥିଙ୍କୁ ଦେବତାର ସମ୍ମାନ ଦେବା ଆମ ସଂସ୍କୃତିର ପରମ୍ପରା । ଚୌକି ନ ଦେବା ବା କାମ କରିବାର ସୁବିଧା ନ ଦେଲେ ପଣ୍ଡିତଜୀ ଉଚିତ କାର୍ଯ୍ୟ କରୁଛନ୍ତି ବୋଲି ମୋର ମନେ ହେଉ

ନାହିଁ ।' ଏତିକି କଥା ହେବା ସମୟରେ ଚିଫ୍ ସେକ୍ରେଟାରୀ ତାଙ୍କ ଫାଇଲ କାମ ସାରି ଗୋଦାବରୀଶଙ୍କ ସହିତ ହାତ ମିଳାଉଥିବାର ମୁଁ ଦେଖିବାକୁ ପାଇଲି ଏବଂ ସଙ୍ଗେ ସଙ୍ଗେ ପଣ୍ଡିତଜୀଙ୍କୁ ମୋର ପ୍ରଣାମ ଜଣାଇ ବ୍ରହ୍ମପୁର ଖବର ଦେଇ ଆସିବି ବୋଲି ତାଙ୍କ ଅଫିସକୁ ଯିବା ସମୟରେ ସେ ମତେ ଦେଖି ହସିଲେ ଓ ତୁମ ଗିରଫ ପରୱାନା କେତେଦୂର କାର୍ଯ୍ୟକାରୀ ହେଲା ବୋଲି ରହସ୍ୟ କରି ପଚାରିଲେ । ମୁଁ ସଙ୍ଗେ ସଙ୍ଗେ ଉତ୍ତର ଦେଲି, 'ମୁଁ ଆପଣଙ୍କ ଘରେ ଦେଢ଼ ମାସ ରହିଲିଣି । ୱାରେଣ୍ଟ ନ ଉଠିବା ଫଳରେ ମୋର ସବୁ କାର୍ଯ୍ୟ ବନ୍ଦ ହୋଇଯାଇଛି । ଯଦି ଯୁଦ୍ଧ ଉଦ୍ୟମକୁ ସଫଳ କରିବା ପାଇଁ ଆପଣ ମନ୍ତ୍ରିମଣ୍ଡଳ ଗଢ଼ି ମୋ ବିରୁଦ୍ଧ ୱାରେଣ୍ଟ ନ ଉଠିଲା ତେବେ ମୁଁ ଆତ୍ମସମର୍ପଣ କରିବା ଅଧିକ ଶ୍ରେୟସ୍କର ହେବ ।' ତା ପରଦିନ ମୁଁ ଖବର ପାଇଲି ମୋ ବିରୁଦ୍ଧରେ ଗିରଫ ପରୱାନା ପ୍ରତ୍ୟାହାର କରି ନିଆଯାଇଛି ।

କ୍ଷମତା ହସ୍ତାନ୍ତର ସଂପର୍କରେ ଆଲୋଚନା ଚାଲିବା ପୂର୍ବରୁ ସବୁ ଅଟକବନ୍ଦୀଙ୍କୁ ଖଲାସ କରି ଦିଆଯାଇଥିଲା । ବିବୁଧେନ୍ଦ୍ର ଓ ସୂରଜ ମଲ ମଧ୍ୟ ତା ସହିତ ବ୍ରହ୍ମପୁର ଜେଲ୍‌ରୁ ଖଲାସ ହେଲେ, ୧୯୪୫ ମସିହା ଏପ୍ରିଲ ସୁଦ୍ଧା । କିନ୍ତୁ ୧୯୪୧ ମସିହାରେ ସୁବାଷ ବାବୁ ଭାରତର ସୀମାରୁ ଖସି ଚାଲିଗଲାପରେ ଭାରତୀୟ ବନ୍ଦୀ ସୈନିକମାନଙ୍କୁ ଖଲାସ କରାଇ, ଭାରତୀୟ ସେନାବାହିନୀ ନାମରେ ଏକ ବିରାଟ ଜାତୀୟ ସେନାବାହିନୀ ଗଠନ କରି ଭାରତ ଉପରେ ଆକ୍ରମଣ କରିବାରେ ବ୍ରିଟିଶ ସରକାରଙ୍କ ସମସ୍ତ ଶକ୍ତି ଭାରତବର୍ଷରେ ପ୍ରୟୋଗ ହେଲା । ମିତ୍ରବାହିନୀ ଦୁର୍ବଳ ହୋଇ ଜର୍ମାନ ବାହିନୀର ଅଭିଯାନ ସଫଳ ହେବ ବୋଲି ନାଜି ବାହିନୀର ମୁଖ୍ୟ ଓ ଜର୍ମାନୀର ନାଜି ଦଳର ମୁଖ୍ୟଙ୍କୁ ସୁବାଷ ବାବୁ ବୁଝାଇବାକୁ ସଫଳ ହେବା ପରେ ଏହି ଜାତୀୟ ସେନାବାହିନୀକୁ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ କରାଇ ତା'ର ସର୍ବୋଚ୍ଚ କମାଣ୍ଡର ଭାବରେ ସୁବାଷବାବୁ ଭାରତ ଚଲୋ ଅଭିଯାନ ପ୍ରକୃତ ପକ୍ଷେ ସମଗ୍ର ପୃଥିବୀକୁ ସ୍ତମ୍ଭିତ କରିଥିଲା । ସେହି ବିରାଟ ସେନାବାହିନୀ ବିନା ଦରମାରେ ଭାରତମାତାର ମୁକ୍ତି ପାଇଁ ଜୀବନ ଉତ୍ସର୍ଗ କରିବା ସକାଶେ ସୁବାଷ ବାବୁ ତାଙ୍କ ମନରେ ଏପରି ଉନ୍ମାଦନା ସୃଷ୍ଟି କରିଥିଲେ ଯେ, ସୁବାଷ ବାବୁଙ୍କୁ ସେମାନେ ନେତାଜୀ ବୋଲି ସମ୍ବୋଧନ କରି ତାଙ୍କ ନିର୍ଦ୍ଦେଶକୁ କାର୍ଯ୍ୟକାରୀ କରିବା ପାଇଁ ଦିଲ୍ଲୀ ଅଭିଯାନ କରି ଭାରତକୁ ସ୍ୱାଧୀନ କରିବା ପାଇଁ ଓ ଦିଲ୍ଲୀରେ ନେତାଜୀଙ୍କ ନେତୃତ୍ୱରେ ଏକ ଜାତୀୟ ସରକାର ପ୍ରତିଷ୍ଠା କରିବା ସକାଶେ ସମସ୍ତ ଜୀବନ ଉତ୍ସର୍ଗ କରିବା ପାଇଁ ସଂକଳ୍ପବଦ୍ଧ ହୋଇଥିଲେ । ନେତାଜୀଙ୍କ ନେତୃତ୍ୱରେ ଜାତୀୟ ସେନାବାହିନୀର ଏ ପ୍ରକାର ଅଭିନବ ଅଭିଯାନ ଭାରତ ଛାଡ ଆନ୍ଦୋଳନକୁ ବହୁ ପରିମାଣରେ ଶକ୍ତି ଯୋଗାଇଥିଲା । କିନ୍ତୁ ସେତେବେଳେ ଏକ ମର୍ମନ୍ତୁଦ ଉଡାଜାହାଜ ଦୁର୍ଘଟଣାରେ ନେତାଜୀଙ୍କ ବିୟୋଗ

ଘଟିଲା ବୋଲି ସମ୍ବାଦ ସମସ୍ତ ପୃଥିବୀକୁ ସ୍ତମ୍ଭୀଭୂତ କରିଦେଇଥିଲା । ସେତେବେଳକୁ ଦିଲ୍ଲୀ ଚଲୋ ଅଭିଯାନ ଆରମ୍ଭ ହୋଇଥାଏ । ସୈନ୍ୟବାହିନୀ ନେତାଜୀଙ୍କ ପରେ ମଧ୍ୟ ଯେଉଁ ସାହସ, ବୀରତ୍ୱର ସହିତ ଜୀବନ ଉତ୍ସର୍ଗ କରି ବ୍ରହ୍ମଦେଶ ଦେଇ ଘୋର ବଣ ଜଙ୍ଗଲ ଭିତରେ ସୈନ୍ୟବାହିନୀର ଦେଶପ୍ରୀତି ଓ ଜୀବନ ଉତ୍ସର୍ଗର ଆଦର୍ଶ ଦେଖାଇ ଭାରତୀୟ ସୀମା ଟପି କୋହିମାଠାରେ ପହଞ୍ଚିଲେ ତାହା ପୃଥିବୀର ସେନା ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ଏହି ବିରଳ ନେତୃତ୍ୱ, ସେନାର ସାହସ ଓ ବୀରତ୍ୱ ଭାରତରେ ଏକ ବିଦ୍ରୋହର ପ୍ରେରଣା ସୃଷ୍ଟି କରିଥିଲା ଭାରତୀୟ ଜଳବାହିନୀ ଉପରେ । ଫଳରେ ବମ୍ବେଠାରେ ଆରମ୍ଭ ହେଲା ଭାରତୀୟ ନାଭିର ଅସହଯୋଗ ଆନ୍ଦୋଳନ ଓ ବିଦ୍ରୋହ । ନାଭିର ବିଦ୍ରୋହ, ଭାରତ ଛାଡ ଆନ୍ଦୋଳନର ଦେଶବ୍ୟାପୀ ପ୍ରଭାବ, ଲକ୍ଷାଧିକ ଭାରତୀୟଙ୍କ ଜେଲବରଣ, ବ୍ରିଟିଶ ପୁଲିସ୍‌ର ନିର୍ମମ ଅତ୍ୟାଚାରକୁ ଭ୍ରୂକ୍ଷେପ ନକରି ଦେଶର ମୁକ୍ତି ସଂଗ୍ରାମକୁ ସଂପୂର୍ଣ୍ଣ ସଫଳ କରାଇ କ୍ଷମତା ହସ୍ତାନ୍ତର ପାଇଁ ବ୍ରିଟିଶ ସରକାରଙ୍କୁ ବାଧ୍ୟ କରାଇଥିଲା । ଭାରତୀୟ ନାଭିର ବିଦ୍ରୋହ ଓ ଜାତୀୟ ସେନାବାହିନୀର ଆକ୍ରମଣ ଫଳରେ ଭାରତୀୟ ସୈନ୍ୟବାହିନୀ ସମଗ୍ର ଦେଶରେ ବିଦ୍ରୋହ କରିବେ ବୋଲି ବ୍ରିଟିଶ ସରକାରର ଧାରଣା ସୃଷ୍ଟି ହୋଇଥିଲା । ଏ ଧାରଣା ସୃଷ୍ଟି ହେବାର ପ୍ରଧାନ କାରଣ ଥିଲା ଭାରତୀୟ ସେନାବାହିନୀର ବୀରତ୍ୱ, ସାହସ ଓ ଦେଶପ୍ରେମ । ପୃଥିବୀର ଇତିହାସରେ ତାର ତୁଳନା ନାହିଁ । ଅତ୍ୟନ୍ତ ଦୁଃଖ ଓ ପରିତାପର ବିଷୟ ଭାରତ ସେନାବାହିନୀର ଯେଉଁ ନେତାମାନେ ଗିରଫ ହୋଇଥିଲେ ଓ ପଣ୍ଡିତ ନେହେରୁ ଯେଉଁମାନଙ୍କ ପାଇଁ ବିଚାରାଳୟରେ ଗାଉନ ପକାଇ ଓକିଲ ଭାବରେ କୋର୍ଟରେ ସେମାନଙ୍କ ମୁକ୍ତି ପାଇଁ ଲଢି ସ୍ୱାଧୀନ ଭାରତର ପ୍ରଥମାବସ୍ଥାରେ ଏକ ଅପୂର୍ବ ସାହସିକ ପରମ୍ପରା ସୃଷ୍ଟି କରିଥିଲେ ସେମାନଙ୍କୁ ସ୍ୱାଧୀନତା ପରେ ଯେପରି ସମ୍ମାନ ଦେବାର କଥା ତାହା ସମ୍ଭବପର ହେଲା ନାହିଁ । ଆଜି ମଧ୍ୟ ସେମାନଙ୍କ ଭିତରେ ଅନେକ ଅଛନ୍ତି ଯେଉଁମାନେ ବଞ୍ଚିବା ପାଇଁ ସଂଗ୍ରାମ କରୁଛନ୍ତି । ଏପରିକି ବହୁ ସ୍ୱାଧୀନତା ସଂଗ୍ରାମୀ ଯେଉଁମାନଙ୍କୁ ଜେଲ୍‌ରେ ସ୍ଥାନାଭାବ ଯୋଗୁଁ ଗିରଫ କରାଗଲା ନାହିଁ, କିନ୍ତୁ ସେମାନେ ଭାରତ ଛାଡ ଆନ୍ଦୋଳନରେ ଯୋଗ ଦେଇ ବହୁ ତ୍ୟାଗ କରିଥିଲେ ସେମାନଙ୍କୁ ଅଣବନ୍ଦୀ ଆଖ୍ୟା ଦେଇ ସଚିବାଳୟର କିରାନୀମାନେ ମଧ୍ୟ ନୋଟ ଦେଇଛନ୍ତି ଯେ ସେମାନଙ୍କର ଭାରତ ଛାଡ ଆନ୍ଦୋଳନରେ କିଛି ଅବଦାନ ନଥିବା ଯୋଗୁଁ ତାଙ୍କୁ ସ୍ୱାଧୀନତା ସଂଗ୍ରାମୀ ସମ୍ମାନ ପେନସନ ମିଳିବାର କୌଣସି ଯଥାର୍ଥତା ନାହିଁ । ଆଜି ଶହ ଶହ ସଂଖ୍ୟାରେ ସେମାନେ ଦୁଃଖ ଓ ଦାରିଦ୍ର୍ୟର କଷାଘାତରେ ବୃଦ୍ଧାବସ୍ଥାରେ ଜୀବନ କଟାଉଛନ୍ତି ଏବଂ ତାଙ୍କୁ କେହି ପଚାରୁନାହାନ୍ତି । ମନ୍ତ୍ରୀଙ୍କ ଦୁଆରେ ଅନଶନ

ସତ୍ୟାଗ୍ରହ, ଅନୁନୟ ବିନୟ କରି ବହୁତ ସତ୍ୟାଗ୍ରହୀଙ୍କର ମୃତ୍ୟୁ ଘଟିଲାଣି । ଅନେକ ମଧ୍ୟ ମୃତ୍ୟୁ ଅପେକ୍ଷାରେ ଦୟନୀୟ ଭାବରେ ଜୀବନ କଟାଉଛନ୍ତି । ଏହା କେବଳ ଭାରତ ପରି ଦେଶରେ ଘଟୁଛି । ବିଶେଷ କରି ଓଡିଶାରେ ସମ୍ଭବପର ହେଉଛି । ଅନ୍ୟ ସମସ୍ତ ରାଜ୍ୟରେ ଏପରି ଅଣବନ୍ଦୀଙ୍କୁ କେନ୍ଦ୍ର ସରକାର ପେନସନ ଦେବାକୁ ରାଜ୍ୟସରକାରମାନେ ସୁପାରିଶ କରି କେନ୍ଦ୍ର ଉପରେ ଚାପ ଦେଇ ସେମାନଙ୍କ ପାଇଁ ପେନସନ୍ ବ୍ୟବସ୍ଥା କଲାବେଳେ ଓଡିଶା ରାଜ୍ୟ ସରକାର ବର୍ଷ ବର୍ଷ ଧରି ପେନସନ ପାଉଥିବା ସଂଗ୍ରାମୀମାନଙ୍କର ପେନସନ୍ କାଟି ଦେଇ ତାଙ୍କ ଜୀବନ ବିପନ୍ନ କରୁଛନ୍ତି । ଏମାନେ ନିଜ ଜୀବନରେ କୌଣସି ତ୍ୟାଗ ନକରି ଏପରିକି ବ୍ରିଟିଶ ସରକାରଙ୍କ ପଦଲେହନ କରୁଥିବା ତତ୍କାଳୀନ ସରକାରୀ କର୍ମଚାରୀମାନଙ୍କ ପୁତ୍ର ସନ୍ତାନମାନେ କୌଣସି ମତେ ସରକାରୀ କିରାନୀ ପଦ ପାଇବାରେ ସଫଳ ହେଲେ । ଯେଉଁମାନେ ସ୍ୱାଧୀନତା ପାଇଁ ପାଠପଢା ଛାଡି; ଭବିଷ୍ୟତକୁ ଜଳାଞ୍ଜଳୀ ଦେଇ କୌଣସି ନା କୌଣସି କାରଣରୁ ଜେଲ୍ ଯାଇପାରିଲେ ନାହିଁ; ସେମାନେ ବର୍ତ୍ତମାନର ଏହି ଅଣ କଂଗ୍ରେସୀ ସରକାରଙ୍କ ଦାୟିତ୍ୱରେ ଥିବା ସ୍ୱାଧୀନତା ସଂଗ୍ରାମର ଧାର ଧାରିନଥିବା ମନ୍ତ୍ରୀମାନଙ୍କ ପ୍ରତିହିଂସାପରାୟଣତାର ଶିକାର ହୋଇ ଯୁବକାବସ୍ଥାରେ ଯେଉଁ ତ୍ୟାଗ କରିଥିଲେ ସେଥିପାଇଁ ବର୍ତ୍ତମାନ ଦୁଃଖ ପାଉଛନ୍ତି । ବିଧାତାର ଏହାହିଁ ବରାଦ । ଆଜି ରାଜ୍ୟର ରାଜସ୍ୱ ଯେପରି ଭାବରେ ଭ୍ରଷ୍ଟାଚାରୀ ଶାସକ ଦଳକୁ ଉନ୍ନତ କରୁଛି ସେଇମାନଙ୍କ ବିଚାରଶକ୍ତି ଓ ଦେଶପ୍ରାଣତା ଅଭାବରୁ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଉଥିବା ସଂଗ୍ରାମୀମାନଙ୍କୁ ବନ୍ଦୀ ଓ ଅଣବନ୍ଦୀ ଶ୍ରେଣୀଭୁକ୍ତ କରି, ସେମାନେ ସରକାରଙ୍କୁ ପ୍ରତାରଣା କରୁଛନ୍ତି ବୋଲି ଅଯଥା ଭିତ୍ତିହୀନ ଅଭିଯୋଗ କରୁଛନ୍ତି । ଏହା ହିଁ ଦୁର୍ଭାଗ୍ୟ । ସେ ଯାହା ହେଉ ନେତାଜୀ ସୁବାଷ ବୋଷଙ୍କ ଭାରତ ତ୍ୟାଗର ଅଦ୍ୱିତୀୟ ସାହସ, ନାଜି ସୈନ୍ୟବାହିନୀର ନେତୃତ୍ୱରେ ଭାରତର ସେନା ବାହିନୀ ଗଠନ କରାଇବାରେ ଜର୍ମାନୀ, ଜାପାନ, ସିଙ୍ଗାପୁର ଓ ଇଉରୋପର ବିଭିନ୍ନ ସ୍ଥାନରେ ଜାତୀୟ ବାହିନୀ ଗଠନ କରି ସେମାନଙ୍କୁ, ଭାରତୀୟ ସ୍ୱାଧୀନତା ଆନ୍ଦୋଳନ ପାଇଁ ଏବଂ ସେନାବାହିନୀ ଦେଶପ୍ରେମର ଚରମ ସୀମାକୁ ଯାଇ ଜୀବନ ଉତ୍ସର୍ଗ କରିବା ପାଇଁ ପ୍ରେରଣା ଦେବା ଓ ଜାତୀୟ ବାହିନୀର ଭାରତୀୟ ସୀମାରେ ପହଞ୍ଚି ଭାରତୀୟ ଜାତୀୟ ପତାକା ଉତ୍ତୋଳନ କରିବାର ଦୁର୍ବାର ସାହସ ଓ ଠିକ୍ ସେହି ସମୟରେ ଭାରତୀୟ ନୌ ବାହିନୀର ବିଦ୍ରୋହ, ଭାରତୀୟ ମୁକ୍ତି ସଂଗ୍ରାମକୁ ଯେ ତ୍ୱରାନ୍ୱିତ କରିଥିଲା ଏଥିରେ ସନ୍ଦେହର ଅବକାଶ ନାହିଁ । କିନ୍ତୁ ଦୁଃଖର କଥା ଭାରତ ସ୍ୱାଧୀନ ହେବାର ପଚାଶ ବର୍ଷ ପରେ ଭାରତ ସରକାର ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ପାଳନ ଅବସରରେ ନେତାଜୀ ସୁବାଷଙ୍କୁ ଭାରତରତ୍ନ ଉପାଧି ଦେଇ ମହାତ୍ମାଗାନ୍ଧୀ, ପଣ୍ଡିତ

ନେହେରୁଙ୍କ ସହିତ ନେତାଜୀଙ୍କ ପ୍ରତିକୃତିକୁ ସେଣ୍ଟ୍ରାଲ ହଲ୍‌ରେ ସ୍ୱତନ୍ତ୍ର ଉତ୍ସବରେ ସଂବର୍ଦ୍ଧିତ ଓ ସମ୍ମାନୀତ କରିଥିଲେ ଏବଂ ତାଙ୍କ ଧର୍ମପତ୍ନୀ ଓ କନ୍ୟାଙ୍କୁ ସମ୍ମାନୀତ କରିବା ପାଇଁ ନିମନ୍ତ୍ରଣ ମଧ୍ୟ ଦେଇଥିଲେ । ନେତାଜୀ ସୁବାଷ ବୋଷ ଭାରତର ନୂତନ ଅଭିଯାନ ଆରମ୍ଭ ଅବସରରେ ତାଙ୍କ ସେବାରତ ଏକ ସ୍ୱିଜରଲ୍ୟାଣ୍ଡର ମହିଳାଙ୍କୁ ବିବାହ କରିଥିଲେ ଓ ସେଠାରେ ତାଙ୍କର ଏକ କନ୍ୟା ସନ୍ତାନ ଜନ୍ମ ହେଇଥିଲା । ଆଜି ନେତାଜୀ ଭାରତରେ ନୁହେଁ ସମଗ୍ର ପୃଥିବୀରେ ଏକ ଅଦ୍ୱିତୀୟ ସାହସୀ, ଦେଶଭକ୍ତ ଓ ସ୍ୱାଧୀନତା ସଂଗ୍ରାମର ଶ୍ରେଷ୍ଠ ନାୟକ ଭାବରେ ସମ୍ମାନୀତ ହେଉଛନ୍ତି । ଏପରିକି ମହାତ୍ମା ଗାନ୍ଧୀ ଓ ନେତାଜୀ ଉଭୟଙ୍କୁ ମହାନ ନେତା ଭାବେ ସମ୍ମାନ ଦିଆଯାଉଛି । ଏହି ମହାନ ନେତାଙ୍କ ସହିତ ନିକଟରୁ ସାକ୍ଷାତ ଆଲୋଚନା ଓ ତାଙ୍କୁ ନେଇ ଓଡିଶାରେ ତାଙ୍କ ଗସ୍ତରେ ଛାତ୍ରନେତା ଭାବେ ସାମିଲ ହେବାର ସୁଯୋଗ ମିଳିଥିବାରୁ ତାଙ୍କ ଆଦର୍ଶରେ ମୁଁ ନିଜକୁ ପରବର୍ତ୍ତୀ ଅବସ୍ଥାରେ ଓଡିଶାରେ ସାଧାରଣ ଜୀବନରେ ନିଜକୁ ପ୍ରତିଷ୍ଠିତ କରିବାର ଯେଉଁ ସୁଯୋଗର ଅଧିକାରୀ ହୋଇଛି, ସେଥିପାଇଁ ସମଗ୍ର ଦେଶବାସୀଙ୍କ ସହିତ ତାଙ୍କର ଅମର ଆତ୍ମା ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳୀ ଦେବା ସହିତ ମୋର ବିନମ୍ର ଆନୁଗତ୍ୟ ଜଣାଉଛି । ତାଙ୍କ ପରି ରାଜନୈତିକ ନେତା, ଦେଶପ୍ରେମୀ, ସାହସୀ, ବୀର ଦେଶସେବକ ପୁଣି ଜନ୍ମ ହେବେ କି ନାହିଁ ଭବିଷ୍ୟତ କହିବ । ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସ ଲେଖିବା ପାଇଁ ଏ ପୁସ୍ତକରେ ମୁଁ ସାହସ କରିନାହିଁ । କେବଳ ମୋର ବ୍ୟକ୍ତିଗତ ଅନୁଭୂତିର ସ୍ମୃତିଚାରଣ କରି ମୁଁ ଛାତ୍ରାବସ୍ଥାରୁ ଯେଉଁ ଅନୁଭୂତି ନେଇ ଜୀବନ ସଂଗ୍ରାମ କରିଛି ତାର ସାମାନ୍ୟ କିଛି ଅବତାରଣା ନକଲେ ମୋର ସଂଗ୍ରାମର କାହାଣୀ ଅପୂର୍ଣ୍ଣ ରହିଯିବ । ସେଥିପାଇଁ ସେହି ସଂଗ୍ରାମର କିଛି ବିବରଣୀ ଦେବା ପାଇଁ ଏ ସବୁ ଅବତାରଣ କରିବାର ସୁଯୋଗ ପାଇଲି । ଏଥିପାଇଁ ବନ୍ଧୁ ପାଠକମାନେ ମୋର ଧୃଷ୍ଟତା କ୍ଷମା କରିବେ । ମୁଁ ଦେଶସେବୀ ଓ ନାୟକ ବା ଅଧିନାୟକ ହେବାର ଇଚ୍ଛା ରଖିନଥିଲି କି ବର୍ତ୍ତମାନ ବି ନାହିଁ । ଜଣେ ସମ୍ବଳହୀନ ପରିବାରରୁ ଜୀବନ ଆରମ୍ଭ କରି ବହୁ ଆହ୍ୱାନର ମୁକାବିଲା କରିବାରେ ଦ୍ୱିଧା କରିନାହିଁ ଏବଂ ଏକ ସଫଳ ପାରିବାରିକ ଜୀବନ ସହିତ ଦେଶର ସାଧାରଣ ଜୀବନକୁ ସମୃଦ୍ଧ କରିବାରେ ନିଜର ଉଦ୍ୟମ ଅବ୍ୟାହତ ରଖିବି ବୋଲି ମୋର ଆଶା ।

ମୁଁ ଆଗରୁ ସୂଚନା ଦେଇଛି ଫରୱାର୍ଡ ବ୍ଲକ ଦଳର ଜନ୍ମର ଆବଶ୍ୟକତା ସୁବାଷ ବାବୁ କିପରି କଳ୍ପନା କଲେ ଏବଂ ସାରା ଭାରତବର୍ଷରେ ପ୍ରାୟ ପ୍ରତ୍ୟେକ ରାଜ୍ୟରେ ପ୍ରାନ୍ତୀୟ ଶାଖା ମଧ୍ୟ ପ୍ରତିଷ୍ଠା କରିପାରିଥିଲେ ।

ନେତାଜୀଙ୍କ ଫରୱାର୍ଡ ବ୍ଲକ୍ ଗାନ୍ଧିଜୀଙ୍କ ନେତୃତ୍ୱରେ 'ଭାରତକୁ କ୍ଷମତା ହସ୍ତାନ୍ତର କର ନଚେତ ଭାରତଛାଡ' ଡାକରାକୁ ପୂର୍ଣ୍ଣ ସମର୍ଥନ ଦେଉଥାଆନ୍ତି । ତାର ମୁଖ୍ୟ କାରଣ ହେଲା ଭାରତରେ ବ୍ରିଟିଶ ଶକ୍ତି ଯଦି ଭାରତବାସୀଙ୍କ ଉପରେ ଆକ୍ରମଣ କରି ଭାରତ ଛାଡ ଆନ୍ଦୋଳନକୁ ଦବାଇବାରେ ତାଙ୍କ ଶକ୍ତି ପ୍ରୟୋଗ କରନ୍ତି ତେବେ ଯୁଦ୍ଧ ଉଦ୍ୟମରେ ବ୍ରିଟିଶ ସରକାର ଦୁର୍ବଳ ହେବେ ଏବଂ ମିତ୍ରଶକ୍ତିର ବଳ ଭାଙ୍ଗିଯିବ ଏବଂ ନାଜି ସୈନ୍ୟଙ୍କ ସମର୍ଥନ ଓ ହିଟଲରଙ୍କ ସହଯୋଗରେ ଭାରତୀୟ ସୈନ୍ୟବାହିନୀ ପୂର୍ବ ସୀମାରେ ଭାରତରେ ପ୍ରବେଶ କଲାପରେ ଆସାମ, ବଙ୍ଗଦେଶ, ଓଡିଶା ସରକାରମାନେ ତାଙ୍କୁ ସମ୍ବର୍ଦ୍ଧନା ଜଣାଇ ତାଙ୍କ ଅଭିଯାନକୁ ଆହୁରି ତୀବ୍ରତର କରିବାରେ ସହାୟକ ହେବେ । ଏହି ଉଦ୍ଦେଶ୍ୟ ନେଇ ଏକ ଛଳନାତ୍ମକ ଉଦ୍ଦେଶ୍ୟକୁ ଚରିତାର୍ଥ କରିବା ପାଇଁ, ଆସାମ, ପଶ୍ଚିମବଙ୍ଗ ଓ ଓଡିଶାରେ ତାଙ୍କ ସୈନ୍ୟବାହିନୀକୁ ସମ୍ବର୍ଦ୍ଧନା ଜଣାଇବା ଓ ସହଯୋଗ କରି ତାଙ୍କ ଅଭିଯାନକୁ ସଫଳତା ଆଣିବାରେ ସହାୟକ ହେବା ପାଇଁ ମିଳିତ ସରକାର ଗଠନ କରିବାର ପ୍ରୟାସ କରୁଥାନ୍ତି ଫରୱାର୍ଡ ବ୍ଲକ୍ ସହାୟତାରେ । ପଣ୍ଡିତ ନୀଳକଣ୍ଠ ଏହି ସୁଯୋଗ ଅପେକ୍ଷାରେ ଥିଲେ । ସେ ପଣ୍ଡିତ ଗୋଦାବରୀଶ, ପାରଳା ଗଜପତି ମହାରାଜା ସହାୟତାରେ ଏକ ମିଳିତ ମନ୍ତ୍ରିମଣ୍ଡଳ ଗଠନ କରି ବ୍ରିଟିଶ ଯୁଦ୍ଧ ଉଦ୍ୟମରେ ସହାୟକ ବୋଲି ବାହାନା କରି ଏକ ମିଳିତ ସରକାର ଗଠନର ଉଦ୍ୟମ କଲେ । ସେତେବେଳେ ନେତାଜୀ ସୁବାଷ ବୋଷଙ୍କ ବିଶ୍ୱସ୍ତ ପ୍ରାଇଭେଟ୍ ସେକ୍ରେଟାରୀ ମୁକୁନ୍ଦ ଲାଲ ସରକାର ପୁରୀ ସମୁଦ୍ର କୂଳରେ ଗୋଟିଏ ଛୋଟ ଚାଳ ଘରେ ଲାଲ ମୋହନ ଦା ହୋଟେଲରେ କ୍ଷୁଦ୍ର କୁଡିଆରେ ଅବସ୍ଥାନ କରୁଥାଆନ୍ତି । ମୁଁ ବିବୁଧେନ୍ଦ୍ର, ସୁରଜ ପ୍ରଭୃତି ସବୁଦିନ ତାଙ୍କ ପାଖକୁ ଯାଉ । ସେ ଆମ ସହିତ ରାଜନୈତିକ ପରିସ୍ଥିତି ସଂପର୍କରେ ଆଲୋଚନା କରି ଚରମ ତ୍ୟାଗ ପାଇଁ ପ୍ରସ୍ତୁତ ରହିବାକୁ ସୂଚନା ଦେଉଥାଆନ୍ତି । ଦିନେ ହଠାତ୍ କହିଲେ 'ଆଜି ଜଣେ କଲିକତା ଯିବ ଖଣ୍ଡିଏ ଚିଠି ନେଇ, କଲେଜ ଷ୍ଟ୍ରୀଟ୍‌ରେ ଅବସ୍ଥିତ ଏକ ଦୋତାଲା ଘର ଉପର ମହଲାର ଗୋଟିଏ ରୁମ୍‌ରେ ଗୋଟିଏ ଟେବୁଲ୍ ଓ ୪ଟି ଚୌକି ଥିବା ଜଣେ ଲୋକ ସେଠାରେ ଅପେକ୍ଷା କରୁଥିବ । ଚିଠିଟି ଦେଇ ଫେରି ଆସିବ । ତାଙ୍କ ସହିତ କୌଣସି କଥା ହେବାର ଆବଶ୍ୟକତା ନାହିଁ । ଯଦି କୌଣସି ସ୍ଥାନରେ ପୁଲିସ୍ ଫଲୋ କରୁଛି ବୋଲି ବିଶ୍ୱାସ କରିବ, ଚିଠିଟି ପାଟିରେ ଭର୍ତ୍ତି କରି ଗିଳିଦେବ ।' ଏପରି କହି କଲିକତା ଯିବା ଆସିବା ଭଡା ପାଇଁ କିଛି ଟଙ୍କା ଦେଲେ । ଆମ ଭିତରେ ଆଲୋଚନା କରି ବଳରାମ ମହାନ୍ତି କଲିକତା ଯିବାର ସ୍ଥିର ହେଲା । ତାଙ୍କୁ ମଧ୍ୟ ସେହିପରି ସତର୍କ ବାଣୀ ମୁକୁନ୍ଦ ଲାଲ ସରକାର ଶୁଣାଇ ଦେଇ ଚିଠିଟି ଦେଲେ ଓ ତା ପରଦିନ ଫେରି ଆସିବା ପାଇଁ ନିର୍ଦ୍ଦେଶ ଦେଲେ । ବଳରାମ ମହାନ୍ତି

କଲିକତା ଗଲେ ସେଇଦିନ ପୁରୀ ଏକ୍ସପ୍ରେସ୍‌ରେ । ଡିସେମ୍ବର ମାସ, ବୋଧହୁଏ ବଡ଼ଦିନ ଛୁଟି ଥାଏ । ବଳରାମ ବାବୁ କଲିକତାରେ ଟ୍ରେନ ଯୋଗେ ପହଞ୍ଚି, ପଚାରି ପଚାରି କଲେଜ ଷ୍ଟ୍ରୀଟ୍‌ରେ ପହଞ୍ଚି ମୁକୁନ୍ଦ ଲାଲ ବାବୁ ଯେଉଁ ବିବରଣୀ ଦେଇଥିଲେ ଠିକ୍ ସେଇ ବିବରଣୀ ଦେଖି ସେଇ ଅପେକ୍ଷାରତ ଲୋକକୁ ଚିଠିଟି ଦେଇ ସଂଗେ ସଂଗେ ଫେରି ପୁନର୍ବାର ସନ୍ଧ୍ୟାରେ ହାଉଡା ଷ୍ଟେସନରେ ପୁରୀ ଏକ୍ସପ୍ରେସ୍ ଧରି ଫେରିବା ପାଇଁ ପ୍ରସ୍ତୁତ ହେଉଥିବା ସମୟରେ କୌଣସି ପୁଲିସ୍ ତାଙ୍କ ପିଛା କରୁଥିବାର ସନ୍ଧାନ ପାଇ ହ୍ୱିଲର ବହି ଦୋକାନରେ ଯାହା ରେଳଭଡା ପାଇଁ ପାଖରେ ଥିଲା ସେଥିରେ କିଛି ବହି ଖରିଦ କରି ପଡିବାବସ୍ଥାରେ ସେ ପୁଲିସ୍ ଫେରିଯିବା ଦେଖି ବିନା ଟିକେଟରେ କୌଣସି ପ୍ରକାର ଗାଡିରେ ବସି ପରଦିନ ଭୋରରୁ କଟକ ଷ୍ଟେସନରେ ଓହ୍ଲାଇ ପଡିଲେ । ରେଳବାଇ ଇନିସପେକ୍ଟରଙ୍କ ଧରିବା ଭୟରେ ମୁଁ, ସୂରଜ ଓ ବିଭୁଧେନ୍ଦ୍ର ଯାଇଥାଉ ପୁରୀ ଷ୍ଟେସନକୁ । ବଳରାମ ନ ଆସିବା ଦେଖି ଆମ ମନରେ ଅଧିକ ଆଶଙ୍କା ଜାଗ୍ରତ ହେଲା । ଆମେ ମଧ୍ୟ ମନେ କଲୁ ହୁଏତ ସେ କଟକରେ ଭୟ କରି ଭୋରରୁ ଟ୍ରେନରୁ ଓହ୍ଲାଇ ଅପରାହ୍ନରେ ପାସେଞ୍ଜର ଟ୍ରେନ୍‌ରେ ଆସିବ ।

ସେଇ ଆଶଙ୍କାରେ ଫେରି ୪ଟା ବେଳକୁ ୬ ଅପ୍ ପାସେଞ୍ଜର ଟ୍ରେନ ଅପେକ୍ଷାରେ ରହିଲୁ । ଅପରାହ୍ନରେ ଆମେ ୩ ଜଣ ୩ଟି ପ୍ଲାଟ୍‌ଫର୍ମ ଟିକେଟ, ବଳରାମ ବାବୁଙ୍କ ପାଇଁ ଆଉ ଗୋଟିଏ ଏପରି ୪ଟି ପ୍ଲାଟଫର୍ମ ଟିକେଟ ଧରି ଷ୍ଟେସନକୁ ଗଲୁ । କିଛି ସମୟ ପରେ ବଳରାମ ଗୋଟିଏ ୩ୟ ଶ୍ରେଣୀ ଡବାରୁ ଓହ୍ଲାଇ ଆମର ସମସ୍ତ ଆଶଙ୍କା ଦୂର କରି କିପରି ପୁଲିସ୍ ଫଲୋ କଲା ଓ କିପରି ପଇସା ସରିଯିବାରୁ ସେ ବିନା ଟିକେଟରେ ଟ୍ରେନ୍‌ରେ ବସି କଟକ ଷ୍ଟେସନରେ ଓହ୍ଲାଇ ପାସେଞ୍ଜରରେ ବିନା ଟିକେଟରେ ଆସି ପୁରୀରେ ପହଞ୍ଚିଲେ ସମସ୍ତ କଥା କହିଲେ । ଆମେ ତାଙ୍କ ପାଇଁ ଆଣିଥିବା ପ୍ଲାଟଫର୍ମ ଟିକେଟ୍‌ଟି ଦେଇ ବିନା କୌଣସି ବାଧାରେ ଟିକେଟ କଲେକ୍ଟରକୁ ଦେଖାଇ ଫେରି ମୁକୁନ୍ଦଲାଲ ବାବୁଙ୍କୁ ଦେଖା କରି ସମସ୍ତ କଥା କହିଲୁ ଓ ସେ ସେଥିରେ ସନ୍ତୋଷ ପ୍ରକାଶ କଲେ । ଦୁଇ ତିନି ଦିନ ପରେ ଆମକୁ ପ୍ରସ୍ତୁତ ରହିବା ପାଇଁ ସଂକେତ ଦେଲେ ଓ କହିଲେ ଦୁଇ ତିନି ଦିନରେ ଏକ ଘଟଣା ସମଗ୍ର ବିଶ୍ୱକୁ ଚମକାଇଦେବ ସେଥିରେ ଭୟ କରିବ ନାହିଁ । ହୁଏତ ପୁଲିସ୍ ତୁମ ସମସ୍ତଙ୍କୁ ଗିରଫ କରି ବହୁତ ଅତ୍ୟାଚାର କରିବ, ସହିବା ପାଇଁ ପ୍ରସ୍ତୁତ ରହିବ । ଆଉ କିଛି କହିଲେ ନାହିଁ । ସେଇଦିନ ବୋଧହୁଏ ଡିସେମ୍ବର ୩୦ ତାରିଖ ହେବ, ହଠାତ୍ କାହାକୁ କିଛି ନ କହି ପୁରୀ ଛାଡି କେଉଁଆଡେ ଚାଲିଗଲେ ।

ମୋ ବିରୁଦ୍ଧରେ ପଣ୍ଡିତ ଗୋଦାବରୀଶଙ୍କ ଉଦ୍ୟମରେ ଗିରଫ ପରୱାନା ଉଠାଇ ନେବା ପରେ ପରେ ମୁଁ ୧୯୪୧ ମସିହାରେ ଆଇନ ବ୍ୟବସାୟ ଆରମ୍ଭ କରିବା ପାଇଁ

ପାଉଥିବା ଲାଇସେନ୍ସ ବଳରେ ଆଇନ ବ୍ୟବସାୟ ୧୯୪୫ ମସିହା ଜାନୁଆରୀ ମାସରେ ପୁରୀରେ ଆରମ୍ଭ କଲି । ମୋର ଶ୍ୱଶୁର ଚୌଧୁରୀ ରାଧାଶ୍ୟାମ ଦାଶ, ସେତେବେଳକୁ ମୋ ପାଇଁ ସୁଆର ସାହିରେ ଯେଉଁ ଜାଗାଟି କିଣି ଦେଇଥିଲେ ତାକୁ ମରାମତି କରି ମଝିରେ ଗୋଟିଏ ବଖରା ପକ୍କା ଘର ଶୋଇବା ପାଇଁ କରି ଚାଳ ଘରେ ଅଫିସ୍‌ର ସୁବିଧା କରି ଦେଇଥାଆନ୍ତି । ତାଙ୍କ ସାନ ଭାଇ ଚୌଧୁରୀ ଗଙ୍ଗାଧର ଦାଶ ଯାହାଙ୍କ କନ୍ୟାକୁ ମୁଁ ବିବାହ କରିଥାଏ ସେ ମତେ ପ୍ରଶ୍ନ କଲେ ଆଇନ ବ୍ୟବସାୟ ଆରମ୍ଭ ଦିନ କିପରି ଚଳିବ ? ରୋଜଗାରତ ନାହିଁ । ମୁଁ ଉତ୍ତର ଦେଲି ‘ମୋର ୩୦୦ ଟଙ୍କାର ବହି ଆବଶ୍ୟକ । ଖଣ୍ଡିଏ ଦେୱାନୀ କାର୍ଯ୍ୟବିଧି ଆଇନ, ଖଣ୍ଡିଏ ଫୌଜଦାରୀ କାର୍ଯ୍ୟବିଧି ଆଇନ ଓ ଆଉ ଖଣ୍ଡିଏ ପ୍ରମାଣ ଆଇନ (ଏଭିଡେନ୍ସ ଆକ୍ଟ) ତା ସହିତ ମାସକୁ ଟ ୨୦ (ମୋର ବାହାର ଖର୍ଚ୍ଚ ପାଇଁ) ଏକ ବର୍ଷ ସକାଶେ ।’ ମୋର ଦୃଢ ବିଶ୍ୱାସ ଥାଏ ମୁଁ ଗୋଟିଏ ବର୍ଷରେ ନିଜ ଗୋଡରେ ଠିଆ ହେବାର ଅବସ୍ଥା ହୋଇଯିବ । ସେହି ଆତ୍ମବିଶ୍ୱାସ ବଳରେ ତାଙ୍କୁ କହିଲି ଏହି ପୁସ୍ତକ ପାଇଁ ଓ ଏକ ବର୍ଷ ପାଇଁ ସାମାନ୍ୟ କିଛି ଆର୍ଥିକ ସହାୟତାର ବ୍ୟବସ୍ଥା କରିଦେବା ସକାଶେ । ସେତେବେଳେ ଚୌଧୁରୀ ଗଙ୍ଗାଧର ଦାଶ ଓଡିଶାରେ ଭିଙ୍ଗାରପୁର ଷ୍ଟେଟର ସବୁଠାରୁ ବଡ ଜମିଦାର । ବହୁତ ସୁନାମ ଥାଏ ଅତି ଉଚ୍ଚକୋଟୀର ମଣିଷ ଭାବରେ । ଏପରି ସ୍ନେହୀ ଓ ପରୋପକାରୀ, ଦାନବୀର ଭାବେ ତାଙ୍କର ଖ୍ୟାତି ବିଶେଷ କରି ପୁରୀ ଓ କଟକ ଜିଲ୍ଲାରେ ସବୁ ବଡ ଭୂମି ମାଲିକଙ୍କ ମଧ୍ୟରେ ଅନ୍ୟତମ ବୋଲି ସମସ୍ତେ ସମ୍ମାନ ଜଣାଉଥିଲେ । ତାଙ୍କର ୪ କନ୍ୟା ଓ ୩ ପୁଅ ଥିଲେ । ତୃତୀୟା କନ୍ୟା ଶ୍ରୀମତି ରୁକ୍ମିଣୀ ଦେବୀଙ୍କୁ ତାଙ୍କର ବଡ ଭାଇ ଚୌଧୁରୀ ରାଧାଶ୍ୟାମ ଦାଶଙ୍କୁ ପୋଷ୍ୟା କନ୍ୟା ରୂପେ ଲାଳନ ପାଳନ କରିବା ପାଇଁ ଜନ୍ମ ହେବାର ଅଳ୍ପ ଦିନ ପରେ ଦେଇଥିଲେ । ଚୌଧୁରୀ ରାଧାଶ୍ୟାମ ଦାଶଙ୍କର କୌଣସି ସନ୍ତାନ ସନ୍ତତି ନଥିଲା ସେଥିପାଇଁ ମୁଁ ନିଜ ଜନ୍ମିତ ଶ୍ୱଶୁର ଚୌଧୁରୀ ଗଙ୍ଗାଧର ଦାଶ ଓ ତାଙ୍କ ବଡଭାଇ ଚୌଧୁରୀ ରାଧାଶ୍ୟାମ ଦାଶ ଉଭୟଙ୍କର ସ୍ନେହ, ଶ୍ରଦ୍ଧା ଓ ଜାମାତାର ସୁଯୋଗ ପାଉଥିଲି । ଚୌଧୁରୀ ଗଙ୍ଗାଧର ଦାଶ, ଜମିଦାର ନିର୍ବାଚନ ମଣ୍ଡଳୀରୁ ବିହାର ଓଡିଶା କାଉନସିଲକୁ ପ୍ରାର୍ଥୀ ହୋଇଥିବାବେଳେ ତାଙ୍କର ନିର୍ବାଚନର ସଫଳତା ପାଇଁ କାର୍ଯ୍ୟ କରୁଥାଏ । ପୁରୀରେ ନୂଆ ହୋଇ ଓକିଲାତି କରୁଥିବାରୁ ମୋର ସିନିଅର ରାଏ ବାହାଦୂର ଲୋକନାଥ ମିଶ୍ର ଯେ କି ଜଣେ ପ୍ରବୀଣ ଆଇନଜୀବୀ ଭାବରେ ୨୧ ବର୍ଷ ସରକାରୀ ଓକିଲ ଭାବରେ କାର୍ଯ୍ୟ କରି ସମ୍ମାନୀତ ବ୍ୟକ୍ତି ଭାବେ ପ୍ରତିଷ୍ଠା ଲାଭ କରିଥାଆନ୍ତି, ସେ ମଧ୍ୟ ବିହାର ଓଡିଶା ଲେଜିସ୍ଲେଟିଭ କାଉନସିଲ୍‌କୁ ଜମିଦାର ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇ ଓଡିଶା ପ୍ରଦେଶ ୧୯୩୬ ଏପ୍ରିଲ ୧ ତାରିଖରେ ଜନ୍ମ ଲାଭ କଲାପରେ, ବିଧାନସଭା

ନିର୍ବାଚନ ପୂର୍ବରୁ ଓଡିଶା ଆଡଭାଇଜରି କାଉନସିଲ୍‌ରେ ମଧ୍ୟ ସଭ୍ୟ ଥିଲେ । ସେ ମୋ ଶଶୁର ଚୌଧୁରୀ ରାଧାଶ୍ୟାମ ଦାଶଙ୍କ ସହ କଲିକତା ପ୍ରେସିଡେନ୍ସି କଲେଜରେ ସହପାଠୀ ଥିଲେ । ପୁରୀ ଜିଲ୍ଲାର ଜମିଦାର ଭାବେ ପ୍ରଚୁର ପ୍ରତିପତ୍ତି ଥିଲା ତାଙ୍କର । ସେ କିନ୍ତୁ ବ୍ରିଟିଶ ସରକାରଙ୍କର ଜଣେ ପ୍ରଧାନ ଭକ୍ତ ଥିଲେ ଓ ତାଙ୍କୁ ସେଥିପାଇଁ ରାୟବାହାଦୂର ଉପାଧି ମିଳିଥିଲା । ମୁଁ ଯେତେବେଳେ ୧୯୪୧ ମସିହାରେ ଓକିଲାତି ବ୍ୟବସାୟ ଆରମ୍ଭ କରିବାକୁ ତାଙ୍କର ସିରସ୍ତାରେ ଜୁନିଅର ଭାବେ ଯୋଗ ଦେବା ପାଇଁ ତାଙ୍କୁ ଅନୁରୋଧ କରେ । ସେ ମୋର ରାଜନୈତିକ ଚରିତ୍ର ଜାଣିଥିବା ପ୍ରକାଶ କରି ଜୁନିଅର କରି ନେବାକୁ ଅସମ୍ମତି ପ୍ରକାଶ କରିଥିଲେ । କିନ୍ତୁ ମୋର ଶଶୁର ଚୌଧୁରୀ ରାଧାଶ୍ୟାମ ଯେତେବେଳେ ବ୍ୟକ୍ତିଗତ ଭାବେ ତାଙ୍କୁ ଅନୁରୋଧ କଲେ, ସେ ରାଜି ହେଲେ । କିନ୍ତୁ ଉଭୟ ମତେ ସତର୍କ କରାଇ ଦେଲେ ଯେ ମୁଁ ଯଦି ପୁଣି ରାଜନୀତିରେ ଯୋଗ ଦିଏ ତାଙ୍କ ଦପ୍ତର ଛାଡିବାକୁ ହେବ । ମୁଁ ସେତେବେଳକୁ ବିଭିନ୍ନ ରାଜନୈତିକ ଆନ୍ଦୋଳନରେ ଏକାଧିକ ବାର ଗିରଫ ହୋଇ ଜେଲରେ ଅଟକ ଥିଲି । ମୋର ପାରିବାରିକ ଅବସ୍ଥା ଅତ୍ୟନ୍ତ ଦୁର୍ବଳ ଥିବା ଅଭିଶାପରୁ ରକ୍ଷା ପାଇବା ପାଇଁ ୧୯୪୨ ଆନ୍ଦୋଳନରେ ଗିରଫ ହୋଇ ବ୍ରହ୍ମପୁର ଜେଲ୍‌ରେ ଦୀର୍ଘ ଦିନ ଅଟକ ବନ୍ଦୀ ରହିବା, ମୋ ପିତାଙ୍କ ବୃଦ୍ଧାବସ୍ଥାରେ ଅତ୍ୟନ୍ତ ଅସହାୟ ଅବସ୍ଥାରେ କାଳେ ଦେହାନ୍ତ ଘଟିବ ଓ ମୋର ପୁତ୍ର ହିସାବରେ ପିତାଙ୍କ ପ୍ରତି ବିଶ୍ୱାସଘାତକତା ହେବ ବୋଲି ମୁଁ ଉପଲବ୍ଧି କରି ନେତାଜୀଙ୍କ ଅନ୍ତର୍ଦ୍ଧାନ ପରେ ପୁଲିସ୍ ଆଖିରେ ଧୂଳି ଦେଇ ପ୍ରାୟ ୬ ମାସ ନିଖୋଜ ଅବସ୍ଥା ପରେ ଗିରଫ ପରୱାନାର ପ୍ରତ୍ୟାହାର କରାଇ ପୁରୀକୁ ଆସିଥାଏ ଓକିଲାତି କରି ପରିବାରକୁ ସହାୟତା ଦେବା ପାଇଁ । ଏ ସବୁ ଦୃଷ୍ଟିରୁ ମୁଁ ତାଙ୍କର ଜୁନିଅର ଭାବେ ତାଙ୍କୁ ଅସୁବିଧାରେ ନପକାଇବା ପାଇଁ ପ୍ରତିଶ୍ରୁତି ଦେଇ ଆଇନ ବ୍ୟବସାୟ ଆରମ୍ଭ କରିବାର ସିଦ୍ଧାନ୍ତ ନେଲି । କିନ୍ତୁ ସେ ପ୍ରତିଶ୍ରୁତି ମୁଁ ୧୯୪୨ ଭାରତ ଛାଡ ଆନ୍ଦୋଳନ ବେଳେ ରକ୍ଷା ନ କରି ପାରି ପୁନର୍ବାର ଓକିଲାତି ବ୍ୟବସାୟ ଛାଡି ପ୍ରାୟ ଏକ ବର୍ଷ ଆତ୍ମଗୋପନ କରି ରହିବା ପରେ ଆନ୍ଦୋଳନର ଅବସାନ ଦେଖି ଓ ସ୍ୱାଧୀନତାର ସୂର୍ଯ୍ୟ ଭାରତ ଆକାଶରେ ଉଦୟ ହେବାର ସମ୍ଭାବନା ଉପଲବ୍ଧି କରି ୧୯୪୪ ମସିହାରେ ଓକିଲାତିରେ ଯୋଗ ଦେଲି । ସେ ସଂପର୍କରେ ମୁଁ ଆଗରୁ କିଛି ଅଭିଜ୍ଞତା ପ୍ରକାଶ କରିଛି ।

୧୯୪୭ ମସିହା ବେଳକୁ ଡଃ ହରେକୃଷ୍ଣ ମହତାବ ଓଡିଶାର ମୁଖ୍ୟମନ୍ତ୍ରୀ ଭାବେ ଦାୟିତ୍ୱ ତୁଲାଉଥାନ୍ତି । ସେ ମଧ୍ୟ କଂଗ୍ରେସ କାର୍ଯ୍ୟକାରୀ କମିଟିରେ ସଭ୍ୟ ଥାଇ ରାଜ୍ୟର ଶ୍ରେଷ୍ଠ ନେତା ଭାବେ ସମ୍ମାନିତ ହେଉଥିଲେ । ଛାତ୍ର ନେତା ଭାବେ ତାଙ୍କ ସହିତ ମୋର ଅତ୍ୟନ୍ତ ଘନିଷ୍ଠତା ଥିଲା । ସେତେବେଳକୁ ସ୍ୱର୍ଗୀୟ ବିଜୁ ପଟ୍ଟନାୟକ

ବିଧାନସଭାର ସଭ୍ୟ ଓ ଭୁବନେଶ୍ୱର ଫ୍ଲାଇଙ୍ଗ କ୍ଲବର ପ୍ରତିଷ୍ଠାତା ଅଧ୍ୟକ୍ଷ । ଓଡିଶାର ଦୁର୍ଭାଗ୍ୟ ସ୍ୱାଧୀନତା ପରବର୍ତ୍ତୀ ନିର୍ବାଚନମାନଙ୍କରେ ସ୍ୱତନ୍ତ୍ର ଦଳର ପ୍ରାଧାନ୍ୟ ରାଜନୀତି କ୍ଷେତ୍ରରେ ବିଶେଷ ଅନୁଭୂତ ହେଉଥିଲା । ସ୍ୱର୍ଗୀୟ ବଲାଙ୍ଗୀର ପାଟଣା ମହାରାଜା ଓ ମୋର ପରମ ବଂଧୁ ଛାତ୍ରାବସ୍ଥାର ନିକଟତମ ସହପାଠୀ କଳାହାଣ୍ଡି ମହାରାଜା ରାଷ୍ଟ୍ରୀୟ ସଂସଦର ସଭ୍ୟ ଥାଆନ୍ତି । ଉଭୟଙ୍କ ନେତୃତ୍ୱରେ ଓଡିଶାର କିଛି ରାଜ ପରିବାର ସଭ୍ୟ ମଧ୍ୟ ତାଙ୍କ ସହିତ ସ୍ୱତନ୍ତ୍ର ଦଳରେ ଯୋଗ ଦେଇ ସେମାନଙ୍କ ନିଜ ନିଜ ରାଜ୍ୟର ବିଧାନସଭା ନିର୍ବାଚନ ମଣ୍ଡଳୀରୁ ଓଡିଶା ବିଧାନସଭାକୁ ନିର୍ବାଚିତ ହୋଇ ବିରୋଧି ଦଳ ଭାବେ ରାଜ୍ୟ କ୍ଷମତା ରାଜନୀତିରେ ଶୀର୍ଷସ୍ଥାନ ଅଧିକାର ପାଇଁ ଉଦ୍ୟମ କରୁଥିଲେ । ଡଃ ହରେକୃଷ୍ଣ ମହତାବ, ବିଜୁ ପଟ୍ଟନାୟକ, ବିରେନ ମିତ୍ର ଓ ନୀଳମଣି ରାଉତରା (ଶେଷ ୩ଜଣ ପରବର୍ତ୍ତୀ ଅବସ୍ଥାରେ ମୁଖ୍ୟମନ୍ତ୍ରୀ ହେଲେ) ଥାଆନ୍ତି ପ୍ରଧାନ କାରପଟଦାର କଂଗ୍ରେସ ଦଳର । ମୁଁ ସେତେବେଳକୁ ପୁରୀ ମ୍ୟୁନିସିପାଲିଟିର ଚେୟାରମାନ ଥାଏ । ୧୯୪୭ ମସିହା ଶେଷ ଭାଗରେ ଓଡିଶାର ଗଡଜାତ ରାଜାମାନଙ୍କୁ ମନାଇ ବିଶାଳ ଉତ୍କଳ ପ୍ରତିଷ୍ଠା କରିବା ପାଇଁ ଡଃ ମହତାବ ଉଦ୍ୟମ କରୁଥାଆନ୍ତି । ସର୍ଦ୍ଦାର ପଟେଲଙ୍କ ଏକମାତ୍ର ଲକ୍ଷ୍ୟ ଥାଏ ସମଗ୍ର ଭାରତର କ୍ଷୁଦ୍ର, ମଧ୍ୟମ ଓ ବଡ ବଡ ରାଜରାଜୁଡା ବ୍ରିଟିଶ ଅଞ୍ଚଳକୁ ଭାରତରେ ମିଶ୍ରଣ କରାଇ ଭାରତକୁ ଏକ ବିରାଟ ଗଣତାନ୍ତ୍ରିକ ସାର୍ବଭୌମ ରାଷ୍ଟ୍ରରେ ପରିଣତ କରିବା ପାଇଁ । ସ୍ୱରାଷ୍ଟ୍ର ସଚିବ ଏମ.ଜେ.କେ. ମେନନ ତାଙ୍କର ଅତ୍ୟନ୍ତ ବିଶ୍ୱସ୍ତ । ସର୍ଦ୍ଦାରଜୀଙ୍କ ନିର୍ଦ୍ଦେଶ ଥାଏ ଆମ ରାଜ୍ୟର ୨୬ଟି ଗଡଜାତର ରାଜନ୍ୟମଣ୍ଡଳୀଙ୍କୁ ଏକାଠି ଡକାଇ ସମସ୍ତଙ୍କର ମିଶ୍ରଣ ଚୁକ୍ତିନାମାରେ ଦସ୍ତଖତ କରାଇ ଓଡିଶା ରାଜ୍ୟ ସହିତ ମିଶ୍ରଣ କରାଇ ଦେବା ପାଇଁ । ତଦନୁଯାୟୀ ମହତାବଙ୍କ ଅଦମ୍ୟ ଉଦ୍ୟମ ତାଙ୍କ ରାଜନୈତିକ ନିପୁଣତା ଓ ଦୂରଦର୍ଶୀତା ଏ ଦିଗରେ ବିଶେଷ ସହାୟତା କରିଥିଲା । ୧୯୪୭ ଡିସେମ୍ବର ଶେଷ ସପ୍ତାହରେ ଏମ.ଜେ.କେ. ମେନନ ଓ ସର୍ଦ୍ଦାରଜୀ ଆସିବାର ସ୍ଥିର ହୋଇଥାଏ । ତା ପୂର୍ବରୁ ଆମ ରାଜ୍ୟରେ ସ୍ୱାଧୀନତାର ଅବ୍ୟବହିତ ପରେ ୧୯୪୯ ମସିହାରେ ମ୍ୟୁନିସିପାଲ୍ଟି ନିର୍ବାଚନ ହେଲା । ପୁରୀ ପୌରସଭା ନିର୍ବାଚନରେ ମୁଁ, ଜଣେ ନିକଟରେ ଯୋଗ ଦେଇଥିବା ଯୁବକ ଆଇନଜୀବୀ ଭାବରେ, ନିର୍ବାଚନ ଲଢି ମୋ ଓ୍ୱାର୍ଡରେ ବହୁ ଅଭିଜ୍ଞ ଓ ବିଶିଷ୍ଟ ନାଗରିକ ଶ୍ରୀ ରାଧା ଚରଣ ପଟ୍ଟନାୟକ (ପ୍ରାଣନାଥ ମହାନ୍ତି ଆଇ.ଏ.ଏସ.ଙ୍କ ଶ୍ୱଶୁର)ଙ୍କୁ ହରାଇ ନିର୍ବାଚିତ ହେଲି । ଏହିଠାରେ ମୋର ପୌରସଭାରୁ ଆରମ୍ଭ ହୁଏ ଦ୍ୱିତୀୟ ପର୍ଯ୍ୟାୟ ରାଜନୈତିକ ଜୀବନ । ମୋର ଆଇନ ବ୍ୟବସାୟର ଗୁରୁ ପ୍ରବୀଣ ଆଇନଜୀବୀ ଓ ବିଶିଷ୍ଟ ଜମିଦାର ରାଏ ବାହାଦୁର ଲୋକନାଥ ମିଶ୍ର ପୂର୍ବରୁ ଦୀର୍ଘ ବର୍ଷ ଧରି ଥିଲେ ପୁରୀ ପୌରସଭାର

ଚେୟାରମାନ। ଚେୟାରମ୍ୟାନ ଓ ଭାଇସ୍ ଚେୟାରମ୍ୟାନ ନିର୍ବାଚନରେ ରାୟ ବାହାଦୂରଙ୍କ ପ୍ରତ୍ୟକ୍ଷ ସହଯୋଗରେ ଆଉ ଜଣେ ପରାକ୍ରମଶାଳୀ ବିଶିଷ୍ଟ କାଉନସିଲ୍‌ର ଜମିଦାର ହରିହର ମିଶ୍ର (ହରୀଶ ମିଶ୍ର ନାମରେ ଖ୍ୟାତ)ଙ୍କୁ ହରାଇ ମୁଁ ନିର୍ବାଚିତ ହେଲି ଭାଇସ୍ ଚେୟାରମ୍ୟାନ। ପୁରୀ ମ୍ୟୁନିସିପାଲ୍‌ଟିର ଭାଇସ୍ ଚେୟାରମାନ ଭାବରେ ନିର୍ବାଚିତ ହେଲେ ମଧ୍ୟ ନିର୍ବାଚିତ ଚେୟାରମାନ ହରିଚରଣ ମହାନ୍ତି ରାୟବାହାଦୂରଙ୍କ ପରାମର୍ଶ କ୍ରମେ ତାଙ୍କ କ୍ଷମତାର ପ୍ରାୟ ୮୦ ଭାଗ ମତେ ହସ୍ତାନ୍ତର କରି ଦେଇଥାଆନ୍ତି। ମୁଁ ଯୁବକ ଆଇନଜୀବୀ ଭାବରେ ଓ ମ୍ୟୁନିସିପାଲ୍‌ଟିର ଚେୟାରମ୍ୟାନଙ୍କ କ୍ଷମତା ପାଇଥିବା ଭାଇସ୍ ଚେୟାରମ୍ୟାନ ଭାବେ ପୁରୀ ସାଧାରଣ ଜୀବନରେ ଏକ ବିଶେଷ ଭାବେ କ୍ଷମତାଶୀଳ ହୋଇଉଠିବା ପାଇଁ ବିଶେଷ ପ୍ରତିବନ୍ଧକ ସୃଷ୍ଟି ହେଲା ନାହିଁ ଏବଂ ସମସ୍ତଙ୍କର ପ୍ରିୟପାତ୍ର ହେବାର ସୁଯୋଗ ପାଇଲି। ଏହି ସମୟର କେତେକ ଉଲ୍ଲେଖନୀୟ ଘଟଣା ଉଲ୍ଲେଖ କରିବା ଉଚିତ ହେବ। ଡଃ ହରେକୃଷ୍ଣ ମହତାବ ମତେ ପୁରୀର ଜଣେ ଉଦୀୟମାନ ଲୋକପ୍ରିୟ ଆଇନଜୀବୀ ଭାବେ ବହୁତ ଭଲ ପାଉଥିଲେ ଏବଂ ପରେ ୧୯୪୯ ମସିହାରେ ମୋ ଅଜ୍ଞାତରେ ପୁରୀର ସରକାରୀ ଓକିଲ ଭାବେ ମତେ ନିଯୁକ୍ତ କରିଥିଲେ। ମୁଁ ସାରା ରାଜ୍ୟରେ ସର୍ବକନିଷ୍ଠ ସରକାରୀ ଓକିଲ ସେ ସମୟର। ଶ୍ରୀ ଜଗନ୍ନାଥଙ୍କ ଆଶୀର୍ବାଦରୁ ଆଇନ ବ୍ୟବସାୟରେ ମଧ୍ୟ ମୋର ଦକ୍ଷତା କ୍ରମଶଃ ସାଧାରଣ ଲୋକଙ୍କ ଦୃଷ୍ଟି ଆକର୍ଷଣ କଲା।

ମହାତ୍ମାଗାନ୍ଧୀଙ୍କ ନିଧନ ପରେ ପୁରୀ ଗାନ୍ଧୀଘାଟରେ ତାଙ୍କର ଅସ୍ଥି ବିସର୍ଜନ ବେଳେ ମଧ୍ୟ ସମସ୍ତ ଆୟୋଜନ ପାଇଁ ରାଜ୍ୟପାଳ ଡଃ କୈଳାସ ନାଥ କାଟ୍‌ଜୁଙ୍କ ସଭାପତିତ୍ୱରେ ଯେଉଁ ଗାନ୍ଧୀ ସ୍ମୃତି କମିଟି ଗଢା ହେଲା ସେଥିରେ ରାଜ୍ୟପାଳ ସଭାପତି ଓ ମୁଁ ସଂପାଦକ। ଡଃ କାଟଜୁ ରାଜ୍ୟପାଳ ଭାବେ ସବୁଦିନ ପ୍ରାତଃ ଭ୍ରମଣ ପରେ ରାଜଭବନରେ ସୂତା କାଟନ୍ତି। ଅନେକ ଗାନ୍ଧିବାଦୀଙ୍କୁ ମଧ୍ୟ ନିମନ୍ତ୍ରଣ କରନ୍ତି। ମତେ ଜି.ମେନନ ଏହି କାର୍ଯ୍ୟରେ ସହଯୋଗ କରିବା ପାଇଁ ନିର୍ଦ୍ଦେଶ ଦେବାରେ ମୁଁ ପ୍ରାୟ ପ୍ରତିଦିନ ପୁରୁଣା ରାଜଭବନକୁ ଯାଇ ସୂତାକଟା ବେଳେ ବିଶିଷ୍ଟ ନେତୃମଣ୍ଡଳୀଙ୍କ ସହିତ ଯୋଗ ଦିଏ। ତତ୍‌ପରେ ଅନ୍ୟତମ ରାଜ୍ୟପାଳ ଭାବେ ନିଯୁକ୍ତ ହେଲେ, ବିଶିଷ୍ଟ କଂଗ୍ରେସ ନେତା ଓ ପଣ୍ଡିତ ନେହେରୁଙ୍କ ଅନ୍ତରଙ୍ଗ ବନ୍ଧୁ ସ୍ୱର୍ଗତ ଆସଫ ଅଲ୍ଲୀ। ସେ ଜଣେ ବିଚକ୍ଷଣ ବାରିଷ୍ଟର ଥାଇ ସ୍ୱାଧୀନତା ସଂଗ୍ରାମରେ ବିଶିଷ୍ଟ ଅଂଶ ଗ୍ରହଣ କରି କଂଗ୍ରେସ କାର୍ଯ୍ୟକାରୀ କମିଟିର ସଦସ୍ୟ ଥାଇ ଓଡିଶାର ରାଜ୍ୟପାଳ ଦାୟିତ୍ୱ ନେଇଥାଆନ୍ତି। ଶ୍ରୀମତି ଅରୁଣା ଆସଫ ଅଲ୍ଲୀ ଭାରତୀୟ ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ରଥୀ ତଥା ମହାତ୍ମାଜୀଙ୍କ ବିଶ୍ୱସ୍ତ ସାରଥୀ। ଭାରତଛାଡ ଆନ୍ଦୋଳନରେ ସେ

ଆତ୍ମଗୋପନ କରି ସମଗ୍ର ଭାରତବର୍ଷରେ ଆନ୍ଦୋଳନକୁ ନିୟନ୍ତ୍ରଣ କରୁଥାଆନ୍ତି ଜୟ ପ୍ରକାଶ ନାରାୟଣଙ୍କ ସହାୟତାରେ । ଆସଫ ଅଲ୍ଲୀଙ୍କଠାରୁ ସେ ଭାରତର ସ୍ୱାଧୀନତା ସଂଗ୍ରାମ ଇତିହାସରେ ଅଧିକ ଗୁରୁତର ଭୂମିକା ଗ୍ରହଣ କରିଥିଲେ ଓ ଶେଷରେ ଭାରତ ରତ୍ନ ଉପାଧି ମଧ୍ୟ ପାଇଥିଲେ ସ୍ୱାଧୀନତା ପ୍ରାପ୍ତିର ସୁବର୍ଣ୍ଣ ଜୟନ୍ତୀ ସମାରୋହ ପାଳନ ଅବସରରେ । ତାଙ୍କ ପରି ଖ୍ୟାତନାମା 'ରିଭଲ୍ୟୁସନାରୀ' ଥରେ ଓଡିଶାକୁ ଦୁଇ ତିନି ଦିନ ବିଶ୍ରାମ ପାଇଁ ଆସିଥିବା ମୋର ମନେ ଅଛି । ସେତେବେଳେ ଉତ୍କଳ କେଶରୀ ଡକ୍ଟର ହରେକୃଷ୍ଣ ମହତାବ ରାଜ୍ୟର ଦ୍ୱିତୀୟ ଥର ପାଇଁ ମୁଖ୍ୟମନ୍ତ୍ରୀ ଭାବରେ ରାଜ୍ୟର ଆଇନ ଶୃଙ୍ଖଳାରେ କାଳେ ବ୍ୟାଘାତ ଘଟିବ ଓ ଅରୁଣା ଆସଫ ଅଲ୍ଲୀ ବାମପନ୍ଥୀମାନଙ୍କ ସହିତ ମନ୍ତ୍ରଣା କରି ରାଜ୍ୟରେ କାଳେ ଅଶାନ୍ତି ଘଟାଇବେ ଏହି ଆଶଙ୍କାରେ ରାଜଭବନ ଭିତରେ ନିଜର ବିଶ୍ୱସ୍ତ ଗୋଇନ୍ଦାଙ୍କୁ ନିଯୁକ୍ତ କରିଥାଆନ୍ତି । ମୁଁ ପ୍ରାୟ ସବୁଦିନ ରାଜଭବନକୁ ୫ଟା ବେଳେ ଯାଏ ବ୍ୟାଡମିଣ୍ଟନ ଖେଳିବା ପାଇଁ ଓ ରାଜ୍ୟପାଳଙ୍କ ସହିତ ଚା ପିଇବାର ସୁଯୋଗ ପାଏ । ଆସଫ ଅଲ୍ଲୀ ଚୌକି ପକାଇ ଆମ ଖେଳ ଦେଖନ୍ତି । ରଣପୁର ରାଜମାତା ସପ୍ତାହରେ ପ୍ରାୟ ୨ ଦିନ ସ୍ୱାସ୍ଥ୍ୟମନ୍ତ୍ରୀ ଭାବେ ପୁରୀ ଆସି ରାଜଭବନରେ କଟାଇ ଏହି ବ୍ୟାଡମିଣ୍ଟନ ଖେଳରେ ଯୋଗ ଦିଅନ୍ତି । ସେଇଠାରେ ହିଁ ମୋର ତାଙ୍କ ସହିତ ଘନିଷ୍ଠତା ହୁଏ ତାଙ୍କ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ । ହଠାତ୍ ଅରୁଣାଜୀଙ୍କ ସ୍ୱଳ୍ପ ଦିନ ରହିବା ସମୟରେ ରାଜ୍ୟପାଳଙ୍କଠାରୁ ନିର୍ଦ୍ଦେଶ ପାଇ ମୁଁ ରାଜଭବନରେ ଦେଖା କରିବା ବେଳେ ରାଜ୍ୟପାଳ ମତେ କଥା ଛଳରେ କହି ପକାଇଲେ 'ଗଙ୍ଗାଧରଜୀ, ଡଃ ମହତାବ ବୋଧହୁଏ ଅରୁଣା ରାଜଭବନରେ ରହି ରାଜନୈତିକ ବ୍ୟକ୍ତିବିଶେଷଙ୍କୁ ସାକ୍ଷାତ କରିବା ଚାହାନ୍ତି ନାହିଁ । ମୁଁ ଜଣେ ସାମ୍ବିଧାନିକ ରାଜ୍ୟପାଳ; ଏ ବିଷୟ ନେଇ ମୋର ମୁଖ୍ୟମନ୍ତ୍ରୀଙ୍କ ସହିତ ମତାନ୍ତର ସମୀଚୀନ ନୁହେଁ । ସେଥିପାଇଁ ଅରୁଣାଙ୍କୁ ମୁଁ କହିଛି ଦୁଇ ଦିନ ଭିତରେ ପୁରୀରୁ ଫେରିଯିବା ପାଇଁ ।' ମୁଁ ଅତ୍ୟନ୍ତ ଦୁଃଖିତ ହେଲି କିନ୍ତୁ ଏହି ଦୁଇ ବିରାଟ ନେତାଙ୍କ ମଧ୍ୟରେ ଥିବା ମତାନ୍ତରରେ ମୁଁ ନିଜକୁ ସାମିଲ କରିବା ଶ୍ରେୟସ୍କର ମନେ କଲି ନାହିଁ । ଅରୁଣା ଫେରିଗଲେ ମହତାବ ବାବୁଙ୍କ ମନୋଭାବ ବୁଝିପାରି ।

ପୂର୍ବରୁ ସୂଚନା ଦେଇଛି ଆସଫଅଲ୍ଲୀଙ୍କ ରାଜ୍ୟପାଳ ଥିବା ଅବସ୍ଥାରେ ମୁଁ ପୁରୀର ଜଣେ ଯୁବକ ଆଇନଜୀବୀ ଓ ମ୍ୟୁନିସିପାଲଟିର ଭାଇସ୍ ଚେୟାରମ୍ୟାନ ଭାବେ ମହତାବ ବାବୁଙ୍କ ସହିତ ଅଧିକ ସଂପର୍କ ରଖିବାର ସୁଯୋଗ ପାଇଲି ଏବଂ ୨୫ଟି ଗଡଜାତ ରାଜନ୍ୟ ମଣ୍ଡଳୀଙ୍କ ଦୟନୀୟ ଅବସ୍ଥା ଓ ମାନସିକ ଅସ୍ଥିରତା ଓ ନିରାଶ୍ରୟତା ଦେଖିବାର ବିଶେଷ ସୁଯୋଗ ମିଳିଥିଲା ମହତାବ ବାବୁଙ୍କ ଆଶୀର୍ବାଦରୁ । ସର୍ଦ୍ଦାର

ପଟେଲ ଆସି କଟକ କମିଶନର କୋଠୀରେ ବସିଥାଆନ୍ତି । କାଶ୍ମୀର ରାଜ୍ୟକୁ ଭାରତରେ ମିଶାଇବାର ବିନ୍ଧାଣୀ ସର୍ଦ୍ଦାରଙ୍କ ଆଗରେ କିନ୍ତୁ ଉତ୍ତର ଦେବାକୁ କୌଣସି ରାଜାଙ୍କର ସାହସ ନଥାଏ । ସର୍ଦ୍ଦାରଜୀଙ୍କ ବିଶ୍ୱସ୍ତ ମେନନ ସାହେବ ମିଶ୍ରଣ ଚୁକ୍ତିନାମାକୁ ଧରି ଜଣେ ଜଣେ ରାଜାଙ୍କୁ ଡକାଉଥାଆନ୍ତି କମିଶନର କୋଠାକୁ ଅଳ୍ପ କଥା ହୋଇ ମିଶ୍ରଣ ଚୁକ୍ତିନାମାରେ ଦସ୍ତଖତ କରିବା ପାଇଁ ଅନୁରୋଧ କରନ୍ତି । ଯେଉଁ ରାଜ୍ୟର ଶାସକ ଏଥିରେ ଟିକିଏ ସମୟ ନେବାକୁ ଚାହୁଁଥାଆନ୍ତି ତାଙ୍କୁ କେବଳ କହି ଦିଆଯାଏ ପରଦିନ ସକାଳ ନିର୍ଦ୍ଦିଷ୍ଟ ସମୟ ଭିତରେ ଚୁକ୍ତିପତ୍ରରେ ସ୍ୱାକ୍ଷର ନ କଲେ ପରବର୍ତ୍ତୀ ପଦକ୍ଷେପ ପାଇଁ ତାଙ୍କୁ ଦାୟୀ କରାଯିବ ନାହିଁ । ଏହି ରାଜନ୍ୟବର୍ଗ କାଶ୍ମୀର ଓ ହାଇଦ୍ରାବାଦ ନିଜାମ ଅଞ୍ଚଳରେ ପୁଲିସ ଆକ୍ସନ ଦେଖିଥାଆନ୍ତି । ସେଇ ସ୍ମୃତିରେ ସେମାନଙ୍କର ହୃତକମ୍ପ ହେଉଥାଏ । ମେନନଙ୍କ ଦୂରଦୃଷ୍ଟି ସମ୍ପନ୍ନ କୂଟନୈତିକ ପ୍ରଭାବ ଓ ସର୍ଦ୍ଦାରଜୀଙ୍କ କ୍ରୋଧର ଶିକାର ଉଭୟକୁ ଦେଖି ପରଦିନ ସକାଳ ସୁଦ୍ଧା ପ୍ରାୟ ସମସ୍ତେ ଚୁକ୍ତିନାମା ସ୍ୱାକ୍ଷର କରିବା ପାଇଁ ବାଧ୍ୟ ହେଲେ ଓ ସମସ୍ତ କ୍ଷମତା ହସ୍ତାନ୍ତର କରି ନିଜ ନିଜକୁ ଜଣେ ସାଧାରଣ ନାଗରିକ ଭାବେ ନିରାଶ୍ରୟ ବ୍ୟକ୍ତିର ନମ୍ରତା ଦେଖାଇଲେ । ଚୁକ୍ତି ସ୍ୱାକ୍ଷର ପରେ ପରେ ସର୍ଦ୍ଦାରଜୀ ପୁରୀ ରାଜଭବନରେ ଏକ ବିରାଟ ବଂଧୁମିଳନର ବ୍ୟବସ୍ଥା କରିଥାଆନ୍ତି । ମହତାବବାବୁ ତାର ସମସ୍ତ ଦାୟିତ୍ୱ ଦେଇ ମତେ ବିଶେଷ ଭାବରେ ଏ କାର୍ଯ୍ୟରେ ସଂପୃକ୍ତ କରିଥିଲେ । ସେହି ବଂଧୁ ମିଳନରେ ସର୍ଦ୍ଦାରଙ୍କ ସହିତ ମୋର ସାକ୍ଷାତ କରାଇ ମତେ ଜଣେ 'ଏଣ୍ଟରପ୍ରାଇଜିଙ୍ଗ ଲୟର' ଭାବେ ବର୍ଣ୍ଣନା କରିଥିଲେ । ଅଳ୍ପ ଦିନ ପରେ ସର୍ଦ୍ଦାରଜୀଙ୍କର ଦେହାନ୍ତ ଘଟିଲା ।

ସର୍ଦ୍ଦାର ପଟେଲ ହେଉଛନ୍ତି ନବ ଭାରତର ପ୍ରକୃତ ସେନାପତି । ତାଙ୍କର ଦୂରଦୃଷ୍ଟି ଫଳରେ ୬୦୦ ଗଡଜାତ ଭାରତବର୍ଷର ପ୍ରାୟ ଏକ ତୃତୀୟାଂଶ ଭାରତର ଅଙ୍ଗ ହେଲା ବିନା ରକ୍ତପାତରେ ଓ କାଶ୍ମୀର ମଧ୍ୟ ଏବେ ହିନ୍ଦୁସ୍ଥାନର ଶୀର୍ଷ ଭାଗରେ ଆମ ରାଷ୍ଟ୍ରର ଏକ ବିଶିଷ୍ଟ ଅଙ୍ଗ ରୂପେ ରହିଛି ଓ ରହିବ ଏଥିରେ ସନ୍ଦେହ ନାହିଁ । ଓଡିଶାରେ ଏହି ଐତିହାସିକ ଚୁକ୍ତିନାମା ସଂପର୍କରେ ମହତାବବାବୁଙ୍କର ସୁନାମ ସାରା ଭାରତରେ ଶୀର୍ଷ ସ୍ଥାନରେ ପହଞ୍ଚିଥାଏ । ସେ ବିଶାଳ ଓଡିଶା ରାଜ୍ୟର ନିର୍ମାତା ଭାବେ ଉତ୍କଳ କେଶରୀ ଉପାଧିରେ ଭୂଷିତ ହେଲେ ଓଡିଶାର ବୁଦ୍ଧିଜୀବୀ ମହଲରେ । ମହତାବ ବାବୁ ନିଜେ ଜଣେ ରାଜ ପରିବାରର ଲୋକ । ବର୍ଦ୍ଧମାନ ମହାରାଜାଙ୍କ ସହିତ ତାଙ୍କର ପାରିବାରିକ ସଂପର୍କ । ହେଲେ ସେ ହେଲେ ବିଂଶ ଶତାବ୍ଦୀର ଓଡିଶାର ଖାରବେଳ ଓ ନୂତନ ଓଡିଶାର ନିର୍ମାତା । ଏଠାରେ ସ୍ମରଣ କରାଇ ଦେବାକୁ ଚାହେଁ ଯେ ଓଡିଶାରେ ୨୬ଟି ଗଡଜାତରୁ ୨୫ ଜଣ ଏହି ଚୁକ୍ତିନାମାରେ ଦସ୍ତଖତ କଲେ । ମୟୂରଭଞ୍ଜର

ମହାରାଜା ଶ୍ରୀ ରାମଚନ୍ଦ୍ର ଭଂଜ ଦେଓ ସେତେବେଳେକୁ ପ୍ରଜାମଣ୍ଡଳ ନେତାମାନଙ୍କୁ ନେଇ ଏକ ମନ୍ତ୍ରୀ ସଭା ଗଠନ କରି ଦେଇଥାଆନ୍ତି ଏବଂ ଗୋଟିଏ ଆସେମ୍ବଲୀରେ ତାଙ୍କୁ ନିର୍ବାଚିତ କରି କେତେକ କ୍ଷମତା ହସ୍ତାନ୍ତର କରି ଦେଇଥାଆନ୍ତି । ମହତାବ ବାବୁ ସେହି କାରଣରୁ ପ୍ରଜାମଣ୍ଡଳ ନେତାମାନେ ସେଇଦିନ ଚୁକ୍ତିନାମାରେ ସ୍ୱାକ୍ଷର କରିବା ଉଚିତ ହେବ ନାହିଁ ବୋଲି ସର୍ଦ୍ଦାରଜୀଙ୍କୁ ଜଣାଇବାରେ ତାଙ୍କୁ କିଛି ସମୟ ମିଳିଲା । ୧୯୪୯ ମସିହାରେ ଏହି ଚୁକ୍ତିନାମାର ଏକ ବର୍ଷ ନ ପୂରୁଣୁ ମୟୂରଭଞ୍ଜ ମହାରାଜା ମିଶ୍ରଣ ଚୁକ୍ତିନାମାରେ ଦସ୍ତଖତ କରି ସବୁଠାରୁ ବୃହତ ରାଜ୍ୟକୁ ଓଡିଶାରେ ମିଶ୍ରଣ କରାଇଦେଇ ସମସ୍ତ କ୍ଷମତା ହସ୍ତାନ୍ତର କରିନେଇ ବିଶାଳ ଉତ୍କଳରେ ଶ୍ରେଷ୍ଠ ଅଧିକାରୀ ଭାବେ ମହତାବବାବୁଙ୍କୁ ଅଧିଷ୍ଠିତ କରାଇବାର ସୁଯୋଗ ଦେଲେ । କିନ୍ତୁ ଭାରତର ଏତେ ବଡ ପ୍ରତିଷ୍ଠିତ ନେତା ଓ ଓଡିଶାର ଅଦ୍ୱିତୀୟ କଂଗ୍ରେସ ନେତା ଭାବେ ଖ୍ୟାତି ଅର୍ଜନ କରିଥିଲେ ସୁଦ୍ଧା, ସେ ରାଜ୍ୟରେ କଂଗ୍ରେସ ଦଳକୁ ସଂଖ୍ୟାଗରିଷ୍ଠ ଦଳରେ ପରିଣତ କରାଇପାରି ନଥିଲେ । କେବଳ କଂଗ୍ରେସ ଦଳକୁ ଏକକ ସଂଖ୍ୟାଗରିଷ୍ଠ ଦଳ ଭାବେ ନିର୍ବାଚିତ କରାଇ ଅନ୍ୟ ଦଳ ସହାୟତାରେ ମିଳିତ ମନ୍ତ୍ରିମଣ୍ଡଳର ମୁଖ୍ୟ ଭାବେ ରାଜ୍ୟର ଦାୟିତ୍ୱ ତୁଲାଇଥିଲେ । ସମ୍ବିଧାନ ପ୍ରଣୟନ ପରେ ୧୯୫୧ ମସିହାର ପ୍ରଥମ ନିର୍ବାଚନ ପରଠାରୁ ମହତାବ ବାବୁ ଓ ପରେ ସ୍ୱର୍ଗତ ନବକୃଷ୍ଣ ଚୌଧୁରୀ ରାଜ୍ୟର ମୁଖ୍ୟମନ୍ତ୍ରୀ ଭାବରେ ଏକାଧିକବାର ଦାୟିତ୍ୱ ନେଇ ସରକାର ଚଳାଇଥିଲେ ସୁଦ୍ଧା ଦୁଇ ନେତାଙ୍କ ମଧ୍ୟରେ କ୍ଷମତାରେ ରହିବା ପାଇଁ ତୀବ୍ର ପ୍ରତିଦ୍ୱନ୍ଦ୍ୱିତା ଲାଗି ରହିଥିଲା ଓ କଂଗ୍ରେସ ଭିତରେ ତୀବ୍ର ଗୋଷ୍ଠୀ ବିବାଦ କଂଗ୍ରେସକୁ କ୍ରମଶଃ ଦୁର୍ବଳ କରୁଥିଲା । ପଣ୍ଡିତ ନେହେରୁ ଓଡିଶାରେ ଏକ ସ୍ଥାୟୀ କଂଗ୍ରେସ ସରକାର ଗଢିବା ପାଇଁ ଚିନ୍ତା କରୁଥିବାବେଳେ ୧୯୪୬ଠାରୁ ବିଧାନସଭାର ସଭ୍ୟ ଭାବେ ଓଡିଶାର ଜଣେ ସାହସୀ ଯୁବକ, ସ୍ୱାଧୀନତା ସଂଗ୍ରାମୀ ଓ ସଂଗଠକ ଭାବେ କ୍ରମଶଃ ଜନପ୍ରିୟ ହୋଇ ଆସୁଥିବା ଓ ରାଜ୍ୟରେ ଓଡିଶା ଲୁଗାକଳ (ଓ.ଟି.ଏମ.) ଓ କଳିଙ୍ଗ ଟ୍ୟୁବ୍ସ ଓଡିଶା ଇଣ୍ଡଷ୍ଟ୍ରିଜ୍ ଆଦି ସ୍ଥାପନ କରି ରାଜ୍ୟରେ ଶିଳ୍ପ ବିସ୍ତାର ଦିଗରେ ପ୍ରମୁଖ ଭାଗ ନେଉଥିବା ଦୁଃସାହସୀ ଯୁବନେତାଙ୍କ ଉପରେ ତାଙ୍କର ଦୃଷ୍ଟି ପଡିଲା । ୧୯୫୩ ମସିହାରେ ଡଃ ମହତାବ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ସ୍ଥାନ ପାଇ ଶିଳ୍ପ ଓ ବାଣିଜ୍ୟ ମନ୍ତ୍ରୀ ଭାବେ କିଛି ବର୍ଷ ଦାୟିତ୍ୱ ନେବା ପରେ ମହାରାଷ୍ଟ୍ରର ରାଜ୍ୟପାଳ ଭାବେ ତାଙ୍କୁ ଅବସ୍ଥାପିତ କରାଗଲା । ମହତାବ ବାବୁ ମହାରାଷ୍ଟ୍ରର ରାଜ୍ୟପାଳ ଭାବେ ଅଧିଷ୍ଠିତ ଥିବାବେଳେ ନବକୃଷ୍ଣ ଚୌଧୁରୀ ରାଜ୍ୟର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ତୁଲାଇ ରାଜ୍ୟରେ ଜମିଜମା ସଂଶୋଧନ ଆଇନ ଓ ଭୂସଂସ୍କାର ଆଇନ ପ୍ରଣୟନ କରି ବହୁ ସୁନାମ ଅର୍ଜନ କରିଥିଲେ । ସେ ଜଣେ ପ୍ରତିଷ୍ଠିତ ଆଦର୍ଶବାଦୀ ଭାବରେ ଏବଂ ଜଣେ

ନିଷ୍ପାପର ସାଧୁ ଭାବେ, ଭ୍ରଷ୍ଟାଚାର ବିରୁଦ୍ଧରେ ତାଙ୍କର ସଂଗ୍ରାମ ଅବ୍ୟାହତ ରଖି ଭୂସଂସ୍କାର ମାଧ୍ୟମରେ ଓଡିଶାରେ ଏକ ବିରାଟ ସଚେତନ ଆନ୍ଦୋଳନର ସୂତ୍ରପାତ କରିବା ପାଇଁ କ୍ଷେତ୍ର ପ୍ରସ୍ତୁତ କରିବା ବେଳେ ବହୁ ବଡ ଚାଷୀ ଓ ଉଚ୍ଚ ଆୟକାରୀ ଶିକ୍ଷିତ ସମାଜ ଲୋକଙ୍କ ଅସନ୍ତୋଷକୁ ପୁଞ୍ଜି କରି ନବକୃଷ୍ଣ ଚୌଧୁରୀଙ୍କୁ କ୍ଷମତାଚ୍ୟୁତ କରିବା ପାଇଁ ମହାରାଷ୍ଟ୍ର ରାଜ୍ୟପାଳ ଥାଇ ଡଃ ମହତାବ ସଂଗଠିତ ଉଦ୍ୟମ ଆରମ୍ଭ କଲେ । ମୁଁ ସେତେବେଳେ ମ୍ୟୁନିସିପାଲିଟିର ଚେୟାରମ୍ୟାନ ଥାଇ ତାଙ୍କର ପ୍ରିୟପାତ୍ର ବହୁ ଆଗରୁ ହୋଇଥିବା ଦୃଷ୍ଟିରୁ ତାଙ୍କର ପୁରୀ ଗସ୍ତ ବେଳେ ମୁଁ ତାଙ୍କ ପାଇଁ ବିଭିନ୍ନ ଅନୁଷ୍ଠାନ ତରଫରୁ ଅଭିନନ୍ଦନ ଜଣାଇବା ଉଦ୍ଦେଶ୍ୟ ରଖି ସଭାମାନ ଆୟୋଜନ କରିଥିଲି ଓ ସେଥିରେ ଅତ୍ୟନ୍ତ ପ୍ରୀତ ହୋଇ ମହାରାଷ୍ଟ୍ର ଫେରିଗଲା ପରେ ତାଙ୍କର ବହୁବନ୍ଧୁଙ୍କୁ ପତ୍ର ଲେଖି ଏବଂ ଟେଲିଫୋନରେ ପରାମର୍ଶ ଦେଇ କହିଥିଲେ ଅନୁରୂପ ସଭାମାନ କରି ଓଡିଶାରେ ତାଙ୍କର ବାରମ୍ବାର ଗସ୍ତ ପକାଇ ସ୍ୱର୍ଗତ ନବକୃଷ୍ଣ ଚୌଧୁରୀଙ୍କୁ କ୍ଷମତାରୁ ଅନ୍ତର କରାଇ ପୁନର୍ବାର ଓଡିଶାର ମୁଖ୍ୟମନ୍ତ୍ରୀ ହୋଇ ଫେରି ଆସିବାର ବାଟ ତାଙ୍କ ପାଇଁ ସୁଗମ କରିବା ପାଇଁ । ସେତେବେଳକୁ ସରେଇକଳା ଓ ଖରସୁଆଁକୁ ଓଡିଶା ରାଜ୍ୟରେ ମିଶାଇବା ପାଇଁ ସୀମା ଆନ୍ଦୋଳନ ଆରମ୍ଭ ହୋଇଥାଏ । ଓଡନେଲ କମିଟି ରିପୋର୍ଟ ଶାସନଗତ ଅସୁବିଧାକୁ ଆୟୁଧ କରି ସରେଇକଳାକୁ ରାଜ୍ୟ ଶାସନର ସିଧା ସଳଖ ଗମନାଗମନର ରାସ୍ତା ନଥିବା ଦୃଷ୍ଟେ ସରେଇକଳା ଓ ଖରସୁଆଁ ବିହାରରେ ରହିବାର ଯଥାର୍ଥତା ସିଦ୍ଧ କରି ତାଙ୍କର ସୁପାରିଶ ଦେଇଥିବାରୁ ଉତ୍କଳ ସମ୍ମିଳନୀ ତରଫରୁ ରାଜ୍ୟ ବ୍ୟାପୀ ଆନ୍ଦୋଳନ ଚାଲିଥିଲା ।

ଏହି ଆନ୍ଦୋଳନ ପୁରୀରେ ଅତି ଗୁରୁତର ହୋଇଥିଲା । ପୁରୀ ରେଳରୋକ ଆନ୍ଦୋଳନ ବେଳେ ଷ୍ଟେସନ ନିକଟରେ ବିରାଟ ଜନସଭାରେ ମୁଁ ଓ ତତ୍କାଳୀନ ଜିଲ୍ଲା କଂଗ୍ରେସ ସଭାପତି ମହାମହୋପାଧ୍ୟାୟ ସ୍ୱର୍ଗତ ପଣ୍ଡିତ ସଦାଶିବ ମିଶ୍ରଙ୍କ ସୁପୁତ୍ର ସମ୍ବିଧାନ ପ୍ରଣୟନ ସଭାର ସଦସ୍ୟ ଓ ଲୋକସଭା ସଦସ୍ୟ ଭାବେ ପ୍ରତିଷ୍ଠା ଅର୍ଜନ କରିଥିବା ଲୋକନାଥ ମିଶ୍ର (ପଙ୍କ ବାବୁ) ଓ ଅନ୍ୟ କଂଗ୍ରେସ ବଂଧୁମାନେ ସେହି ବିରାଟ ଜନସଭାରେ ଭାଷଣ ଦେଉଥିବାବେଳେ ଜନତା ଉତ୍ତେଜିତ ହୋଇ ପୁଲିସ୍ ଉପରକୁ ଆକ୍ରମଣ କରିବା ଅଭିଯୋଗରେ ପୁଲିସ୍ ପକ୍ଷରୁ ବନ୍ଧୁକ ଚାଳନା କରାଯିବା ଫଳରେ ବେଙ୍ଗପାଣିଆ ନାମକ ଜଣେ ୧୪/୧୫ ବର୍ଷ ବାଳକର ଘଟଣାସ୍ଥଳରେ ମୃତ୍ୟୁ ଘଟିଲା । ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଥିବା ଓ କଂଗ୍ରେସ ସରକାର ଏହି ବନ୍ଧୁକ ଚାଳନା ପାଇଁ ପୁଲିସ୍‌କୁ ନିର୍ଦ୍ଦେଶ ଦେଇଥିବାକୁ ଆୟୁଧ କରି ସ୍ଥାନୀୟ ଅସାମାଜିକ ଲୋକେ ଷ୍ଟେସନ ପୋଡି, କଂଗ୍ରେସ ଲୋକଙ୍କୁ ଆକ୍ରମଣ କରି, ପୁରୀ

ସହରରେ ବିଭିନ୍ନ ସ୍ଥାନରେ ଜଳାପୋଡା ଆରମ୍ଭ କରି ଷ୍ଟେସନ ଲୁଟ୍ କଲେ । ପଙ୍କବାବୁଙ୍କ ଘରେ ମୁଁ ସେତେବେଳେ ଲୁଚିଥାଏ । ଏକ ଉତ୍ତେଜିତ ଶୋଭାଯାତ୍ରା ପଙ୍କବାବୁଙ୍କ ଘର ଲୁଟି କରିବା ପାଇଁ ଦୋଳ ମଣ୍ଡପ ସାହି ଆଡକୁ ପାଗଳଙ୍କ ପରି ମାଡି ଆସୁଥିବାର ଦେଖି ସାହିର ଲୋକେ ଆମ ଦୁହିଁଙ୍କୁ ଘର ପଛପଟେ ପଳାଇଯାଇ ମାଟିମଣ୍ଡପ ସାହିରେ ଆଶ୍ରୟ ନେବାକୁ ବାଧ୍ୟ କରିବାରେ ମୁଁ ତାଙ୍କ କୋଠରୀ ପଛପଟେ ଏକ ଛଣିକିଆ ଚଲାରାସ୍ତା ଦେଇ ମ୍ୟୁନିସିପାଲ୍‌ଟି ଏକ୍‌ଜିକ୍ୟୁଟିଭ୍ ଅଫିସରଙ୍କ ସରକାରୀ ନିବାସକୁ ଚାଲିଗଲି । ସେଠାକୁ ଏହି ଅସାମାଜିକ ଲୋକେ ଯାଇପାରିଲେ ନାହିଁ । କିନ୍ତୁ ମୋ ଘର ଆଡେ ଲୁଟି କରିବା ପାଇଁ ସଂଘବଦ୍ଧ ଭାବେ ଅଭିଯାନ ଆରମ୍ଭ କଲେ । କିନ୍ତୁ ମୋ ସାହିର ମୁଖିଆ ମୋର ଅତ୍ୟନ୍ତ ଘନିଷ୍ଠ ସାନ ଭାଇ ସଦୃଶ ସ୍ୱର୍ଗତ ବିଶ୍ୱନାଥ ପାଢୀ ସାହିର ବହୁ ଯୁବକଙ୍କୁ ଏକାଠି କରି ମରିଚକୋଟ ଗଳି ମୁଣ୍ଡ ଓ ଦୋଳମଣ୍ଡପ ସାହି ମୁହଁ ପାଖେ ଠେଙ୍ଗାବାଡି ଧରି ଏହି ପାଗଳ ଜନତାର ଗତିରୋଧ କରି ସମଗ୍ର ରାତ୍ର ଜାଗ୍ରତ ରହିଲେ । ଏଣେ ଏକ୍‌ଜିକ୍ୟୁଟିଭ୍ ଅଫିସର ତାଙ୍କ ଘରେ ମୁଁ ରହିବା ସିକ୍ୟୁରିଟି ଦୃଷ୍ଟିରୁ ଠିକ୍ ହେବ ନାହିଁ ଏବଂ ପ୍ରଶାସନ ମତେ ଆଶ୍ରୟ ଦେଉଛନ୍ତି ବୋଲି ପ୍ରକଟ ହେଲେ ତାଙ୍କ ଚାକିରୀ ଉପରେ ଆଞ୍ଚ ଆସିବ ବୋଲି ତାଙ୍କର ଆଶଙ୍କା ହେବା ମୁଁ ଅନୁଭବ କଲି । ମୁଁ କହିବାରେ ସେ ରାଜି ହୋଇ ମତେ ନେଇ ସେହି ସାହିରେ ମ୍ୟୁନିସିପାଲ୍‌ଟି ଆକାଉଣ୍ଟାଣ୍ଟ ଲକ୍ଷ୍ମଣ ମିଶ୍ରଙ୍କ ଘରେ ଛାଡିଦେଲେ । ମୁଁ ମିଶ୍ର ମହାଶୟଙ୍କ ଶୋଇବା ଘରେ ଲୁଚି ରହିଲି ଓ ସେ ବାହାରୁ ମତେ ତାଲା ପକାଇ ଦେଲେ । ସେଇଦିନ ରାତ୍ର ପ୍ରଦେଶ କଂଗ୍ରେସ ସଭାପତି ବନମାଳୀ ପଟ୍ଟନାୟକ ଆମ ଘର ସବୁ ଆକ୍ରମଣ ହୋଇ ଆମେ ଜନତାଙ୍କ ରାଗର ଶିକାର ହେଉଛୁ ବୋଲି ସମ୍ବାଦ ପାଇ ପୁରୀକୁ ରାତ୍ର ୧୧ଟା ପରେ ପହଞ୍ଚି ଆମ ଘରେ ଦ୍ୱାର ବାଡେଇଲେ ଏବଂ ମୋ ସାନ ଭାଇ ଶ୍ରୀମାନ୍ ରାଜ କିଶୋର ମହାପାତ୍ରଙ୍କଠାରୁ ମୁଁ ସୁରକ୍ଷିତ ସମ୍ବାଦ ପାଇ ରାତ୍ର ପୁରୀ ସର୍କିଟ ହାଉସରେ ରହିଲେ ଓ ପରଦିନ ମୁଁ ଫେରିବା ପରେ ସାକ୍ଷାତ ହେଲା । ସେହିଦିନଠାରୁ ପଙ୍କ ବାବୁ ପୁରୀ ଛାଡିଦେଲେ । ବହୁଦିନ ଧରି ବନାରସରେ ରହି ଶେଷରେ ସେ ଓ ତାଙ୍କ ପତ୍ନୀ ଘର ସଂସାରରୁ ବୈରାଗ୍ୟ ନେଇ ଶେଷ ଜୀବନ ପର୍ଯ୍ୟନ୍ତ ଆଉ ରାଜନୀତିରେ ନ ରହି ନିଜେ ଓ ତାଙ୍କର ପତ୍ନୀ ଗୁରୁ ଓ ଗୁରୁପତ୍ନୀ ଭାବରେ ବହୁ ଶିଷ୍ୟ କଲେ ଓ ଶେଷରେ ସଂସାର ତ୍ୟାଗ ପର୍ଯ୍ୟନ୍ତ ଉଭୟ ଆଉ ପୁରୀରେ ନ ରହି ସତ୍ୟ ଯୁଗ ନିକଟ ହୋଇ ଆସୁଛି ଓ ସମସ୍ତେ ସ୍ୱର୍ଗକୁ ଚାଲିଯିବେ ବୋଲି ଏକ ବିଶ୍ୱାସ ଜନ୍ମାଇ ନିଜର ଓ ପତ୍ନୀଙ୍କର ଦେବମୂର୍ତ୍ତି ଆବିର୍ଭାବ ସତ୍ୟଯୁଗକୁ ନିକଟାଇଦେଉଛି ବୋଲି ବିଶ୍ୱାସ ଜନ୍ମାଇ ଶେଷରେ ନିରାଶ ହୋଇ ଶେଷ ଜୀବନ ଏକୁଟିଆ ଭାବରେ କଟାଇଥିଲେ । ମୋ ସାନ ଭାଇ ଶ୍ରୀମାନ ରାଜକିଶୋର ମୋ

ଉପରେ ଆକ୍ରମଣର ସମ୍ବାଦ ପାଇ ଘରକୁ ଫେରୁଥିବାବେଳେ କିଛି ଅସାମାଜିକ ଲୋକ ତାଙ୍କୁ ଚିହ୍ନି ମାଡ ଦେଇ ଆଘାତ କଲେ ସୁଦ୍ଧା ସେ ନିଜକୁ ରକ୍ଷା କରି ସାହସର ସହିତ ଘରକୁ ଫେରି ବିଶ୍ୱନାଥ ପାଢୀଙ୍କ ସହିତ ଆମ ଘର ଦୁର୍ବୃତ୍ତଙ୍କ କବଳରୁ ରକ୍ଷା କରିବାରେ ଲାଗି ପଡିଥିଲା ।

ପଙ୍କବାବୁ ମତେ ବିଶେଷ ଭଲ ପାଉନଥିଲେ । କାରଣ ଜଣେ ଆଇନଜୀବୀ ଭାବେ, ସରକାରୀ ଓକିଲ ଓ ମ୍ୟୁନିସିପାଲିଟି ଚେୟାରମ୍ୟାନ ଭାବେ ମୁଁ ବିଶେଷ ଜନପ୍ରିୟ ହୋଇପଡିଥିବାରୁ ସେ ମତେ ରାଜନୈତିକ ପ୍ରତିଦ୍ୱନ୍ଦ୍ୱୀ ଭାବି ସୁଖ ପାଉନଥିଲେ । ସେଇଟା ଜଣାପଡିଲା ୧୯୫୭ ମସିହା ବ୍ୟବସ୍ଥାସଭା ନିର୍ବାଚନ ସମୟରେ । ସେଇ ଘଟଣାଟି ଉଲ୍ଲେଖ କରି ମୋର ପୁରୀ ସହର ରାଜନୀତି ଓ ଓଡିଶା ରାଜନୈତିକ ସ୍ଥିତି ଓ ବିଜୁ ବାବୁଙ୍କ ଆବିର୍ଭାବ ଓ ତା ପରବର୍ତ୍ତୀ ରାଜ୍ୟର ରାଜନୀତି ଉପରେ ତାର ପ୍ରଭାବ ସଂପର୍କରେ କିଛି କହିବା ଆବଶ୍ୟକ ଉପଲବ୍ଧି କରୁଛି କାରଣ ତାହା ମୋ ରାଜନୀତିକ ଜୀବନରେ ବହୁତ ପରିବର୍ତ୍ତନ ଆଣିବାରେ ସହାୟକ ହୋଇଥିଲା ।

# ମୋର ପ୍ରଥମ ବିଧାନସଭା ନିର୍ବାଚନ

ମୁଁ ଆଗରୁ କହି ରଖିଛି, ଡକ୍ଟର ହରେକୃଷ୍ଣ ମହତାବଙ୍କ ମୋ ପ୍ରତି ଅଗାଧ ସ୍ନେହ ଓ ଆଶୀର୍ବାଦ ମୋ ସାଧାରଣ ଜୀବନରେ କିପରି ସହାୟକ ହୋଇଥିଲା । ସେ ମୋ ସଂପର୍କରେ ଟିକିନିକି ଖବର ରଖୁଥିଲେ । ଜନ ମାନସରେ ମୋର ପ୍ରତିଷ୍ଠା ବଢାଇବା ପାଇଁ ରାଜ୍ୟର ମୁଖ୍ୟମନ୍ତ୍ରୀ ଓ ତତ୍‌କାଳୀୟ ରାଜ୍ୟର ଶ୍ରେଷ୍ଠ ଜନନାୟକ, ତାଙ୍କର ମୋର ପ୍ରତି ଯେଉଁ ଶୁଭେଚ୍ଛା ଓ ଆଶୀର୍ବାଦ ତା'ର ଅମ୍ଳାନ ସ୍ମୃତି ମୋର ଶେଷ ନିଃଶ୍ୱାସ ଥିବା ପର୍ଯ୍ୟନ୍ତ ମୋତେ ଅନୁପ୍ରାଣିତ କରୁଥିବ । ଆଜି ଏ ପରିଣତ ବୟସରେ ସେ କଥା ମନେ ପଡିଗଲେ ମୁଁ ନିଜକୁ କେତେ ତିରସ୍କାର କରେ ଯେ ରାଜନୀତି କ୍ଷେତ୍ରରେ ପରିସ୍ଥିତିର ତାଡନାରେ ତାଙ୍କ ବିରୁଦ୍ଧରେ ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଥିବା ସମୟରେ ରାଜ୍ୟରେ ଯେଉଁ ରାଜନୈତିକ ଝଞ୍ଜା କଂଗ୍ରେସ ଦଳରେ ଘଟି ମହତାବ ବାବୁଙ୍କ ବିରୁଦ୍ଧରେ କେତେକ ଦୁର୍ନୀତି ଅଭିଯୋଗ ସଂପର୍କରେ ବିଚାର ପାଇଁ ଯେଉଁ କମିଶନ ନିଯୁକ୍ତ ହୋଇଥିଲେ ଏଲାହାବାଦ ହାଇକୋର୍ଟର ପୂର୍ବତନ ମୁଖ୍ୟ ବିଚାରପତି ସ୍ୱର୍ଗତଃ ସରଜୁ ପ୍ରସାଦଙ୍କୁ ନେଇ, ସେଥିରେ ରାଜ୍ୟ ସରକାର ମତେ ଓ ମୋ ସହିତ ହାଇକୋର୍ଟର ବିଶିଷ୍ଟ ଆଡଭୋକେଟ ପୂର୍ବତନ କେନ୍ଦ୍ର ମନ୍ତ୍ରୀ ଶ୍ରୀ ବିବୁଧେନ୍ଦ୍ର ମିଶ୍ର ଓ ବ୍ରହ୍ମପୁରର ବରିଷ୍ଠ ଆଇନଜୀବୀ ସ୍ୱର୍ଗତଃ ସନ୍ୟାସୀ ରାଓଙ୍କୁ ସରକାରୀ ଆଡଭୋକେଟ ଭାବେ ନିଯୁକ୍ତି ଦେଇ ଅଭିଯୋଗ ଗୁଡିକୁ ପ୍ରମାଣ କରାଇବାର ଦାୟିତ୍ୱ ଦିଆଯାଇଥିଲା । ସେ ସମୟରେ ମୁଁ ଡକ୍ଟର ମହତାବଙ୍କୁ ସାକ୍ଷାତ କରି ମୋ ନିଯୁକ୍ତି ସଂପର୍କରେ ଜଣାଇବାରୁ ସେ ହସି ହସି କହିଲେ, 'ମୁଁ ତୁମକୁ ମୁଖ୍ୟମନ୍ତ୍ରୀ ଥିବାବେଳେ ରାଜ୍ୟର ସର୍ବକନିଷ୍ଠ ବୟସର ସରକାରୀ ଓକିଲ ଭାବେ ପୁରୀରେ ନିଯୁକ୍ତି ଦେବାପାଇଁ ଯେଉଁ ନିଷ୍ପତ୍ତି ନେଇଥିଲି, ତାହା ଥିଲା ସଂପୂର୍ଣ୍ଣ ଯୁକ୍ତିଯୁକ୍ତ । ଆଜି ତାହା ପ୍ରମାଣିତ ହୋଇଛି । ପରବର୍ତ୍ତୀ ସରକାର ମଧ୍ୟ ତୁମର ଆଇନଗତ ପାରଦର୍ଶୀତାକୁ ସ୍ୱୀକାର କରି ମୋ ବିରୁଦ୍ଧରେ ଅଭିଯୋଗ ଗୁଡିକ ପ୍ରତିପାଦିତ କରିବା ପାଇଁ କମିଶନଙ୍କ ଅଦାଲତରେ ସରକାରୀ ଆଡଭୋକେଟ୍ ଭାବେ ନିଯୁକ୍ତି ଦେଇଛି । ତୁମେ ତୁମର କର୍ତ୍ତବ୍ୟ ନିଷ୍ଠାର ସହିତ କରିବ ଏଥିରେ ସନ୍ଦେହ ନାହିଁ । ତୁମ ନିଯୁକ୍ତିରେ ମୁଁ ବହୁତ ଖୁସି ।'

ପରେ ପରେ ଆଲୋଚନା ବେଳେ ମତେ ଗୋଟିଏ କଥା କହିଥିଲେ ଯାହାକି ଅକ୍ଷରେ ଅକ୍ଷରେ ସତ୍ୟ ପ୍ରତିପାଦିତ ହେଲା ମୋ ରାଜନୀତିକ ଜୀବନର ଅଭିଜ୍ଞତାରେ । ସେ ଭବିଷ୍ୟତବାଣୀ ମତେ ଦେଇ କହିଥିଲେ, 'ଗଙ୍ଗାଧର ବାବୁ, ରାଜନୀତିରେ କୋର୍ଟ ନିଷ୍ପତ୍ତି ଲୋକେ ବିଚାରକୁ ନିଅନ୍ତି ନାହିଁ । ଭାରତବର୍ଷରେ ଏହା ପରୀକ୍ଷିତ । ଜନମତ ହିଁ ସବୁ ଅଦାଲତ ନିଷ୍ପତ୍ତି ଉପରେ । ତାହା ହିଁ ନେତୃତ୍ୱର ମାପକାଠି । କିଛି ବର୍ଷ ପରେ ସେ ନିଜେ ତା ଦେଖାଇ ଏହି ମାପକାଠିର ସାର୍ଥକତା ପ୍ରମାଣିତ କରିଥିଲେ । ୧୯୭୧ ନିର୍ବାଚନ ପୂର୍ବରୁ ସରଜୁ ପ୍ରସାଦ  କମିଶନ ତାଙ୍କୁ ସମସ୍ତ ଦୁର୍ନୀତି ଅଭିଯୋଗ ପ୍ରମାଣିତ ବୋଲି ତାଙ୍କ ନିଷ୍ପତ୍ତିରେ ସାବ୍ୟସ୍ତ କରିବା ପରେ ତାଙ୍କ ବିରୁଦ୍ଧରେ ସେହି ସାବ୍ୟସ୍ତ ଅଭିଯୋଗ ଉପରେ ନ୍ୟାୟାଳୟରେ ଅଭିଯୋଗ ପତ୍ର ଦାଖଲ କରୁଥିବା ଅବସରରେ ବିଧାନସଭା ପାଇଁ ୧୯୭୧ ସାଧାରଣ ନିର୍ବାଚନରେ ସେ ଦୁଇଟି ନିର୍ବାଚନ ମଣ୍ଡଳୀରୁ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ ।  ପ୍ରଥମଟି ତତ୍କାଳୀନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ବିରୋଧରେ ତାଙ୍କ ପ୍ରତିଷ୍ଠିତ ଜନ କଂଗ୍ରେସ ନାମରେ ଏକ ପ୍ରାନ୍ତୀୟ ଦଳ ତରଫରୁ, ଅନ୍ୟଟି ବାଲେଶ୍ୱର ଜିଲ୍ଲା ନୀଳମଣି ରାଉତରାୟଙ୍କର ଚାନ୍ଦବାଲୀ ନିର୍ବାଚନ ମଣ୍ଡଳୀରୁ । ଉଭୟ ବିଜୁବାବୁ ଓ ନୀଳମଣି ବାବୁ ମୁଖ୍ୟମନ୍ତ୍ରୀ ଓ ଉପ-ମୁଖ୍ୟମନ୍ତ୍ରୀ ଦାୟିତ୍ୱରେ ଥିବାବେଳେ ମହତାବ ବାବୁଙ୍କ ବିରୁଦ୍ଧରେ କମିଶନ ବସାଇ ରାଜନୀତିରୁ ବିଦାୟ ଦେବା ପାଇଁ ବହୁତ ଉଦ୍ୟମ କରିଥିଲେ, ଯଦିଓ ମହତାବ ବାବୁ ଉଭୟ ବିଜୁବାବୁ ଓ ନୀଳମଣି ବାବୁଙ୍କୁ ରାଜନୀତି କ୍ଷେତ୍ରରେ ସାଧାରଣ ଜୀବନରେ ପ୍ରତିଷ୍ଠା କରାଇ ଜନନେତା ଭାବରେ କଂଗ୍ରେସ ଦଳର ପ୍ରମୁଖ ନେତା ଭାବେ ପ୍ରତିଷ୍ଠା କରାଇବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ରାଜନୀତିରେ ସବୁ ସମ୍ଭବ । ଆଜିର ମିତ୍ର ଆସନ୍ତା କାଲି ମଧ୍ୟ କ୍ଷମତା ମୋହରେ ସ୍ୱଭାବଶାଳୀ ଶତ୍ରୁ ଭାବରେ ଉଭା ହୁଅନ୍ତି । ବିବେକ ଦଂଶନ ହୁଏ ନାହିଁ । ଯେଉଁଠାରେ ମୂଲ୍ୟବୋଧ ନାହିଁ ବା ଆଦର୍ଶ ନାହିଁ କେବଳ କ୍ଷମତା ଲିପ୍ସା ଜୀବନର ଏକମାତ୍ର ଲକ୍ଷ୍ୟ ହୁଏ, ସେଠାରେ ଆଦର୍ଶ ଓ ମୂଲ୍ୟବୋଧ ପ୍ରଥମ ଶିକାର ହୁଅନ୍ତି । ଚରମ ଶତ୍ରୁତା ଓ ବିରୋଧ ବୟସ ଓ ପୂର୍ବର ସମସ୍ତ ସ୍ମୃତିରୁ ଉଭାନ ହୋଇଯାଏ । ତାହା ହିଁ ଉତ୍କଳ କେଶରୀ ମହତାବ ପ୍ରମାଣିତ କରି ଜନ ଜୀବନକୁ ଏକ ନୂତନ ଦିଗ୍‌ଦର୍ଶନ ଦେଇଥିଲେ । ଉଭୟ ନିର୍ବାଚନ ମଣ୍ଡଳୀରେ ବିଜୁବାବୁ ଓ ନୀଳମଣି ବାବୁ ଶୋଚନୀୟ ପରାଜୟର ସମ୍ମୁଖୀନ ହେଲେ ଏବଂ ସରଜୁପ୍ରସାଦ କମିଶନରେ ୪ଟି ଗୁରୁତ୍ୱପୂର୍ଣ୍ଣ ଦୁର୍ନୀତି ଅଭିଯୋଗ ସାବ୍ୟସ୍ତ ହୋଇ ବହୁଳ ଭାବେ ପ୍ରଚାରିତ ହୋଇଥିଲେ ମଧ୍ୟ ନିର୍ବାଚନ ସଂଗ୍ରାମରେ ଜନତା ଦରବାର ସେ ସବୁକୁ କୌଣସି ଗୁରୁତ୍ୱ ନ ଦେଇ ମହତାବ ବାବୁ ରାଜ୍ୟର ପ୍ରକୃତ ବିଶିଷ୍ଟ ଜନନାୟକ ଭାବେ ପ୍ରତିପାଦିତ କରିଥିଲେ । ନିକଟ ଅତୀତରେ ୨୦୦୧

ମସିହା ମାର୍ଚ୍ଚ ମାସରେ ୫ଟି ପ୍ରମୁଖ ରାଜ୍ୟରେ ହୋଇଥିବା ସାଧାରଣ ନିର୍ବାଚନ ମଧ୍ୟ ମହତାବ ବାବୁଙ୍କ ରାଜନୈତିକ ପରିପକ୍ୱତାର ସାର୍ଥକତାକୁ ବିଶେଷ ଭାବେ ପ୍ରମାଣିତ କରି ଦେଇଛି । ତାମିଲନାଡୁର ଏ.ଡି.ଏମ୍.କେ. ନେତ୍ରୀ ଜୟଲଳିତା ଅତ୍ୟନ୍ତ ଗୁରୁତର ଦୁର୍ନୀତିରେ ୨ଟି ସ୍ୱତନ୍ତ୍ର ଅଦାଲତରେ ଦଣ୍ଡିତ ହୋଇ ୩ ବର୍ଷରୁ ଅଧିକ ଜେଲ ଦଣ୍ଡ ଭୋଗିବା ପାଇଁ ଉଚ୍ଚତମ ନ୍ୟାୟାଳୟରୁ ଜାମିନରେ ଆସି ନିର୍ବାଚନ ଆଇନ ବଳରେ ବିଧାନସଭାକୁ ପ୍ରାର୍ଥୀ ଭାବେ ଛିଡା ହେବାର ସୁଯୋଗ ହରାଇଥିଲେ ମଧ୍ୟ ତାଙ୍କ ନାମରେ ଓ ତାଙ୍କ ନେତୃତ୍ୱରେ ଏ.ଡି.ଏମ୍.କେ. ଦଳ ନାହିଁ ନ ଥିବା ବିଜୟ ହାସଲ କରି ଡି.ଏମ.କେ. ଦଳର ମୁଖ୍ୟମନ୍ତ୍ରୀ କରୁଣାନିଧିଙ୍କ ପରି ଜଣେ ରାଜନୀତିଜ୍ଞ ଓ ତାମିଲନାଡୁର ମୁଖ୍ୟମନ୍ତ୍ରୀଙ୍କ ଡି.ଏମ.କେ. ଦଳର ଚରମ ବିପର୍ଯ୍ୟୟ ଘଟାଇଛି । ଶ୍ରୀମତି ଜୟଲଳିତା ନିର୍ବାଚନରେ ପ୍ରାର୍ଥୀ ହେବା ପାଇଁ ଅଯୋଗ୍ୟ ବିବେଚିତ ହୋଇଥିଲେ ମଧ୍ୟ ସମ୍ବିଧାନରେ ସେ ମୁଖ୍ୟମନ୍ତ୍ରୀ ହେବାରେ କୌଣସି ପ୍ରତିବଂଧକ ନଥିବା ଦର୍ଶାଇ ସୁପ୍ରିମକୋର୍ଟର ପୂର୍ବତନ ବିଚାରପତି ଓ ବର୍ତ୍ତମାନର ତାମିଲନାଡୁ ରାଜ୍ୟପାଳ ତାଙ୍କୁ ନିର୍ବାଚନ ଫଳ ପ୍ରକାଶିତ ହେବାର ୪୮ ଘଣ୍ଟା ମଧ୍ୟରେ ଏ.ଡି.ଏମ୍.କେ. ବ୍ୟବସ୍ଥାପକ ଦଳର ନେତ୍ରୀ ଭାବେ ତାମିଲନାଡୁର ମୁଖ୍ୟମନ୍ତ୍ରୀ ଭାବେ ଶପଥ ଦିଆଇଛନ୍ତି । ସମ୍ବିଧାନ ଓ ନିର୍ବାଚନ ଆଇନ ଉଭୟ ତାଙ୍କୁ ମୁଖ୍ୟମନ୍ତ୍ରୀ ହେବାରେ ବାଧା ଦେଇ ପାରିନାହାନ୍ତି ଯଦିଓ ନିର୍ବାଚନରେ ପ୍ରାର୍ଥୀ ହେବାର ସୁଯୋଗରୁ ବଞ୍ଚିତ କରିଛନ୍ତି । ଏହା ହିଁ ଆଇନ, ସମ୍ବିଧାନ ଓ ଜନତା ଦରବାରର ନିଷ୍ପତ୍ତି ଭିତରେ ପ୍ରଭେଦ, ଯାହାକି ୧୯୬୮-୬୯ ମସିହାରେ ମହତାବ ବାବୁ ସାରା ଭାରତରେ ପ୍ରଥମ କରି ଓଡିଶାର ସାଧାରଣ ନିର୍ବାଚନରେ ଜଣେ ଦୁର୍ନୀତିରେ ଅଭିଯୁକ୍ତ ଭାବେ କମିଶନ ଦ୍ୱାରା ନିନ୍ଦିତ ହୋଇଥିଲେ ମଧ୍ୟ ଏହି ନୀତିବାକ୍ୟର ସାର୍ଥକତା ପ୍ରତିପାଦିତ କରିଥିଲେ । ସେ ଯାହା ହେଉ ସେ ସଂପର୍କରେ ମୋର ମୂଳ ଲକ୍ଷ୍ୟରୁ ଏଠାରେ ଅଧିକ ଉଲ୍ଲେଖ କରିବା ଉଦ୍ଦେଶ୍ୟରୁ ଦୂରେଇ ମୋ ଆତ୍ମଜୀବନୀ କଳେବର ବୃଦ୍ଧି ଘଟାଇବା ଉଚିତ ହେବ ନାହିଁ ବୋଲି ଅଧିକ ଦୃଷ୍ଟାନ୍ତ ଦେବା ଉଚିତ ମନେ କରୁ ନାହିଁ ।

୧୯୫୧ ମସିହାରେ ମୁଁ ପୁରୀ ମ୍ୟୁନିସିପାଲିଟି ନିର୍ବାଚନରେ କଂଗ୍ରେସ ଦଳର ସ୍ଥାନୀୟ ମୁଖ୍ୟ ଭାବେ ନିର୍ବାଚିତ ହେଲି । ସେଥିପାଇଁ ଦଳରେ କିଛି ବନ୍ଧୁ ମତେ ଘୋର ବିରୋଧ କଲେ । ଦଳ ଭିତରେ ସେଥିପାଇଁ ମତ ଗ୍ରହଣ କରାଯିବା ପାଇଁ ମୁଖ୍ୟମନ୍ତ୍ରୀ ମହତାବବାବୁ ନିର୍ଦ୍ଦେଶ ଦେଲେ । ଦଳରେ ମୋର ୧୧ ଜଣ ସମର୍ଥକ ଥିବା ବେଳେ ସ୍ୱର୍ଗତ ବ୍ରଜମୋହନ ମହାନ୍ତି ମୋର ପ୍ରତିଦ୍ୱନ୍ଦ୍ୱୀ ଥାଇ କେବଳ ଦୁଇ ତିନିଟି ସମର୍ଥକ ପାଇଥିଲେ । ମୁଁ ପୁରୀ ପୌରସଭା ନିର୍ବାଚନ ପୂର୍ବରୁ ସରକାରୀ ଓକିଲ ପଦରୁ ଇସ୍ତଫା ଦେଇଥିଲି । ତତ୍‌କାଳୀନ ଜିଲ୍ଲାପାଳ ମୋ ଇସ୍ତଫା ଗ୍ରହଣ ନକରି ପୁରୀରେ

ସେତେବେଳେ ଅବସ୍ଥାନ କରୁଥିବା ବିଖ୍ୟାତ ଜନନାୟକ, ସ୍ୱାଧୀନତା ସଂଗ୍ରାମର ପ୍ରମୁଖ ନେତା ଜନାବ ଆସଫ ଅଲ୍ଲୀଙ୍କୁ ଜଣାଇଲେ । ରାଜ୍ୟପାଳ, ମତେ ପୁରୀ ରାଜଭବନକୁ ଡକାଇ ଇସ୍ତଫା ଦେବାର କାରଣ ପଚାରିବାରେ ମୁଁ ସାଧାରଣ ଜୀବନରେ ପ୍ରଥମ ସୋପାନ ରୂପେ ପୁରୀ ପୌରସଭାର ଜଣେ ନିର୍ବାଚିତ ଅଧ୍ୟକ୍ଷ ହେବାର ଅଭିଳାଷ ରଖି ଇସ୍ତଫା ଦେଇଛି ବୋଲି କହିଲି । ଏଥିପାଇଁ ରାଜ୍ୟପାଳଙ୍କ ଶୁଭେଚ୍ଛା ଓ ଆଶୀର୍ବାଦ ନିବେଦନ କରିବାରେ ସେ ଅତ୍ୟନ୍ତ ପ୍ରୀତ ହୋଇ ମୋ ମସ୍ତକ ଉପରେ ହାତ ରଖି ମୋର ଶୁଭକାମନା କଲେ ଏବଂ ନିର୍ବାଚନ ଦିନ ନିଜେ ସମଗ୍ର ସହରର ଭୋଟକେନ୍ଦ୍ର ପରିଦର୍ଶନ କରି ଅପରାହ୍ନରେ ପୁରୁଣା ପୌରଭବନଠାରେ ମତେ ଖୁସି ହୋଇ କହିଲେ ଯେ କଂଗ୍ରେସ ଦଳ ଓ ମୋର ସମର୍ଥକମାନଙ୍କର ବିଜୟ ହେବ ବୋଲି ତାଙ୍କର ଦୃଢ ବିଶ୍ୱାସ ହୋଇଛି । ତାହା ବି ସତ୍ୟରେ ପରିଣତ ହେଲା । ମୁଁ ରାଜ୍ୟପାଳଙ୍କ ଶୁଭେଚ୍ଛା ଓ ମହତାବ ବାବୁଙ୍କର ଆଶୀର୍ବାଦରେ ପୁରୀ ପୌରସଭାର ସ୍ୱାଧୀନତା ପ୍ରାପ୍ତିର ପ୍ରଥମ ନିର୍ବାଚିତ ଅଧ୍ୟକ୍ଷ ଭାବେ ଦାୟିତ୍ୱ ନେଲି । ଅଧ୍ୟକ୍ଷ ପଦ ପାଇଁ ନିର୍ବାଚନର ୩/୪ ଦିନ ପୂର୍ବରୁ ରାଜ୍ୟପାଳ ମହୋଦୟ ସ୍ୱାସ୍ଥ୍ୟ ପରୀକ୍ଷା ପାଇଁ ସ୍ୱିଜରଲ୍ୟାଣ୍ଡ ଯାଇଥିଲେ ମଧ୍ୟ ତାଙ୍କର ମୋ ପ୍ରତି ଯେଉଁ ଶୁଭେଚ୍ଛା ଥିଲା ସେ ଖବର ପାଇଁ ମୁଁ ତାଙ୍କୁ ଧନ୍ୟବାଦ ଜଣାଇବା ପୂର୍ବରୁ ତାଙ୍କଠାରୁ କେବୁଲ ଯୋଗେ ସ୍ୱାଗତ ସମ୍ବାଦ ପାଇଥିଲି । ସେତେବେଳେ ରାଜନୈତିକ ନେତାମାନଙ୍କର ଯୁବକମାନଙ୍କ ପାଇଁ କିପରି ସ୍ନେହ, ଆଶୀର୍ବାଦ ଓ ଉତ୍ସାହ ଥିଲା ସେ ସବୁ ଆଜିକାଲି କ୍ଷମତା ବଳୟ ଭିତରେ ଦେଖିବାକୁ ମିଳେ ନାହିଁ । ସମ୍ବିଧାନର ସୀମିତ ସୀମା ମଧ୍ୟରେ ସଂଯତ ଭାବରେ ରହି ଜନାବ ଆସଫ ଅଲ୍ଲୀଙ୍କର ମୋ ପ୍ରତି ଆଶୀର୍ବାଦ ଓ ଶୁଭେଚ୍ଛା ହେଉଛି ଏକ ଜ୍ୱଳନ୍ତ ଉଦାହରଣ । ସ୍ୱାଧୀନତା ପର ପ୍ରଥମ ପୌରସଭାର ସାଧାରଣ ନିର୍ବାଚନ ମୋ ପାଇଁ ଥିଲା ପ୍ରତ୍ୟକ୍ଷ ରାଜନୀତିରେ ପ୍ରବେଶର ଏକ ଶୁଭ ସଂକେତ । କିନ୍ତୁ ପୁରୀ ଜିଲ୍ଲାପାଳ, ଅତିରିକ୍ତ ଜିଲ୍ଲାପାଳ (ଉଭୟ ଆଇ.ଏ.ଏସ୍.) ମୋର ଆଇନଜୀବୀ ଭାବରେ ସଫଳତାକୁ ଦୃଷ୍ଟିରେ ରଖି, ମୁଁ ସରକାରୀ ଓକିଲ ଦାୟିତ୍ୱରୁ ଅବ୍ୟାହତି ନେଇଥିଲେ ସୁଦ୍ଧା, ମତେ ସ୍ୱତନ୍ତ୍ର ସରକାରୀ ଓକିଲ ଭାବେ କେତେକ ବଡ ବଡ ସରକାରୀ କେଶର ଦାୟିତ୍ୱ ଦେଇ, ସ୍ପେସିଆଲ୍ ପବ୍ଲିକ୍ ପ୍ରସିକ୍ୟୁଟର ଭାବେ ଚଳାଇବା ପାଇଁ ଅନୁରୋଧ କଲେ । ମୁଁ ଉଭୟ ଦାୟିତ୍ୱ କିଛି ମାସ ତୁଲାଇବା ପରେ ସ୍ୱର୍ଗତଃ ଆର୍ତ୍ତବନ୍ଧୁ ଦାଶଙ୍କୁ ସରକାରୀ ଓକିଲ ଭାବରେ ନିଯୁକ୍ତି ଦିଆଯିବା ପରେ ମୁଁ ଦାୟିତ୍ୱ ମୁକ୍ତ ହେଲି ସରକାରୀ ଓକିଲ ପଦରୁ । ସେତେବେଳେ ମୁଖ୍ୟମନ୍ତ୍ରୀ ଥିଲେ ସ୍ୱର୍ଗତ ନବକୃଷ୍ଣ ଚୌଧୁରୀ । ସେତେବେଳକୁ ମହତାବ ବାବୁ ଓ ନବକୃଷ୍ଣ ଚୌଧୁରୀଙ୍କ ଭିତରେ ସଂଘର୍ଷ ସୃଷ୍ଟି ହୋଇଥାଏ । ମହତାବ ବାବୁଙ୍କୁ ପଣ୍ଡିତ ନେହେରୁ ତାଙ୍କ

ମନ୍ତ୍ରିମଣ୍ଡଳରେ ଶିଳ୍ପ ଓ ବାଣିଜ୍ୟ ବିଭାଗର ଏକ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ଦେଇ କେନ୍ଦ୍ରକୁ ନେଇ ଯାଇଥାଆନ୍ତି । କିନ୍ତୁ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ରହି ସେ ପୁନର୍ବାର ରାଜ୍ୟର ମୁଖ୍ୟମନ୍ତ୍ରୀ ଭାବରେ ଆସିବା ପାଇଁ ଉଦ୍ୟମ କରୁଥାଆନ୍ତି । ସାହସୀ ବିଜୁ ପଟ୍ଟନାୟକ ଜଣେ ଯୁବକ ବ୍ୟବସ୍ଥାପକ ଭାବେ ରାଜ୍ୟରେ ଶିଳ୍ପ ବିସ୍ତାର ପାଇଁ ବିରାଟ ଯୋଜନା କରିବାରେ ବ୍ୟସ୍ତ ରହି ମହତାବ ବାବୁ ଶିଳ୍ପ ଓ ବାଣିଜ୍ୟ ବିଭାଗର ଦାୟିତ୍ୱରେ ଥିବା ହେତୁ ସମସ୍ତ ସୁବିଧା ସୁଯୋଗର ସଦ୍ ବ୍ୟବହାର କରୁଥିଲେ । ସେ ମହତାବ ବାବୁଙ୍କର ତତ୍କାଳୀନ ଶ୍ରେଷ୍ଠ ସମର୍ଥକ ଓ ଦିଲ୍ଲୀରେ ତାଙ୍କ ପାଇଁ ପଣ୍ଡିତ ନେହେରୁଙ୍କ ପାଖେ ସବୁବେଳେ ଲବି କରିବାର ପ୍ରମୁଖ ଦାୟିତ୍ୱରେ ଥିଲେ । ଓଡିଶାରେ ନବକୃଷ୍ଣ ଚୌଧୁରୀଙ୍କୁ ହଟାଇ ମହତାବ ବାବୁଙ୍କୁ ପୁନର୍ବାର ମୁଖ୍ୟମନ୍ତ୍ରୀ କରିବା ପାଇଁ ପଣ୍ଡିତ ନେହେରୁ ଓ ଶ୍ରୀମତି ଇନ୍ଦିରାଜୀଙ୍କୁ ପ୍ରଭାବିତ କରୁଥିଲେ ।

ଶ୍ରୀମତି ଇନ୍ଦିରାଜୀ ପରବର୍ତ୍ତୀ କଂଗ୍ରେସ ସଭାପତି ହେବା ପରେ, ବିଜୁବାବୁ ଅଧିକ ଶକ୍ତିଶାଳୀ ରାଜନୈତିକ ନେତା ଭାବେ ଓଡିଶାରେ ତାଙ୍କର ନେତୃତ୍ୱ ପ୍ରତିଷ୍ଠା କରି ମହତାବ ବାବୁଙ୍କ ନେତୃତ୍ୱର ଓଡିଶାରେ ପୁନଃ ପ୍ରତିଷ୍ଠା ପାଇଁ ତାଙ୍କର ସମସ୍ତ ଶକ୍ତି ଓ ଅର୍ଥ ବିନିଯୋଗ କରୁଥାଆନ୍ତି । ମହତାବ ବାବୁ ୧୯୫୪ ମସିହାରେ ମହାରାଷ୍ଟ୍ର ରାଜ୍ୟର ରାଜ୍ୟପାଳ ଭାବେ ଅବସ୍ଥାପିତ ହୁଅନ୍ତି । ବିଶିଷ୍ଟ ସମାଜବାଦୀ ନେତା ଓ ଚିନ୍ତାନାୟକ ସ୍ୱର୍ଗତ ନବକୃଷ୍ଣ ଚୌଧୁରୀ ଓଡିଶା ମୁଖ୍ୟମନ୍ତ୍ରୀ ଭାବରେ ଦାୟିତ୍ୱ ନିଅନ୍ତି । ମହତାବ ବାବୁ କିନ୍ତୁ ମହାରାଷ୍ଟ୍ର ରାଜ୍ୟପାଳ ଭାବେ ମାଲବାର ହିଲସ୍ ରାଜଭବନକୁ ଏକ ରାଜନୈତିକ କେନ୍ଦ୍ର ଭାବେ ପରିଣତ କରି ପୁନର୍ବାର କିପରି ଓଡିଶାକୁ ମୁଖ୍ୟମନ୍ତ୍ରୀ ଭାବେ ଫେରିଆସିବେ ସେଥିପାଇଁ ସମସ୍ତ ପ୍ରକାର ଉଦ୍ୟମ ଚାଲୁ ରଖିଥାଆନ୍ତି । ସେହି ସମୟର କେତେକ ଘଟଣା ତାଙ୍କୁ ଓଡିଶାର ନେତୃତ୍ୱ ନେବାରେ ସହାୟକ ହେଲା । ୧୯୫୫ ମସିହାରେ ଦଳେଇଘାଇ ଭାଙ୍ଗିଲା, ଓଡିଶାକୁ ୧୯୫୪ ମସିହାରେ ଚୀନ ପ୍ରତିନିଧି ଦଳର ଶୁଭେଚ୍ଛା ଯାତ୍ରା, ୧୯୫୫ର ରାଜ୍ୟବ୍ୟାପୀ ସୀମା ଆନ୍ଦୋଳନ ଓ ରାଜ୍ୟ ସରକାରଙ୍କର ସେହି ଆନ୍ଦୋଳନକୁ ମୁକାବିଲା କରିବା ପାଇଁ ଅକଥନୀୟ ପୁଲିସ୍ ଜୁଲମ । ବମ୍ବେ ରାଜଭବନ ଆନ୍ଦୋଳନକାରୀମାନଙ୍କୁ ପରୋକ୍ଷରେ ସହାୟତା ଓ ପ୍ରେରଣା ଯୋଗାଉ ଥାଆନ୍ତି । ସେତେବେଳେ ଯେଉଁ କେତେକ ଯୁବ ରାଜନୈତିକ ଲୋକ ମହତାବ ବାବୁଙ୍କ ମୁଖ୍ୟମନ୍ତ୍ରିତ୍ୱକୁ ସମର୍ଥନ ଜଣାଇ ସେଥିପାଇଁ ଏକ ପରିବେଶ ସୃଷ୍ଟି କରୁଥିଲେ ସେମାନଙ୍କ ମଧ୍ୟରେ ପୁରୀରେ ମୁଁ ମୁଖ୍ୟ ଥାଏ । କାରଣ ସେତେବେଳକୁ ମୁଁ ଆଇନଜୀବୀ ଭାବରେ ଖ୍ୟାତି ଅର୍ଜନ କରିଥାଏ, ସରକାରୀ ଓକିଲର ପ୍ରଲୋଭନ ତ୍ୟାଗ କରି ପୁରୀ ପୌରସଭା ନିର୍ବାଚନରେ କଂଗ୍ରେସ ଦଳର ପୌରସଭା ଅଧ୍ୟକ୍ଷ ଭାବେ ନିର୍ବାଚିତ ହୋଇ ପୁରୀ ସହରର ପ୍ରଥମ ନାଗରିକ ଭାବେ

୧୯୫୧ ମସିହାଠାରୁ ପୁରୀ ସହରକୁ ନୂତନ ରୂପ ଦେବାକୁ ପ୍ରଗାଢ଼ ଉଦ୍ୟମ କରୁଥିବାରୁ ମହତାବ ବାବୁଙ୍କ ଦୃଷ୍ଟିରେ ମତେ କେନ୍ଦ୍ର କରି ତାଙ୍କ ଓଡିଶା ଫେରିବା ପାଇଁ ପରିବେଶ ସୃଷ୍ଟି କରିବା ପାଇଁ ଉସାହ ଦେଉଥାଆନ୍ତି । ୧୯୫୫ ମସିହା ପ୍ରାକୃତିକ ବିପର୍ଯ୍ୟୟ ଓ ପରେ ପରେ ସୀମା ଆନ୍ଦୋଳନରେ ପୁଲିସ୍ ଜୁଲୁମ୍‌ର ତାଣ୍ଡବ ଲୀଳା, ବେଙ୍ଗପାଣିଆ ନାମରେ ଜଣେ ନିରୀହ ବାଳକର ମୃତ୍ୟୁ ଏବଂ ପରେ ପରେ ପୁରୀ ସହରରେ ବ୍ୟାପକ ଭାବେ ପୋଡା ଜଳା, ଲୁଟ୍‌ତରାଜ, ରେଳଷ୍ଟେସନରେ ନିଆଁ ଲଗାଇ ରେଳସଂପତ୍ତି ନଷ୍ଟ ଓ ଅଜସ୍ର ଅର୍ଥ ଲୁଟ୍ ଓ ତା'ର ମୁକାବିଲା କରିବାରେ ନବବାବୁଙ୍କ ମନ୍ତ୍ରିମଣ୍ଡଳର ଅସଫଳତା ମହତାବ ବାବୁଙ୍କୁ ସୁଯୋଗ ଆଣିଦେଲା । ମହାରାଷ୍ଟ୍ର ରାଜ୍ୟପାଳ ଭାବେ ଓଡିଶା ଆସି ଆନ୍ଦୋଳନକୁ ଶାନ୍ତ କରିବା ଉଦ୍ଦେଶ୍ୟ ଥିଲେ ମଧ୍ୟ ପ୍ରକୃତରେ ସରକାରଙ୍କ ବ୍ୟର୍ଥତା ଓ ମନ୍ତ୍ରିମଣ୍ଡଳ ବିରୁଦ୍ଧରେ ଲୋକମତ ସୃଷ୍ଟି କରିବାରେ ତାଙ୍କ ଗସ୍ତ ସହାୟକ ହେଲା । ପ୍ରଥମେ ସେ ପୁରୀ ଗସ୍ତରେ ଆସିଲେ ଓ ମୁଁ ତାଙ୍କ ପାଇଁ ପୁରୀ ସହରର ବିଭିନ୍ନ ସ୍ଥାନରେ ସାଧାରଣ ସଭା କରି ଆନ୍ଦୋଳନକୁ ପ୍ରଶମିତ କଲି । ଶାନ୍ତି ପ୍ରତିଷ୍ଠା କରିବା ପାଇଁ ମୋର ଉଦ୍ୟମକୁ ସେ ବହୁତ ପ୍ରଶଂସା କଲେ ଓ ମହତାବ ବାବୁଙ୍କ ସଭାମାନଙ୍କରେ ପ୍ରବଳ ଲୋକମତ ତାଙ୍କୁ ନେତୃତ୍ୱ ନେବା ପାଇଁ ଏକ ସୁବର୍ଣ୍ଣ ସୁଯୋଗ ଆଣିଦେଲା । ଏହିପରି ସଭାମାନ କରି ରାଜ୍ୟରେ ଶାନ୍ତିପୂର୍ଣ୍ଣ ବାତାବରଣ ଫେରାଇ ଆଣିବା ପାଇଁ ଉଦ୍ୟମ ଅବ୍ୟାହତ ରଖିବା ପାଇଁ ମହତାବ ବାବୁ ତାଙ୍କର ସମସ୍ତ ସମର୍ଥକମାନଙ୍କୁ ନିର୍ଦ୍ଦେଶ ଦେଲେ ଏବଂ ମୁଁ ଯେପରି ଉଦ୍ୟମ କଲି ସେହିପରି ଉଦ୍ୟମ କରିବା ପାଇଁ ଲିଖିତ ନିର୍ଦ୍ଦେଶନାମା ପଠାଇଲେ । ଏପରି ଉଦ୍ୟମ ମତେ ରାଜ୍ୟ ରାଜନୀତିରେ ପ୍ରବେଶ କରାଇବାରେ ବହୁତ ସୁଯୋଗ ଦେଲା ଓ ମହତାବ ବାବୁଙ୍କର ନେତୃତ୍ୱକୁ ଜାହିର କରିବା ପାଇଁ ଉଦ୍ୟମରେ ତତ୍‌କାଳୀନ ଶ୍ରେଷ୍ଠ ନାୟକ ବିଜୁ ପଟ୍ଟନାୟକ, ବିରେନ୍ ମିତ୍ର ଓ ନୀଳମଣି ରାଉତରାୟଙ୍କ ସହିତ ଘନିଷ୍ଠତା ସୃଷ୍ଟି କରିବାରେ ଯଥେଷ୍ଟ ସହାୟକ ହେଲା । ଓଡିଶା ପରିସ୍ଥିତି ଅନୁଧ୍ୟାନ କରି ରାଜ୍ୟପ୍ରଶାସନ କିପରି ପ୍ରାକୃତିକ ବିପର୍ଯ୍ୟୟର ମୁକାବିଲା କରୁଛି ଏବଂ ସୀମା ଆନ୍ଦୋଳନ ଜନିତ ବ୍ୟାପକ ଅଶାନ୍ତି ଓ ସରକାରୀ ଅକ୍ଷମତା ସୃଷ୍ଟି କରୁଛି ପ୍ରତ୍ୟକ୍ଷ ଅନୁଭୂତି ନେବା ପାଇଁ ପଣ୍ଡିତ ନେହେରୁ ଭାରତର ତତ୍‌କାଳୀନ ଶ୍ରେଷ୍ଠ ଜନନାୟକ ଓ ସ୍ୱରାଷ୍ଟ୍ର ମନ୍ତ୍ରୀ ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ଥଙ୍କୁ ଓଡିଶାକୁ ପଠାଇଲେ । ସେତେବେଳକୁ ଓଡିଶାରେ ୧୯୫୭ ମସିହାର ସାଧାରଣ ନିର୍ବାଚନ ମଧ୍ୟ ନିକଟ ହୋଇ ଆସୁଥାଏ । ପନ୍ଥଜି ଓଡିଶା ଆସି ଦୁଇ ଦିନ ଗସ୍ତ କରି ଭୁବନେଶ୍ୱରସ୍ଥ ମ୍ୟୁଜିୟମ୍ ପଡିଆରେ ଏକ ବିରାଟ ସାଧାରଣ ସଭାରେ ଉଦ୍‌ବୋଧନ ଦେଇ ଉତ୍ତେଜନାକୁ ପ୍ରଶମିତ କରିବାରେ କେତେକ ସଫଳତା ହାସଲ କଲେ । ପରବର୍ତ୍ତୀ

ଅବସ୍ଥାକୁ ଆଖିରେ ରଖି ଓ ରାଜ୍ୟ ସାରା ଯେଉଁ ଉତ୍ତେଜନା ଓ ନବବାବୁ ମନ୍ତ୍ରିମଣ୍ଡଳର ପରିବର୍ତ୍ତନ ପାଇଁ କଂଗ୍ରେସ ଲୋକଙ୍କ ମୁଖ୍ୟ ଦାବିକୁ ସ୍ୱୀକାର କରି କଟକ ସ୍ୱରାଜ ଆଶ୍ରମରେ କଂଗ୍ରେସ କର୍ମୀମାନଙ୍କର ମନୋବଳ ଦୃଢ଼ କରିବା ପାଇଁ ଓ ପରବର୍ତ୍ତୀ ଆହ୍ୱାନର ସଫଳ ମୁକାବିଲା କରିବାରେ ସହାୟକ ହେବାକୁ ହେଲେ କିପରି ରାଜନୈତିକ କୌଶଳ ପ୍ରୟୋଗ କରାଯିବାର ଆବଶ୍ୟକତା ଅଛି ତାର ସମାଧାନର ବାଟ ଫିଟାଇବା ପାଇଁ ଯେଉଁ ସୂଚନା ଦେଲେ ସେଥିରେ ସ୍ପଷ୍ଟ ଜଣାଗଲା ଯେ ମହତାବ ବାବୁ ପୁନର୍ବାର ଶାସନ ଦାୟିତ୍ୱ ନେଇ ମୁଖ୍ୟମନ୍ତ୍ରୀ ଓ ଦଳର ନେତୃତ୍ୱ ତୁଲାଇ କଂଗ୍ରେସକୁ ପୁନର୍ବାର ନିର୍ବାଚିତ କରାଇବା ପାଇଁ ସମସ୍ତ ଦାୟିତ୍ୱ ନେବେ । ପ୍ରକୃତରେ ଓଡ଼ିଶାରୁ ଫେରି ପଣ୍ଡିତଜୀଙ୍କ ସହିତ ପନ୍ତଜୀଙ୍କ ଆଲୋଚନା କଲେ ଓ ଓଡ଼ିଶା ନିର୍ବାଚନରେ ବିଜୟର ସମ୍ଭାବନା ବିଷୟ ନବବାବୁଙ୍କ ପରି ଜଣେ ସାଧୁ, ସଚ୍ଚୋଟ ଓ ସମାଜବାଦୀ ଦର୍ଶନର ମୁଖ୍ୟଙ୍କ ଶାସନର ସମାପ୍ତି ଘଟାଇବାର ମୁଖ୍ୟ କାରଣ ଥିଲେ । ୧୯୫୭ ମସିହାରେ ସୋଭିଏଟ୍ ରୁଷ୍‌ରେ ଆରମ୍ଭ ହୁଏ ବିଶ୍ୱ ଯୁବ ଉତ୍ସବ । ସେଥିପାଇଁ ଓଡ଼ିଶାରେ ଯେଉଁ ରାଜ୍ୟବ୍ୟାପୀ ଉତ୍ସବ ପ୍ରସ୍ତୁତି ପର୍ବ ତାର ମୁଖ୍ୟ ଉପଦେଷ୍ଟା ଭାବେ ସବୁ ପ୍ରଗତିଶୀଳ ଦଳମାନେ ମହତାବ ବାବୁଙ୍କୁ ମନୋନୀତ କଲେ । ସେହି ଉତ୍ସବରେ ଯୋଗ ଦେବା ପାଇଁ କଟକରୁ ଗିରିଜା ଭୂଷଣ ପଟ୍ଟନାୟକ ଓ ମହତାବ ବାବୁଙ୍କ ପ୍ରତିଷ୍ଠିତ ଦୈନିକ ପ୍ରଜାତନ୍ତ୍ର ଖବରକାଗଜର ସଂପାଦକ ସ୍ୱର୍ଗତ ଚିନ୍ତାମଣି ପାଣିଗ୍ରାହୀ ଭାରତର ପ୍ରତିନିଧି ଭାବରେ ବିଶ୍ୱଶାନ୍ତି କଂଗ୍ରେସର ପ୍ରତିନିଧି ଭାବେ ଏହି ବିଶ୍ୱ ଉତ୍ସବରେ ଯୋଗ ଦେଲେ । ପରେ ପରେ ମହତାବ ବାବୁଙ୍କ ପ୍ରେରଣାରେ ମହାତ୍ମା ଗାନ୍ଧୀଙ୍କ ଶତ ବାର୍ଷିକ ଉତ୍ସବ । ଏ ସମସ୍ତ ଉତ୍ସବ ମହତାବ ବାବୁଙ୍କର ତୃତୀୟ ବାର ମୁଖ୍ୟମନ୍ତ୍ରିତ୍ୱ ସମୟର ଉଲ୍ଲେଖନୀୟ ଘଟଣା ଓ ଦୈନିକ ପ୍ରଜାତନ୍ତ୍ର ଥାଏ କଂଗ୍ରେସ ଦଳ ଓ ମହତାବ ବାବୁଙ୍କ ମୁଖପତ୍ର । କଟକର ପ୍ରଜାତନ୍ତ୍ର ପ୍ରଚାର ସମିତି ଓ ମୋତିଲାଲ ପଣ୍ଡିତଙ୍କ ଜାଗାରେ ପ୍ରତିଷ୍ଠିତ ପ୍ରଜାତନ୍ତ୍ର ଅନୁଷ୍ଠାନ ଥାଏ ରାଜନୈତିକ ଗୋଟି ଚାଳନାର ମୁଖ୍ୟ କେନ୍ଦ୍ର । ଏ ସବୁରେ ମୋର ସଂପର୍କ ବିଜୁବାବୁ, ବିରେନ ଓ ନୀଳମଣିଙ୍କ ସମେତ ନୂତନ ଯୁବ ନେତୃତ୍ୱବୃନ୍ଦଙ୍କ ସହିତ ଘନିଷ୍ଠ ସହଯୋଗ ସୃଷ୍ଟି କଲା । ସମାଜ ସଂପାଦକ ରାଧାନାଥ ରଥ ଦୁର୍ଭାଗ୍ୟକୁ ବିଜୁବାବୁ ଓ ତାଙ୍କ ସହଯୋଗୀମାନଙ୍କ ନେତୃତ୍ୱକୁ ପସନ୍ଦ କରୁନଥାନ୍ତି । କାରଣ ତାଙ୍କ ମତରେ ପ୍ରବୀଣ ନେତା ବିଶେଷତଃ ନବକୃଷ୍ଣ ଚୌଧୁରୀ, ମହତାବ ବାବୁ ପ୍ରଭୃତି ଗାନ୍ଧିବାଦୀ ଓ ଦେଶର ପ୍ରମୁଖ ସ୍ୱାଧୀନତା ସଂଗ୍ରାମୀମାନଙ୍କ ଦ୍ୱାରା ପ୍ରତିଷ୍ଠିତ ପରମ୍ପରାର ଅବସାନ ଘଟାଇ ଏହି ଯୁବ ନେତୃତ୍ୱ ଦେଶର ପ୍ରଗତି ନାମରେ ଉଚ୍ଛୃଙ୍ଖଳତା ଓ ନୈତିକ ମୂଲ୍ୟବୋଧର ଅବସାନ ଘଟାଇବାରେ ସହାୟକ ହେବ । ରାଧାନାଥ ବାବୁଙ୍କ ଦୃଷ୍ଟିକୋଣକୁ ବିଜୁ

ବାବୁ ଓ ତାଙ୍କ ଘନିଷ୍ଠ ସହଯୋଗୀମାନେ ବିଶେଷ ଗୁରୁତ୍ୱ ନ ଦେଇ ସେମାନଙ୍କ ବ୍ୟକ୍ତିଗତ କ୍ଷମତା ଲିପ୍‌ସା ପୂରଣ ଦିଗରେ ସହାୟକ ହେବା ପାଇଁ ପୁରୁଖା ନେତୃତ୍ୱର ପରିବର୍ତ୍ତନ ଘଟାଇବା ପାଇଁ ଉଦ୍ୟମ ଆରମ୍ଭ କରୁଥିବାର ସେ ଲକ୍ଷ୍ୟ କରି ଏହା ରାଜ୍ୟ ସ୍ୱାର୍ଥରେ ବାଧକ ହେବ ବୋଲି ଆଶଙ୍କା ପ୍ରକାଶ କରୁଥିଲେ । ଶେଷରେ ସେ ଦେଖିଲେ ଯେ ପଣ୍ଡିତଜୀଙ୍କ ଦେହାବସାନ ପରେ ଇନ୍ଦିରାଜୀ ଏକ ଶକ୍ତିଶାଳୀ ନେତୃତ୍ୱ ଦେଇ ରାଜାରାଜୁଡ଼ା ଶାସନର ଅବସାନ ଘଟାଇ ବ୍ୟାଙ୍କ ଜାତୀୟକରଣ ପ୍ରଭୃତି ସାହସିକ ପଦକ୍ଷେପମାନ ଗ୍ରହଣ କରି କଂଗ୍ରେସକୁ ସର୍ବଶ୍ରେଷ୍ଠ ଶକ୍ତିଶାଳୀ ନେତୃତ୍ୱ ଦେବାରେ ସଫଳତା ହାସଲ କଲେ ଓ ପୂର୍ବର ପ୍ରମୁଖ ସ୍ୱାଧୀନତା ସଂଗ୍ରାମର ସାରଥୀ ସଦୃଶ ନେତୃବୃନ୍ଦ ମୋରାରଜୀ, ଆଚାର୍ଯ୍ୟ କୃପାଳିନୀ, ସୁଚେତାଜି, ନିଜଲିଙ୍ଗପା ପ୍ରଭୃତି ନେତାମାନଙ୍କୁ ନେତୃତ୍ୱରୁ ହଟାଇ ଏକ ନୂତନ ନେତୃତ୍ୱ ସୃଷ୍ଟି ହେଉଛି । ସେଥିରେ ସମଗ୍ର ଦେଶର କଂଗ୍ରେସ ଲୋକେ ବିଶେଷ କରି ଛାତ୍ର, ଯୁବକ, ଶ୍ରମିକ ଓ ସମାଜବାଦୀ ଚିନ୍ତାଧାରାର ଲୋକେ କଂଗ୍ରେସକୁ ଦିଲ୍ଲୀରୁ କେରଳ ଯାଏ ନେତୃତ୍ୱ ନେବାରେ ଇନ୍ଦିରାଜୀଙ୍କୁ ଅତୁଟ ସମର୍ଥନ ଦେଉଥିଲା ବେଳେ, ସମାଜ କାଗଜ ଓଡିଶାରେ ବିଜୁ ପଟ୍ଟନାୟକ ଓ ତାଙ୍କର ସହଯୋଗୀମାନଙ୍କ ନେତୃତ୍ୱକୁ ବିରୋଧ କରିବା ପାଇଁ ବହୁତ ପ୍ରଭାବଶାଳୀ ଲେଖା ଓ ଯୁକ୍ତିମାନ ଉପସ୍ଥାପିତ କରି, ଭ୍ରଷ୍ଟାଚାର ଓ ମୂଲ୍ୟବୋଧ ଭିତ୍ତିକ ରାଜନୈତିକ ସଚେତନତା ସୃଷ୍ଟି କରିବା ପାଇଁ ଏକ ଆନ୍ଦୋଳନ ସୃଷ୍ଟି କରିବାର ଉଦ୍ୟମ କଲେ ଏବଂ ଶେଷରେ ୧୯୬୭ ବେଳକୁ ବିଜୁ ପଟ୍ଟନାୟକଙ୍କର ନେତୃତ୍ୱର ଅବସାନ ଘଟାଇବାରେ ତାହା ଏକ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା ।

ଡଃ ହରେକୃଷ୍ଣ ମହତାବ ରାଜ୍ୟର ମୁଖ୍ୟମନ୍ତ୍ରୀ ଭାବେ ନବକୃଷ୍ଣ ଚୌଧୁରୀଙ୍କୁ ବହୁ କୌଶଳରେ କ୍ଷମତାରୁ ଅପସାରିତ କରି ଏକ ଉତ୍ତେଜନାପୂର୍ଣ୍ଣ ରାଜନୈତିକ ପରିବେଷ୍ଟନୀ ଭିତରେ ତୃତୀୟ ଥର ପାଇଁ ଓଡିଶାର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେଲେ । ତାଙ୍କ ଦାୟିତ୍ୱ ସମୟରେ ମୋର ସାଧାରଣ ଜୀବନରେ ଲୋକସଂପର୍କ ଓ ପ୍ରତିଷ୍ଠାରେ କ୍ରମଶଃ ବୃଦ୍ଧି ଘଟିଲା । ପୁଣି ଏ ମଧ୍ୟରେ ବିଜୁବାବୁଙ୍କ ପ୍ରତି ଓଡିଶାର ଯୁବଗୋଷ୍ଠୀ ତାଙ୍କ ସାହସିକତା, ସଂଗଠନ ଶକ୍ତି ଓ ନେତୃତ୍ୱ ପ୍ରତି ଆକର୍ଷିତ ହୋଇଥାଆନ୍ତି । ମୁଁ ପୁରୀ ପୌରସଭାର ଅଧ୍ୟକ୍ଷ ଥାଏ ଏବଂ ତାହା ସହିତ ମୋର ଆଇନ ବ୍ୟବସାୟରେ ସୁନାମ ମଧ୍ୟ ବୃଦ୍ଧି ପାଇଥାଏ । ଫୌଜଦାରୀ ମକଦ୍ଦମାରେ ପୁରୀ ଆଇନଜୀବୀମାନଙ୍କ ମଧ୍ୟରେ ମୁଁ ଆଇନ ବ୍ୟବସାୟର ଜଣେ ଶୀର୍ଷ ଆୟକାରୀ ଆଡଭୋକେଟ୍ ଭାବେ, ଅବିଭକ୍ତ ପୁରୀ ଜିଲ୍ଲାର ସବୁ ସବ୍‌ଡିଭିଜନ୍‌ରେ ବଡ଼ ବଡ଼ ଫୌଜଦାରୀ ମୋକଦ୍ଦମାରେ ନିଜର ପାରଦର୍ଶିତା ଦେଖାଇ ଆଇନଜୀବୀ ଓ କୋର୍ଟର

ଆଶ୍ରୟ ନେଉଥିବା ଲୋକଙ୍କ ଭିତରେ ବିଶେଷ ଆଦୃତ ହୋଇଥିଲି । ପୁରୀ, ଭୁବନେଶ୍ୱର, ନୟାଗଡ ସଦର ମହକୁମାମାନଙ୍କରେ ଅନେକ ବଡ ବଡ ଗ୍ୟାଙ୍ଗ୍ କେଶ୍, ନରହତ୍ୟା, ଡକାଇତି ଓ ସେହିଭଳି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଓ କଷ୍ଟସାଧ୍ୟ ମକଦ୍ଦମାରେ କଠୋର ପରିଶ୍ରମ କରି ତତ୍‌କାଳୀନ ରାଜ୍ୟର ଶ୍ରେଷ୍ଠ ଆଇନଜୀବୀ ସ୍ୱାମୀ ବିଚିତ୍ରାନନ୍ଦ ଦାସ, ସ୍ୱର୍ଗତ ଚିନ୍ତାମଣି ଆଚାର୍ଯ୍ୟ, ବାଞ୍ଛାନିଧି ମହାପାତ୍ର, ହରିହର ମହାପାତ୍ର, ବ୍ରହ୍ମପୁରର ବିଶିଷ୍ଟ ଆଇନଜୀବୀ ଲିଙ୍ଗରାଜ ପାଣିଗ୍ରାହୀ, ଜଗନ୍ନାଥ ରାଓ, ସୀତାରାମାୟା ପ୍ରଭୃତି ଓଡିଶାର ବହୁ ସୁନାମଧନ୍ୟ ହାଇକୋର୍ଟର ସିନିଅର ଆଡ୍‌ଭୋକେଟ୍‌ମାନଙ୍କ ମଧ୍ୟରେ ଅନ୍ୟତମ ବୋଲି ସାଧାରଣରେ ମୋର ସୁନାମ କ୍ରମଶଃ ବଢିବାକୁ ଲାଗିଲା । ଏଣେ ବିଜୁବାବୁ, ନୀଳମଣି ରାଉତରାୟ, ବୀରେନ ମିତ୍ର, ବ୍ରହ୍ମପୁରର ବିଜୟ ଦାସ ପ୍ରଭୃତି ମୋର ସମବୟସ୍କ କଂଗ୍ରେସ ନେତାମାନଙ୍କ ସହିତ ସଂପର୍କ ମଧ୍ୟ ଅଧିକ ନିକଟତର ହେବା ଫଳରେ ସାଧାରଣ କ୍ଷେତ୍ରରେ ମୋର ପ୍ରତିପତ୍ତି କ୍ରମଶଃ ବୃଦ୍ଧି ପାଇବାରେ ଲାଗିଲା । ପୁରୀର ବହୁ ବିଶିଷ୍ଟ ପୁରୁଣା କଂଗ୍ରେସ କର୍ମୀମାନଙ୍କୁ ସେଇଟା ସୁଖ ଲାଗିଲା ନାହିଁ । ସେତେବେଳେ ସମୟରେ ମୁଁ ପୁରୀ ଜିଲ୍ଲାର ଏକ ମୁଖ୍ୟ କଂଗ୍ରେସ ନେତା ଭାବରେ ପ୍ରତିଷ୍ଠିତ ହୋଇଥାଏ । ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ, ଆଚାର୍ଯ୍ୟ ହରିହରଙ୍କ ପରି ବିଦ୍ୱାନମାନଙ୍କ ପରେ ପୁରୀ ଜିଲ୍ଲାରେ କଂଗ୍ରେସର ବିଶିଷ୍ଟ ନେତା ଭାବେ ଶ୍ରୀ ଲୋକନାଥ ମିଶ୍ର (ପଙ୍କ ବାବୁ)ଙ୍କ ନାମ ଆଗରେ ଥିଲା । ସେ ଜିଲ୍ଲା କଂଗ୍ରେସ କମିଟିର ସଭାପତି, ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, କେନ୍ଦ୍ର ବ୍ୟବସ୍ଥାସଭା ସଦସ୍ୟ ଭାବେ ସବୁ ପୁରୁଣା କଂଗ୍ରେସ କର୍ମୀଙ୍କର ହାର୍ଦ୍ଦିକ ସମର୍ଥନ ପାଉଥାଆନ୍ତି । ମୁଁ କିନ୍ତୁ ରାଜ୍ୟର ସର୍ବଶ୍ରେଷ୍ଠ କଂଗ୍ରେସ ନେତା ଅତ୍ୟନ୍ତ ପ୍ରତିପତ୍ତିଶାଳୀ ମୁଖ୍ୟମନ୍ତ୍ରୀ ମହତାବ ବାବୁ, ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ରାଜ୍ୟର ଯୁବକ ଗୋଷ୍ଠୀ ସହିତ ଅଧିକ ଓତଃପ୍ରୋତଃ ଭାବରେ ସଂପୃକ୍ତ ଥାଏ । ହଠାତ୍ ରାଜନୈତିକ ଆକାଶରେ ଜଣେ ଧ୍ରୁବତାରା ହୋଇ ଉଠୁଥିବା ବ୍ୟକ୍ତିକୁ ପଙ୍କ ବାବୁ ଓ ତାଙ୍କ ସମର୍ଥକମାନେ ଏକ ପ୍ରତିଦ୍ୱନ୍ଦ୍ୱୀ ଭାବି ମୋର ପ୍ରତିପତ୍ତି ଓ ସାଧାରଣ ଜୀବନରେ ମୋର ପ୍ରତିଷ୍ଠାକୁ ନ୍ୟୁନ କରି ରାଜନୈତିକ ପ୍ରତିଦ୍ୱନ୍ଦ୍ୱୀ ଭାବରେ ମତେ ପୁରୀ ନିର୍ବାଚନ ମଣ୍ଡଳୀ ଅଞ୍ଚଳରେ ଉଠିବାକୁ ଦେବାରେ ବହୁ ପ୍ରତିବନ୍ଧକ ସୃଷ୍ଟି କରିବା ପାଇଁ ଓର ଉଣ୍ଡୁ ଥାଆନ୍ତି । ପୌରସଭାରେ ମୋର ଶକ୍ତି ଓ ଲୋକପ୍ରିୟତା କ୍ରମଶଃ ନ୍ୟୁନ କରିବା ପାଇଁ ସ୍ୱର୍ଗତ ବ୍ରଜମୋହନ ମହାନ୍ତିଙ୍କୁ ମୋର ପ୍ରତିଦ୍ୱନ୍ଦ୍ୱୀ ଭାବରେ ପୂର୍ଣ୍ଣ ସମର୍ଥନ ଦେଇ, ମତେ ସଂଖ୍ୟାନ୍ୟୁନ କରାଇ ପୌରସଭାରୁ ଅନ୍ତର କରାଇଦେଲେ ତାଙ୍କର ଅଭିଷ୍ଟ ସିଦ୍ଧି ହେବ ବୋଲି ମୋ ବିରୁଦ୍ଧରେ ଏକ ସଂଗଠିତ ଉଦ୍ୟମ କରୁଥାଆନ୍ତି । ସେହି ଏକମାତ୍ର କାରଣ ଯାହା ଫଳରେ ବ୍ରଜମୋହନ ମହାନ୍ତିଙ୍କ

ସହିତ ମୋର ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭ ହୁଏ । କିନ୍ତୁ ପୌରସଭା ନିର୍ବାଚନେ ପରେ ସେ କେବଳ ଦୁଇ ତିନିଜଣ ସଭ୍ୟଙ୍କ ସମର୍ଥନ ପାଇ ହାରିଯିବା ପରେ, ପଙ୍କବାବୁଙ୍କ ଗୋଷ୍ଠୀ ସହିତ ଶ୍ରୀ ଭଗବାନ ପ୍ରତିହାରୀ, ଗୋବିନ୍ଦ ଗୋଛିକାର ଓ ଅନ୍ୟ କେତେକଙ୍କ ସହିତ ମିଶି ଏକ ସଂଗଠିତ ଗୋଷ୍ଠୀ ମୋ ବିରୁଦ୍ଧରେ ଛିଡା କରିବା ପାଇଁ ଉଦ୍ୟମ କରୁଥାଆନ୍ତି ।

୧୯୫୬ ମସିହାରେ ଓଡିଶାରେ ହେବା ପାଇଁ ଥିବା ସାଧାରଣ ନିର୍ବାଚନ ପାଇଁ ମହତାବ ବାବୁ ମୁଖ୍ୟମନ୍ତ୍ରୀ ଓ ପ୍ରଦେଶ କଂଗ୍ରେସର ସର୍ବୋଚ୍ଚ ନେତା ଭାବେ ଦାୟିତ୍ୱ ନେଇ ସମଗ୍ର ରାଜ୍ୟରେ କଂଗ୍ରେସ ଦଳକୁ ପୁନର୍ବାର ଶାସନ ଗାଦୀରେ ପ୍ରତିଷ୍ଠିତ କରିବା ପାଇଁ ଉଦ୍ୟମ ଅବ୍ୟାହତ ରଖିଥାଆନ୍ତି ବିଜୁ ବାବୁ ଓ ତାଙ୍କ ଗୋଷ୍ଠୀଙ୍କ ଅକୁଣ୍ଠ ସମର୍ଥନ ଉପରେ ନିର୍ଭର କରି । ରାଜ୍ୟସ୍ତରରେ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ସମର୍ଥକମାନେ ମହତାବ ବାବୁଙ୍କ ବିରୋଧରେ ମଧ୍ୟ ସଂଗଠିତ ହୋଇ ସେମାନଙ୍କ ଶକ୍ତି ବୃଦ୍ଧି ପାଇଁ ବାମପନ୍ଥୀ ଦଳଗୁଡିକର ସମର୍ଥନରେ ମହତାବଙ୍କ ବିରୁଦ୍ଧରେ ଏକ ବିରାଟ ଉଦ୍ୟମ ମଧ୍ୟ ଚଳାଉଥାଆନ୍ତି । ଏପରି ଭାବରେ ରାଜ୍ୟସ୍ତରରେ ଓ ପୁରୀ ଜିଲ୍ଲାରେ କଂଗ୍ରେସ ସଂଗଠନ ଭିତରେ ଭୀଷଣ ସଂଘର୍ଷ ଓ ପ୍ରତିଦ୍ୱନ୍ଦ୍ୱୀତାର ବାତାବରଣ ରାଜନୈତିକ ପରିସ୍ଥିତିକୁ ଏକ ଉତ୍ତେଜିତ ଅବସ୍ଥାରେ ପହଞ୍ଚାଇଥାଏ । କିନ୍ତୁ ଓଡିଶା ରାଜନୀତିରେ ମହତାବ ବାବୁ ଥିଲେ ଉତ୍ତୁଙ୍ଗ ହିମାଳୟ । ସେ ନିଜେ ଓଡିଶାର ପ୍ରଧାନମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, ଲୋକସଭା ସାଂସଦ, କେନ୍ଦ୍ର କଂଗ୍ରେସ ସାଂସଦ ଦଳର ସେକ୍ରେଟାରୀ ଜେନେରାଲ ଓ ପୂର୍ବରୁ କଂଗ୍ରେସ କାର୍ଯ୍ୟକାରୀ କମିଟିର ବରିଷ୍ଠ ସଦସ୍ୟ ଭାବରେ କଂଗ୍ରେସ ଦଳର ଅଗ୍ରଗଣ୍ୟ ନେତା, ଅବିଭକ୍ତ ବମ୍ବେ ରାଜ୍ୟର ରାଜ୍ୟପାଳ ହୋଇ ଉତ୍କଳ ଜନନୀର ସୁପୁତ୍ର ଭାବରେ ଯୁବଶକ୍ତିର ପ୍ରତୀକ ଓ ବରେଣ୍ୟ ନେତା ଭାବେ ପ୍ରଜାତନ୍ତ୍ର ପ୍ରଚାର ସମିତିର ଯେଉଁ ରାଜନୈତିକ କେନ୍ଦ୍ରବିନ୍ଦୁ ଭିତରେ (inner circle) ସ୍ୱର୍ଗତ ବନମାଳୀ ପଟ୍ଟନାୟକ, ବିଜୁ ପଟ୍ଟନାୟକ, ଭୈରବ ଚନ୍ଦ୍ର ମହାନ୍ତି, ବୀରେନ ମିତ୍ର, ନୀଳମଣି ରାଉତରାୟ ପ୍ରଭୃତିଙ୍କୁ ମନ୍ତ୍ରିମଣ୍ଡଳରେ ଯୋଗ ଦେବାର ସୁଯୋଗ କରାଇ ଓଡିଶାରେ ନିଜର ଅପ୍ରତିଦ୍ୱନ୍ଦ୍ୱୀ ନେତୃତ୍ୱ ସୃଷ୍ଟି କରିବାରେ ଦକ୍ଷତା ଅର୍ଜନ କରିଥିଲେ । ତେଣୁ ମୋ ବିରୁଦ୍ଧରେ ଅନ୍ୟମାନେ ପୁରୀ ଜିଲ୍ଲାରେ ସ୍ୱର୍ଗତ ବ୍ରଜମୋହନ ମହାନ୍ତି, ଭଗବାନ ପ୍ରତିହାରୀ ପ୍ରଭୃତିଙ୍କୁ କେନ୍ଦ୍ର କରି ସ୍ୱର୍ଗତ ପଣ୍ଡିତ ଲୋକନାଥ ମିଶ୍ରଙ୍କୁ ବରିଷ୍ଠ ନେତା ଭାବେ ପ୍ରତିଷ୍ଠିତ କରାଇଥିଲେ ସୁଦ୍ଧା, ଜିଲ୍ଲା କଂଗ୍ରେସ ସଂଗଠନରେ ମୋର କ୍ରମବର୍ଦ୍ଧମାନ ପ୍ରତିଷ୍ଠାରେ ବିଶେଷ ପ୍ରତିବନ୍ଧକ ସୃଷ୍ଟି କରିବା ପାଇଁ ସମର୍ଥ ହୋଇ ପାରିନଥିଲେ । କାରଣ ତାଙ୍କର ହୃଦବୋଧ ହୋଇଥିଲା ଯେ ମୁଁ ମହତାବ ବାବୁ ଓ ତାଙ୍କ ନେତୃତ୍ୱରେ ବଳିଷ୍ଠ ସମସ୍ତ ଯୁବ ନେତାମାନଙ୍କ ସମର୍ଥନ ପାଇବି ଓ ସେ ନିଜେ ଅପଦସ୍ତ ହେବେ ।

ଏ ରାଜ୍ୟରେ ବହୁ ମୁଖ୍ୟମନ୍ତ୍ରୀ ହେଇଛନ୍ତି ଓ ହେବେ ମଧ୍ୟ ଗଣତାନ୍ତ୍ରିକ ବ୍ୟବସ୍ଥାରେ । ମାତ୍ର ଓଡିଶାର ଉନ୍ନତି ଓ ଅଭିବୃଦ୍ଧି ପାଇଁ ଡକ୍ଟର ମହତାବଙ୍କ ହୀରାକୁଦ ବହୁମୁଖୀ ଯୋଜନା, ଓଡିଶା ସହ ଗଡଜାତ ମିଶ୍ରଣ ଓ ବୃହତ୍ତର ଓଡିଶାର ଜନକ ଭାବେ ତାଙ୍କ ଦକ୍ଷତା, ସାହିତ୍ୟ, ସଂଗୀତ, ନାଟକ ଓ ଲଳିତ କଳା ଏକାଡେମୀ ମାନ ପ୍ରତିଷ୍ଠା, ଓଡିଶାର ତଥ୍ୟ ଗବେଷଣା ମୂଳକ ଇତିହାସ ପ୍ରଣୟନ, ସାରଳା ମହାଭାରତର ଶୁଦ୍ଧ ସଂସ୍କରଣ, ଓଡିଶାରେ ଶିକ୍ଷା ପ୍ରସାର ଓ ସାହିତ୍ୟ, ସଂସ୍କୃତି, ସାମ୍ବାଦିକତା କ୍ଷେତ୍ରରେ ତାଙ୍କର ଦିଗ୍‌ଦର୍ଶନ ତାଙ୍କୁ ଓଡିଆ ଜାତିର ସ୍ମୃତିରେ ଚୀର ଜାଗ୍ରତ କରି ରଖିବ । ଜଣେ ଅନନ୍ୟ ପ୍ରତିଭାର ଅଧିକାରୀ ହୋଇ ଏବଂ ଏତେ ବଡ ପ୍ରତିପତ୍ତିଶାଳୀ ନେତୃତ୍ୱ ନେଇଥିଲେ ମଧ୍ୟ ସାଧାରଣ ଲୋକଙ୍କ ସହିତ ତାଙ୍କର ଦୈନନ୍ଦିନ ସଂପର୍କ ଏପରି ଘନିଷ୍ଠ ଥିଲେ ମଧ୍ୟ, ଜରୁରୀକାଳିନ ପରିସ୍ଥିତି ବେଳେ ସେ ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କ ପରି ଭାରତର ଜଣେ ଶକ୍ତିଶାଳୀ ପ୍ରଧାନମନ୍ତ୍ରୀଙ୍କ ନେତୃତ୍ୱରେ ୧୯୭୫ ମସିହା ଜରୁରୀକାଳୀନ ପରିସ୍ଥିତି ବେଳେ କଂଗ୍ରେସ ଦଳ ତ୍ୟାଗ କରି ଇନ୍ଦିରାଜୀଙ୍କ ବିରୁଦ୍ଧରେ ଓଡିଶାରେ ଜନ କଂଗ୍ରେସ ନାମରେ ଏକ ରାଜନୈତିକ ଦଳ ସୃଷ୍ଟି କରି ରାଜ୍ୟର ସ୍ୱତନ୍ତ୍ର ଦଳର ନେତା ପାଟଣା ମହାରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ, ସ୍ୱତନ୍ତ୍ର ଦଳ ସହିତ ଏକ ମିଳିତ ମନ୍ତ୍ରିମଣ୍ଡଳ ଗଠନ କରି କଂଗ୍ରେସ ଦଳର ପରାଜୟ ଘଟାଇ ଏପରିକି ତାଙ୍କର ପୂର୍ବରୁ ଥିବା ଶ୍ରେଷ୍ଠ ସମର୍ଥକ ବିଜୁ ପଟ୍ଟନାୟକ ଓ ନୀଳମଣି ରାଉତରାୟଙ୍କୁ ସାଧାରଣ ନିର୍ବାଚନରେ ପରାସ୍ତ କରି କଂଗ୍ରେସ ଦଳକୁ କ୍ଷମତାରୁ ହଟାଇଥିଲେ ଏବଂ ଶେଷ ଜୀବନରେ କଂଗ୍ରେସ ଦଳ ଓ ତାଙ୍କ ସହିତ ଜୀବନରେ ପ୍ରତିଷ୍ଠା ପାଇଥିବା ପ୍ରଜାତନ୍ତ୍ରର ସଂପାଦକ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ମଧ୍ୟ ପ୍ରଜାତନ୍ତ୍ର ପ୍ରଚାର ସମିତିରୁ ବହିଷ୍କାର କରି ରାଜ୍ୟ କଂଗ୍ରେସ ନେତୃତ୍ୱରୁ ହଟାଇବାରେ ମଧ୍ୟ ପ୍ରମୁଖ ଅବଦାନ ଥିଲା । ଏବେ ପ୍ରଜାତନ୍ତ୍ର କାଗଜ ଦୈନିକ ସଂସ୍କରଣର ନେତୃତ୍ୱ ନେଇ ଭର୍ତ୍ତୃହରି ମହତାବ ବିଜୁ ଜନତା ଦଳରେ ଯୋଗ ଦେଇ ଲୋକସଭା ସାଂସଦ ଅଛନ୍ତି । କିନ୍ତୁ ମହତାବଙ୍କ ଅବଶୋଷ ରହିଗଲା ଯେ ଶେଷ ଜୀବନରେ ସେ ଚାହୁଁଥିଲେ, ଜାନକୀ ବାବୁଙ୍କର ମୁଖ୍ୟମନ୍ତ୍ରିତ୍ୱରୁ ଅପସାରଣ । ତା ସମ୍ଭବ ହୋଇ ପାରିଲା ନାହିଁ ।

ମହତାବଜୀ ଆଜି ଇହଜଗତରେ ନାହାନ୍ତି ସତ, ମାତ୍ର ତାଙ୍କର ଜୀବନଦର୍ଶନ ଏବଂ ତ୍ୟାଗପୂତ ଜୀବନର ମହାନତା ଓଡିଶା ରାଜ୍ୟରେ ବର୍ତ୍ତମାନ ଓ ଭବିଷ୍ୟତ ସମାଜସେବୀମାନଙ୍କ ପାଇଁ ଏକ ଆଲୋକ ବର୍ତ୍ତିକା ସଦୃଶ ବିଦ୍ୟମାନ ରହିବ । ସେ କେବଳ ଓଡିଶାର ନେତା ଭାବେ ନୁହଁ, ସମଗ୍ର ଦେଶର ଜଣେ ଅଗ୍ରଗଣ୍ୟ ନେତା ଭାବେ ଓ ରାଷ୍ଟ୍ରନିର୍ମାତା ଭାବେ ନମସ୍ୟ ହୋଇ ରହିଥିବେ । ମୋର ଏହି ପରିଣତ

ବୟସରେ ମୁଁ କ୍ଷମତା ରାଜନୀତିରୁ କ୍ରମଶଃ ଅପସରି ଯାଇଥିଲେ ମଧ୍ୟ ମହତାବ ବାବୁ କଂଗ୍ରେସ ଦଳ ବିରୁଦ୍ଧରେ ଓଡିଶାରେ ଏକ ନୂତନ ଦଳ ଗଢି, ବିଜୁ ବୀରେନ ବାବୁଙ୍କ ନେତୃତ୍ୱାଧୀନ କଂଗ୍ରେସକୁ ଚକିତଚାନ୍ଦ କରି ସେମାନଙ୍କୁ କଂଗ୍ରେସ ନେତୃତ୍ୱ ଓ କଂଗ୍ରେସକୁ ମଧ୍ୟ ବିଦାୟ କରାଇବାରେ ପ୍ରମୁଖ ଭୂମିକା ନେଇଥିଲେ । ଆଜି ଓଡିଶାରେ କଂଗ୍ରେସ ଦୁର୍ବଳ ହୋଇ କ୍ଷମତାରୁ ହଟି ଯାଇଥିବା ଓ ଜାନକୀ ବଲ୍ଲଭ ପଟ୍ଟନାୟକ ରାଜ୍ୟ ମୁଖ୍ୟମନ୍ତ୍ରୀ ପଦ ହରାଇଥିବାର ଅବସ୍ଥା ସୃଷ୍ଟି କରିବାରେ ମହତାବ ବାବୁ ଶେଷ ଜୀବନ ପର୍ଯ୍ୟନ୍ତ ଉଦ୍ୟମ କରିଛନ୍ତି । ବିଜୁ, ବିରେନ, ନୀଳମଣି ଓ ଜାନକୀ ବଲ୍ଲଭ ପଟ୍ଟନାୟକ ଏହି ୪ ଜଣ ଯୁବକ ମହତାବ ବାବୁଙ୍କ ସୃଷ୍ଟି ଏବଂ ସମସ୍ତେ କ୍ଷମତା ପାଇଁ ମହତାବ ବାବୁଙ୍କୁ କଂଗ୍ରେସ ସଂଗଠନ ଭିତରେ ଓ ବାହାରେ ମଧ୍ୟ ଘୋର ବିରୋଧ କରି କ୍ଷମତାରୁ ହଟାଇବାରେ ମୁଖ୍ୟ ଭୂମିକା ନେଇଥିବାବେଳେ, ଉପରୋକ୍ତ ୪ ଜଣ ନେତା ମହତାବ ବାବୁଙ୍କୁ ମଧ୍ୟ ଶେଷ ଜୀବନରେ ଯେପରି ମାନସିକ ଓ ରାଜନୈତିକ କ୍ଷେତ୍ରରେ ବିରୋଧ କରି କଂଗ୍ରେସ ଦଳରୁ ହଟାଇଲେ ତା ମଧ୍ୟ ରାଜ୍ୟର ରାଜନୈତିକ ଇତିହାସରେ ଏକ ଉଲ୍ଲେଖନୀୟ ଅଧ୍ୟାୟ ହୋଇ ରହିବ । କ୍ଷମତା ପାଇଁ ମନୁଷ୍ୟତା ହରାଇ ଏପରି ନିଷ୍ଠୁରତା ଓ ସାଧାରଣ ଜୀବନରେ ଏପରି ସଂଘର୍ଷମୟ ଓ ପ୍ରତିହିଂସା ପରାୟଣତା ଓ ଚରିତ୍ର ସଂହାର ଆମର ଗଣତାନ୍ତ୍ରିକ ପରମ୍ପରାକୁ କଳଙ୍କିତ କରିବାରେ ଲାଗି ରହିଛି । ଏହାର ମୁଖ୍ୟ କାରଣ ହେଉଛି ରାଜନୈତିକ ଜୀବନରେ ଆଦର୍ଶ ଓ ମୂଲ୍ୟବୋଧର କ୍ରମାଗତ ଅବକ୍ଷୟ, ଅର୍ଥ ବଳ, ବାହୁବଳ ଓ ବ୍ୟକ୍ତିକୈନ୍ଦ୍ରୀକ କ୍ଷମତା ଲୋଭ ସମାଜସେବୀମାନଙ୍କର ରାଜନୀତିରେ ଏକ କଳଙ୍କମୟ ଇତିହାସ ସୃଷ୍ଟି କରିବାରେ ସହାୟକ ହୋଇଛି । ସାଧୁତା, ନିଷ୍ଠା, ମୂଲ୍ୟବୋଧକୁ ଯେଉଁମାନେ ସାମାଜିକ ଜୀବନରେ ଅଧିକ ଗୁରୁତ୍ୱ ଦେଉଛନ୍ତି ସେମାନଙ୍କର ଜାତୀୟ କ୍ଷେତ୍ରରେ ରାଜନୈତିକ ସ୍ତରରେ ସମ୍ମାନ ଓ ସ୍ଥାନ ପ୍ରତି କୌଣସି ଗୁରୁତ୍ୱ ଦିଆଯାଉ ନାହିଁ । ଆଜି ପୃଥିବୀରେ ଯେଉଁ ଅଶାନ୍ତି, ସଂଘର୍ଷ, ସନ୍ତ୍ରାସବାଦୀଙ୍କ ସଂହାର ଓ ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ଓ ରାଷ୍ଟ୍ରୀୟ ସ୍ତରରେ ତାଲିବାନ୍ ମାନେ ସେମାନଙ୍କର ଲେଲିହାନ ଜିହ୍ୱା ବିସ୍ତାର ପାଇଁ ସୁଯୋଗ ପାଉଛନ୍ତି ସେ ସମସ୍ତ ପାଇଁ ରାଜନୈତିକ ନେତାମାନଙ୍କ କ୍ଷମତା ନିଶା ଓ ସ୍ୱାର୍ଥ ହିଁ ଅନେକ ପରିମାଣରେ ଦାୟୀ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ବିଂଶ ଶତାବ୍ଦୀରେ ଆନ୍ତର୍ଜାତିକ କ୍ଷେତ୍ରରେ ସମାଜବାଦର ଚିନ୍ତାର ଅଭ୍ୟୁଦୟ ଓ ରାଷ୍ଟ୍ରୀୟକରଣ ବ୍ୟବସ୍ଥାର ଅଭ୍ୟୁଦୟ, ବିଳୟ ଭିତରେ ଏକବିଂଶ ଶତାବ୍ଦୀ ଆରମ୍ଭ ହୋଇଛି ଜାଗତିକରଣ ଅର୍ଥନୀତିକୁ ଲକ୍ଷ୍ୟ ରଖି । କିନ୍ତୁ ଏହି ବିରାଟ ଉଦାରୀକରଣ ଅର୍ଥନୀତି, ରାଜନୀତିକ ଚିନ୍ତାଧାରା ବା ସାମାଜିକ ନ୍ୟାୟ ଓ ଦାରିଦ୍ର୍ୟ ଦୂରୀକରଣ

ଦିଗରେ କେତେ ଦୂର ସହାୟକ ହେବ ତା ସମୟ ହିଁ କହିବ । ଆମ ଜନ୍ମଭୂମି ଭାରତବର୍ଷ ପରି ୧୦୦ କୋଟିରୁ ଅଧିକ ଲୋକ ସଂଖ୍ୟା ବିଶିଷ୍ଟ ବିରାଟ ରାଷ୍ଟ୍ରର ଗଣତନ୍ତ୍ର ଜାଗତିକରଣ ରାଜନୀତିର ଶିକାର ହୋଇ ତାର ଅର୍ଥନୈତିକ ସ୍ୱାଧୀନତା ଓ ରାଜନୈତିକ ସାର୍ବଭୌମତା ବଜାୟ ରଖି ଆନ୍ତର୍ଜାତିକ କ୍ଷେତ୍ରରେ ପୃଥିବୀ ବଜାରରେ ତାର ପ୍ରଭୁତ୍ୱ ବଜାୟ ରଖିବ କି ନାହିଁ ଏ ସଂପର୍କରେ ବହୁ ଚିନ୍ତାଶୀଳ ଲୋକେ ଏବେଠାରୁ ଆଶଙ୍କା ପ୍ରକାଶ କଲେଣି । ଯଦିଓ ଭବିଷ୍ୟତ ଏଇ ଗୁରୁତ୍ୱପୂର୍ଣ୍ଣ ସମସ୍ୟାର ସମାଧାନ କରିବ, ଏ ପୁସ୍ତକର ବିଷୟବସ୍ତୁ ତା ନଥିଲେ ମଧ୍ୟ ପ୍ରସଙ୍ଗ କ୍ରମେ ଦୃଷ୍ଟାନ୍ତ ଦେଇ ପ୍ରାସଙ୍ଗିକତା ସଂପର୍କରେ କିଛି ମାତ୍ର ସୂଚନା ଦେବା ଉଚିତ ମନେ କରୁଛି ।

ପୌରସଭାର ଅଧ୍ୟକ୍ଷ ହେବା ଓ ଆଇନ ବ୍ୟବସାୟରେ ମୋର ଦକ୍ଷତା ଓ ଲୋକପ୍ରିୟତାକୁ ଦୃଷ୍ଟିରେ ରଖି ମୁଁ ପ୍ରାଦେଶିକ କ୍ଷେତ୍ରରେ ବିଧାନସଭାରେ ପ୍ରାର୍ଥୀ ହେବାର ସ୍ୱପ୍ନ ମଧ୍ୟ ଦେଖୁଥାଏ ଏବଂ ସେ ସ୍ୱପ୍ନ ପ୍ରତିଫଳନରେ ଗଭୀର ଆଶଙ୍କା ମଧ୍ୟ କରି ମୁଁ ମୋର ମନ ଭିତରେ ଭବିଷ୍ୟତର ଅଙ୍କୁରିଥିବା ଭାବନାକୁ ଠିକ୍ ସମୟରେ ପ୍ରକାଶ କରିବି ବୋଲି ମନେ ମନେ ସ୍ଥିର କରି ମୋର ଆଇନ ବ୍ୟବସାୟ ଉପରେ ଅଧିକ ଗୁରୁତ୍ୱ ଦେଇ ପୌରସଭାରେ ମୋର ସେବାକୁ ଲୋକ ମୁଖରେ କିପରି ଅଧିକ ଆଦୃତ ହେବ ସେଥିପାଇଁ ସାମାଜିକ, ସାଂସ୍କୃତିକ ଅନୁଷ୍ଠାନମାନଙ୍କରେ ବିଶେଷ ମନୋନିବେଶ କରୁଥାଏ । ପୁରୀରେ ମୁଖ୍ୟ ସଙ୍ଗୀତ ଅନୁଷ୍ଠାନ ଓଡିଶା ସଂଗୀତ ପରିଷଦର ମୁଁ ଥାଏ ସଭାପତି । ଏ ଅନୁଷ୍ଠାନ ପାଇଁ ବିଜୁ ବାବୁଙ୍କ ସହାୟତାରେ ପୁରୀ ଜିଲ୍ଲା ସ୍କୁଲ୍ ସାମ୍ନାରେ ଏକ ପ୍ଲଟ୍ ବିନା ପଇସାରେ ବାର୍ଷିକ ନାମକୁ ମାତ୍ର ଏକ ଟଙ୍କା ଖଜଣାରେ କରାଇ ଦେବା ପାଇଁ ଦେଇଥିବା ପ୍ରତିଶ୍ରୁତିରେ ମୋର ସଫଳତା ମତେ ପୁରୀ ସହର ସାଂସ୍କୃତିକ କ୍ଷେତ୍ରରେ ପ୍ରମୁଖ ସ୍ଥାନ ଅଧିକାର କରିବାର ସୁଯୋଗ ସୃଷ୍ଟି କରିଥିଲା । ଏହି ପରିଷଦ ପ୍ରତିବର୍ଷ ରାଜ୍ୟସ୍ତରୀୟ ସଙ୍ଗୀତ ଓ ନୃତ୍ୟ ପ୍ରତିଯୋଗିତା, ସଂଗୀତ ନୃତ୍ୟ ଶିକ୍ଷାକେନ୍ଦ୍ର ପ୍ରଭୃତିରେ ବିଶେଷ କରି ଓଡିଶାରେ ଓଡିଶୀ ସଂଗୀତ ଓ ନୃତ୍ୟ କ୍ଷେତ୍ରରେ ସବୁଠାରୁ ଅଧିକ ଲୋକପ୍ରିୟ ହୋଇଥାଏ ।

ଜୀବନର ନୂତନ ଅଧ୍ୟାୟ ମୋର ବ୍ୟବସ୍ଥାସଭା ରାଜନୀତିର ସ୍ୱପ୍ନକୁ ସାର୍ଥକ କରିବା ସଂପର୍କୀୟ ଥିଲା ବୋଲି ଆଗରୁ କହିଛି । ୧୯୫୫ ନିର୍ବାଚନରେ ମୁଁ ଆନୁଷ୍ଠାନିକ ଭାବେ ଆବେଦନ କରିନଥିଲେ ମଧ୍ୟ ଡକ୍ଟର ହରେକୃଷ୍ଣ ମହତାବଙ୍କ ମୋ ପ୍ରତି ସ୍ନେହ ଓ ସଦିଚ୍ଛା ଓ ଆଶୀର୍ବାଦର ପ୍ରତୀକ ଭାବେ ମତେ ପୁରୀ ସଦର ନିର୍ବାଚନ ମଣ୍ଡଳୀରୁ ପ୍ରଥମ ଥର ପାଇଁ ପ୍ରାର୍ଥୀ ମନୋନୀତ କରିବା ପାଇଁ ଆନୁଷ୍ଠାନିକ ଭାବେ ଘୋଷଣା କରାଗଲା । ମୁଁ ନିଜେ ମଧ୍ୟ ଆଶ୍ଚର୍ଯ୍ୟ ହେଲି । ମହତାବ ବାବୁ

ମତେ ଯେପରି ସରକାରୀ ଓକିଲ ଭାବେ ନିଯୁକ୍ତି ଦେଇ ମୋ ପକ୍ଷରୁ କୌଣସି ଆନୁଷ୍ଠାନିକ ଉଦ୍ୟମ ନଥିଲେ ମଧ୍ୟ ଓଡିଶାର ସର୍ବକନିଷ୍ଠ ସରକାରୀ ଓକିଲ ଭାବେ ନିଯୁକ୍ତି ଦେଇ ଅବିଭକ୍ତ ପୁରୀ ଜିଲ୍ଲାରେ ଏକ ପରମ୍ପରା ସୃଷ୍ଟି କରିଥିଲେ ଠିକ୍ ସେହିପରି ବିନା ଆବେଦନରେ ସେ ମତେ ପୁରୀ ପୌରସଭାର ଅଧ୍ୟକ୍ଷ ଭାବେ ମୋର କାର୍ଯ୍ୟଦକ୍ଷତା ଓ ତାଙ୍କ ସହିତ ଅନେକ କାର୍ଯ୍ୟରେ ମିଶିବାର ସୁଯୋଗ ବେଳେ ମୋର ନିଷ୍ଠା ଓ କର୍ମ ତତ୍ପରତା ତାଙ୍କୁ ମୋ ପାଇଁ ଏପରି ଏକ ସୁଯୋଗ ସୃଷ୍ଟି କରିଛି ବୋଲି ମୋର ହୃଦବୋଧ ହେଲା । ମୁଁ ନିର୍ଦ୍ଧାରିତ ସମୟରେ ମୋର ମନୋନୟନ ପତ୍ର ଦାଖଲ କରି ବିଧାନସଭା ପାଇଁ ପ୍ରାଥମିକ ପ୍ରସ୍ତୁତିରେ ବ୍ୟସ୍ତ ରହିଲି । କିନ୍ତୁ ମୋର ମନୋନୟନ ଜିଲ୍ଲା କଂଗ୍ରେସ ସଭାପତି ସାଂସଦ ଶ୍ରୀ ଲୋକନାଥ ମିଶ୍ର (ପଂକ ବାବୁ) ଓ ତାଙ୍କ ସମର୍ଥକ ଗୋଷ୍ଠୀଙ୍କୁ ଗଭୀର ଆଘାତ ଦେଲା । କିନ୍ତୁ ମହତାବ ବାବୁଙ୍କ ବିରୋଧରେ ସାମ୍ନା ସଂଘର୍ଷ କରିବା ପାଇଁ ସେମାନଙ୍କର ସାହସ ନଥିଲେ ମଧ୍ୟ, ସେମାନେ ଭିତରିଆ ବିରୋଧ କରି ମତେ ହରାଇବା ପାଇଁ ସଜବାଜ ହେଉଥିଲେ ଓ ସେଥିପାଇଁ ମନ୍ତ୍ରଣା ଚଳାଇଥିଲେ । ମୁଁ କିନ୍ତୁ ପଙ୍କବାବୁଙ୍କ ବାସଭବନକୁ ଯାଇ ତାଙ୍କର ସହଯୋଗ କାମନା କରି ଅନ୍ୟ ବଂଧୁମାନଙ୍କୁ ଦଳବିରୋଧୀ କାର୍ଯ୍ୟରୁ ନିବୃତ୍ତେଇବା ପାଇଁ ଅନୁରୋଧ କରୁଥାଏ । ପଙ୍କବାବୁ ମୋ ସାମ୍ନାରେ ମତେ ନିବର୍ତ୍ତାଇ ନଥିଲେ ମଧ୍ୟ ଯେପରି ଜିଲ୍ଲା କଂଗ୍ରେସ ମୁଖ୍ୟ ଭାବେ ସେ ମତେ ଉତ୍ସାହିତ କରିବା କଥା ତା ନକରି ଅତ୍ୟନ୍ତ ନିଷ୍କ୍ରିୟ ହୋଇ ପଡୁଥିଲେ । ମୁଁ ଖବର ପାଉଥାଏ ପଙ୍କବାବୁ ମହତାବ ବାବୁଙ୍କ ସହିତ ଆଲୋଚନା କରି ମତେ ନିବର୍ତ୍ତାଇବା ପାଇଁ ଅନୁରୋଧ କରୁଛନ୍ତି କିନ୍ତୁ ମହତାବ ବାବୁ ସ୍ପଷ୍ଟ ଭାବେ କହୁଥାଆନ୍ତି ଜଣେ କଂଗ୍ରେସ ପ୍ରାର୍ଥୀ ପାର୍ଲିଆମେଣ୍ଟାରୀ ବୋର୍ଡ ଦ୍ୱାରା ସ୍ଥିରୀକୃତ ହୋଇଗଲା ପରେ ସେ ପ୍ରାର୍ଥୀଙ୍କୁ ନିବର୍ତ୍ତାଇ ପାରିବେ ନାହିଁ ଅପରନ୍ତୁ ସେ ଜିଣିବା ପାଇଁ ସବୁ ଉଦ୍ୟମ କରିବେ । ମୁଁ ଏ ପରିସ୍ଥିତିରେ ବିବ୍ରତ ନ ହୋଇ ନିର୍ବାଚନ ପ୍ରସ୍ତୁତିରେ ଆଗଉଥାଏ କିନ୍ତୁ ହଠାତ୍ ଖବର ପାଇଲି ତତ୍କାଳୀନ ବିଶିଷ୍ଟ ଆଇନଜୀବୀ, ପୁରୀର ସୁନାମଧନ୍ୟ ଜମିଦାର ଓ ମୋର ଆଇନ ବ୍ୟବସାୟର ଗୁରୁ ଯାହାଙ୍କ ଆଶୀର୍ବାଦ, ଉପଦେଶ ଓ ସାହାଯ୍ୟ ମତେ ପୌରସଭା ନିର୍ବାଚନରେ ଉପ-ପୌରପାଳ ଓ ପୌରପାଳ ନିର୍ବାଚନରେ ବିଶେଷ ସାହାଯ୍ୟ କରିଥିଲେ, ସେ ନିଜେ ପ୍ରାର୍ଥୀପତ୍ର ଦାଖଲ କରିଛନ୍ତି ଓ ମୋ ଘରକୁ ଆସିବେ ନିର୍ବାଚନରୁ ଓହରି ଯିବାକୁ ଅନୁରୋଧ କରିବା ପାଇଁ । ମୁଁ ଘୋର ବିବ୍ରତ ହୋଇପଡିଲି । ଏଣେ ଲୋକନାଥ ମିଶ୍ର ମୋର ପିତୃବ୍ୟଙ୍କ ପରି ସମ୍ମାନୀତ ବ୍ୟକ୍ତି; ମତେ ଜୀବନରେ ଆଇନ ବ୍ୟବସାୟରେ ପ୍ରତିଷ୍ଠିତ କରିବାରେ ତାଙ୍କର ଅବଦାନ ବହୁତ ବେଶି । ମହତାବ ବାବୁଙ୍କ ସହିତ ତାଙ୍କର ବହୁତ ଘନିଷ୍ଠତା, ସେ ମଧ୍ୟ ବିହାର ଓଡିଶାର ବିଧାନସଭାରେ

ଜମିଦାରଙ୍କ ପାଇଁ ନିର୍ଦ୍ଦିଷ୍ଟ ନିର୍ବାଚନ ମଣ୍ଡଳୀରେ ଆଗରୁ ଜିଣିଥିଲେ । ଓଡିଶା ସ୍ୱତନ୍ତ୍ର ପ୍ରଦେଶ ହେବା ପରେ ୧୯୩୬ ମସିହାରେ ଓଡିଶା ପ୍ରଶାସନିକ ବୋର୍ଡର ସଭ୍ୟ ଥିଲେ । ବୁଦ୍ଧିଜୀବୀଙ୍କ ମଧ୍ୟରେ ବହୁ ସମ୍ମାନୀତ ବ୍ୟକ୍ତି, ସେ ଯଦି ବିରୋଧ କରିବେ ଏବଂ ପଙ୍କବାବୁଙ୍କ ଗୋଷ୍ଠୀର ସହଯୋଗ ମିଳିବ ନାହିଁ ମୋର ନିର୍ବାଚନ ଏକ ବିବାଦୀୟ ଅବସ୍ଥାରେ ରହିଯିବ । ରାଏ ବାହାଦୁର ଲୋକନାଥ ମିଶ୍ରଙ୍କ ଅନୁରୋଧରେ ମହତାବ ବାବୁ ଆସି ପଙ୍କ ବାବୁଙ୍କ ଘରେ ପହଞ୍ଚିଲେ ଓ ମତେ ଡକାଇ ପଙ୍କ ବାବୁ ଓ ଅନ୍ୟାନ୍ୟ କଂଗ୍ରେସ କର୍ମୀଙ୍କ ଆଗରେ ସ୍ପଷ୍ଟ କରିଦେଲେ ଯେ ସେ ମତେ ନିବୃର୍ତ୍ତାଇବାକୁ ଆସି ନାହାନ୍ତି । ମୁଁ ପ୍ରାର୍ଥୀ ହୋଇ ନିର୍ବାଚନ ଲଢିଲେ ସେ ସମସ୍ତ ସହଯୋଗ ଦେବେ କିନ୍ତୁ ନିର୍ବାଚନ ଲଢିବା ନିଷ୍ପତ୍ତି ମୋର । କିନ୍ତୁ ରାଏ ବାହାଦୂର ମହତାବ ବାବୁ ଓ ମୋ ଉପରେ ଅଧିକ ଚାପ ପକାଇବା ପାଇଁ ତତ୍‌କାଳୀନ ଏମାର ମଠ ମହନ୍ତ ମହାରାଜ ଗଦାଧର ରାମାନୁଜ ଦାସ ଓ ପୁରୀର ଗଜପତି ମହାରାଜା ସ୍ୱର୍ଗତ ରାମଚନ୍ଦ୍ର ଦେବଙ୍କ ଜରିଆରେ ଚାପ ଦେଲେ । ଏପରିକି ପଙ୍କବାବୁଙ୍କ ବାସଭବନରେ ଏ ସଂପର୍କରେ ମହତାବ ବାବୁଙ୍କ ଉପସ୍ଥିତିରେ ଆଲୋଚନା ଚାଲିଥିବା ବେଳେ ପୁରୀର ସବୁଠାରୁ ସମ୍ମାନୀତ ଏମାର ମଠାଧୀଶ ନିଜେ ମହତାବ ବାବୁଙ୍କୁ ସାକ୍ଷାତ କରିବାକୁ ଆସି ସେ ଆଲୋଚନାରେ ଭାଗ ନେଲେ ଏବଂ ରାୟ ବାହାଦୂରଙ୍କ ବୟସ ଦୃଷ୍ଟିରୁ ଏହି ନିର୍ବାଚନ ତାଙ୍କ ଜୀବନର ଶେଷ ଅଭିଳାଷ ଓ ମୁଁ ଦୀର୍ଘ ଭବିଷ୍ୟତରେ ଏପରି ସୁଯୋଗ ପାଇ ବିଧାନସଭାରେ ପ୍ରତିନିଧିତ୍ୱ କରିପାରିବାର ଅବକାଶ ରହିଛି ବୋଲି ଯୁକ୍ତି ବାଢି, ଗଜପତିଙ୍କର ମଧ୍ୟ ଏହା ହିଁ ଇଚ୍ଛା ବୋଲି ସମସ୍ତଙ୍କ ସାମ୍‌ନାରେ ପ୍ରକାଶ କରିଥିଲେ । ମହତାବ ବାବୁଙ୍କ ଏକା ଯୁକ୍ତି ଯେ ଗଙ୍ଗାଧରଙ୍କ ଉପରେ ସବୁ ନ୍ୟସ୍ତ କରେ ସେ ଯଦି ତାଙ୍କ ଗୁରୁଙ୍କ ପ୍ରତି ସମ୍ମାନ ଦେଖାଇ ରାୟ ବାହାଦୂରଙ୍କୁ ଶେଷ ସୁଯୋଗ ଦେବା ପାଇଁ ନିଜେ ସ୍ୱଇଚ୍ଛାରେ ଓହରିଯିବେ ତେବେ ତାଙ୍କର ବିଶେଷ ଆପତ୍ତି ନାହିଁ । ମୁଁ କିନ୍ତୁ ଓହରି ଯିବାରେ ଯେଉଁ ପରିଣତି ଘଟିବ ଓ ମୋ ଭବିଷ୍ୟତ ଉପରେ ଯେଉଁ ଆଞ୍ଚ ଆଣିବାର ଆଶଙ୍କା ତାକୁ ସ୍ମରଣ କରି ଓହରିଯିବା ସମିଚୀନ ହେବ ନାହିଁ ବୋଲି ମନେ ମନେ ସ୍ଥିର କରିଥାଏ । ଏହି ଆଲୋଚନା ଚାଲିଥିବା ସମୟରେ ମୋର ପିତା ଦାମୋଦର ମହାପାତ୍ର ରାଏ ବାହାଦୂରଙ୍କଠାରୁ ସଂକେତ ପାଇ ପଙ୍କବାବୁଙ୍କ ବାସଭବନରେ ପହଞ୍ଚିଲେ । ସେ, ଗଜପତି ମହାରାଜା, ଏମାର ମଠାଧୀଶ ଓ ରାୟ ବାହାଦୂରଙ୍କ ନୈରାଶ ଭାବ ଦେଖି ବିଚଳିତ ହୋଇ ସେହିଠାରେ ମତେ ତାକିଦ୍ କରି ଉଠିଲେ 'ତୁ ଗୁରୁଦ୍ରୋହୀ ହେଲେ ଭବିଷ୍ୟତ ତୋର ଅଧିକ ଅନିଶ୍ଚିତ ହେବ ଏବଂ ପୁରୀର ମହାନ ଲୋକଙ୍କ ଅନୁରୋଧକୁ ଏଡି ଦେଲେ ତୋର ଅଭିଳାଷ କେବେହେଲେ ସଫଳତା ଲାଭ କରିବ

ନାହିଁ । ବିଶେଷ କରି ତତେ ପୌରସଭାର ଉପାଧ୍ୟକ୍ଷ-ଅଧ୍ୟକ୍ଷ ନିର୍ବାଚନରେ ବହୁତ ସହଯୋଗ ଦେଇ ରାୟ ବାହାଦୁର ଆଇନ ବ୍ୟବସାୟରେ ସୁନାମ ଅର୍ଜନ କରାଇବାରେ ବହୁତ ସହଯୋଗ କରିଛନ୍ତି । ଏ ସବୁ ଦୃଷ୍ଟିରୁ ତୋର ଭବିଷ୍ୟତ ମଙ୍ଗଳ ଦୃଷ୍ଟିରୁ ତୁ ରାୟ ବାହାଦୁର ଲୋକନାଥ ମିଶ୍ରଙ୍କ ବିରୁଦ୍ଧରେ ନିର୍ବାଚନରେ ଜିତିଲେ ମଧ୍ୟ ଭବିଷ୍ୟତ ପାଇଁ ଗୁରୁଦ୍ରୋହୀର ଆଖ୍ୟା ଅର୍ଜନ କରିବୁ ।' ମୋର ବୃଦ୍ଧ ପିତୃଦେବଙ୍କ ଏପରି ଚେତାବନୀ ଏମାର ମଠାଧୀଶଙ୍କ ଭଳି ମୋର ଶୁଭେଚ୍ଛୁ ଏବଂ ରାଏ ବାହାଦୁର ଲୋକନାଥ ମିଶ୍ରଙ୍କ ମୁଖମଣ୍ଡଳରେ ନୈରାଶ୍ୟର ଛାୟା ଓ ମୋର ଆଶଙ୍କାମୟ ଭବିଷ୍ୟତ ସବୁକୁ ବିଚାର କରି ମୁଁ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତାରୁ ଓହରିଯିବା ଉଚିତ ମନେ କଲି । ସେଇଦିନ ପ୍ରାର୍ଥୀପତ୍ର ପ୍ରତ୍ୟାହାର କରିବାର ଶେଷ ସମୟ । ୩ଟା ପୂର୍ବରୁ ପ୍ରତ୍ୟାହାର କରିବାକୁ ହେବ । ସମୟ ୨/୩୦ ଅପରାହ୍ନ ହୋଇଥାଏ । ମୋର ସାଥୀମାନେ ଅତ୍ୟନ୍ତ ଦୁଃଖଦାୟକ ପରିସ୍ଥିତିରେ ମୋର ଅସହାୟତା ଉପଲବ୍ଧି କରି ମତେ ସାହସ କରି କିଛି କହି ପାରୁନାହାନ୍ତି । ଏପରି ଏକ ଦୟନୀୟ ପରିସ୍ଥିତିର ଶିକାର ହୋଇ ଅଶ୍ରୁପୂର୍ଣ୍ଣ ଛଳ ଛଳ ଆଖିରେ ବୟୋବୃଦ୍ଧ ମୋର ଆଶୀର୍ବାଦକ ଓ ପରମ ଶୁଭେଚ୍ଛୁ ଗଜପତି ମହାରାଜ ଓ ଏମାର ମଠାଧୀଶଙ୍କୁ ଅବାଞ୍ଛିତ ହସ୍ତକ୍ଷେପରେ ବିଶେଷ ହତୋତ୍ସାହ ହୋଇ ସମସ୍ତଙ୍କୁ ପ୍ରଣାମ ଜଣାଇ ପଙ୍କବାବୁଙ୍କୁ ଗୋଟିଏ ବାକ୍ୟ କହିଲି 'ପଙ୍କ ବାବୁ ଆପଣଙ୍କ ଇଚ୍ଛା ପୂରଣ ହେଲା । ମୁଁ ଓହରି ଯାଉଛି ।' ଜିଲ୍ଲାପାଳଙ୍କୁ ଜଣାଇବା ପାଇଁ କଲେକ୍ଟରଙ୍କ ଇଜଲାସକୁ ଯାଇ ପ୍ରାର୍ଥୀପତ୍ର ପ୍ରତ୍ୟାହାର କରିବା ପାଇଁ ଚିଠିଟି ତାଙ୍କ ହସ୍ତେ ଅର୍ପଣ କରିବା ସମୟରେ ଅପରାହ୍ନ ୩ଟା ବାଜି ଦୁଇ ମିନିଟ୍ ହୋଇଥିଲା । ସେ ମୋ ଆବେଦନକୁ ଗ୍ରହଣ କରିବା ପାଇଁ କୁଣ୍ଠାବୋଧ କରୁଥିଲେ ମଧ୍ୟ ମୋ ଠାରୁ ସବୁ ଶୁଣି ଦରଖାସ୍ତଟି ଶେଷରେ ଗ୍ରହଣ କରି '୩ ପି.ଏମ.' ହେବାର ଦସ୍ତଖତ ଦେଲେ । ଏହା ହିଁ ହେଲା ପୁରୀ ନିର୍ବାଚନ ମଣ୍ଡଳୀରେ ମୋର ପ୍ରଥମ କଂଗ୍ରେସ ପ୍ରାର୍ଥୀ ଭାବେ ଛିଡା ହୋଇ ପ୍ରାର୍ଥୀପତ୍ର ପ୍ରତ୍ୟାହାର କରିବାର ନାଟକୀୟ ପରିଣତି ଯାହାର କି ଶେଷ ଯବନିକା ପଡିଲା ସେହିପରି ନାଟକୀୟ ଓ ଦୟନୀୟ ପରିସ୍ଥିତିରେ । ସେ ସଂପର୍କରେ ପରବର୍ତ୍ତୀ ଅଧ୍ୟାୟରେ ପାଠକମାନେ ସମ୍ୟକ ଧାରଣା ପାଇବେ ।

ପୁରୀ ସହର ଓ ସଦର ନିର୍ବାଚନ ମଣ୍ଡଳୀରେ ତାର ପ୍ରତିକ୍ରିୟା ମଧ୍ୟ ପରବର୍ତ୍ତୀ ସମୟରେ ଏପରି ସଂଘର୍ଷମୟ ଅବସ୍ଥାକୁ ଗଲା ଯେ ଗତ ୧୫ ବର୍ଷ ହେବ ଏହି ନିର୍ବାଚନ ମଣ୍ଡଳୀରୁ କଂଗ୍ରେସର କ୍ରମାଗତ ପରାଜୟ ଘଟୁଛି ଏବଂ କଂଗ୍ରେସ ଦଳରେ ଏକତା ଓ ସମଝୌତା ଓ ସୌହାର୍ଦ୍ଦ୍ୟର ଅଭାବରୁ ଏପରି ପରିଣତି ଘଟି ଗତବର୍ଷ ନିର୍ବାଚନରେ ରାଜ୍ୟ ପ୍ରଦେଶ କଂଗ୍ରେସ କମିଟିର ସାଧାରଣ ସଂପାଦକ ଓ ୧୯୮୦

ମସିହାରେ ପିପିଲି ନିର୍ବାଚନ ମଣ୍ଡଳୀରୁ ବିଜୟ ହାସଲ କରି ୧୯୮୦-୮୫ ମସିହା ବିଧାନସଭା କଂଗ୍ରେସ ଦଳର ମୁଖ୍ୟ ଛାଟିଆ ଦାୟିତ୍ୱରେ ଥିବା ପ୍ରବୀଣ କଂଗ୍ରେସ ନେତା ବିପିନ ଦାଶ ତାଙ୍କର ଅମାନତ ମଧ୍ୟ ହରାଇଲେ । ତାଠାରୁ ବଳି ଲଜ୍ଜାକର ଘଟଣା ଆଉ କଣ ଥାଇପାରେ ? ପୁରୀ ପୌରସଭା ଓ ପୁରୀ ନିର୍ବାଚନ ମଣ୍ଡଳୀରେ କଂଗ୍ରେସର ଅଧୋଃପତନରେ ମୂଳ ଥିଲା ୧୯୫୫ ମସିହା ଦ୍ୱିତୀୟ ନିର୍ବାଚନରେ ମୋ କଂଗ୍ରେସ ପ୍ରାର୍ଥିତ୍ୱକୁ ନେଇ ଯେଉଁ ସଂକଟ ସୃଷ୍ଟି ହେଲା ଏବଂ ଉପରେ ସୂଚୀତ ଯେଉଁ ନାଟକୀୟ ପରିସ୍ଥିତିର ଶିକାର ହେବାକୁ ମତେ ପଡିଲା । ମୋର ନୈରାଶ୍ୟ ଓ ଅସନ୍ତୋଷ ଓ ଅସହାୟତା ସୃଷ୍ଟି କରିବାରେ ଯେଉଁମାନଙ୍କର ଭୂମିକା ଥିଲା, ସେମାନେ ଆଜି ନାହାନ୍ତି । ପରବର୍ତ୍ତୀ ସମୟରେ ପଙ୍କ ବାବୁ ପୁରୀବାସୀଙ୍କ କ୍ରୋଧ ଓ ପ୍ରତିହିଂସା ପରାୟଣତାର ଶିକାର ହୋଇ ପୁରୀ ସହର ତ୍ୟାଗ କରି ରାଜନୀତିରୁ ସବୁଦିନ ପାଇଁ ସନ୍ୟାସ ନେଲେ । ଶ୍ରୀ ଭଗବାନ ପ୍ରତିହାରୀ ମଧ୍ୟ ରାଜନୀତିରୁ ସନ୍ୟାସ ନେଇ ଅତ୍ୟନ୍ତ ଦୟନୀୟ ଅବସ୍ଥାରେ ଶାରୀରିକ ଅସୁସ୍ଥତା ଭିତରେ ଶେଷନିଶ୍ୱାସ ତ୍ୟାଗ କଲେ । ଶ୍ରୀ ଶ୍ରୀ ପରମବ୍ରହ୍ମ ଜଗନ୍ନାଥ ମହାପ୍ରଭୁ ତାଙ୍କ ଆତ୍ମାକୁ ଶାନ୍ତିରେ ରଖନ୍ତୁ ଏହା ହିଁ ପ୍ରାର୍ଥନା । ସେତେବେଳର ସ୍ୱାଧୀନତା ସଂଗ୍ରାମୀଙ୍କ ମଧ୍ୟରେ ଆଉ କେହି ଜୀବିତ ନାହାନ୍ତି ।

ଏ ସଂପର୍କରେ ମୋର ସବୁଠାରୁ ପ୍ରିୟ, ବିଶ୍ୱସ୍ତ ଓ ବୁଦ୍ଧିମାନ ସ୍ୱାଧୀନତା ସଂଗ୍ରାମୀ ଓ ଦକ୍ଷ ସଂଗଠକ ସ୍ୱର୍ଗତ ମଧୁସୂଦନ ନନ୍ଦଙ୍କ ସଂପର୍କରେ ଦି ପଦ ଉଲ୍ଲେଖ ନ କରିବା ଅନୁଚିତ ହେବ ବୋଲି ଭାବୁଛି । ମୋର ଓକିଲାତି ଆରମ୍ଭଠାରୁ ୧୯୪୪ ମସିହା ମଧ୍ୟଭାଗରୁ ତାଙ୍କର ବିୟୋଗ ପର୍ଯ୍ୟନ୍ତ ସେ ଥିଲେ ପୁରୀ ଜିଲ୍ଲା କଂଗ୍ରେସର ମୁଖ୍ୟ ନେତା ଓ ସାଧାରଣ ସଂପାଦକ । ଯେତେବେଳେ ଯେଉଁ ସଂକଟ ପହଞ୍ଚିଛି ସେ ମୋ ପଛରେ ଜଣେ ପରମ ବିଶ୍ୱସ୍ତ ବନ୍ଧୁ ଭାବରେ ରହିଛନ୍ତି । ମତେ ପରାମର୍ଶ ଦେଇଛନ୍ତି । ମୋର ଦୁର୍ବଳତା ଦେଖିଲେ ମତେ ସାହସ ଦେଇଛନ୍ତି ଓ କଂଗ୍ରେସକୁ ପୁରୀ ଜିଲ୍ଲାରେ ବଞ୍ଚାଇ ରଖିବାରେ ଜଣେ ଟାଣୁଆ ସଂଗଠକ, ଅତ୍ୟନ୍ତ କୁଶଳୀ ଓ ମୁକାବିଲା କରିବାରେ ସିଦ୍ଧହସ୍ତ ବୋଲି ତାଙ୍କୁ ସମସ୍ତେ ଶ୍ରଦ୍ଧା କରୁଥିଲେ । ମୁଁ ପୁରୀରୁ ନିର୍ବାଚିତ ହୋଇଯାଏ ଏ କଥା ସେ ଶେଷ ପର୍ଯ୍ୟନ୍ତ ଇଚ୍ଛା କରୁଥିଲେ, ମହତାବ ବାବୁଙ୍କୁ ବୁଝାଇଥିଲେ । ପଂକବାବୁଙ୍କର ପରମପ୍ରିୟ ଥିଲେ ମଧ୍ୟ ମୋ ପ୍ରତି ସେ ଯେଉଁ ଅସହିଷ୍ଣୁ ଭାବ ପ୍ରକାଶ କରି ମୋର ପ୍ରଥମ ବିଧାନସଭା ପ୍ରାର୍ଥୀତ୍ୱ ଉପରେ ଅବାଞ୍ଛନୀୟ ପ୍ରତିବନ୍ଧକ ସୃଷ୍ଟି କଲେ ସେଥିରେ ସେ ମର୍ମାହତ ହୋଇ ଶେଷରେ ବିଜୁବାବୁଙ୍କର ଓଡିଶା ରାଜନୀତିରେ ଅସହାୟ ଅବସ୍ଥା ଓ କେନ୍ଦ୍ରରେ ସାଂସଦ ଭାବେ ଚାଲିଯିବା ପରେ ସେ ଅତ୍ୟନ୍ତ ଶାରୀରିକ ଦୁରବସ୍ଥାରେ ରାଜନୀତିରୁ ସନ୍ୟାସ ନେଇ ଶେଷରେ

ତାଙ୍କର ଅକାଳ ବିୟୋଗ ଘଟିଲା । ସେ ବଞ୍ଚିଥିଲେ ବୋଧହୁଏ ସହର ଓ ସଦର କଂଗ୍ରେସର ଆଜି ଏପରି ଦୟନୀୟ ଅବସ୍ଥା ହୋଇ ନଥାନ୍ତା ବୋଲି ମୋର ବିଶ୍ୱାସ । ତାଙ୍କର ସ୍ତ୍ରୀ ଶ୍ରୀ ଅରବିନ୍ଦ ଓ ଶ୍ରୀ ମା ଙ୍କର ପରମଭକ୍ତ । ମଧୁବାବୁଙ୍କ ଜ୍ୱାଇଁ ଡାକ୍ତର । ଦୁଇ ପୁଅ ଭିତରୁ ଜଣେ ଫ୍ରାନ୍ସରେ ଅଛନ୍ତି ଓ ଆଉ ଜଣେ ବହୁ ବର୍ଷ ଇଉରୋପରେ ରହି ବର୍ତ୍ତମାନ ବିଦେଶିନୀ ପତ୍ନୀଙ୍କ ସହିତ ପଣ୍ଡିଚେରୀ ନିକଟସ୍ଥ ଏକ ବିରାଟ କୃଷି ଫାର୍ମ କରି ସ୍ୱଚ୍ଛନ୍ଦ ଅବସ୍ଥାରେ ଜୀବନ କଟାଉଛନ୍ତି । ଉଭୟ ପୁତ୍ର ଅତ୍ୟନ୍ତ ମେଧାବୀ ଛାତ୍ର ଭାବେ ବିଜୁ ପଟ୍ଟନାୟକଙ୍କର ଆର୍ଥିକ ସହାୟତାରେ ପ୍ରାଥମିକ ଶିକ୍ଷା ପରେ ମାଡ୍ରାସ ନିକଟସ୍ଥ ଏକ ବିଖ୍ୟାତ ଇଂରାଜୀ ମିଡିୟମ୍ ସ୍କୁଲରେ ଦୀର୍ଘ ବର୍ଷ ଶିକ୍ଷାଲାଭ କରି ବିଦେଶରେ ସ୍ନାତକ ଓ ବୈଷୟିକ ଜ୍ଞାନରେ ଉଚ୍ଚ ଶିକ୍ଷାପ୍ରାପ୍ତ ଜୀବନ କଟାଉଛନ୍ତି ।

ଏହି ଅବସରରେ ଏତିକି କହିବାକୁ ଚାହେଁ ଯେ ୧୯୫୫ ମସିହା ନିର୍ବାଚନରେ ମୋ ପାଇଁ ଯେଉଁ ନାଟକୀୟ ପରିଣତି ଘଟିଲା, ତା ପରଠାରୁ ମୁଁ ପୁରୀ ନିର୍ବାଚନ ମଣ୍ଡଳୀ ବିଧାନସଭା ପାଇଁ ପ୍ରାର୍ଥୀ ହେବା ପାଇଁ କେବେ ଇଚ୍ଛା ପ୍ରକାଶ ନ କରିଥିଲେ ହେଁ ବନ୍ଧୁମାନେ ପୁରୀରୁ ପୁନର୍ବାର ପ୍ରାର୍ଥୀ ହେବା ପାଇଁ ଯେତେବେଳେ ଅନୁରୋଧ ଜଣାଉଥିଲେ, ନମ୍ରତାର ସହିତ ସେ ଅନୁରୋଧକୁ ଏଡାଇ ଦେଇଛି । ୧୯୫୭ ମସିହା ନିର୍ବାଚନରେ ମୋର ଦୟନୀୟ ଅବସ୍ଥାରୁ ନିଜକୁ ଫେରାଇ ନେବାର ଏକମାତ୍ର ବିକଳ୍ପ ଥିଲା ଆଇନ ବ୍ୟବସାୟରେ ଅଧିକ ସମୟ ଦେଇ ନିଜର ବ୍ୟବସାୟରେ ମନୋନିବେଶ କରିବା ଏବଂ ଆଇନଜୀବୀ ଭାବରେ ପ୍ରତିଷ୍ଠା ବଢାଇବା । ମୋ ଆଇନ ବ୍ୟବସାୟରେ ଗୋଟିଏ ଦୁଇଟି ଦୃଷ୍ଟାନ୍ତ ଦେଇ ନ୍ୟାୟାଳୟରେ ପଦାଧିକାରୀ ହେବାର କିପରି ଅନୁକୂଳ ବାତାବରଣ ମୋ ପାଇଁ ହେଲା ନାହିଁ ସେ ସଂପର୍କରେ ସମ୍ୟକ ସୂଚନା ଦେବା ଉଚିତ ମନେ କରୁଛି ।

ସରକାରୀ ଓକିଲ ଥିବା ବେଳେ ପୁରୀର ଜଣେ ମ୍ୟୁନିସିପାଲ୍ କାଉନସିଲର୍ ସ୍ୱର୍ଗତ ନନ୍ଦ କୁମାର ଶୁକ୍ଳ ତାଙ୍କ ସ୍ତ୍ରୀଙ୍କୁ ଦୋତାଲା ଉପରୁ ଅତର୍କିତ ଅବସ୍ଥାରେ ଠେଲି ଦେଇ ହତ୍ୟା କରିଛନ୍ତି ବୋଲି ଏକ ନରହତ୍ୟା ଅଭିଯୋଗରେ ଗିରଫ ହେଲେ । ତାଙ୍କ ପରିବାର ପୁରୀର ନାମଜାଦା ଧର୍ମୀୟ ଅନୁଷ୍ଠାନ ରାଘବ ଦାସ ମଠର ସମସ୍ତ ବୁଝାସୁଝା କରି ମ୍ୟାନେଜର ଭାବେ ଥାଆନ୍ତି । ସେ ମୋର ସହପାଠୀ । ତାଙ୍କର ଦୃଢ ଧାରଣା ଥାଏ ମୁଁ ତାଙ୍କୁ ଜାମିନରେ ଆସିବା ପାଇଁ ବିଶେଷ ଆପତ୍ତି ଉଠାଇବି ନାହିଁ । ପୁରୀ ଜିଲ୍ଲା ସେତେବେଳେ ବ୍ରହ୍ମପୁର ଜିଲ୍ଲା ଜଜ୍ କର୍ତ୍ତୃତ୍ୱାଧୀନ ଥାଏ । ପୁରୀରେ ସର୍କିଟ କୋର୍ଟ ହେଉଥାଏ । କିନ୍ତୁ ମୁଁ ମୋ କର୍ତ୍ତବ୍ୟ ନିଷ୍ଠାର ସହିତ କଲେ ମଧ୍ୟ ଓଡ଼ିଶା ହାଇକୋର୍ଟର ତତ୍କାଳୀନ ମୁଖ୍ୟ ବିଚାରପତି ଶୁକ୍ଳ ମହାଶୟଙ୍କୁ କେତେକ ସର୍ତ୍ତ ସମ୍ବଳିତ ଜାମିନ୍ ମଂଜୁର କଲେ । ମୁଁ ଜିଲ୍ଲାପାଳଙ୍କ ସହିତ ଆଲୋଚନା କରି ତାଙ୍କ

ଜାମିନ ସଂପର୍କରେ ହାଇକୋର୍ଟରେ ପୁନର୍ବିଚାର କରିବା ପାଇଁ ସ୍ଥିର କରି କେତେକ ଯୁକ୍ତିଯୁକ୍ତ ତଥ୍ୟ ଉପରେ ଏକ ରିଭିଜନ୍ ଦାଖଲ କରିବା ପାଇଁ ସ୍ଥିର କରି କାହାକୁ ନ ଜଣାଇ ରାତ୍ର ୩ଟା ବେଳେ ଡାକଟେର ଟ୍ରେନ୍‌ରେ କଟକ ଆସିବା ପାଇଁ ପ୍ରସ୍ତୁତ ହେଲି । ସେତେବେଳକୁ ହାଇକୋର୍ଟର ଗ୍ରୀଷ୍ମାବକାଶ । ସ୍ୱର୍ଗତ ମୁଖ୍ୟ ନ୍ୟାୟପତି ବୀର କିଶୋର ରାୟ ଛୁଟି ଉପଭୋଗ କରୁଥାଆନ୍ତି ଓ ତାଙ୍କ ସ୍ଥାନରେ ବରିଷ୍ଠ ନ୍ୟାୟପତି ଭାବେ ସ୍ୱର୍ଗତ ଲିଙ୍ଗରାଜ ପାଣିଗ୍ରାହୀ ଭେକେସନ୍ ଜଜ୍ ଭାବେ ଦାୟିତ୍ୱ ତୁଲାଉ ଥାଆନ୍ତି । ମୋର ଯାହା ମନେ ପଡୁଛି ଉଭୟ ଶ୍ରୀ ରାୟ ଓ ଶ୍ରୀ ପାଣିଗ୍ରାହୀଙ୍କ ମଧ୍ୟରେ ବିଶେଷ ସହୃଦୟତା ନଥିଲା । କିନ୍ତୁ ମୁଁ ଆଇନ ବ୍ୟବସାୟୀ ଭାବେ ଉଭୟ ଶ୍ରୀ ରାୟ ଓ ଶ୍ରୀ ପାଣିଗ୍ରାହୀଙ୍କ ଜୁନିଅର ଭାବେ ଅନେକ ମକଦ୍ଦମା ସେମାନେ ନ୍ୟାୟପତି ଦାୟିତ୍ୱ ନେବା ପୂର୍ବରୁ ସହଯୋଗ କରିଥିବାର ସୁଯୋଗ ପାଇଥିଲି । ବିଶେଷ କରି ଲିଙ୍ଗରାଜ ପାଣିଗ୍ରାହୀ ବ୍ରହ୍ମପୁର ଜଜ୍ କୋର୍ଟରେ ଶ୍ରେଷ୍ଠ ଆଇନଜୀବୀ ଭାବରେ ଓକିଲାତି ବ୍ୟବସାୟ କରିଥିବା ସମୟରେ ଏବଂ ପୁରୀ ବ୍ରହ୍ମପୁର ଜଜ୍‌ଙ୍କ ଅଧୀନରେ ଥିବା ହେତୁ ଅନେକ ବଡ ବଡ ଫୌଜଦାରୀ ମକଦ୍ଦମାରେ ବ୍ରହ୍ମପୁର ଜଜ୍ କୋର୍ଟରେ ଲିଙ୍ଗରାଜ ପାଣିଗ୍ରାହୀଙ୍କ ସହିତ କେତେକ ଗୁରୁତର ମକଦ୍ଦମାରେ ଜୁନିଅର ଭାବେ କାମ କରି ସ୍ନେହର ପାତ୍ର ହୋଇଥିଲି । ବୀର କିଶୋର ରାୟ ମଧ୍ୟ ପୁରୀକୁ ବହୁତ ବଡ ବଡ ସିଭିଲ୍ କେଶ୍‌ରେ ଆସନ୍ତି । ସ୍ୱର୍ଗତ ସ୍ୱାମୀ ବିଚିତ୍ରାନନ୍ଦ ଦାସ ଥିଲେ ତତ୍‌କାଳୀନ ଆଡ୍‌ଭୋକେଟ୍ ଜେନେରାଲ । ଏହି ତିନି ଜଣ ବରିଷ୍ଠ ଖ୍ୟାତନାମା ଆଇନଜୀବୀ ମତେ ନିଜକୁ ପ୍ରତିଷ୍ଠିତ କରାଇବାରେ ଯେଉଁ ଶୁଭେଚ୍ଛା, ଆଶୀର୍ବାଦ ଓ ସହଯୋଗ କରିଛନ୍ତି ମୁଁ ଏହି ଅବସରରେ ସେମାନଙ୍କ ସ୍ମୃତି ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି । ମୁଁ ଗଭୀର ରାତ୍ରରେ ନନ୍ଦ କିଶୋର ଶୁକ୍ଳ ଫାଇଲ ଧରି ପୁରୀ ରେଳ ଷ୍ଟେସନକୁ ଆସିବାବେଳେ ସାମାନ୍ୟ ବର୍ଷା ହେଉଥାଏ । ମୁଁ ରିକ୍ସାରେ ବସି ଷ୍ଟେସନ ଛକ ନିକଟରେ ପହଞ୍ଚିଲା ବେଳକୁ ନନ୍ଦ କୁମାର ମୁଁ ଯାଉଥିବାର ମୋର କିରାନୀ (ସରକାରୀ ଓକିଲ ଅଫିସ ସହକାରୀ) ବୃନ୍ଦାବନ ପାତ୍ରଙ୍କ ଠାରୁ ବୋଧହୁଏ ଖବର ପାଇ ମୋ ପଛେ ପଛେ ଆସି ମୁଁ ଟିକେଟ କିଣି ଷ୍ଟେସନ ଗେଟ୍ ପାଖକୁ ଯିବାବେଳେ ହଠାତ୍ ସାମ୍‌ନାରେ ଠିଆ ହୋଇ ମୋ ହାତ ଧରି ତାଙ୍କ ଜାମିନ ବାତିଲ କରିବାରେ ବ୍ରତୀ ନ ହେବାକୁ ଅନୁରୋଧ କଲେ । ଠିକ୍ ଏହି ସମୟରେ ସେ ମୋ ହାତ ଧରିଛନ୍ତି ମତେ ଜଣାଗଲା ମୋ ହାତ ପାପୁଲିରେ କିଛି ଜିନିଷ ସେ ଦେଇଛନ୍ତି ମୁଁ ଚାହିଁଲା ବେଳେ କେତେଗୁଡିଏ ସୁନାର ଗିନି ଟଙ୍କା । ମୁଁ ତତ୍‌କ୍ଷଣାତ ସେ ଲୋଭ ସମ୍ବରଣ କରି ତାଙ୍କୁ ଫେରାଇ ଦେଇ ସେଥିପାଇଁ ତିରସ୍କାର କରି ମୋ ଭବିଷ୍ୟତ ପ୍ରତିଷ୍ଠାରେ କୌଣସି ପ୍ରତିବନ୍ଧକ ସୃଷ୍ଟି ହେବାକୁ ଦେବି ନାହିଁ ଏବଂ ତାଙ୍କର ଏପରି ପ୍ରଲୋଭନ

ପାଇଁ ତାଙ୍କୁ ଉପଯୁକ୍ତ ଶିକ୍ଷା ଦେବି ବୋଲି କହି ରେଳ ପ୍ଲାଟଫର୍ମକୁ ଆସି ଫାଇଲଟି ବୃନ୍ଦାବନଙ୍କ ଠାରୁ ନେଇ ଆସି ମୋ ସହିତ କଟକ ଯିବାର ଆବଶ୍ୟକତା ତାଙ୍କର ନାହିଁ ବୋଲି କହି ତାଙ୍କୁ ମଧ୍ୟ ଏପରି ଖବର ଦେଇଥିବା ସନ୍ଦେହରେ ହଟାଇ ଦେବି ବୋଲି ଧମକ ଦେଇ ଗାଡିରେ ବସିଲି । ନନ୍ଦକୁମାର ବିରାଟ ଧନୀ, ପୌର ସଭା ସଭ୍ୟ, ମୋର ସହପାଠୀ । ତାଙ୍କ କୋଠାରେ ମୁଁ ମାଇନର ପଢ଼ିଲା ବେଳେ ଯେଉଁ ଟିଉସନ ଦୀନବନ୍ଧୁ ସାର୍ କରୁଥାଆନ୍ତି ସେଥିରେ ନନ୍ଦକୁମାର ଓ ମୁଁ ଏକ ସାଙ୍ଗରେ ପଢୁଥାଉ । ସେଥିପାଇଁ ସେ ବିପଦରୁ ଉଦ୍ଧାର ପାଇବା ପାଇଁ ଏପରି ଉଦ୍ୟମ କରିବା କିଛି ତାଙ୍କ ପକ୍ଷରେ ଅସ୍ୱାଭାବିକ ନୁହେଁ ବୋଲି ଭାବି ସେଥିପାଇଁ ମୋର ନିର୍ମଳ ଭାବମୂର୍ତ୍ତିରେ ଆଞ୍ଚ ନ ଆଣିବା ଓ ମୋର ଆଇନ ବ୍ୟବସାୟରେ ପ୍ରତିଷ୍ଠା ବଜାୟ ରଖିବା ପାଇଁ ମୋର କର୍ତ୍ତବ୍ୟନିଷ୍ଠାରେ ଅବହେଳା ଯେପରି ନ ହୁଏ ସେଥିପ୍ରତି ଜାଗ୍ରତ ରହି ଶେଷରେ ଲିଙ୍ଗରାଜ ପାଣିଗ୍ରାହୀଙ୍କ ଅବସରକାଳୀନ ଚେମ୍ବରରେ ମୁଁ ତତ୍‌କାଳୀନ ଆଡ୍‌ଭୋକେଟ୍ ଜେନେରାଲ୍‌ଙ୍କ ସହଯୋଗୀ ଭାବେ ଶୁଣାଣୀ ପରେ ନନ୍ଦ କୁମାର ଜାମିନ ରଦ୍ଦ ହୋଇ ତାଙ୍କୁ ଜେଲକୁ ନିଆଯାଇଥିଲା । ପରେ ବିଚାର ଶେଷରେ ଦୀର୍ଘ ଦିନ ଜେଲ୍‌ରେ ରହି ଜଣେ ବ୍ରିଟିଶ୍ ଜଜ୍ ତାଙ୍କୁ ସନ୍ଦେହରେ ଖଲାସ ଦେଇଥିଲେ ।

ଲିଙ୍ଗରାଜ ପାଣିଗ୍ରାହୀ ନ୍ୟାୟପତି ପଦରୁ ଅବ୍ୟାହତି ନେଇ ସେତେବେଳକୁ ୧୯୫୮-୫୯ ମସିହାରେ ମହତାବ ମନ୍ତ୍ରିମଣ୍ଡଳରେ ସ୍ୱରାଷ୍ଟ୍ର ମନ୍ତ୍ରୀ ଥିଲେ ଓ ତା ସହିତ ଆଇନ ବିଭାଗ ଦାୟିତ୍ୱରେ ମଧ୍ୟ ଥିଲେ । ଜଣେ ପ୍ରତିପରିଶାଳୀ ମନ୍ତ୍ରୀ ମଧ୍ୟ ହୋଇଥିଲେ । ତାଙ୍କର ଅବସର ନେବାର କିଛି ମାସ ପୂର୍ବରୁ ୨ ଟି ଜିଲ୍ଲା ଜଜ୍ ପୋଷ୍ଟ ଆଇନଜୀବୀମାନଙ୍କ ମଧ୍ୟରେ ନିଯୁକ୍ତି ଦିଆଯିବା ପାଇଁ ନୋଟିଫିକେସନ୍ ହେଇଥାଏ ।

ସେହି ସମୟରେ ଲିଙ୍ଗରାଜ ପାଣିଗ୍ରାହୀ ମହାଶୟ ପୁରୀ ସର୍କିଟ ହାଉସ୍‌ରେ ଥାଆନ୍ତି । ସମ୍ମାନ ଦେଖାଇବା ପାଇଁ ମୁଁ ଦେଖା କରିବା ଉଦ୍ଦେଶ୍ୟରେ ସର୍କିଟ ହାଉସରେ ତାଙ୍କୁ ସାକ୍ଷାତ କଲି । ଆଲୋଚନା ବେଳେ ସେ ମତେ ସୂଚନା ଦେଲେ ମୁଁ ଜିଲ୍ଲା ଜଜ୍ ପାଇଁ ଆବେଦନ କରିବା ପାଇଁ । ସେ ମଧ୍ୟ କହିଲେ ମୁଁ ଯଦି ନିଯୁକ୍ତି ପାଏ ନିଶ୍ଚିତ ଭାବେ ଉଚ୍ଚନ୍ୟାୟାଳୟରେ ନ୍ୟାୟପତି ହେବାର ସୁଯୋଗ ପାଇବି । ମୋ ପ୍ରତି ତାଙ୍କର ଏହି ସ୍ନେହ ଓ ଶୁଭେଚ୍ଛା ଥିବା କଥା ମୁଁ ତାଙ୍କଠାରୁ ବିଦାୟ ନେଇ ଘରେ ମୋର ଶଶୁର ସ୍ୱର୍ଗତ ଚୌଧୁରୀ ଗଙ୍ଗାଧର ଦାଶଙ୍କୁ ଜଣାଇଲି । ପ୍ରବଳ ପ୍ରତାପୀ ଜମିଦାର ମହତାବ ବାବୁଙ୍କ ସହିତ ତାଙ୍କର ଘନିଷ୍ଠତା ଥାଏ । ସେ ମତେ ଓକିଲାତିର ପ୍ରଥମ ଅବସ୍ଥାରେ ପ୍ରତି ମାସରେ ଅର୍ଥ ସାହାଯ୍ୟ ଓ ଆଇନ ବହି କିଣିବାରେ ସମସ୍ତ ସାହାଯ୍ୟ କରୁଥିଲେ ଓ ମତେ ବହୁତ ସ୍ନେହ ଓ ଆଦର କରୁଥିଲେ । ପୁରୀରେ ତାଙ୍କର ଏକ

ସ୍ୱତନ୍ତ୍ର କୋଠା ଥାଏ । ସେ ପୁରୀଠାରେ ଜଗନ୍ନାଥ ଦର୍ଶନ କରିବା ପାଇଁ ଓ ମତେ ଓ ମୋ ପରିବାରକୁ ଦେଖିବା ପାଇଁ ସେହି କୋଠା (ବଳଭଦ୍ର ଗଳି) କୁଣ୍ଡାଇବେଣ୍ଟ ସାହିରେ ରହୁଥାଆନ୍ତି । ସେଇଦିନ ସଂଧ୍ୟାବେଳେ ମୁଁ ତାଙ୍କ ସହିତ ସାକ୍ଷାତ କରି ପୁରୀ ନ୍ୟାୟପତି ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ ସୂଚନା ଦେଇଥିବା ପ୍ରସ୍ତାବଟି ତାଙ୍କ ଆଗରେ ଉପସ୍ଥାପିତ କଲି । ସେ ଜମିଦାରିଆ ଢଙ୍ଗରେ ମତେ ପ୍ରଶ୍ନ କଲେ, ତୁମର ଏବେ ହାରାହାରି ମାସିକ ଆୟ କେତେ ହେଉଛି । ମୁଁ ଉତ୍ତର ଦେଲି ପ୍ରାୟ ଟ ୩,୦୦୦/-ରୁ ଟ ୩,୫୦୦/-ଙ୍କା ଆୟ କରୁଛି । ଦ୍ୱିତୀୟ ପ୍ରଶ୍ନ ତାଙ୍କର – ଯଦି ତୁମ ଜିଲ୍ଲା ଜଜ୍ ଆବେଦନ ନ୍ୟାୟପତି କମିଟି ସୁପାରିସ୍ କରନ୍ତି, ତାହାହେଲେ ତୁମ ଆୟ କେତେ ଟଙ୍କାରୁ ଆରମ୍ଭ ହେବ । ଉତ୍ତର ହେଲା, ମୁଁ ନିର୍ଦ୍ଦିଷ୍ଟ ଭାବେ ଜାଣିନଥିଲେ ମଧ୍ୟ ପନ୍ଦର ଶହ ଟଙ୍କାରୁ ଦୁଇ ହଜାର ଭିତରେ । ତୃତୀୟ ପ୍ରଶ୍ନ ତାଙ୍କର ଥିଲା, ଜିଲ୍ଲା ଜଜ୍ ଚାକିରୀରେ ତୁମର ଯଦି ନିଯୁକ୍ତି ହେବ ତୁମକୁ କେତେଟା ସଂସ୍ଥା ଚଳେଇବାକୁ ପଡିବ । ମୁଁ ଉତ୍ତର ଦେଲି – ପୁରୀରେ ନନା, ବୋଉ, ଭାଇଭଉଣୀ ଅଛନ୍ତି । ପୁରୀ ଘର ଚଳାଇବା ସହିତ, ଯେଉଁଠାରେ ମୋର ପୋଷ୍ଟିଂ ହେବ ସେଠାର ସଂସ୍ଥା ଓ ଯେଉଁଠାକୁ ସର୍କିଟ କରିବାକୁ ଯିବି ସେଠା ଅବସ୍ଥା ମଧ୍ୟ ଚଳାଇବାକୁ ହେବ । ଏପରି ତିନୋଟି ଜାଗାରେ ଏଷ୍ଟାବ୍ଲିଶ୍‌ମେଣ୍ଟ ରଖିବାକୁ ପଡିବ । ସେତେବେଳେ ସବୁ ଜିଲ୍ଲାରେ ଜିଲ୍ଲା ଜଜ୍ ରହୁନଥାନ୍ତି । ପୁରୀ-ଗଂଜାମ ଗୋଟିଏ ଜିଲ୍ଲା ଜଜ୍ ଅଧୀନରେ ଥାଏ । ସେହିପରି ପଶ୍ଚିମ ଓଡିଶାରେ କଳାହାଣ୍ଡି, ଫୁଲବାଣୀ ପ୍ରଭୃତି ଜିଲ୍ଲାରେ ଜିଲ୍ଲା ଜଜ୍ ଦରକାର ପଡୁନଥିଲା । ଏତେ ଟ୍ରାଇବ୍ୟୁନାଲ୍ ମଧ୍ୟ ନଥିଲା । ଏବେ ମାମଲା ବୃଦ୍ଧି, ସମସ୍ୟା ବୃଦ୍ଧି ଓ ଲୋକସଂଖ୍ୟା ବୃଦ୍ଧି ହେତୁ ଏବଂ ଅନେକ ଜିଲ୍ଲା ବୃଦ୍ଧି ଘଟିବାରୁ ମକଦ୍ଦମା ସଂଖ୍ୟା ବୃଦ୍ଧି ସହିତ କୋର୍ଟର ସଂଖ୍ୟା ଦୁଇ ଗୁଣଠାରୁ ଅଧିକ ହୋଇ ଅନେକ ଟ୍ରିବ୍ୟୁନାଲ୍ ମଧ୍ୟ ଗଠିତ ହୋଇଛି । ସଂଖ୍ୟାଧିକ କେଶ୍ ହେବା ସହିତ ମକଦ୍ଦମା ଫଇସଲା ହେବାକୁ ବହୁତ ବିଳମ୍ବ ଘଟି ଲୋକେ ଅନେକ ଅସୁବିଧା ଓ ଖର୍ଚ୍ଚାନ୍ତ ମଧ୍ୟ ହୋଇଥାନ୍ତି । ଆଇନଜୀବୀଙ୍କ ସଂଖ୍ୟାରେ ମଧ୍ୟ ଅନେକ ପରିମାଣରେ ବୃଦ୍ଧି ଘଟିଛି । ଚଳିତ ବର୍ଷ ହିସାବରୁ ଜଣାଯାଇଛି ଯେ ସମଗ୍ର ଦେଶରେ ଏବେ କୋଟିଏ କୋଡିଏ ଲକ୍ଷରୁ ଅଧିକ ମୋକଦ୍ଦମା ବିଚାରାଧୀନ ଅବସ୍ଥାରେ ଅଛି । ରେଗୁଲାର ବିଚାର ସହିତ ପ୍ରତ୍ୟେକ ଜିଲ୍ଲାରେ, ଲୋକ ଅଦାଲତ ସଂଗଠିତ ହୋଇ ବର୍ଷକୁ ଲକ୍ଷ ଲକ୍ଷ ଟଙ୍କାର ଦୁର୍ଘଟଣା, ରେଭିନ୍ୟୁ ଛୋଟ ଛୋଟ ସିଭିଲ ଓ ଫୌଜଦାରୀ ମକଦ୍ଦମା ହଜାର ହଜାର ସଂଖ୍ୟାରେ ନିଷ୍ପତ୍ତି କରାଯାଇଛି । ଯଥା ସମ୍ଭବ ସ୍ୱତନ୍ତ୍ର ଟ୍ରିବ୍ୟୁନାଲ ଓ ବିଚାରାଳୟ ସଂଖ୍ୟା ମଧ୍ୟ ପ୍ରତି ବର୍ଷ ବଢିବାରେ ଲାଗିଛି । ଏହି ସମସ୍ୟା ବର୍ତ୍ତମାନ ଦେଶରେ ଗୁରୁତର ଆକାର ଧାରଣ କରି ବିଚାରାଳୟ ବ୍ୟବସ୍ଥା ଉପରେ ଜନସାଧାରଣଙ୍କର ବିଶ୍ୱାସ କ୍ରମଶଃ କମିଯାଉଛି ।

ମୋ ଶଶୁର ସ୍ୱର୍ଗତ ଗଙ୍ଗାଧର ଚୌଧୁରୀ ପ୍ରଶ୍ନୋତ୍ତର ପରେ ହଠାତ୍ କହି ଉଠିଲେ ତୁମ ପ୍ରସ୍ତାବରେ ଯଦି ମୁଁ ସମ୍ମତି ଦିଏ ତୁମକୁ ଭ୍ରଷ୍ଟାଚାରର ଆଶ୍ରୟ ଦେବାରେ ମୁଁ ସହାୟକ ହେବି । ମତେ ବର୍ତ୍ତମାନ ୩ ହଜାରରୁ ଅଧିକ ଆୟ କରୁଥିବା ବେଳେ କେବଳ ପୁରୀ ଏଷ୍ଟାବ୍ଲିସ୍‌ମେଣ୍ଟ ଚଳାଇବା ପାଇଁ ଆଇନ ପୁସ୍ତକ ଓ ମାଗାଜିନ୍ ସକାଶେ ଆର୍ଥିକ ସହାୟତା ଦେବାକୁ ପଡୁଛି । ତିନିଟା ଏଷ୍ଟାବ୍ଲିଶ୍‌ମେଣ୍ଟ ଟ୨୦୦୦ଙ୍କା ଭିତରେ କିପରି ଚଳିବ ସେ ମତେ ଛାଡିଦେଲେ ଭାବିଚିନ୍ତି ନିଷ୍ପତ୍ତି ନେବା ପାଇଁ । ଠିକ୍ ତାର ପରଦିନ ସକାଳେ ମୁଁ ପୁନର୍ବାର ମୁଖ୍ୟ ବିଚାରପତି ମାନ୍ୟବର ନ୍ୟାୟପତି ପାଣିଗ୍ରାହୀଙ୍କ ନିକଟରେ ଜିଲ୍ଲା ଜଜ୍ ଚାକିରୀ ପାଇଁ ଆବେଦନ କରିବି ନାହିଁ ବୋଲି ଜଣାଇଲି । ନ୍ୟାୟପତି ମୋତେ ସ୍ନେହପୂର୍ଣ୍ଣ ଭାଷାରେ କହିଲେ ମୋର ନିଷ୍ପତ୍ତି ତାଙ୍କ ମତରେ ଠିକ୍ ନୁହେଁ । 'ଭବିଷ୍ୟତରେ ପସ୍ତେଇବୁ, ପୁଣିଥରେ ଚିନ୍ତା କରି ମତେ ଜଣାଇବୁ ।' ମାତ୍ର ସେତିକିରେ ମୋର ଜଜ୍ ହେବାର ପ୍ରସ୍ତାବ ବନ୍ଦ ରହିଲା । ୧୯୬୧ ମସିହା ରାଜ୍ୟରେ ସାଧାରଣ ନିର୍ବାଚନ ପରେ ରାଜ୍ୟର ରାଜନୀତିକ ପରିସ୍ଥିତି ଏପରି ହେଲା ଯେ ବିଜୁ ପଟ୍ଟନାୟକ ଡଃ ହରେକୃଷ୍ଣ ମହତାବଙ୍କ ସ୍ଥାନରେ ମୁଖ୍ୟମନ୍ତ୍ରୀ ହେଲେ ଏବଂ ଲିଙ୍ଗରାଜ ପାଣିଗ୍ରାହୀଙ୍କୁ ମନ୍ତ୍ରୀ କରିବା ପାଇଁ ନାରାଜ୍ ହେବାରୁ ପୂର୍ବତନ ମୁଖ୍ୟ ବିଚାରପତି ନ୍ୟାୟପତି ପାଣିଗ୍ରାହୀ ତାଙ୍କର ମନ୍ତ୍ରିତ୍ୱ ପାଇଁ ମତେ ବିଜୁ ପଟ୍ଟନାୟକଙ୍କୁ ପ୍ରବର୍ତ୍ତାଇବା ପାଇଁ ଅନୁରୋଧ କରିଥିଲେ । ମୁଁ ସେତେବେଳକୁ ନ୍ୟାୟପତି ପାଣିଗ୍ରାହୀଙ୍କୁ ନମ୍ରତାର ସହିତ ମନେ ପକାଇ ଦେଇଥିଲି ସେ ମତେ ଜିଲ୍ଲା ଜଜ୍ ହେବା ପାଇଁ ଆବେଦନ କରିବାକୁ ପ୍ରବର୍ତ୍ତାଇବା କଥା ୧୯୫୭-୫୮ ମସିହାରେ । ସେ ଉତ୍ତରରେ କହିଲେ 'ତୁ ଏତେ କଥା କିପରି ମନେ ରଖିଛୁ ?' କିନ୍ତୁ ନ୍ୟାୟପତି ପାଣିଗ୍ରାହୀଙ୍କ ମୋଠାରେ ଯେଉଁ ବିଶ୍ୱାସ ଥିଲା ଓ ତାଙ୍କର ଶୁଭେଚ୍ଛା ସହଯୋଗ ମତେ ଆଇନ ବ୍ୟବସାୟରେ ସୁନାମ ଆଣିବା ପାଇଁ ଯେପରି ସହାୟକ ହୋଇଥିଲା ସେ ସବୁ ମୋ ଆଖି ଆଗରେ ନାଚିଗଲା । ମୁଁ ତତ୍‌କ୍ଷଣାତ ବିଜୁବାବୁଙ୍କ ପାଖକୁ ଯାଇ ପାଣିଗ୍ରାହୀ ସାହେବଙ୍କୁ ସ୍ୱରାଷ୍ଟ୍ର ଓ ବିଧି ମନ୍ତ୍ରୀ କରିବା ପାଇଁ ଅନୁରୋଧ କରିବାରେ ବିଜୁବାବୁଙ୍କ ଉତ୍ତର ହେଲା 'ଲିଙ୍ଗରାଜ ବାବୁ ଜଣେ ଅବସରପ୍ରାପ୍ତ ମୁଖ୍ୟ ବିଚାରପତି, ବୟସ୍କ ଓ ବିଦ୍ୱାନ ଲୋକ । ସେ ମନ୍ତ୍ରିମଣ୍ଡଳରେ ରହିଲେ ତାଙ୍କର ଦୃଷ୍ଟିକୋଣ ବର୍ତ୍ତମାନ ବିକାଶଶୀଳ ଅର୍ଥନୀତିକୁ କାର୍ଯ୍ୟକାରୀ କରିବାରେ ସହାୟକ ହେବ ନାହିଁ । ତାଙ୍କୁ ଯୁକ୍ତିରେ ପାରି ହେବ ନାହିଁ । ଆମେ ନିଜ ନିଷ୍ପତ୍ତି ନେବାରେ ଅସୁବିଧା ହେବ, ସରକାର ଚାଲିପାରିବ ନାହିଁ । ବରଂ ତାଙ୍କୁ ବିଧାନସଭାର ବାଚସ୍ପତି କରିବା ।' ବିଜୁବାବୁଙ୍କ ଏହି ନିଷ୍ପତ୍ତି ନୀଳମଣି ବାବୁ ଓ ଅନ୍ୟ ବନ୍ଧୁମାନଙ୍କଠାରୁ ସମର୍ଥନ ପାଇଲା । ସେହି ନିଷ୍ପତ୍ତି ମୁଁ ନ୍ୟାୟପତି ପାଣିଗ୍ରାହୀଙ୍କୁ ଜଣାଇବାରେ ସେ ଶେଷରେ

ବାଚସ୍ପତି ଆସନ ପାଇଲେ ଏବଂ ମନ୍ତ୍ରୀମାନଙ୍କ ବିଧାନସଭାରେ ମାନ ବଢ଼ାଇବା ଓ ବିଧାନସଭା ଆଲୋଚନାକୁ ଅଧିକ ଉନ୍ନତ କରାଇବାରେ ତାଙ୍କର ନିର୍ଦ୍ଦେଶ ଓ ଗାଇଡାନ୍ସ ବହୁଳ ଭାବରେ ପ୍ରଂଶସିତ ହୋଇଥିଲା ।

୧୯୫୮ ମସିହା ପରଠାରୁ ମହତାବ ବାବୁଙ୍କ ସମ୍ପର୍କ ବିଜୁ ପଟ୍ଟନାୟକଙ୍କ ସହିତ କ୍ରମଶଃ ଦୂଷିତ ହେବାକୁ ଲାଗିଲା । ଏ ମଧ୍ୟରେ ବିଜୁ ବାବୁଙ୍କ ଓଡିଶା ଇଣ୍ଡଷ୍ଟ୍ରିଜ୍, ରିଫ୍ରିଜେରେଟର୍ ଫାକ୍ଟରୀ, କଳିଙ୍ଗ ଟ୍ୟୁବସ୍ ଓ ଚୌଦ୍ୱାରରେ ତାଙ୍କ ଦ୍ୱାରା ପ୍ରତିଷ୍ଠିତ ବିରାଟ କାଗଜକଳ ସବୁ ପ୍ରଚୁର ଲାଭଜନକ ବ୍ୟବସ୍ଥା ତାଙ୍କ ଦ୍ୱାରା ସ୍ଥାପିତ ହୋଇ ସେ ଜଣେ ପ୍ରତିଷ୍ଠିତ ଶିଳ୍ପପତି ଭାବେ ସମଗ୍ର ଭାରତବର୍ଷରେ ପ୍ରତିଷ୍ଠିତ ହେଲେ । ଭାରତର ନବ ନିର୍ମାତା ଓ ରାଷ୍ଟ୍ରର ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ବିଜୁ ବାବୁଙ୍କୁ ବହୁତ ଭଲ ପାଉଥିଲେ । ତାଙ୍କର ସାହସ, ଶିଳ୍ପ ପ୍ରତିଷ୍ଠାରେ ତାଙ୍କର ଦକ୍ଷତା, ରାଜନୀତି କ୍ଷେତ୍ରରେ ତାଙ୍କର ସଂଗଠନ ଶକ୍ତି ଓ ଭାରତର ସ୍ୱାଧୀନତା ସଂଗ୍ରାମରେ ତାଙ୍କର ତ୍ୟାଗ ଓ ଦେଶସେବା, ଇଣ୍ଡୋନେସିଆର ସ୍ୱାଧୀନତା ସଂଗ୍ରାମରେ ପଣ୍ଡିତଜୀଙ୍କ ନିର୍ଦ୍ଦେଶରେ ସେ ଯେଉଁ ସାହସ ଦେଖାଇ ଦେଶର ଭାବି ରାଷ୍ଟ୍ରପତିଙ୍କୁ ଇଣ୍ଡୋନେସିଆରୁ ଉଦ୍ଧାର କରି ଆଣିଥିଲେ, ନେପାଳର ସ୍ୱାଧୀନତା ସଂଗ୍ରାମରେ ସେ ଯେଉଁ ମଦତ ଦେଇ ସେଠା ସଂଗ୍ରାମୀମାନଙ୍କୁ ଭାରତରୁ ରାଣାମାନଙ୍କ ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମ ଚଳାଇ ନେପାଳକୁ ସ୍ୱାଧୀନତା ଆଣିବାରେ ସହାୟକ ହୋଇଥିଲେ, ପଣ୍ଡିତଜୀ ବିଜୁବାବୁଙ୍କୁ କେବଳ ଓଡିଶାର ନୁହେଁ ସମଗ୍ର ରାଷ୍ଟ୍ରର ଜଣେ ଶ୍ରେଷ୍ଠ ନାୟକ ଭାବେ ପ୍ରତିଷ୍ଠିତ ହେବେ ବୋଲି ବିଶ୍ୱାସ କରିଥିଲେ । ସ୍ୱାଧୀନତା ସଂଗ୍ରାମ ବେଳେ ସେ ଜୟପ୍ରକାଶ ନାରାୟଣ, ସୁଚେତା କ୍ରିପାଲିନି, ଅରୁଣା ଆସଫ ଅଲ୍ଲୀ ପ୍ରଭୃତି ଭାରତ ଛାଡ ଆନ୍ଦୋଳନର ପ୍ରମୁଖ ନେତୃବୃନ୍ଦଙ୍କୁ ବିଭିନ୍ନ ସ୍ଥାନକୁ ନେବା ଆଣିବା କରି ପ୍ରୋଟେକ୍ସନ ଦେଇ ନିଜ ଜୀବନକୁ ବିପନ୍ନ କରୁଥିଲେ ଓ ଶେଷରେ ୩ ବର୍ଷ କାରାରୁଦ୍ଧ ହେଲେ । ଏସବୁ ନେଇ ତାଙ୍କର ସୁନାମ, ଦେଶବତ୍ସଳତା, ସଂଗ୍ରାମୀ ଭୂମିକା ଓ ସ୍ୱାର୍ଥତ୍ୟାଗ ଓ ପ୍ରଚୁର ଆର୍ଥିକ ସହାୟତା ସଂଗ୍ରାମୀମାନଙ୍କ ପାଇଁ ଭାରତର ଯୁବ ଶକ୍ତିକୁ ଉଦ୍‌ବୁଦ୍ଧ କରିଥିଲା । ଇଣ୍ଡୋନେସିଆର ସ୍ୱାଧୀନତା ପରେ ତାଙ୍କୁ ସେ ଦେଶର ସର୍ବୋଚ୍ଚ ସମ୍ମାନ ଭୂମିପୁତ୍ର ଉପାଧିରେ ଭୂଷିତ କରାଯାଇ ବହୁ ଜମି ଓ ଫାର୍ମ ଦାନ କରାଯାଇଥିଲା । କିନ୍ତୁ ସେ ସବୁକୁ ନିଜ ସ୍ୱାର୍ଥ ପାଇଁ ବିନିଯୋଗ କରିବାର ଚିନ୍ତା ମଧ୍ୟ କରିନଥିଲେ । ପଣ୍ଡିତଜୀ ତାଙ୍କୁ 'ବିଜୁ' ବୋଲି ସମ୍ବୋଧନ କରୁଥିଲେ, ପଣ୍ଡିତଜୀଙ୍କ ଘରେ ସେ ରହୁଥିଲେ ଓ କ୍ରମଶଃ ଇନ୍ଦିରାଜୀ ମଧ୍ୟ ବିଜୁବାବୁଙ୍କୁ 'ବିଜୁ ଦାଦା' ବୋଲି ସମ୍ବୋଧନ କରୁଥିଲେ । ମୁଁ ନିଜେ ଦେଖିଛି ଦିଲ୍ଲୀରେ ବିଜୁ ବାବୁ ତାଙ୍କର ନିଜ ଗାଡି ଚଳାଇ ଇନ୍ଦିରାଜୀଙ୍କୁ ବିଭିନ୍ନ ସ୍ଥାନକୁ ନେବାର । ତାଙ୍କର ଉଡାଜାହାଜ (ଡାକୋଟା)

ମଧ୍ୟ କଂଗ୍ରେସ କାର୍ଯ୍ୟରେ ଲାଗିବା ସହିତ ଯୁଦ୍ଧରେ ଓ ପ୍ରାକୃତିକ ବିପଦ ବେଳେ ଖାଦ୍ୟ ବିତରଣ କରୁଥିଲା । ଦିଲ୍ଲୀରେ ବିଜୁ ବାବୁ ଜଣେ ଶ୍ରେଷ୍ଠ ବୈମାନିକ ଭାବେ (ଏସ୍. ପାଇଲଟ) ସମ୍ମାନୀତ ହେଉଥିଲେ । ବିଶେଷ କରି ଓଡିଶାରେ ଶିକ୍ଷିତ ଓଡିଆ ଯୁବକମାନଙ୍କୁ ବିମାନ ଚାଳନା ଶିକ୍ଷା ଦେବା ପାଇଁ ସେ ପ୍ରଥମେ ୧୯୫୩ ମସିହାରେ ଭୁବନେଶ୍ୱର ବିମାନ ଶିକ୍ଷା କେନ୍ଦ୍ର ନିଜ ପଇସାରେ ସ୍ଥାପନ କରିଥିଲେ ଯେଉଥିପାଇଁ ଆଜି ଭୁବନେଶ୍ୱର ବିମାନ ଚାଳନା ଅନୁଷ୍ଠାନରୁ ତାଲିମ ପାଇ ବହୁ ଯୁବକ ଭାରତୀୟ ବିମାନ ସେବାରେ ନିଯୁକ୍ତି ପାଇଛନ୍ତି । ମୋର ଜ୍ୟେଷ୍ଠ ପୁତ୍ର ମଧ୍ୟ ସେଇ ଅନୁଷ୍ଠାନରୁ ତାଲିମ ପାଇ ଓଡିଶାରେ ଓ ଭାରତୀୟ ବିମାନ କରପୋରେସନ୍ ସଂସ୍ଥାରେ ବୈମାନିକ ନିଯୁକ୍ତି ପାଇ ଶେଷରେ ବିମାନ ଶିକ୍ଷା କେନ୍ଦ୍ରର ମୁଖ୍ୟ ଭାବେ ରହି ନିକଟ ଅତୀତରେ ଚକ୍ଷୁ ଦୋଷରୁ ବିମାନ ଚଳାଇବାର ଲାଇସେନ୍ସ ନ ପାଇ ଅଗତ୍ୟା ସେ ଦାୟିତ୍ୱରୁ ମୁକ୍ତି ନେଇ ଅବସର ନେଇଛନ୍ତି ।

ବିଜୁବାବୁଙ୍କ ପରି ଜଣେ ଶିଳ୍ପପତି, ଉତ୍କୃଷ୍ଟ ବୈମାନିକ, ଦେଶଭକ୍ତ ସଂଗଠକ, ରାଜନୀତିଜ୍ଞ ପୁଣି ପଣ୍ଡିତଜୀ ଓ ଇନ୍ଦିରାଜୀଙ୍କର ସବୁଠାରୁ ନିକଟତମ ଯୁବ ନେତାଙ୍କ ପ୍ରତି ଓଡିଶାର ସମଗ୍ର ଯୁବ ଶକ୍ତିଙ୍କର ସମର୍ଥନ ଓ ଆନୁଗତ୍ୟ ବଢିଲାରୁ ଓ ମହତାବ ବାବୁ ତାଙ୍କର ରାଜନୀତିରେ ପ୍ରଧାନ ପୃଷ୍ଠପୋଷକତା କରିଥିଲେ ମଧ୍ୟ ପଣ୍ଡିତଜୀଙ୍କ ଶ୍ରଦ୍ଧା ଓ ଆଶୀର୍ବାଦ ଓ ଇନ୍ଦିରାଜୀଙ୍କ ଦୃଢ ସମର୍ଥନ ତାଙ୍କୁ ମହତାବଙ୍କର ଜଣେ ଅନ୍ୟତମ ଶକ୍ତିକେନ୍ଦ୍ର ଭାବେ ପରିଣତ କଲା । ଏହା ହିଁ ହେଲା ପ୍ରତିଦ୍ୱନ୍ଦ୍ୱିତାର ମୁଖ୍ୟ କାରଣ । ମହତାବ ବାବୁ କ୍ରମଶଃ ବିଜୁବାବୁଙ୍କୁ ତାଙ୍କର ପ୍ରଧାନ ସମର୍ଥକ ଓ ପୃଷ୍ଠପୋଷକ ଭାବେ ଉଚ୍ଚସ୍ଥାନକୁ ଉଠାଇବାରେ ସହଯୋଗ କରୁଥିଲେ ମଧ୍ୟ ତାଙ୍କ ପ୍ରତିଷ୍ଠିତ ଦୈନିକ 'ପ୍ରଜାତନ୍ତ୍ର' ବିଜୁ ବାବୁଙ୍କ ସଂପର୍କରେ ଦ୍ୱିଧା ଓ ସମାଲୋଚନା ମୂଳକ ଲେଖା ପ୍ରକାଶ କରି ବିଜୁ ବାବୁଙ୍କ ନ୍ୟୁନତା ଓଡିଶାବାସୀଙ୍କ ଆଗରେ ଉପସ୍ଥାପିତ କରିବାକୁ ଲାଗିଲେ । କିଛି ସ୍ୱାର୍ଥପର ରାଜନୈତିକ ଲୋକ ଉଭୟ କ୍ୟାମ୍ପରେ ରହି ଉଭୟଙ୍କୁ ଉତ୍ତେଜିତ କରିବାରେ ବ୍ୟସ୍ତ ରହିବାରେ ଉଭୟ ନେତାଙ୍କ ମଧ୍ୟରେ ତୀବ୍ର ସଂଘର୍ଷର ଅୟମାରମ୍ଭ ହୋଇ ତତ୍କାଳୀନ ପ୍ରଦେଶ କଂଗ୍ରେସ ସଭାପତି ବନମାଳୀ ପଟ୍ଟନାୟକ ମହତାବ ବାବୁଙ୍କ କ୍ୟାମ୍ପରେ ମୁଖ୍ୟ ପରିଚାଳକ ଥିବାରୁ ତାଙ୍କୁ ବହିଷ୍କାର କରିବା ପାଇଁ ଉଦ୍ୟମ ଆରମ୍ଭ ହେଲା । ତାର ପରିଣାମରେ ସାରା ଓଡିଶା କଂଗ୍ରେସ ଦୁଇଟି ଗୋଷ୍ଠୀରେ ପରିଣତ ହେଲା । କଂଗ୍ରେସ କ୍ରମଶଃ ଦ୍ୱିଧାଗ୍ରସ୍ତ ହୋଇ ୧୯୫୯ ମସିହା ମଧ୍ୟ ଭାଗରେ ବନମାଳୀ ପଟ୍ଟନାୟକ ଅନାସ୍ଥା ପ୍ରସ୍ତାବରେ ଗୋଟିଏ ମାତ୍ର ଭୋଟରେ ହାରିଗଲେ ଓ କଂଗ୍ରେସ ସଭାପତି ପଦରୁ ଇସ୍ତଫା ଦେଲେ । ମନ୍ତ୍ରିମଣ୍ଡଳ ୧୯୬୦ ମସିହାରେ ଭାଙ୍ଗିଗଲା ଓ ୧୯୬୧ ମସିହାରେ ବିଜୁ

ପଟ୍ଟନାୟକ ଗଞ୍ଜାମର ଜଗନ୍ନାଥ ପ୍ରସାଦରୁ ନିର୍ବାଚିତ ହୋଇ ଓଡିଶାର ମୁଖ୍ୟମନ୍ତ୍ରୀ ଭାବେ ନିଜର ନେତୃତ୍ୱ ପ୍ରତିପାଦିତ କରି ପାରିବାରେ ସଫଳତା ହାସଲ କରିଥିଲେ ।

ଓଡିଶା ରାଜନୈତିକ ଇତିହାସରେ ୧୯୩୫ ମସିହାରେ ଯେଉଁ ଇତିହାସ ଆରମ୍ଭ ହୋଇଥିଲା ପଣ୍ଡିତ ନୀଳକଣ୍ଠଙ୍କ ନେତୃତ୍ୱ ଅପସାରଣ କରି ବିଶ୍ୱନାଥ ଦାଶଙ୍କୁ ମୁଖ୍ୟମନ୍ତ୍ରୀ କରାଇବାରେ ମୁଖ୍ୟ ଅଭିନେତା ଥିଲେ ମହତାବ ବାବୁ । ଏବେ ସେ ସେଇ ଏକାପ୍ରକାର ଚାଲ୍‌ର ଶିକାର ହେଲେ । ସେ ଦୁଇ ଥର ମୁଖ୍ୟମନ୍ତ୍ରୀ ଭାବରେ ଉତ୍କଳ କେଶରୀ ରୂପେ ପ୍ରତିଷ୍ଠା କରିଲେ ହେଁ ସେହି ଶକ୍ତିଶାଳୀ ରାଜନୈତିକ ନେତୃତ୍ୱର ଅବସାନ ଘଟିଲା ୧୯୬୧ ମସିହାରେ । ବିଜୁ ପଟ୍ଟନାୟକଙ୍କ ନେତୃତ୍ୱ କିନ୍ତୁ ୧୦ ବର୍ଷ ମଧ୍ୟ ରହି ପାରିଲା ନାହିଁ । ୧୯୬୧ ମସିହାରୁ ଆରମ୍ଭ ହୋଇ ସେ ସଂପୂର୍ଣ୍ଣ ଭାବେ ରାଜ୍ୟ ନେତୃତ୍ୱରୁ ଅପସରି ଗଲେ ୧୯୭୧ ମସିହାରେ ଗୋଟିଏ ଲୋକସଭା ନିର୍ବାଚନ ମଣ୍ଡଳୀ ଓ ୪ଟି ବିଧାନସଭା ମଣ୍ଡଳୀରୁ ବିଧାନସଭା ପାଇଁ ପରାଜୟ ସ୍ୱୀକାର କରି ।

# ବିଧାନସଭାରେ ମୋର ସଦସ୍ୟତା ଓ ମନ୍ତ୍ରିତ୍ୱ

ବିଜୁ ପଟ୍ଟନାୟକ ମନ୍ତ୍ରିମଣ୍ଡଳ ୧୯୬୧ଠାରୁ ୧୯୬୭ ପର୍ଯ୍ୟନ୍ତ ପୂରା ସମୟ ଦେଇ କାର୍ଯ୍ୟ କରିଥିଲେ ସୁଦ୍ଧା ମନ୍ତ୍ରିମଣ୍ଡଳ ଗଠନ ବେଳେ ଯେଉଁ ଉତ୍ସାହ ଉନ୍ମାଦନା ୧୯୬୧ ମସିହା ସାଧାରଣ ନିର୍ବାଚନ ପରେ ସାରା ରାଜ୍ୟରେ ଜନମତକୁ ପ୍ରଭାବିତ କରିଥିଲା ତାହା ୨ବର୍ଷ ଭିତରେ ସଂପୂର୍ଣ୍ଣ ମିଳାଇଗଲା । ତାର ମୁଖ୍ୟ କାରଣ ଥିଲା ମୋର ବିବେଚନାରେ ଦୁଇଟି । ପ୍ରଥମେ ବିଜୁବାବୁଙ୍କ ଅତ୍ୟଧିକ ଧୈର୍ଯ୍ୟହୀନତା । ଅଳ୍ପ ସମୟ ଭିତରେ ଲୋକଙ୍କୁ ନିର୍ବାଚନ ବେଳେ ଦେଉଥିବା ପ୍ରତିଶ୍ରୁତିକୁ କାର୍ଯ୍ୟ କରିବା ଏବଂ ପଣ୍ଡିତ ନେହେରୁଙ୍କ ତାଙ୍କ ଉପରେ ଯେଉଁ ଅତ୍ୟଧିକ ବିଶ୍ୱାସ ଅଛି ବୋଲି ଧାରଣା ଫଳରେ ଜନସ୍ୱାର୍ଥ ଦୃଷ୍ଟିରୁ ରାଜ୍ୟର ଅନ୍ୟ ନେତୃବର୍ଗଙ୍କୁ ଦୂରେଇଦେବା । ଏହା ଫଳରେ ଅନେକ ସ୍ଥଳରେ ପ୍ରଚଳିତ ନିୟମ କାନୁନ ଉଲ୍ଲଘଂନ କରିବା ପାଇଁ ସେ ସାହସ କଲେ । ଅନେକ ସମୟରେ ତାଙ୍କ ପ୍ରେସ୍ ବିବୃତି ଓ ସଭାସମିତି ମାନଙ୍କରେ ବେଖାତିର ମନୋଭାବ ଗଣତାନ୍ତ୍ରିକ ପରମ୍ପରାର ପରିପନ୍ଥୀ ବୋଲି ସାଧାରଣ ସଚେତନ ଜନମତ ଉପଲବ୍ଧି କରିବାକୁ ଲାଗିଲେ । ଏହାର ସୁଯୋଗ ନେଲେ ଡଃ ହରେକୃଷ୍ଣ ମହତାବ ଓ  ସମାଜର ସଂପାଦକ ରାଧାନାଥ ରଥ । ସମାଜ କାଗଜ ପାରାଦ୍ୱୀପ ବନ୍ଦର ନିର୍ମାଣ ଶୈଳୀକୁ କେନ୍ଦ୍ର କରି ଯେପରି କାର୍ଯ୍ୟ କରାଗଲା ଓ ଏକ୍ସପ୍ରେସ୍ ନିର୍ମାଣ କାର୍ଯ୍ୟରେ ଯେପରି ନିୟମ ବହିର୍ଭୂତ କାର୍ଯ୍ୟ କରିବାକୁ ପଡିଲା ସେଥିପାଇଁ ବିଜୁ ପଟ୍ଟନାୟକଙ୍କୁ ବହୁତ ମୂଲ୍ୟ ଦେବାକୁ ପଡିଲା ଓ ଜନମତ ତାଙ୍କଠାରୁ ଦୂରେଇ ଯିବାକୁ ଆରମ୍ଭ କଲା । ସେ ଯେ ଭ୍ରଷ୍ଟାଚାର କରୁଥିଲେ ସେପରି ଗୁରୁତର ଅଭିଯୋଗ ନହୋଇଥିଲେ ମଧ୍ୟ ନିୟମ କାନୁନ ପ୍ରତି ତାଙ୍କର ବିରାଗ ଓ ଅନ୍ୟ ନେତାଙ୍କ ପ୍ରତି ତାଚ୍ଛଲ୍ୟ ଭାବ ପାଇଁ ରାଜ୍ୟର ପ୍ରଭାବଶାଳୀ ନେତା ଓ ସମ୍ବାଦପତ୍ରମାନେ ତାଙ୍କ ବିରୁଦ୍ଧରେ ଏକ ବିରୋଧି ବାତାବରଣର ବଳୟ ସୃଷ୍ଟି କରିବାରେ ସକ୍ଷମ ହୋଇପାରିଥିଲେ । ବିଜୁ ବାବୁ ନିଜେ କହି ପକାଉଥିଲେ 'I will commit thousands of irregularities in the interest of the state' । ଏହି ଗୋଟିଏ ବାକ୍ୟକୁ ନେଇ ସମାଜ, ପ୍ରଜାତନ୍ତ୍ର ଓ ଅନ୍ୟାନ୍ୟ ପ୍ରଭାବଶାଳୀ ମିଡିଆ ତାଙ୍କ ବିରୁଦ୍ଧରେ ପୂର୍ବ ଶତ୍ରୁତାର ପ୍ରତିଶୋଧ ନେବା ପାଇଁ ତାଙ୍କର ସବୁ କାର୍ଯ୍ୟକୁ ଚିତ୍ରଣ କରିବାକୁ ଲାଗିଲେ । ବିଜୁବାବୁ ଏକ ଭ୍ରଷ୍ଟାଚାରୀ, ଗଣତାନ୍ତ୍ରିକ ପରମ୍ପରା ବିରୋଧି ଓ ରାଜ୍ୟର ଜଣେ କଳାପାହାଡର ଦ୍ୱିତୀୟ ସଂସ୍କରଣ ।

ବିଜୁ ପଟ୍ଟନାୟକ ମିଡିଆର ଏହି ଯୁଦ୍ଧ ଦେହି ଡାକରାକୁ ମୁକାବିଲା କରିବା ପାଇଁ 'କଳିଙ୍ଗ' ନାମରେ ଏକ ଦୈନିକ ଖବରକାଗଜ କଟକ ତୁଳସୀପୁରରୁ ପ୍ରକାଶ କଲେ । ତା'ର ସଂପାଦକ ହେଲେ ବିଶିଷ୍ଟ ସାହିତ୍ୟିକ ଶ୍ରୀ ସୁରେନ୍ଦ୍ର ମହାନ୍ତି । କିଛି ମାସ ପରେ ବିଜୁବାବୁଙ୍କର ସବୁଠାରୁ ବେଶୀ ଅନ୍ତରଙ୍ଗ ସହଯୋଗୀ ବିରେନ ମିତ୍ର କଟକରୁ ଆଉ ଏକ ଦୈନିକ କାଗଜ ପ୍ରକାଶ କରିବାକୁ ଲାଗିଲେ 'ଜନଶକ୍ତି' ନାମରେ । ଉଭୟ କାଗଜ ସରକାରୀ ସହଯୋଗ ଓ ସହାୟତା ବହୁ ପରିମାଣରେ ପାଇବାକୁ ସକ୍ଷମ ହେଲେ ସୁଦ୍ଧା ଅନ୍ୟ ଖବରକାଗଜମାନେ ସରକାରୀ ଅର୍ଥ ବହୁଳ ଭାବେ ବରବାଦ ହୋଇ ଦୁଇଟି ଦୈନିକ କାଗଜ ଚଳାଇ ରାଜକୋଷକୁ କ୍ଷତିଗ୍ରସ୍ତ କରି ଭ୍ରଷ୍ଟାଚାରର ଏକ ନୂତନ ଯୁଗ ଆରମ୍ଭ ବିଜୁ ବୀରେନ କରୁଛନ୍ତି ବୋଲି ଜନମତକୁ ଆକୃଷ୍ଟ କରିବାକୁ ଲାଗିଲେ । ଏ ସବୁକୁ ପୁଣି ଇନ୍ଧନ ଯୋଗାଇ ଦେଉଥିଲା ଉପମୁଖ୍ୟମନ୍ତ୍ରୀ ବିରେନ ମିତ୍ରଙ୍କ ଦୈନିକ ଦରବାର । ସକାଳ ୯ଟାରୁ ଦିନ ୨ଟା ପର୍ଯ୍ୟନ୍ତ ସରକାରଙ୍କ ଉଚ୍ଚକର୍ମଚାରୀମାନେ ଦରବାରକୁ ଡାକରା ପାଇ ଆସନ୍ତି । ସେମାନଙ୍କ ମଧ୍ୟରୁ ଶତକଡା ୮୦ ଭାଗ ଅଫିସର ସାଧାରଣଙ୍କ ସାମ୍ନାରେ ଯେପରି ନିର୍ଦ୍ଦେଶ ପାଆନ୍ତି ସେଥିରେ ଗଭୀର ଅସନ୍ତୋଷ ପ୍ରକାଶ କରନ୍ତି । ସେମାନଙ୍କୁ ଅପମାନିତ କରାଯାଉଛି ଓ ସରକାରଙ୍କ ପ୍ରଶାସନିକ ଶୈଳୀ ଉପରେ ଅତ୍ୟଧିକ ଚାପ ପଡୁଛି ବୋଲି ଅଭିଯୋଗ କରି କ୍ରମଶଃ ଏହି ଦରବାରୀ ଶାସନ ଓ ଉଚ୍ଚ ଅଫିସରଙ୍କ ଉପରେ ଚାପ ପ୍ରଶାସନକୁ ଓ ସରକାରଙ୍କୁ ବିଶେଷ ଅଡୁଆରେ ପକାଇ ଦେଲା । କ୍ରମଶଃ ସରକାର, ପ୍ରଶାସନ ଓ ବିଜୁବାବୁଙ୍କ କାର୍ଯ୍ୟଶୈଳୀ ଜନମତକୁ ବିଜୁ ବୀରେନ ବିରୋଧି କରାଇବାରେ ବିଶେଷ ସହାୟକ ହେଲା । ବିରେନ ବାବୁଙ୍କ ଦରବାରରେ ଶହ ଶହ ଲୋକଙ୍କ ସାମନାରେ ବହୁତ ଅଭାବଗ୍ରସ୍ତ ଲୋକ ଆସି ବିରେନ ବାବୁଙ୍କ ଆଗରେ ଅତ୍ୟଧିକ ପ୍ରଶଂସା କରି ଯେପରି ସେ ଲୋକମାନଙ୍କୁ ତତ୍‌କ୍ଷଣାତ 'ବର' ଦେଉଛନ୍ତି ବୋଲି ଚାଟୁ ବାକ୍ୟ ପ୍ରୟୋଗ କଲେ, ବୀରେନ ବାବୁ ସେଥିରେ ଭୋଳ ହୋଇ ଲୋକମତ ତାଙ୍କ ସପକ୍ଷରେ ଯାଉଛି ବୋଲି ବିଶ୍ୱାସ କରି ସେପରି ଚାଟୁକାରମାନଙ୍କୁ ଆର୍ଥିକ ପୁରସ୍କାର ଦେବାକୁ ଲାଗିଲେ । ବଡ ବଡ କଣ୍ଟ୍ରାକ୍ଟର ବ୍ୟବସାୟୀ ତାଙ୍କ ଦରବାରକୁ ଆସନ୍ତି କିଛି ଅଭିଯୋଗ ଧରି । ତାଙ୍କଠାରୁ ଜବରଦସ୍ତ ଅର୍ଥ ଆଦାୟ କରିଥିବା ଚାଟୁକାରମାନେ ସେ ଅର୍ଥ ନେଇ ବେଶ ଲାଭବାନ ହୁଅନ୍ତି ଓ କହି ଉଠନ୍ତି, ବୀରେନ ବାବୁ ଦୁଃଖୀ ଗରିବଙ୍କ ବାପ, ମା । ବଡ ଲୋକ ବ୍ୟବସାୟୀଙ୍କଠାରୁ ଅର୍ଥ ଆଣି ଗରୀବ ଓ ଦୁଃଖୀ ରଙ୍କିଙ୍କ ସହାୟତା ପାଇଁ ତାହା ବିନିଯୋଗ କରୁଛନ୍ତି । ଏପରି କେହି ପୂର୍ବରୁ ଦାନ କରୁନଥିଲେ । ତାଙ୍କର ଦାନ ଓ ଦରବାରରେ ଉଚ୍ଚ ଅଫିସରମାନଙ୍କ ପ୍ରତି ଦାୟିତ୍ୱହୀନ ମନ୍ତବ୍ୟ ଭାଇ ସମ୍ବୋଧନ ନାମରେ ତାଙ୍କର

ସୁନାମ ଉପରେ ବହୁ ଆଞ୍ଚ ଆଣିଲା ଓ ବିଜୁଙ୍କ ପ୍ରଶାସନକୁ ଆହୁରି ଅଧିକ ଜନବିରୋଧି କରିବାରେ ସହାୟକ ହେଲା । କିଛି ଅସାମାଜିକ ଲୋକ, ଗୁଣ୍ଡା, ମୁଖ୍ୟ ଲୋକଙ୍କୁ ଏହି ଦରବାର ବିଶେଷ ଜନବିରୋଧୀ କରିବାରେ ସହାୟକ ହୋଇଥିଲା । ଲୋକେ କହିବାକୁ ଆରମ୍ଭ କଲେ କେଉଁଠାରୁ ଏତେ ଟଙ୍କା ଆଣି ବାଣ୍ଟୁଛି ଓ ଭ୍ରଷ୍ଟାଚାର ଛଡା ଅନ୍ୟସୂତ୍ରରୁ କେହି ଏପରି ଅର୍ଥ ସଂଗ୍ରହ କରିପାରିବ ନାହିଁ । ଏ ସବୁ 'କଳାଟଙ୍କା' । ବିଜୁ ବାବୁଙ୍କ ଅବାଧ ଖର୍ଚ୍ଚ ଓ ଅନ୍ୟମାନଙ୍କୁ ଆର୍ଥିକ ସହାୟତା ଯେଉଁମାନେ ପାଇ ଅନୁଗୃହୀତ ହେବା କଥା ସେମାନେ ମଧ୍ୟ କହିବାକୁ ଆରମ୍ଭ କଲେ ବିଜୁ ପଟ୍ଟନାୟକ ଚୋରା ଟଙ୍କା ପ୍ରଚୁର ଠୁଳ କରିଛି । ସେଥିରେ ବଦାନ୍ୟତା ନାହିଁ କେବଳ ପ୍ରୌଢ଼ି ଓ ଆତ୍ମବଡିମା ପ୍ରକାଶ କରିବା ଛଡା ଦାନର ଆନ୍ତରିକତା ଓ ନମ୍ରତା ତିଳେ ମାତ୍ର ନାହିଁ । ବହୁତ ଲୋକ ତାଙ୍କଠାରୁ ଅର୍ଥ ନେଇ ବାହାରକୁ ଆସି ତାଙ୍କୁ ସମାଲୋଚନା କରି ତୀବ୍ର ଭାଷା ପ୍ରୟୋଗ କଲେ । ବିଜୁବାବୁ ପ୍ରେସ୍ ସମ୍ମିଳନୀରେ ଥରେ କହୁ କହୁ କହି ପକାଇଲେ 'ବୀରେନ ମୋ ଓଡିଶା ଏଜେନ୍ସୀର ତତ୍ତ୍ୱାବଧାରକ ଭାବେ ବାର୍ଷିକ ଏକ କୋଟି ଟଙ୍କା ପାଏ ।' ଏହାର ଉଦ୍ଦେଶ୍ୟ ଥିଲା ଏକ ଧାରଣା ସୃଷ୍ଟି କରିବା ଯେ ତାଙ୍କର ଯେଉଁ ବିରାଟ ବାଣିଜ୍ୟ ସାମ୍ରାଜ୍ୟ (ବିଜିନେସ୍ ଏଂପାୟର) ଅଛି ତାହା ଏତେ ଲାଭଯୁକ୍ତ ଯେ ସେଥିରୁ ତାଙ୍କର ସାନଭାଇ ଲକ୍ଷ୍ମଣ ସଦୃଶ ବିରେନ ମିତ୍ର ତତ୍ତ୍ୱାବଧାରକ ଭାବେ ଏକ କୋଟି କମିଶନ ପାଉଛନ୍ତି । ଏହି ଗୋଟିଏ ଦାୟିତ୍ୱହୀନ ମନ୍ତବ୍ୟରେ ଓଡିଶା ଏଜେନ୍ସି ଓ ବିଜୁ ବିରେନଙ୍କ ବ୍ୟବସାୟ କାରବାର ନେଇ ଅନୁସଂଧାନ ଆରମ୍ଭ କଲେ ବିରୋଧୀ କାଗଜ ସମାଜ ଓ ପ୍ରଜାତନ୍ତ୍ର । ଏହି ଅନୁସଂଧାନର ମୂଳକୁ ଯାଇ କେଉଁଠାରୁ ଏତେ କଳାଅର୍ଥ ପାଉଛନ୍ତି ତାର ଉଚ୍ଚସ୍ତରୀୟ କମିଶନ ବସାଇବା ପାଇଁ ସାଧାରଣ ଦାବି ଉପସ୍ଥାପିତ କଲେ । ଏ ସଂପର୍କରେ କେନ୍ଦ୍ରକୁ ମେମୋରାଣ୍ଡମ ଦେବାର ବ୍ୟବସ୍ଥା ହେଲା । ଏହିପରି ଗଣ୍ଡଗୋଳିଆ ପରିସ୍ଥିତି ଭିତରେ ପାରାଦୀପ ବନ୍ଦର ପାଇଁ କେନ୍ଦ୍ରର ଅନୁମୋଦନ ନଥାଇ ପ୍ରଧାନମନ୍ତ୍ରୀ ଏହି ବନ୍ଦରର ଭିତ୍ତିପ୍ରସ୍ତର ସ୍ଥାପନ କରିଥିବା ଦୃଷ୍ଟେ କେନ୍ଦ୍ର ଜଳ ପରିବହନ ସଂସ୍ଥା ଅନୁଦାନ ଦେବାକୁ ରାଜି ହେଲେ ନାହିଁ ଓ ପାରାଦୀପ ବନ୍ଦର ନିର୍ମାଣ ଖର୍ଚ୍ଚ ପାଇଁ ମଧ୍ୟ ଏକ ପଇସା ନଦେଇ ବନ୍ଦରକୁ ଯୋଜନା କମିଶନ ଆପ୍ରୁଭାଲ ମଧ୍ୟ ମିଳିବାରେ ବିଳମ୍ବ ଘଟିଲା । ଫଳରେ ସବୁ ଦିଗରୁ ଖର୍ଚ୍ଚ କାଟ କରି ପ୍ରାୟ ୧୨ କୋଟିରୁ ଊର୍ଦ୍ଧ୍ୱ ଅର୍ଥ କେବଳ ଏକ୍ସପ୍ରେସ୍ ହାଇୱେ ଓ ବନ୍ଦର ନିର୍ମାଣରେ ବ୍ୟୟ କରାଯାଇ ରାଜ୍ୟର ସମସ୍ତ ଉନ୍ନୟନ କାର୍ଯ୍ୟ ବନ୍ଦ ହେବା ଉପରେ ବସିଲା । ରାସ୍ତାରେ ମାଟି ପଡିଲା ନାହିଁ । ଜଳସେଚନ କାର୍ଯ୍ୟ ବନ୍ଦ ଓ ସମସ୍ତ ଉନ୍ନୟନ ବ୍ୟୟ କେବଳ ପାରାଦୀପଠାରେ ବଙ୍ଗୋପସାଗର ଭିତରେ ପର୍ବତାକାରରେ ବଡ ପଥରମାନ ପଡି ଢେଉ ରୋକିବା ଓ

ସମୁଦ୍ର ଭିତରକୁ ରାସ୍ତା କରିବା ପାଇଁ ବିନିଯୋଗ କରାଗଲା । ସେଥିରେ ବହୁ କଣ୍ଟ୍ରାକ୍ଟର ଓ ଟ୍ରାନ୍ସପୋର୍ଟ ମାଲିକମାନେ ତତ୍‌କାଳୀନ ଉପକୃତ ହେଲେ, ପ୍ରଚୁର ରୋଜଗାର କଲେ । ୫ ଥର ବୋହି କେହି ୧୦ ଥର ବୁହାହୋଇଛି ବୋଲି ୧୦ ଟ୍ରିପ୍‌ର ପଇସା ନେଲେ ଓ ଲିକ୍ ଚନଖ୍‌ରେଟ୍ ଦାୟିତ୍ୱରେ ଥିବା ଲୋକ ବହୁତ ପଇସାବାଲା ହେଲେ ସିନା ସମଗ୍ର ରାଜ୍ୟରେ ସାଧାରଣ କାର୍ଯ୍ୟସବୁ ବନ୍ଦ ହେବା ଫଳରେ ରାଜ୍ୟର ଜନମତ ବିଜୁବାବୁଙ୍କ ବିରୋଧରେ ଦାନା ବାନ୍ଧିଲା ।

୧୯୬୪ରେ ରାଜ୍ୟବ୍ୟାପୀ ଛାତ୍ର ଆନ୍ଦୋଳନ, ରାଜ୍ୟରେ ଜନ ଅସନ୍ତୋଷର ସୁଯୋଗ ନେଇ ବିଜୁ ବାବୁଙ୍କୁ ଅପଦସ୍ତ କରାଇବା ପାଇଁ ଅତିରଂଜିତ ଏପରିକି ଅସତ୍ୟ ଅଭିଯୋଗ ଉପରେ ଅଧିକ ଗୁରୁତ୍ୱ ଦେଇ ଯୁବକ ଓ ଛାତ୍ରମାନଙ୍କୁ ଉତ୍ତେଜିତ କରି ଏକ ବିରାଟ ଛାତ୍ର ଆନ୍ଦୋଳନ ସୃଷ୍ଟି କରିବା ପାଇଁ ମହତାବ ବାବୁଙ୍କ ପ୍ରଜାତନ୍ତ୍ର ଯେଉଁ ଅଭିଯାନ ଆରମ୍ଭ କଲେ ତାକୁ ଇନ୍ଧନ ଯୋଗାଇଲେ ଭଲ ଭାବରେ ସମାଜ ସଂପାଦକ ରାଧାନାଥ ବାବୁ ।

ଅଠରବାଙ୍କିରେ ଅଠେଇଶ ଫାଟ ପ୍ରଭୃତି ଅଭିଯୋଗମାନ ଆଣି 'ବିଜୁବିରେନ ଯେଉଁଠି ମଦ ବୋତଲ ସେଇଠି' ପ୍ରଭୃତି ଅସତ୍ୟ ଓ ଅତିରଂଜିତ ସ୍ଲୋଗାନ ଦେଇ ଭ୍ରଷ୍ଟାଚାର ଅବତାର ଏହି ଦୁଇ ଜଣ ବୋଲି ପ୍ରତିପାଦିତ କରିବା ପାଇଁ ଶତ ମୁଖରେ ଛାତ୍ର ଓ ଯୁବକମାନଙ୍କୁ ଉତ୍ତେଜିତ କରାଇଲେ ଏହି ଦୁଇଜଣ ପ୍ରଭାବଶାଳୀ ନେତା । ତାର ପରିଣାମରେ ସାରା ରାଜ୍ୟରେ ଏକ ରାଜ୍ୟବ୍ୟାପୀ ଛାତ୍ର ଆନ୍ଦୋଳନ ସୃଷ୍ଟି ହୁଏ । ଶୋଭାଯାତ୍ରା, ସଭା, ଧର୍ମଘଟ ପ୍ରଚଣ୍ଡ ଆକାର ଧାରଣ କରେ । ଫଳରେ ବିଜୁ ବୀରେନଙ୍କ ଘରପାଖେ ଶହ ଶହ ଛାତ୍ର ଯୁବକ ଏପରି ସ୍ଲୋଗାନମାନ ଦେଇ ଉତ୍ତେଜନା ସୃଷ୍ଟି କରିବାରେ ସଫଳ ହେଲେ, ଏପରିକି ବୀରେନ ବାବୁଙ୍କର ଏକ ବିରାଟ କରତ କଳ ଓ ଫର୍ଣ୍ଣିଚର ଗୋଦାମକୁ ଛାତ୍ରମାନେ ପୋଡି ଦେଲେ । ତାଙ୍କର ବହୁତ ଲକ୍ଷ ଟଙ୍କାର କରତ କଳ ଓ କାଠ ପୋଡି ଭସ୍ମ ହୋଇଗଲା । ବିଜୁ ବାବୁ ଅସାଧାରଣ ସାହସରେ ଛାତ୍ରମାନଙ୍କୁ ମୁକାବିଲା କଲାବେଳେ ତାଙ୍କ ଉପରେ ଢେଙ୍କାପଥର ପଡିଲା, ଜାମା ଚିରିଲା, ମାଡର ଶିକାର ମଧ୍ୟ ହେଲେ । ଏସବୁ କେନ୍ଦ୍ର ଦୃଷ୍ଟିକୁ ଆସିଲା । ସମସ୍ତ ଜାତୀୟ ଦୈନିକମାନଙ୍କରେ ପ୍ରଚାରିତ ହେଲା ସତେ ଯେପରି ବିଜୁ ଓ ବିରେନ କୋଟି କୋଟି ଟଙ୍କା ଭ୍ରଷ୍ଟାଚାର ଦ୍ୱାରା ବରବାଦ କରି ନିଜକୁ ବଡ ବଡ ବ୍ୟବସାୟୀ ବୋଲି ପ୍ରତିପାଦିତ କରିବା ପାଇଁ ରାଜ୍ୟ ପ୍ରଶାସନକୁ ଏକ ବାଣିଜ୍ୟ ସଂସ୍ଥାରେ ନିଜ ନିଜ ଲାଭ ପାଇଁ ବିନିଯୋଗ କରି ରାଜ୍ୟରେ ଅର୍ଥନୈତିକ ବ୍ୟବସ୍ଥାକୁ ଏକ ସଂକଟଜନକ ପରିସ୍ଥିତିରେ ପହଞ୍ଚାଇଦେଲେ । ଏହା ଫଳରେ

ରାଜ୍ୟରେ ଚରମ ଅବ୍ୟବସ୍ଥା, ଆର୍ଥିକ ସଂକଟ ଓ ଶାସନ କ୍ଷେତ୍ରରେ ଏକ ଚରମ ବିପର୍ଯ୍ୟୟର ସୂତ୍ରପାତ ହେଲା ।

ବିଜୁ ପଟ୍ଟନାୟକ ନିର୍ବାଚନରେ ରାଜ୍ୟ ସାରା ତାଙ୍କ କଳିଙ୍ଗ ରଥରେ ଯାତ୍ରା କରି ଶହ ଶହ ଜନ ସମାବେଶରେ ଏକ ସ୍ଥିର ସରକାର ପ୍ରତିଷ୍ଠା ପରେ ରାଜ୍ୟର ଶିଳ୍ପ ବିକାଶର ଯେଉଁ ସ୍ୱପ୍ନ ଦେଖିଥିଲେ ଓ ସେହି ସ୍ୱପ୍ନକୁ ସାକାର କରିବା ପାଇଁ ପ୍ରଥମେ ପାରାଦୀପ ବନ୍ଦର ଏବଂ ଏକ୍ସପ୍ରେସ୍ ହାଇୱେ ପ୍ରତିଷ୍ଠା କରିବା ପାଇଁ ଚରମ ସାହସିକତାର ପରିଚୟ ଦେଇଥିଲେ । ବିଧିର ଏପରି ବ୍ୟବସ୍ଥା ହେଲା ଯାହା ଫଳରେ ସେହି ମହାନ ଅଭିଯାନ ତାଙ୍କ ପାଇଁ ଘୋର ବିପର୍ଯ୍ୟୟ ସୃଷ୍ଟି କଲା । କିନ୍ତୁ ପଣ୍ଡିତ ନେହେରୁଙ୍କ ଆଶୀର୍ବାଦ ତାଙ୍କ ପାଇଁ ଏସବୁ କାର୍ଯ୍ୟ ସଂପାଦନରେ ତାଙ୍କୁ ବହୁତ ସହାୟକ ହୋଇଥିଲା । ଆଜି ପାରାଦୀପ ବନ୍ଦର କେବଳ ଆମ ରାଜ୍ୟ ପାଇଁ ନୁହେଁ ସମଗ୍ର ରାଷ୍ଟ୍ର ପାଇଁ ଏକ ମାଇଲଖୁଣ୍ଟ ରୂପେ ବିକାଶକ୍ଷେତ୍ରରେ ଏକ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଛି । ଗତ ୩୦ ବର୍ଷ ଭିତରେ ୭ଟି ବର୍ଥ ପ୍ରତିଷ୍ଠା କରାଯାଇ ଏବେ ଗୋଟିଏ ବିରାଟ ରିଫାଇନାରୀ ପ୍ରତିଷ୍ଠା ପାଇଁ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀ ଅଟଳ ବିହାରୀ ବାଜପେୟୀ ଶୀଳାନ୍ୟାସ କରିଛନ୍ତି । ପାରାଦ୍ୱୀପ ଫସଫେଟ୍ସ (ପି.ପି.ଏଲ.)ନାମରେ ଏକ ବିରାଟ ସାର କାରଖାନା ମଧ୍ୟ ସ୍ଥାପିତ ହୋଇ ରାଷ୍ଟ୍ରୀୟ ସ୍ତରରେ ସାର ଯୋଗାଣ କ୍ଷେତ୍ରରେ ସଫଳତା ହାସଲ କରିଛି । ଆଜି ସମଗ୍ର ଦେଶ ସେଥିପାଇଁ ବିଜୁବାବୁଙ୍କ ସାହସିକ ପଦକ୍ଷେପକୁ ଅଭିନନ୍ଦନ ଜଣାଉଛନ୍ତି । ଏ ଜାତି ତାଙ୍କର ଏହି ମହାନ ଅବଦାନ ପାଇଁ ତାଙ୍କୁ ଚିର ଦିନ ପାଇଁ ସ୍ମରଣ କରୁଥିବ । ଏହା ବ୍ୟତୀତ ରାଉରକେଲାରେ ରାଷ୍ଟ୍ରୀୟ ସ୍ତରର ଏକ ବିରାଟ ଇଂଜିନିୟରିଂ କଲେଜ ଓ ରାଉରକେଲାରେ ଇସ୍ପାତ କାରଖାନାର ବିକାଶ ଓଡିଶା ପାଇଁ ଅନ୍ୟତମ ଅବଦାନ । ରାଜ୍ୟରେ ଯୁବ ଇଂଜିନିୟରମାନଙ୍କୁ ପ୍ରସ୍ତୁତ କରିବା ପାଇଁ ଓ ଭବିଷ୍ୟତ ଶିଳ୍ପ ବିପ୍ଲବରେ ଓଡିଆ ଯୁବକମାନେ ନିଜ ରାଜ୍ୟର ବିକାଶରେ ପ୍ରମୁଖ ଭାଗ ନେବାର ସୁଯୋଗ ସୃଷ୍ଟି କରିବାରେ କେତେ ଯେ ତାଙ୍କର ଅବଦାନ, କେତେ ଯେ ବ୍ୟାପକ ଉଦ୍ୟମ ସକଳ ପ୍ରତିବନ୍ଧକ ଦୂର କରିବାରେ ତାଙ୍କର ଆପ୍ରାଣ ଉଦ୍ୟମ, ଉତ୍ସର୍ଗୀକୃତ ପ୍ରୟାସ ତାହା ଆଜି ଭାବିଲେ ସେହି ମହାନ ନେତାଙ୍କ ଐତିହାସିକ ପଦକ୍ଷେପ ପାଇଁ ସ୍ୱତଃ ମଥାନତ କରିବାକୁ ହୁଏ । ମାତ୍ର ଏହି ବୀର ଓଡିଆ ପୁଅ ପ୍ରତି ଏ ଦେଶ ଯେପରି ସମ୍ମାନ ଦେବା କଥା ତାହା ଦେଇପାରିଲା ନାହିଁ ବୋଲି ମନରେ ଘୋର ନୈରାଶ୍ୟ ଦେଖାଦିଏ । ଏଥିପାଇଁ ଆମରି ରାଜ୍ୟର କେତେକ ନେତା ଯେ ଦାୟୀ ଏଥିରେ ସନ୍ଦେହ ନାହିଁ । ବଙ୍ଗଦେଶ ହୋଇଥିଲେ ନେତାଜୀ ସୁବାଷ ବୋଷଙ୍କୁ ଆଜି ଯେପରି ରାଷ୍ଟ୍ରୀୟ ସମ୍ମାନ ଦିଆଯାଇ ଭାରତ ରତ୍ନ ଉପାଧି ଦିଆଯାଇପାରିଲା, ବିଜୁ ବାବୁ

ବଙ୍ଗଦେଶରେ ଜନ୍ମ ହୋଇଥିଲେ ତାଠାରୁ ଅଧିକ ସମ୍ମାନର ଅଧିକାରୀ ହୋଇପାରିଥାଆନ୍ତେ । ୧୯୬୧ ମସିହାରେ ମୁଖ୍ୟମନ୍ତ୍ରୀ ହୋଇ ଅଢ଼େଇ ବର୍ଷ ପରେ ତାଙ୍କୁ ସେ ପଦଟି ଛାଡିବାକୁ ପଡିଥିଲା ତତ୍କାଳୀନ ଅସହିଷ୍ଣୁ ନେତା ଓ ଖବରକାଗଜ ସଂପାଦକମାନଙ୍କର ଅତିରଂଜିତ ଓ ଅସତ୍ୟ ସମ୍ବାଦ ପ୍ରଚାର ଦ୍ୱାରା ଏକ ବିଷାକ୍ତ ବାୟୁମଣ୍ଡଳ ସୃଷ୍ଟି ଫଳରେ ।

ମୋର ତାଙ୍କ ସହିତ ଏହି ସମୟରେ ଅତ୍ୟନ୍ତ ଘନିଷ୍ଠ ରାଜନୈତିକ ସଂପର୍କ ଥିଲା । ମୁଁ ଯଦିଓ ମନ୍ତ୍ରୀ ନଥିଲି ସବୁ କାର୍ଯ୍ୟରେ ତାଙ୍କ ସହିତ ଘନିଷ୍ଠ ସହଯୋଗୀ ଭାବେ ତାଙ୍କ ନିର୍ଦ୍ଦେଶରେ ସାରା ଓଡିଶାରେ ତାଙ୍କ ସହିତ ବୁଲି ଦେଖିଛି କିପରି କେତେକ ଭ୍ରାନ୍ତ ଯୁବକ ତାଙ୍କ ପ୍ରତି କି ନିଷ୍ଠୁର ବ୍ୟବହାର କରିଛନ୍ତି । ସବୁକିଛି ସେ ସହି ସେମାନଙ୍କୁ କ୍ଷମା ଦେଇଛନ୍ତି, ଅସୀମ ସାହସର ସହିତ ସେମାନଙ୍କ ଆକ୍ରମଣର ମୁକାବିଲା କରିଛନ୍ତି । ତାଙ୍କ ବିରୁଦ୍ଧରେ ବହୁ ଗୁରୁତର ଭ୍ରଷ୍ଟାଚାର ଅଭିଯୋଗ ଆଣି କମିଶନ ବସାଇବା ପାଇଁ ଶତମୁଖରେ ବିଭିନ୍ନ ରୂପରେ ଦାବି କରିଛନ୍ତି । ଏସବୁ ସତ୍ତ୍ୱେ ସେ ଗମ୍ଭୀର ଭାବେ ଅପୂର୍ବ ସାହସିକତାର ସହିତ ସେ ସବୁର ମୁକାବିଲା କରି ଅକ୍ଷୟ କୀର୍ତ୍ତି ରଖିଯାଇଛନ୍ତି । ତାଙ୍କର ଅସୀମ ସାହସ, ଦେଶପ୍ରେମ ଓ ରାଜ୍ୟର ବିକାଶ ପାଇଁ ଜୀବନ ଉତ୍ସର୍ଗ ଆଜି ଇତିହାସର ବସ୍ତୁ ହୋଇପାରେ କିନ୍ତୁ ଓଡିଆଙ୍କ ଭିତରେ ସେ ଚୀର ଜାଗ୍ରତ ହୋଇ ରହିବେ । ଆଜି ତାଙ୍କର ନାମ ନେଇ ତାଙ୍କର ସୁପୁତ୍ର ନବୀନ ପଟ୍ଟନାୟକ ଗତ ଦୁଇ ବର୍ଷ ଭିତରେ ବିଜୁ ଜନତା ଦଳ ନାମରେ ଏକ ରାଜ୍ୟସ୍ତରୀୟ ରାଜନୈତିକ ସଂଗଠନ ସୃଷ୍ଟି କରି ବିଜୁବାବୁଙ୍କ ସ୍ମୃତି ପ୍ରତି ଯେଉଁ ସାଧାରଣ ଜନତାଙ୍କ ସମ୍ମାନ ତାକୁ ହିଁ ପୁଞ୍ଜି କରି ନିଜେ ଲୋକସଭାକୁ ନିର୍ବାଚିତ ହୋଇ କେନ୍ଦ୍ରରେ ସ୍ୱର୍ଗତ ପିତାଙ୍କ ବିଭାଗର ଦାୟିତ୍ୱ (ମିନିଷ୍ଟ୍ରି ଅଫ୍ ଷ୍ଟିଲ୍ ଆଣ୍ଡ ମାଇନ୍ସ) ନେଇ ଓ ପରେ ରାଜ୍ୟରେ ବିଜେପି ଦଳ ମେଣ୍ଟରେ ନିର୍ବାଚନ ସଫଳତା ହାସଲ କରି ମୁଖ୍ୟମନ୍ତ୍ରୀ ହୋଇପାରିଛନ୍ତି । ଏହା କେବଳ ବିଜୁ ପଟ୍ଟନାୟକଙ୍କ ସ୍ମୃତି ପ୍ରତି ଗଭୀର କୃତଜ୍ଞତାର ନିଦର୍ଶନ ଛଡା ଅନ୍ୟ ବିଶେଷ କିଛି ତାଙ୍କ ନିଜ ଜୀବନର ସଫଳତା ଉପରେ ପର୍ଯ୍ୟବଶିତ ନୁହେଁ ବୋଲି ସଚେତନ ଜନତା ଅନୁଭବ କରନ୍ତି । ନବୀନ ବାବୁଙ୍କୁ ବିଜୁବାବୁଙ୍କ ଘନିଷ୍ଠ ସହଯୋଗୀ କେତେକଙ୍କୁ ଛାଡିଦେଲେ ରାଜ୍ୟରେ ସାଧାରଣ ଲୋକ ଜାଣିବାର ସୁଯୋଗ ପାଉନଥିଲେ । ତାଙ୍କର ସ୍ୱାଧୀନତା ସଂଗ୍ରାମ ବା ଦେଶ ଗଠନରେ ବିଶେଷ ଅବଦାନ ଥିବା କଥା ଲୋକ ଗୋଚରକୁ ଆସିନଥିଲା । ସେ ଓଡିଶାରେ ଜନ୍ମ ହୋଇଥିଲେ ସୁଦ୍ଧା ରାଜ୍ୟ ପାଣି ପବନରେ ବଢିନାହାନ୍ତି, ଓଡିଆ ଭାଷା ମଧ୍ୟ ଏ ପର୍ଯ୍ୟନ୍ତ ଶିଖି ନାହାନ୍ତି । ସେ ଥିଲେ ସୁଦୂର ଆମେରିକା ଓ ବ୍ରିଟେନରେ । ଇଂରାଜି ସାହିତ୍ୟରେ ବହୁତ ଚର୍ଚ୍ଚା କରି ଅନେକ ଲେଖା ମଧ୍ୟ ପ୍ରକାଶ

କରି ସୁନାମ ଅର୍ଜନ କରିଥିଲେ ସୀମିତ ବୁଦ୍ଧିଜୀବୀ ଇଂରାଜି ସାହିତ୍ୟିକ ମହଲରେ । କିନ୍ତୁ ରାଜନୀତି କ୍ଷେତ୍ରରେ ତାଙ୍କର ଦକ୍ଷତା ଓ ନେତୃତ୍ୱ ନେବାର କ୍ଷମତା ପିତାଙ୍କ ପରି ଥିବାର ଲୋକେ ଏବେ ପ୍ରଥମ ପରୀକ୍ଷାରେ ଜାଣିବାର ସୁଯୋଗ ପାଇଛନ୍ତି । ସମୟ ହିଁ କହିବ ଏହି ଦକ୍ଷତା ସେ କେତେ ସମୟ ଅବ୍ୟାହତ ରଖିପାରିବେ ଓ ଓଡ଼ିଆ ଜାତିର ହୃଦୟକୁ ଜିଣିପାରିବେ । କିନ୍ତୁ ବିଜୁ ପଟ୍ଟନାୟକ ମୃତ୍ୟୁରେ ହୋଇଛନ୍ତି ଅମର । ଶେଷ ଶଯ୍ୟାରେ ଯିଏ ତାଙ୍କୁ ଦେଖିଛି ଓ ଓଡ଼ିଆ ଜାତି ତାଙ୍କର ଶେଷ ନିଃଶ୍ୱାସ ତ୍ୟାଗ ପରେ ତାଙ୍କୁ ଯେଉଁ ବିରୋଚିତ ଶ୍ରଦ୍ଧା ଓ ସମ୍ମାନ ଦେଇଛନ୍ତି ତାହା ଯେ ଦେଖିଛି ବା ଶୁଣିଛି ସେ ତା ଜୀବନରେ ଭୁଲିବ ନାହିଁ । ମୋ ପରି ଯେଉଁମାନେ ତାଙ୍କ ଉତ୍କଳ କଂଗ୍ରେସରେ ରହି ଦୀର୍ଘ ୧୧/୧୨ ବର୍ଷ ଜୀବନର ଶ୍ରେଷ୍ଠ ସମୟତକ ବିତାଇଛୁ, ତାଙ୍କ ନେତୃତ୍ୱ ଓ ସାହସିକ ସଫଳତାରେ ଅଭିଭୂତ ହୋଇଛୁ । ତାଙ୍କ ସହିତ ରାଜନୈତିକ କ୍ଷେତ୍ରରେ ଭିନ୍ନ ମତ ପୋଷଣ କରୁଥିଲେ ମଧ୍ୟ ତାଙ୍କ ପ୍ରତି ବ୍ୟକ୍ତିଗତ ଶ୍ରଦ୍ଧା, ସମ୍ମାନ ଓ ତାଙ୍କର ଦେଶପ୍ରୀତିର ପୂଜା ଶେଷ ପର୍ଯ୍ୟନ୍ତ ସ୍ମରଣ କରି ତାଙ୍କ ବ୍ୟକ୍ତିତ୍ୱର ବିଶ୍ୱସ୍ତ ପୂଜାରୀ ରୂପେ ତାଙ୍କୁ ସମ୍ମାନ ଦେଉଥିବୁ । ମଣିଷ ଜନ୍ମ ହେଲେ ମୃତ୍ୟୁ ଅନିବାର୍ଯ୍ୟ । ସେ ମଧ୍ୟ ଦୀର୍ଘ ଜୀବନ ପାଇଥିଲେ । ମୁଁ ତାଙ୍କଠାରୁ ବୟସରେ ଦେଢ଼ ବର୍ଷ ବଡ଼ । ମତେ ଗଙ୍ଗୁ ଭାଇ ବୋଲି ସମ୍ବୋଧନ କରୁଥିଲେ । ବିରକ୍ତ ହେଲେ ତୁ ତା ମଧ୍ୟ କରୁଥିଲେ । ସେ ଯେତେବେଳେ ଦ୍ୱିତୀୟବାର ରାଜ୍ୟର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେଲେ ବହୁ ବିରୋଧୀ ରାଜନୈତିକ ନେତାଙ୍କ ବିରୁଦ୍ଧରେ ଭ୍ରଷ୍ଟାଚାର ଅଭିଯୋଗରେ ଭିଜିଲାନ୍ସ ଅନୁସଂଧାନ କରାଇ ସେମାନଙ୍କ ଘର ଖାନତଲାସ କରାଇଲେ ଓ ସେମାନଙ୍କ ନାମରେ ନାନା ଅଭିଯୋଗ ପତ୍ର, ସ୍ୱତନ୍ତ୍ର କୋର୍ଟରେ ଦାଖଲ ହୋଇ ବିଚାର ହେଲା, କିନ୍ତୁ ବିଧାନସଭାରେ ମୁଁ ତାଙ୍କୁ ଅତ୍ୟନ୍ତ କଟୁ ସମାଲୋଚନା କରୁଥିଲେ ମଧ୍ୟ ଓ ତାଙ୍କର କେତେକ କାର୍ଯ୍ୟରେ ଅତି ନିଷ୍ଠୁର ମନ୍ତବ୍ୟ ଦେଉଥିଲେ ମଧ୍ୟ ଆସେମ୍ବ୍ଲି ଲବିରେ ଆସି ତାଙ୍କ ପାଖେ ବସିଲା ବେଳେ ସେ କହିପକାନ୍ତି 'ଗଙ୍ଗୁ ଭାଇ ତୁ ସିନା ମୋ ଜୀବନର ବହୁ ଅନୁଭୂତି ଦୀର୍ଘ ଦିନ ଧରି ଜାଣିଚୁ ବୋଲି ଏପରି କହିପାରିଲୁ ଆଉ କେହି ଏପରି କହିପାରନ୍ତା ନାହିଁ ।' ଏହା କହି ହସିଦେବେ ଓ କଫି କପ୍‌ଟିଏ ମତେ ନେବା ପାଇଁ ନିର୍ଦ୍ଦେଶ ଦେବେ । ତାଙ୍କର ମୃତ୍ୟୁ ସନ୍ଧ୍ୟାରେ ତାଙ୍କୁ ଦେଖିବା ପାଇଁ ମୁଁ ବଂଧୁ ଲକ୍ଷ୍ମଣ ବାବୁଙ୍କ ସହିତ ଫୁଲ ତୋଡ଼ାଟିଏ ଧରି ଗଲି । ମୋର ଦେହ ଅତ୍ୟନ୍ତ ଖରାପ ଥାଏ । ମୋର ଚାଲିବାର ଶକ୍ତି ନଥାଏ । ଅସମ୍ଭବ ଭିଡ଼ ତା ଭିତରେ ତାଙ୍କୁ ଦେଖିବା ମୋ ପାଖରେ ଅସମ୍ଭବ ହୋଇ ପଡ଼ିଲେ ମଧ୍ୟ ମୁଁ ସାହସ ବାନ୍ଧି ନିଜ ଜୀବନକୁ ସଙ୍କଟାପନ୍ନ କରି ଆସ୍ତେ ଆସ୍ତେ ପୁଲିସ୍ ଅଫିସରଙ୍କ ସହାୟତାରେ ସେହି ବିରାଟ ମୃତ ଶରୀରର ଗମ୍ଭୀର ମୁଖ ଦେଖି ଆଉ ଧୈର୍ଯ୍ୟ ଧରି ପାରିଲି ନାହିଁ । ଫୁଲ

ତୋଡାଟି ଛାତି ଉପରେ ରଖି ନମସ୍କାର କଲାବେଳେ ନତମସ୍ତକ ଅବସ୍ଥାରେ ଚକ୍ଷମାଟି ସେହି ଫୁଲ ଜଙ୍ଗଲ ଭିତରେ କେଉଁଠି ଲୁଚିଗଲା ଖୋଜିବାକୁ ସମୟ ମିଳିଲା ନାହିଁ କାରଣ ପଛରୁ ଶହ ଶହ ଲୋକଙ୍କ ଚାପ । ମନେ ହେଲା ଯେପରି ମୋର ତାଙ୍କ ପ୍ରତି ଏହା ହିଁ ଥିଲା ଶ୍ରେଷ୍ଠ ନିବେଦନ । ମୁଁ କିପରି ସେଠାରୁ ନବୀନ ନିବାସ ଗେଟ ପର୍ଯ୍ୟନ୍ତ ଫେରି ଗାଡିରେ ବସିଛି ମୁଁ ଏବେ ଭାବିପାରୁ ନାହିଁ । ସେହି ମୋର ନବୀନ ନିବାସକୁ ଯିବା, ସେହି ମହାନ ଜନନେତାଙ୍କ ପ୍ରତି ମୋର ଅସୀମ ଶ୍ରଦ୍ଧା ଏବେ ମଧ୍ୟ ଅବ୍ୟାହତ ଅଛି ଓ ଶେଷ ନିଃଶ୍ୱାସ ଥିବା ପର୍ଯ୍ୟନ୍ତ ରହିବ ଏଥିରେ ସନ୍ଦେହ ନାହିଁ । ସ୍ମୃତିତର୍ପଣ ହିଁ ଏକମାତ୍ର ଶାନ୍ତ୍ୱନା । ସେ ଏ ଜାତିର ସ୍ମୃତିରେ ଚୀର ଜାଗ୍ରତ ରହନ୍ତୁ ଓ ତାଙ୍କର ଅସୀମ ସାହସ ଦେଶ ପ୍ରତି ନୂତନ ପିଢୀଙ୍କ ପ୍ରତି ପ୍ରେରଣାର ଉତ୍ସ ହୋଇ ରହୁ ଏହା ହିଁ କାମନା କରି ଏହି ଅଧ୍ୟାୟର ଶେଷ ଭାଗରେ ଘଟଣା ସଂପର୍କରେ ମୋର ସ୍ମୃତିକୁ ରୂପାୟିତ କରିବା ପାଇଁ ଉଦ୍ୟମ କରୁଛି ।

ସେତେବେଳେ ପଣ୍ଡିତ ନେହେରୁ ଓଡିଶାରେ କ୍ରମାଗତ ଅଶାନ୍ତିରେ ଚିନ୍ତିତ ଥାନ୍ତି । ତା ଛଡ଼ା ଉତ୍ତରପ୍ରଦେଶରେ ଚନ୍ଦ୍ରଭାନୁ ଗୁପ୍ତ, ତାମିଲନାଡୁର ଶ୍ରେଷ୍ଠ କଂଗ୍ରେସ ନେତା ଓ ନିଖିଳ ଭାରତ କଂଗ୍ରେସ କମିଟିର ସଭାପତି ଶ୍ରୀ କାମରାଜ ନାଦର ଓ ଆଉ କେତେକ ପ୍ରାନ୍ତୀୟ ନେତୃବର୍ଗଙ୍କ ମଧ୍ୟରେ ଅନ୍ତଃର୍ବିବାଦ ପଣ୍ଡିତଜୀଙ୍କ ମନରେ ବିଶେଷ ଉଦବେଗ ସୃଷ୍ଟି କରିଥିଲା । ସେଥିପାଇଁ କଣ କରାଯାଇପାରିବ ସେ ଚିନ୍ତା କରି କାମରାଜଙ୍କ ପରାମର୍ଶ କ୍ରମେ କାମରାଜ ପ୍ଲାନ୍ ନାମରେ ଏକ ଗୁରୁତ୍ୱପୂର୍ଣ୍ଣ ରାଜନୈତିକ ନିଷ୍ପତ୍ତି ନେଇ ଚନ୍ଦ୍ରଭାନୁ ଗୁପ୍ତ, ବିଜୁ ପଟ୍ଟନାୟକ ଆଦି କେତେଜଣ ତୁଙ୍ଗ ପ୍ରାନ୍ତୀୟ ନେତାଙ୍କୁ ସଂଗଠନର ମୁଖ୍ୟ ଭାଗରେ ନେବା ପାଇଁ ଦାୟିତ୍ୱ ଦେଇ ମୁଖ୍ୟମନ୍ତ୍ରୀ ଦାୟିତ୍ୱରୁ ଅପସାରିତ କରିବାର ସିଦ୍ଧାନ୍ତ ନିଆଗଲା । ଏହି ସିଦ୍ଧାନ୍ତକୁ ନୀତିଗତ ଭାବେ କେହି ବିରୋଧ କରିବାର ସୁଯୋଗ ନଥିଲା । କାରଣ ପ୍ରଥମେ ଦଳର ସଂଗଠନରେ ଦୃଢତା ଫେରି ନ ଆସିଲେ ନିର୍ବାଚନରେ ଦଳର ବିଜୟ ସମ୍ଭାବନା ଦୂରେଇ ଯିବ । ମୁଁ, ନୀଳମଣି ବାବୁ, ଭବାନୀ ପଟ୍ଟନାୟକ, ମଧୁସୂଦନ ନନ୍ଦ, ଚିର ରଂଜନ ନାୟକ ପ୍ରମୁଖ ଅନେକ ବିଧାୟକ ବିଜୁବାବୁଙ୍କ ବଳିଷ୍ଠ ସମର୍ଥକମାନେ ବିଜୁବାବୁଙ୍କୁ କାମରାଜ ପ୍ଲାନରେ ଶିକାର କରାଇବା ବିରୋଧରେ ଥିଲେ ମଧ୍ୟ ନୀତିଗତ ଭାବରେ ଦଳ ବାହାରେ ଏହି ସିଦ୍ଧାନ୍ତର ପ୍ରତିରୋଧ କରିବା ସମ୍ଭବପର ନଥିଲା । ଭବାନୀ ପଟ୍ଟନାୟକ ବିଜୁବାବୁଙ୍କ ଏକାନ୍ତ ବିଶ୍ୱାସୀ ହେଇ ସାରିଥାଆନ୍ତି । ତାଙ୍କର ୧୦ ନମ୍ବର ରେକାବଗଞ୍ଜ ବାସଭବନ ବିଜୁବାବୁଙ୍କ ସମର୍ଥକମାନଙ୍କର କର୍ମକେନ୍ଦ୍ର ହେଇଥାଏ । କିନ୍ତୁ ଏ ସବୁ ସତ୍ତ୍ୱେ ବିଜୁବାବୁଙ୍କୁ ରାଜ୍ୟ ଶାସନ ଦାୟିତ୍ୱରେ ରଖିବା ସମ୍ଭବପର ହୋଇପାରିଲା ନାହିଁ । ପଣ୍ଡିତ ନେହେରୁଙ୍କ

ନିଷ୍ପତ୍ତିକୁ ବିରୋଧ କରିବା ମାନେ କଂଗ୍ରେସ ଦଳରୁ ବିଦାୟ ନେବା ଛଡ଼ା ଅନ୍ୟ ପନ୍ଥା ନାହିଁ । ଏହା ଫଳରେ ବିଜୁବାବୁଙ୍କ ରାଜ୍ୟ ଶାସନ ଯାହାକୁ ୧୯୬୧ ମସିହା କଂଗ୍ରେସର ଐତିହାସିକ ବିଜୟ ପରେ ଏକ ସ୍ଥିରତା ଓ ସମୃଦ୍ଧିର ଯୁଗ ସୃଷ୍ଟି କରିବ ବୋଲି ଜନ ମାନସର ଶ୍ରେଷ୍ଠ ନେତାଭାବେ ବିଜୁବାବୁଙ୍କୁ ବିପୁଳ ସମର୍ଥନ ଦେଇ ଆସିଥିଲେ ତାର ଅବସାନ ୧୯୬୩ ମସିହା ଶେଷ ଭାଗରେ ସେହି ରାଜ୍ୟ ଶାସନ ନେତୃତ୍ୱର ଅବସାନ ଘଟିଲା ।

ବିଜୁବାବୁ ଫେରିଗଲେ ପୁଣି ପ୍ରଦେଶ କଂଗ୍ରେସ କମିଟିର ସଭାପତି ଭାବେ । କିନ୍ତୁ ଓଡିଶାର ଲୋକେ ତାଙ୍କୁ ରାଜ୍ୟର ନାଚୁରାଲ ଲିଡ୍‌ର ଭାବେ ଗ୍ରହଣ କରିସାରିଥାଆନ୍ତି । ବମ୍ବେଠାରେ ୧୯୬୩ ମସିହା ଶେଷ ଭାଗରେ ନିଖିଳ ଭାରତ କଂଗ୍ରେସ କମିଟିର ଏକ ଅଧିବେଶନ ବସିଥିଲା । ଓଡିଶାର ଅଧିକାଂଶ ବିଜୁ ମତବାଦୀ ବିଧାୟକ କଂଗ୍ରେସ ସଂଗଠନର ନେତାମାନେ ସେ ଅଧିବେଶନରେ ଯୋଗ ଦେବା ପାଇଁ ଓ ବିଜୁ ବାବୁଙ୍କୁ ପୁନର୍ବାର ଶାସନ ଗାଦିକୁ ଫେରାଇବା ପାଇଁ ଉଦ୍ୟମ କରିବା ପାଇଁ ବମ୍ବେ ଯାତ୍ରା କରିବା ନିଷ୍ପତ୍ତି ନିଆଗଲା । ବିଜୁ ବାବୁଙ୍କ କଳିଙ୍ଗ ବିମାନ ବାହିନୀର ଏକ ବୋଇଙ୍ଗ ବିମାନରେ ଆମେ ୨୩ ଜଣ ଏ.ଆଇ.ସି.ସି. ସଦସ୍ୟ ଏହି ବିମାନ ଯାତ୍ରାରେ ଯାଇ ବମ୍ବେ ଅଧିବେଶନରେ ଯୋଗ ଦେଲୁ ।

ସେତେବେଳକୁ ନନ୍ଦିନୀ ଦେବୀ ଓଡିଶା ରାଜନୀତିରେ ଏକ ବଳିଷ୍ଠ ନେତ୍ରୀଭାବେ ନିଜକୁ ପ୍ରତିଷ୍ଠା କରୁଥାଆନ୍ତି, କିନ୍ତୁ ବିଜୁ ବାବୁଙ୍କ ନେତୃତ୍ୱ ଓ ସଂଗଠନ ଶକ୍ତି ଆଗରେ ରାଜ୍ୟ କଂଗ୍ରେସ ସଂଗଠନରେ ତାଙ୍କର ବିଶେଷ ଗୁରୁତ୍ୱ ସାବ୍ୟସ୍ତ ହୋଇନଥାଏ । ସେତେବେଳକୁ ଶ୍ରୀମତି ଇନ୍ଦିରା ଗାନ୍ଧୀ କଂଗ୍ରେସର ସଭାପତି ଭାବେ ନିର୍ବାଚିତ ହୋଇ ସାରିଥାଆନ୍ତି । ମହତାବ ବାବୁ କେନ୍ଦ୍ରରେ ଶିଳ୍ପ ଓ ବାଣିଜ୍ୟମନ୍ତ୍ରୀ ଭାବରେ ତାଙ୍କର ଆସ୍ଥାନ ସୁଦୃଢ଼ କରିଥାଆନ୍ତି । କିନ୍ତୁ ପଣ୍ଡିତଜୀଙ୍କର ବିଶ୍ୱସ୍ତ ଗୋଷ୍ଠୀରେ ସେ ସେତେବେଳେ ପର୍ଯ୍ୟନ୍ତ ଗ୍ରହଣୀୟ ହୋଇ ନଥାନ୍ତି । ବିଜୁବାବୁଙ୍କର ଇନ୍ଦିରାଜୀଙ୍କ ସହିତ ପ୍ରଥମରୁ ଅତ୍ୟନ୍ତ ଘନିଷ୍ଠତା ଥିଲା । ଏପରିକି ଉଭୟେ ବିଜୁବାବୁଙ୍କ ବୁଇକ ଗାଡିରେ ଯାତାୟାତ କରୁଥିବାର ମୁଁ ଦେଖିଛି । କେରଳରେ ସି.ପି.ଏମ. ଶାସନର ଅବସାନ ଘଟାଇବାରେ ଶ୍ରୀମତି ଗାନ୍ଧୀ ଯେଉଁ ସଂଗଠନ ଶକ୍ତି ପ୍ରକାଶ କରିଥିଲେ, ସେଥିପାଇଁ ପଣ୍ଡିତଜୀଙ୍କ ସ୍ୱାସ୍ଥ୍ୟ ଦୃଷ୍ଟିରୁ ତାଙ୍କୁ କଂଗ୍ରେସ ଅଧ୍ୟକ୍ଷା କରିବା ପାଇଁ କାମରାଜ ରାଜି ହୋଇ ତତ୍‌କାଳୀନ କଂଗ୍ରେସ ସିଣ୍ଡିକେଟ୍‌ର ସମସ୍ତ ସଭ୍ୟ ଏକମତ ହୋଇଥିଲେ । ସେମାନଙ୍କ ମନରେ ଧାରଣା ଥିଲା, କଂଗ୍ରେସ ସଭାପତି ଭାବେ ଇନ୍ଦିରାଜୀଙ୍କ ଉପରେ ସେମାନଙ୍କ କର୍ତ୍ତୃତ୍ୱ ଅବ୍ୟାହତ ରହିବ । ପଣ୍ଡିତଜୀଙ୍କ ନେତୃତ୍ୱ ଓ ବ୍ୟକ୍ତିତ୍ୱର ପ୍ରଭାବରେ ସେମାନେ କଂଗ୍ରେସ ସଂଗଠନକୁ ଯେପରି ଅକ୍ତିଆର କରିବାରେ ସକ୍ଷମ ହୋଇ

ପାରୁନଥିଲେ, ଶ୍ରୀମତୀ ଗାନ୍ଧୀଙ୍କୁ ଅଧ୍ୟକ୍ଷା ଦାୟିତ୍ୱ ଦେଲେ କଂଗ୍ରେସ ସଂଗଠନକୁ ନିଜ ହାତମୁଠାରେ ରଖିବା ପାଇଁ ସେମାନଙ୍କୁ ଅଧିକ ସୁବିଧା ହେବ । ସେମାନେ ବୋଧହୁଏ ଶ୍ରୀମତି ଗାନ୍ଧୀଙ୍କ ସାଂଗଠନିକ ଶକ୍ତି ଓ ବିଚକ୍ଷଣ ନେତୃତ୍ୱ ସଂପର୍କରେ ହିସାବ କିତାବ ଠିକ୍ ଭାବେ କଳନା କରିପାରିନଥିଲେ । ସେ ଯାହା ହେଉ ବିଜୁ ବାବୁ ପ୍ରଦେଶ କଂଗ୍ରେସର ସଭାପତି ଦାୟିତ୍ୱରେ ରହିବାପରେ, ରାଜ୍ୟର ମୁଖ୍ୟମନ୍ତ୍ରୀ ଭାବେ ବୀରେନ ବାବୁଙ୍କ ଉପରେ ଦାୟିତ୍ୱ ପଡିଲା । ବିରେନ ବାବୁ ମୁଖ୍ୟମନ୍ତ୍ରୀ ହେଇ ନୀଳମଣି ବାବୁଙ୍କୁ ଉପ-ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଦେଇ ସରକାର ଚଳାଇବାର ମୁଖ୍ୟ ଦାୟିତ୍ୱରେ କାର୍ଯ୍ୟ କରିବାର ସିଦ୍ଧାନ୍ତ ହେଲା । ଆମେ କିନ୍ତୁ ସମସ୍ତେ ଏକ ଭାବାପନ୍ନ ଥାଉ । ମୁଁ ସେତେବେଳକୁ ବିଜୁବାବୁଙ୍କର ଅତି ବିଶ୍ୱସ୍ତ ହୋଇଥାଏ ଓ ସଂଗଠନରେ ଜଣେ କିଙ୍ଗମେକର ଭାବେ କାର୍ଯ୍ୟ କରୁଥାଏ । ବିରେନ ମିତ୍ର, ନୀଳମଣି ରାଉତରା ଓ ମୁଁ ଆମେ ପ୍ରାୟ ବିଜୁବାବୁଙ୍କ ପରାମର୍ଶଦାତା ଭାବେ କାର୍ଯ୍ୟ କରୁଥାଉ । କଂଗ୍ରେସ ସଂଗଠନ ଆମ କର୍ତ୍ତୃତ୍ୱାଧୀନ ଓ ବିଜୁ ବାବୁ ଆମର ପ୍ରମୁଖ ନେତା । ଏହି ପରିସ୍ଥିତିରେ ବିରେନ ବାବୁ ନିଜକୁ ଲକ୍ଷ୍ମଣ ଭାବରେ ଅବିହିତ କରି ବିଜୁବାବୁଙ୍କୁ ବଡ ଭାଇ ଭାବେ ସମ୍ବୋଧନ କରି ଶପଥ ନେଲେ ମୁଁ କେବଳ ବିଜୁ ପଟ୍ଟନାୟକଙ୍କ ଅନୁଗତ ଭାବେ ତାଙ୍କ ନାମରେ ଶାସନ କରିବି । ଯେତେବେଳେ ସେ ଯାହା ନିର୍ଦ୍ଦେଶ ଦେବେ ସେଇ ଅନୁସାରେ ରାଜ୍ୟ ଶାସନ ଚାଲିବ । ତାଙ୍କର ଏହି ଘୋଷଣା ପରେ କଂଗ୍ରେସ ସଂଗଠନର ୮୦ ଭାଗ ପ୍ରମୁଖ ଲୋକ ବିଜୁବାବୁଙ୍କ ନେତୃତ୍ୱ ଓ ସଂଗଠନ ଶକ୍ତି ଉପରେ ନିର୍ଭର କଲେ । ନନ୍ଦିନୀ ଦେବୀ ସେତେବେଳକୁ ରାଜ୍ୟ ଶାସନରେ କୌଣସି ଥଳକୂଳ ନପାଇ ରାଜ୍ୟସଭାରେ ବିଜୁବାବୁଙ୍କ ଅନୁଗ୍ରହରେ ପ୍ରବେଶ କରିବାର ସୁଯୋଗ ପାଇଲେ । ଏହିପରି ଅବସ୍ଥାରେ ଓଡିଶାରେ ୧୯୬୪ ମସିହା ଐତିହାସିକ କଂଗ୍ରେସ ଅଧିବେଶନ ହେବାପାଇଁ କେନ୍ଦ୍ର ହାଇକମାଣ୍ଡ ରାଜି ହେଲେ । ଗୁଜରାଟ ଓ କର୍ଣ୍ଣାଟକ କଂଗ୍ରେସର ଅଧିବେଶନକୁ ସେମାନଙ୍କ ରାଜ୍ୟରେ କରିବା ପାଇଁ ଅନୁରୋଧ କରିଥିଲେ ମଧ୍ୟ ବମ୍ବେ ଏ.ଆଇ.ସି.ସି. ଅଧିବେଶନରେ ଓଡିଶା ପ୍ରତି ବିଶେଷ ଜନମତ ପ୍ରକାଶ ପାଇଲା କାରଣ ପୁରୀ ଏକ ତୀର୍ଥ କ୍ଷେତ୍ର ଥିବା ହେତୁ ସମସ୍ତେ କଂଗ୍ରେସ ଅଧିବେଶନରେ ଯୋଗ ଦେବା ସହିତ ଶ୍ରୀ ଜଗନ୍ନାଥଙ୍କ ଦର୍ଶନ ମଧ୍ୟ କରିପାରିବେ ବୋଲି ଏହି ପବିତ୍ର କ୍ଷେତ୍ରରେ କଂଗ୍ରେସ ଅଧିବେଶନ ପାଇଁ ନିଷ୍ପତ୍ତି ନିଆଗଲା ।

ପୁରୀ ସର୍କିଟ ହାଉସ (ପୁରୁଣା ସର୍କିଟ ହାଉସ) ତଳ ହଲ୍‌ରେ ବିଜୁ ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ ପ୍ରଥମ ଅଭ୍ୟର୍ଥନା କମିଟି ବୈଠକ ବସିଲା । ଏଠାରେ କେଉଁ ସ୍ଥାନରେ ଅଧିବେଶନ ହେବ ବୋଲି ଆଲୋଚନା ହୋଇ ସର୍ବୋଦୟ ନଗରଠାରେ ବିସ୍ତୀର୍ଣ୍ଣ

ବାଲୁକା ଉପରେ ଅଧିବେଶନ ହେବା ପାଇଁ ପ୍ରାୟ ସମସ୍ତେ ଏକମତ ହେଲେ ସିନା ଚୂଡାନ୍ତ ନିଷ୍ପତ୍ତି ସେ ଦିନ ହୋଇପାରିନଥିଲା । ପଣ୍ଡିତଜୀ ଓ ଅନ୍ୟ ତୁଙ୍ଗନେତାଙ୍କ ସହିତ ପରାମର୍ଶରେ ଶେଷ ସିଦ୍ଧାନ୍ତ ନିଆଯିବ ବୋଲି ସ୍ଥିର ହେଲା ।

ପୁରୀଠାରେ ଅଧିବେଶନ ପାଇଁ ବିଜୁ ବାବୁ ସମସ୍ତ ଦାୟିତ୍ୱ ନେଇ କରାଇବେ ବୋଲି ସମସ୍ତଙ୍କ ମନରେ ଧାରଣା ହୋଇଥିବା ସତ୍ତ୍ୱେ, ପୁରୀର ତତ୍କାଳୀନ ଯୋଗାଣ ଅଧିକାରୀ (ସି.ଏସ.ଓ.) ଶ୍ରୀ ଚାଟାର୍ଜି (ନାମ ହଠାତ ମନେ ପଡୁନାହିଁ) ମତେ ଅଭ୍ୟର୍ଥନା କମିଟି ବୈଠକ ପରେ ଡାକି ନେଇ ଚୁପ୍ କରି କହିଲେ 'ମୋର ଗଣନା ଅନୁସାରେ ପୁରୀଠାରେ କଂଗ୍ରେସ ଅଧିବେଶନ ହେବ ନାହିଁ । ଅନ୍ୟତ୍ର ହେବ ଏବଂ ସ୍ଥଳରେ କଂଗ୍ରେସ ଅଧିବେଶନ ବେଳେ ଭାରତର ଜଣେ ତୁଙ୍ଗ ନେତାଙ୍କ ଜୀବନ ପ୍ରତି ଏପରି ବିପଦ ଆସିବ ଯେ ତାହା ତାଙ୍କର ମୃତ୍ୟୁର ବଡ ଆଶଙ୍କା ସୃଷ୍ଟି କରିବ । ଆପଣଙ୍କୁ ଏକଥା କହୁଛି । ଆପଣ ମୋ ନାମ ପ୍ରକାଶ କରିବେ ନାହିଁ, ନଚେତ ମୋର ଚାକିରୀ ଓ ଜୀବନ ଉପରେ ବିପଦ ଆସିବ ।' ବହୁ ଅନୁରୋଧ ପରେ ସେ ମୋ କାନରେ ଚୁପ୍‌ଚାପ୍ କରି ପଣ୍ଡିତ ନେହେରୁଙ୍କ ଜୀବନ ଉପରେ ବିପଦ ଥିବା କଥା କହିଲେ । ମୁଁ ଅବାକ୍ ହୋଇ ପଡିଲି ଓ ଗଭୀର ଆଶଙ୍କା ଆମକୁ ଭବିଷ୍ୟତ ପାଇଁ ବହୁତ ଅନିଶ୍ଚିତ ଅବସ୍ଥାକୁ ନେଇଯିବ ବୋଲି ମନ ଭିତରେ ଘୋର ଆତଙ୍କ ସୃଷ୍ଟି କଲା । ପୁରୀର ଏହି ଯୋଗାଣ ଅଫିସରଙ୍କ ଭବିଷ୍ୟତବାଣୀ ସତ୍ୟରେ ପରିଣତ ହେଲା । ନାନା କାରଣ ଦର୍ଶାଇ ଭୁବନେଶ୍ୱରଠାରେ ପ୍ରତିଷ୍ଠିତ ରାଜଧାନୀର ବିକାଶରେ ବିଶେଷ ସୁଯୋଗ ସୃଷ୍ଟି ପାଇଁ ଓ ଭୁବନେଶ୍ୱରସ୍ଥ ବିସ୍ତୀର୍ଣ୍ଣ ପ୍ରାନ୍ତରକୁ ଅଧିକ ଉନ୍ନତ କରି ନୂତନ ବସତି ସୃଷ୍ଟିର ଆବଶ୍ୟକତାକୁ ଆଗରେ ରଖି ୟୁନିଟ୍-୮, ପରବର୍ତ୍ତୀ ସମୟରେ ଡେଲଟା କଲୋନୀ (ଡେଲ୍ଟା ଜଳସେଚନ ବସତି ଅଞ୍ଚଳ)ରେ ଏହି ଅଧିବେଶନ ହେବାର ନିଷ୍ପତ୍ତି ହୋଇ, ବିଜୁ ପଟ୍ଟନାୟକଙ୍କ ସଭାପତିତ୍ୱରେ ଅଭ୍ୟର୍ଥନା କମିଟିର ସର୍ବସମ୍ମତ ପ୍ରସ୍ତାବ ଗୃହିତ ହୋଇ କାର୍ଯ୍ୟ ଆରମ୍ଭ ହେଲା । ପୁରୀରେ ଏହି ଅଧିବେଶନ ହେବ ନାହିଁ ବୋଲି ମଧ୍ୟ ନିଷ୍ପତ୍ତି ନିଆଗଲା । ପୁରୀ ସହରବାସୀ ୧୯୩୧ ମସିହା ଓ ୧୯୬୪ ମସିହାରେ ଦୁଇଥର କଂଗ୍ରେସ ଅଧିବେଶନ ପାଇଁ ଆତିଥ୍ୟ ଦେବାର ସୁଯୋଗରୁ ବଞ୍ଚିତ ହେଲେ । ଆମେ ସବୁ ଏହି ବିଜୁ ବାବୁଙ୍କ ଅନୁଗତ ଭାବେ ପ୍ରାଣପଣେ ଉଦ୍ୟମ କଲୁ ଏହି ଅଧିବେଶନର ସଫଳତା ପାଇଁ । ଏହା ଥିଲା ଭାରତୀୟ ଜାତୀୟ କଂଗ୍ରେସର ଏକ ଐତିହାସିକ ଅଧିବେଶନ । ଏହି ଅଧିବେଶନ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଏଇଥିପାଇଁ ଯେ ଏହି ଅଧିବେଶନରେ ଭାରତ ଜାତୀୟ କଂଗ୍ରେସ ତା'ର ଲକ୍ଷ୍ୟ ସମାଜବାଦ ବୋଲି ସ୍ପଷ୍ଟ କରିଦେବା ପାଇଁ ଏକ ସର୍ବସମ୍ମତ ପ୍ରସ୍ତାବ ଗ୍ରହଣ କଲା । ସମାଜବାଦ ଭାରତ ପାଇଁ ଏକମାତ୍ର ରାଜନୈତିକ ଲକ୍ଷ୍ୟ ଏବଂ ଏହି

ଲକ୍ଷ୍ୟପୂରଣରେ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ନ୍ୟାୟ ପ୍ରତିଷ୍ଠା ହୋଇ ଗରିବି ଦୂର ହୋଇପାରିବ ଓ ଭାରତବର୍ଷ ପୃଥିବୀର ସବୁଠାରୁ ବୃହତ ସମାଜବାଦୀ ରାଷ୍ଟ୍ର ରୂପେ ପ୍ରତିଷ୍ଠିତ ହୋଇ ସମ୍ବିଧାନର ଲକ୍ଷ୍ୟ ପୂରଣ କରିବାରେ ସଫଳତା ଲାଭ କରିବ ବୋଲି କଂଗ୍ରେସ ନେତୃବର୍ଗ ଏପରି ଏକ ସାହସିକ ପଦକ୍ଷେପ ନେଲେ । ଏହି ପ୍ରସ୍ତାବକୁ ସାମ୍ବିଧାନିକ ସମ୍ମାନ ଦେବା ପାଇଁ ଶ୍ରୀମତି ଇନ୍ଦିରା ଗାନ୍ଧୀ କଂଗ୍ରେସ ସଭାନେତ୍ରୀ ଓ ପ୍ରଧାନମନ୍ତ୍ରୀ ଥିବାବେଳେ ୧୯୭୮ ମସିହା କଂଗ୍ରେସର ଅଧିବେଶନରେ ସମ୍ବିଧାନର ୪୨ତମ ସଂଶୋଧନ କରାଇ ଭାରତକୁ ଏକ ସାର୍ବଭୌମ ଗଣତାନ୍ତ୍ରିକ ସମାଜବାଦ ରାଷ୍ଟ୍ର ରୂପେ ଘୋଷଣା କରାଇଥିଲେ । ଏହି ସଂଶୋଧନରେ ଭାରତବାସୀ ସମ୍ବିଧାନରେ ଯେଉଁ ମୌଳିକ ସାମ୍ବିଧାନିକ ଅଧିକାର ପାଇଥିଲେ ସେଥିରେ ସମ୍ବିଧାନ ଓ ରାଷ୍ଟ୍ରପତି ଭାରତବାସୀଙ୍କ ମୌଳିକ କର୍ତ୍ତବ୍ୟ (ଫଣ୍ଡାମେଣ୍ଟାଲ ଡ୍ୟୁଟିଜ୍ ଟୁୱାର୍ଡ୍ସ ଦି କଣ୍ଟ୍ରି) ସଂପର୍କୀୟ ବ୍ୟବସ୍ଥା ଖଞ୍ଜିବାରେ ସକ୍ଷମ ହୋଇପାରିଥିଲେ । କିନ୍ତୁ ଏହା କେବଳ ସମ୍ଭବ ହୋଇଥିଲା ଭୁବନେଶ୍ୱର କଂଗ୍ରେସ ଅଧିବେଶନରେ ଉପରୋକ୍ତ ସମାଜବାଦ ପ୍ରତିଷ୍ଠା ଭାରତର ଅନ୍ତିମ ଲକ୍ଷ୍ୟ ବୋଲି ସ୍ପଷ୍ଟ କରି ପ୍ରସ୍ତାବ ଗ୍ରହଣ କରିବା ଦ୍ୱାରା । ସେଥିପାଇଁ ଭୁବନେଶ୍ୱର ଅଧିବେଶନକୁ ଏକ ଐତିହାସିକ ଅଧିବେଶନ ବୋଲି କୁହାଯାଏ ଦେଶପାଇଁ ଏକ ନୂତନ ଦିଗନ୍ତ ସୃଷ୍ଟି କରିବାରେ ଏହି ଅଧିବେଶନ ନିର୍ଦ୍ଦେଶ ନେଉଥିବା ହେତୁ । ଦ୍ୱିତୀୟ ବିଶେଷତ୍ୱ ଥିଲା ଏ ଅଧିବେଶନରେ ଖାଦ୍ୟ ଓ ଅଭ୍ୟର୍ଥନାର ଆୟୋଜନ । ଅତିଥିମାନଙ୍କ ପାଇଁ ସୁଖାଦ୍ୟ ବ୍ୟବସ୍ଥା, ଭ୍ରମଣର ସୁବିଧା ବିଶେଷ କରି ପୁରୀ ଜଗନ୍ନାଥ ଦର୍ଶନ, କୋଣାର୍କ ଓ ଚିଲିକା ଭ୍ରମଣ ସୁଯୋଗ । ବହୁବର୍ଷ ପର୍ଯ୍ୟନ୍ତ କଂଗ୍ରେସ ଅଧିବେଶନକୁ ଏ ଦିଗରେ ଯେଉଁ ନୂତନ ପରମ୍ପରା ସୃଷ୍ଟି କଲା ତାହା ଏକ ଦୃଷ୍ଟାନ୍ତ ହୋଇ ରହିଲା । ସବୁଠାରୁ ବଡ ବିଶେଷତ୍ୱ ହେଉଛି ଏ ଅଧିବେଶନରେ ପଣ୍ଡିତ ନେହେରୁଙ୍କ ସ୍ୱାସ୍ଥ୍ୟ ପ୍ରତି ବିପଦ ଓ ତଦ୍‌ଜନିତ ସମଗ୍ର ଦେଶବାସୀଙ୍କ ଆଶଙ୍କା । ଏହି କଂଗ୍ରେସ ଅଧିବେଶନର ସଫଳତାର ସୁଯୋଗ ନେଇ ତାଙ୍କର ପଣ୍ଡିତଜୀଙ୍କ ସହିତ ଘନିଷ୍ଠ ସଂପର୍କ ଓ ତାଙ୍କ ପ୍ରତି ପଣ୍ଡିତଜୀଙ୍କ ଆଶୀର୍ବାଦ ଓ ଶୁଭେଚ୍ଛାକୁ ପୁଞ୍ଜି କରି ଆଗକୁ ଅଗ୍ରସର ହେଉଥିବା ବିଜୁ ବାବୁଙ୍କର, ଟିକରପଡାଠାରେ ଏକ ଡ୍ୟାମ ନିର୍ମାଣ କରି ହିରାକୁଦ ଯୋଜନାର ୨ୟ ପର୍ଯ୍ୟାୟକୁ କାର୍ଯ୍ୟକାରୀ କରିବା ଲକ୍ଷ୍ୟ ଥିଲା । ସେ ଖୋସଲା କମିଟିର ସୁପାରିଶକୁ କାର୍ଯ୍ୟକାରୀ କରିବା ମହତ ଉଦ୍ଦେଶ୍ୟ ରଖି ପଣ୍ଡିତଜୀଙ୍କୁ ଉଡାଜାହାଜରେ ଟିକରପଡା ନେଇଗଲେ । ଟିକରପଡା ସମତଳ ଭୂଇଁରେ ଉଡାଜାହାଜରୁ ଓହ୍ଲାଇ ପଣ୍ଡିତଜୀଙ୍କୁ ପାହାଡ ଉପରୁ ପ୍ରାକୃତିକ ଦୃଶ୍ୟ ଦେଖାଇ ଡ୍ୟାମ ସଂପର୍କରେ ବୁଝାଇବା ପାଇଁ ଓ ଡ୍ୟାମ୍ ସ୍ଥାପନର ଜାଗା ଓ ଓସାର କିପରି ଭାବରେ ୨ଟି ପାହାଡ ସଂଯୋଗରେ ସମ୍ଭବ ହୋଇପାରିବ

ସେ ସଂପର୍କରେ ଏକ ସ୍ପଷ୍ଟ ଧାରଣା ଦେବା ଅବସ୍ଥାରେ ବିଜୁ ପଟ୍ଟନାୟକଙ୍କର ରାଜନୈତିକ ପତନର ଅୟମାରମ୍ଭ ସୃଷ୍ଟି ହୋଇଥିଲା । ପଣ୍ଡିତଜୀ ଏହି ପାହାଡ ଉପରକୁ ଉଠିବା ବେଳେ ଦୁର୍ଘଟଣାର ସମ୍ମୁଖୀନ ହେଲେ । ତାଙ୍କୁ ଆକ୍ରମଣ କଲା ନିଷ୍ଠୁର ଏକ ଷ୍ଟ୍ରୋକ । ତତ୍କ୍ଷଣାତ ଡାକ୍ତରମାନଙ୍କ ଅକ୍ଳାନ୍ତ ପରିଶ୍ରମ ଓ ଚିକିତ୍ସା ଫଳରେ ଷ୍ଟ୍ରୋକ୍‌ରୁ ପଣ୍ଡିତଜୀ ରକ୍ଷା ପାଇଗଲେ କିନ୍ତୁ ତାରି ଫଳରେ ତାଙ୍କର ବାମ ଗୋଡ଼ରେ ଯେଉଁ ପାରାଲିସିସ୍ ଲକ୍ଷଣ ଦେଖାଦେଲା ତାହା ଶେଷରେ ୫ ମାସ ପରେ ତାଙ୍କର ଅକାଳ ମୃତ୍ୟୁର କାରଣ ହେଲା ।

ଏହି ଦାରୁଣ ସମ୍ବାଦ ବିଦ୍ୟୁତ ବେଗରେ ସମଗ୍ର ଦେଶରେ ପ୍ରଚାରିତ ହେବା ଫଳରେ କଂଗ୍ରେସର ଦ୍ୱିତୀୟ ଦିନର ଅଧିବେଶନ କେବଳ କ୍ରନ୍ଦନ,ପ୍ରାର୍ଥନା ଓ ପଣ୍ଡିତଜୀଙ୍କୁ ଦର୍ଶନ ପାଇଁ ଉଦ୍‌ବେଗ ଓ ଲକ୍ଷ ଲକ୍ଷ ଲୋକଙ୍କ ଜନ ସମାଗମ ଓ ହଟ୍ଟଗୋଳ ଯୋଗୁଁ ଅଧିବେଶନର ଆକର୍ଷଣରେ ଚରମ ବ୍ୟାଘାତ ସୃଷ୍ଟି କଲା । ଏହି ଗଣ୍ଡଗୋଳ ଓ ବିଭ୍ରାଟ ଦେଖି ଓଡ଼ିଆରେ ଭାଷଣ ଦେବା ପାଇଁ ବିଜୁ ବାବୁ ମତେ ନିର୍ଦ୍ଦେଶ ଦେଲେ । ସେତେବେଳେ ମୁଁ ଓଡ଼ିଆରେ ସ୍ପନ୍ଦନ ସୃଷ୍ଟି କରିବା ପାଇଁ ଦୀର୍ଘ ଭାଷଣ ଦେବାରେ ଅଭ୍ୟସ୍ତ ଥିଲି । ଏପରିକି ବିଜୁବାବୁଙ୍କର ଇଂରାଜି ଭାଷଣକୁ ଓଡ଼ିଆରେ ଅନୁବାଦ କରିବା ତାଙ୍କର ସୁବିଧା ପାଇଁ ଗ୍ରାମ୍ୟ ଓଡ଼ିଆ ଭାଷାରେ ସବୁ ଡ୍ରାଫ୍ଟ କରିବା ପାଇଁ ସେ ମତେ ନିର୍ଦ୍ଦେଶ ଦିଅନ୍ତି ଏବଂ ସେ ନିର୍ଦ୍ଦେଶକୁ ନିଷ୍ଠାର ସହ କାର୍ଯ୍ୟକାରୀ କରେ । ସେଥିପାଇଁ ବିଜୁବାବୁଙ୍କର ଅତି ବିଶିଷ୍ଟ ବିଶ୍ୱସ୍ତ ସହଯୋଗୀ ଭାବେ ମୋର ସମ୍ମାନ ଦଳରେ ଅନୁଭୂତ ହେଉଥିଲା । ସମସ୍ତେ ମତେ ଭାଇନା ବୋଲି ସମ୍ବୋଧନ କରିବାକୁ ଆରମ୍ଭ କଲେ । ଯୁବକଙ୍କଠାରୁ ଆରମ୍ଭ କରି ବୃଦ୍ଧ କଂଗ୍ରେସ ନେତୃବୃନ୍ଦ ମଧ୍ୟ ମତେ ଭାଇନା ବୋଲି ସମ୍ବୋଧନ କରିବାକୁ ଲାଗିଲେ । ସଭାସମିତି ମାନଙ୍କରେ ମଧ୍ୟ ସେହି ସମ୍ବୋଧନ ମୁଖ୍ୟମନ୍ତ୍ରୀ, ଉପମୁଖ୍ୟମନ୍ତ୍ରୀ ନୀଳମଣି ଓ ବିରେନଙ୍କଠାରୁ ମୋର ସାତ ସାନ ପୁଅ ବୟସର କଂଗ୍ରେସ ଓ ଅନ୍ୟ ଦଳର କର୍ମୀମାନେ ମଧ୍ୟ ଭାଇନା ସମ୍ବୋଧନ କଲେ । ମୁଁ ୧୯୬୪ରୁ ସାରା ଓଡ଼ିଶାରେ ଭାଇନା ରୂପେ ପରିଚିତ ହୋଇ ଏହି ବୃଦ୍ଧାବସ୍ଥାରେ ୮୯ ବର୍ଷ ବୟସରେ ମଧ୍ୟ ବାପା, ପୁଅ ଓ ନାତି ପର୍ଯ୍ୟନ୍ତ ସମସ୍ତେ ଭାଇନା ବୋଲି ଡାକନ୍ତି । କେବଳ କଂଗ୍ରେସ ଦଳରେ ତାହା ସୀମିତ ନ ରହି ସମଗ୍ର ଓଡ଼ିଶାରେ ସବୁ ଦଳରେ ଓ ସାଧାରଣ ଲୋକେ ସରକାରୀ କର୍ମଚାରୀଙ୍କଠାରୁ ଆରମ୍ଭ କରି ଉଚ୍ଚତର କର୍ମକର୍ତ୍ତା, ବୟସ୍କ ପ୍ରଶାସକମାନେ ମଧ୍ୟ ଭାଇନା ସମ୍ବୋଧନ କରନ୍ତି ଅନୌପଚାରିକ ଭାବେ । ମୋର ଦୀର୍ଘ ଦିନ ମନ୍ତ୍ରିତ୍ୱ ସମୟରେ ମୁଁ ମନ୍ତ୍ରୀ ଭାବେ ଯେତେ ସମ୍ବୋଧିତ ହେଉନଥିଲି ଭାଇନା ଭାବେ ସମ୍ବୋଧିତ ହେଉଥିଲି । ବିଜୁବାବୁଙ୍କର ମୋ ପ୍ରତି ବିଶ୍ୱାସ ଓ ନିକଟତ୍ୱ

ମତେ ସାରା ଓଡିଶାରେ ଭାଇନା ଭାବେ ପ୍ରତିଷ୍ଠା ଓ ସମ୍ମାନ ଦେବାରେ ସହାୟକ ହୋଇଥିଲା ।

ମୁଁ ଉକ୍ତ କଂଗ୍ରେସ ଅଧିବେଶନରେ ଓଡିଆରେ ଦେଢ଼ ଘଣ୍ଟା ଧରି ଓଜସ୍ୱିନୀ ଭାଷାରେ ଯେତେ କହିବାକୁ ଚେଷ୍ଟା କଲେ ମଧ୍ୟ ଲୋକଙ୍କ ଉଦବେଗ୍ କମାଇବାରେ ତାହା ସଫଳ ହୋଇ ପାରିଲା ନାହିଁ । ଏକମାତ୍ର ଲୋକଙ୍କ ଅବଶୋଷ ବିଜୁବାବୁ ପଣ୍ଡିତଜୀଙ୍କୁ ଟିକରପଡା ନେଇ ତାଙ୍କ ଜୀବନ ବିପନ୍ନ କରିଦେଲେ । ବିଜୁ ବାବୁ ସମସ୍ତଙ୍କର ବିରକ୍ତିର ପାତ୍ର ହେଲେ । ତାର ଦିନକ ପୂର୍ବରୁ ଅସଂଖ୍ୟ କଂଗ୍ରେସ ନେତା ବିଜୁଦା ପ୍ରତି ଅଯାଚିତ ପ୍ରଶଂସା ଓ କଂଗ୍ରେସ ଅଧିବେଶନର ସଫଳତା, ଖାଦ୍ୟପେୟ, ଗମନାଗମନ ନେଇ ଯେଉଁ ସୁନାମ ଥିଲା, ତା ମାଟିରେ ଦଳି ହୋଇଗଲା ବୋଲି ଆମେ ତାଙ୍କ ସମର୍ଥକମାନେ ଅନୁଭବ କଲୁ । ବିଜୁବାବୁଙ୍କ ପ୍ରତି ରାଜନୈତିକ କ୍ଷେତ୍ରରେ ତାଙ୍କର ବିରୋଧିମାନେ ଏହାର ସୁଯୋଗ ନେଇ ତାଙ୍କ ଉପରେ ଆକ୍ରମଣ କରି ଭ୍ରଷ୍ଟାଚାରର ବହୁ ଅଭିଯୋଗ ପ୍ରକାଶ କରି କାମରାଜ ଯୋଜନା ଫଳରେ ତାଙ୍କୁ ମନ୍ତ୍ରୀତ୍ୱରୁ ବିଦାୟ ନେବାକୁ ପଡିଥିଲା । ପଣ୍ଡିତଜୀ ଟିକରପଡା ପରିଦର୍ଶନ ପାଇଁ ବିଜୁବାବୁଙ୍କ ସାଧୁଉଦ୍ୟମ ତାଙ୍କର କଂଗ୍ରେସ ଦଳରେ ରାଜନୈତିକ ପତନର ଅନ୍ୟତମ କାରଣ ହେଲା । ୧୯୬୪ ମସିହା ମେ ମାସରେ ଶଯ୍ୟାଶାୟୀ ହୋଇ ପଣ୍ଡିତଜୀ କେବଳ ଭାରତକୁ ନୁହେଁ ପୃଥିବୀର ଜଣେ ଅଦ୍ୱିତୀୟ ପ୍ରାଜ୍ଞ୍ୟ ଭାବରେ, ଭାରତର ସ୍ୱାଧୀନତା ସଂଗ୍ରାମର ସାରଥୀ ଏବଂ ଦୀର୍ଘ ୧୬ ବର୍ଷରୁ ଉର୍ଦ୍ଧ୍ୱ ଧରି ଏହି ବିରାଟ ଦେଶକୁ କ୍ରମ ଶକ୍ତିମାନ କରିବାର ବିଧାଣୀ ଭାବେ ଏବଂ ପୃଥିବୀରେ ଏକ ଆନ୍ତର୍ଜାତୀକ ଶାନ୍ତି ପ୍ରତିଷ୍ଠାର ବାହକ ଭାବେ ଏବଂ ଗୋଷ୍ଠୀ ନିରକ୍ଷେପ ଆନ୍ଦୋଳନର ସ୍ରଷ୍ଟା ଭାବେ ସମଗ୍ର ପୃଥିବୀକୁ ଶୋକାଭିଭୂତ କରି ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ପରବର୍ତ୍ତୀ ଅଧ୍ୟାୟରେ ଏହି ଦୁର୍ଘଟଣାର ପରିଣାମ ବିଜୁ ବାବୁଙ୍କ ଭାଗ୍ୟରେ କିପରି ବିପର୍ଯ୍ୟୟ ଘଟାଇଲା ସେ ସଂପର୍କରେ ସୂଚନା ଦେବା ପାଇଁ ଉଦ୍ୟମ କରିବି । ଏ ସମ୍ପର୍କରେ ମୁଁ ଏଠାରେ ସ୍ପଷ୍ଟ କରିଦେବାକୁ ଚାହେଁ ଯେ, ବିଜୁ ବାବୁଙ୍କ ଜୀବନ ସଂଗ୍ରାମ, ତାଙ୍କ ସାହସିକ ପଦକ୍ଷେପ, ଦେଶପ୍ରେମ ଓ ସ୍ୱାଧୀନତା ସଂଗ୍ରାମ ପରବର୍ତ୍ତୀ ଦେଶ ଗଠନ କାର୍ଯ୍ୟକ୍ରମ ଉପରେ ତଥ୍ୟଭିତ୍ତିକ ଗବେଷଣା କରିବାର ଆବଶ୍ୟକତା ଅନେକ ଅନୁଭବ କରୁଛନ୍ତି । ଭବିଷ୍ୟତ ପିଢ଼ିକୁ ପ୍ରେରଣା ଦେବା ପାଇଁ ଏକ ତଥ୍ୟଭିତ୍ତିକ ବିଜୁବାବୁଙ୍କ ଜୀବନୀ ଉପରେ ଗ୍ରନ୍ଥ ପ୍ରକାଶ କଲେ ଏହି ମହାନ ଜନନେତାଙ୍କର ଜୀବନ ଅଧିକ ପ୍ରେରଣା ଦାୟକ ହେବ ଏଥିରେ ସନ୍ଦେହ ନାହିଁ । ବହୁ ଚର୍ଚ୍ଚିତ ନୀଳମଣି ବାବୁଙ୍କ ଆତ୍ମଜୀବନୀରେ ବିଜୁବାବୁଙ୍କ ସଂପର୍କରେ ଯାହା ପ୍ରକାଶ ପାଇଛି ତାହା କେଉଁ ପରିସ୍ଥିତିରେ କେଉଁ ପରିପ୍ରେକ୍ଷୀରେ ଘଟିଲା ତା'ର ପୂର୍ବାପର

ସମ୍ପର୍କୀୟ ତଥ୍ୟ ପ୍ରକାଶ ନକରି କେବଳ ଅନେକ କଥା ଅତିରଞ୍ଜିତ ଓ ସମ୍ଭବତଃ ତ୍ରୁଟିପୂର୍ଣ୍ଣ ବିଚାର ଉପରେ ପ୍ରତିଷ୍ଠିତ ବୋଲି ମୋର ମନେ ହୁଏ । ନୀଳମଣି ଯେପରି ଆକ୍ଷେପମୂଳକ ଓ ଗାମ୍ଭୀର୍ଯ୍ୟହୀନ ଭାଷାରେ ବିଜୁବାବୁଙ୍କ ଉପରେ ମନ୍ତବ୍ୟ ଦେଇଛନ୍ତି ବୋଧହୁଏ ବିଜୁବାବୁଙ୍କ ପ୍ରତି ନ୍ୟାୟ ବିଚାର ହୋଇନାହିଁ ଓ ସେଇ ସବୁ ମନ୍ତବ୍ୟ ରୁଚିହୀନ ବୋଲି ମୋର ବ୍ୟକ୍ତିଗତ ମତ ।

ନୀଳମଣିବାବୁ ବିଜୁବାବୁଙ୍କର ଜଣେ ଅତ୍ୟନ୍ତ ବିଶ୍ୱସ୍ତ ବ୍ୟକ୍ତି । ସେ କେନ୍ଦ୍ରରେ କ୍ୟାବିନେଟ ମନ୍ତ୍ରୀ ଓ ରାଜ୍ୟର ମୁଖ୍ୟମନ୍ତ୍ରୀ ହେବାର ସୁଯୋଗ ପାଇଥିଲେ । ତାଙ୍କୁ ଜଣେ ଅତି ନିକଟରୁ ଦେଖିଥିବା ଏବଂ ଏବେ ମଧ୍ୟ ଅତ୍ୟନ୍ତ ଘନିଷ୍ଠ ବ୍ୟକ୍ତିଗତ ସଂପର୍କ ରଖିଥିବା ବଂଧୁ ଭାବରେ ମୋ ମତରେ ସେ ବିଭିନ୍ନ ପରିସ୍ଥିତିର ଶିକାର ହୋଇ କଂଗ୍ରେସ ଦଳ ତ୍ୟାଗ କରି ପ୍ରଗତି ଦଳ, ଜନତା ଦଳରେ ଯୋଗ ଦେଇ ପୁନର୍ବାର କଂଗ୍ରେସକୁ ଫେରିଲା ପରେ ମଧ୍ୟ, କଂଗ୍ରେସ ଦଳରେ ବେଶିଦିନ ନିଜକୁ ଆଡଜଷ୍ଟ କରିନପାରି ଶେଷରେ କଂଗ୍ରେସ ଦଳରୁ ଦୂରେଇ ଯାଇ ଜଣେ ନୀରବ ଦ୍ରଷ୍ଟା ଭାବେ ଶେଷ ଜୀବନରେ ବିଶ୍ରାମ କରୁଛନ୍ତି । ରାଜ୍ୟର ଶ୍ରୀବୃଦ୍ଧି ସାଧନରେ ବା ରାଜ୍ୟ ରାଜନୀତିକ ପ୍ରାଙ୍ଗଣରେ ଦୁଇ ନମ୍ବର ସ୍ଥାନ ଅଧିକାର ପରେ ମୁଖ୍ୟମନ୍ତ୍ରୀ ହେବା ପାଇଁ ତାଙ୍କର ଲକ୍ଷ୍ୟ ହାସଲରେ ବିଜୁବାବୁଙ୍କ ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା ଏକଥା ସେ ବୋଧହୁଏ ତାଙ୍କ ଆତ୍ମଜୀବନୀରେ ସଠିକ ଭାବେ ପ୍ରକାଶ କରି ବିଜୁବାବୁଙ୍କ ପ୍ରତି କୃତଜ୍ଞତା ପ୍ରକାଶ କରିବା ଉଚିତ ଥିଲା । ସେ ନିଜକୁ ବିଜୁବାବୁଙ୍କ ସମକକ୍ଷ ନେତା ଭାବେ ଧରିନେଇ ବିଜୁବାବୁଙ୍କ ତ୍ରୁଟି ଓ ବିଚ୍ୟୁତିକୁ ଅଧିକ ଗୁରୁତ୍ୱ ଦେଇଥିଲେ ।

ରାଜ୍ୟର ପ୍ରଶାସନରେ ଶୀର୍ଷ ସ୍ଥାନରେ ଥିବା ଅବସ୍ଥାରେ ବିଜୁବାବୁଙ୍କ ବିଶ୍ୱସ୍ତ ରହି ତାଙ୍କର ସମସ୍ତ ସମର୍ଥନ ଓ ସହଯୋଗରେ ନିଜର ସ୍ଥିତିକୁ ସୁଦୃଢ଼ କରି ଅବସର ନେବା ବେଳକୁ ତାଙ୍କ ସଂପର୍କରେ ଏପରି କଟୁ ମନ୍ତବ୍ୟ ଦେବା କେତେଦୂର ଯୁକ୍ତିଯୁକ୍ତ ସେ ବୋଧହୁଏ ହୃଦୟଙ୍ଗମ କରି ପାରିନାହାନ୍ତି ବୋଲି ମୋର ବିଶ୍ୱାସ । କିନ୍ତୁ ବଂଧୁ ଭାବରେ ସେ ଜଣେ ଉଚ୍ଚକୋଟୀର ବିଚାର ସମ୍ପନ୍ନ ବ୍ୟକ୍ତି, ଅତ୍ୟନ୍ତ ବିଶ୍ୱସ୍ତ ଓ ଅନ୍ତରଂଗ ଭାବରେ ମୁଁ ତାଙ୍କୁ ଅତି ନିକଟରୁ ଦେଖିଥିବାରୁ ଏବଂ ତାଙ୍କ ଅତି ବିଶ୍ୱସ୍ତ ସହକର୍ମୀ ମୋର ସାନ ଭାଇ ସଦୃଶ ଶ୍ରୀ ଶଶୀ ଭୂଷଣ ମିଶ୍ର ଓ ଅନ୍ୟମାନେ ମଧ୍ୟ ଆଲୋଚନା ବେଳେ ନୀଳମଣି ବାବୁଙ୍କ ମନର ଗ୍ଲାନି ସଂପର୍କରେ ଅନେକ କଥା କହି ତାଙ୍କୁ ସମର୍ଥନ ଜଣାଉଥିଲେ ମଧ୍ୟ, ବହୁ କଂଗ୍ରେସ ଓ ଜନତା ଦଳ କର୍ମୀ ତାଙ୍କ ସହିତ ଏକମତ ହୋଇ ପାରୁନଥିଲେ । ସେଥିପାଇଁ ୧୯୮୫ ମସିହା ପରଠାରୁ ନୀଳମଣିବାବୁଙ୍କର ସ୍ଥାନ ଉଭୟ କଂଗ୍ରେସ ଦଳ ଓ ଜନତା ଦଳରେ ବିଶେଷ ପ୍ରଭାବ ପକାଇବାରେ ସମର୍ଥ ହୋଇପାରିନଥିଲା ଓ ସେଇଦିନଠାରୁ ରାଜନୀତିରେ ତାଙ୍କର ସ୍ଥାନ କ୍ରମଶଃ ମଳିନ

ପଡି ସ୍ୱାସ୍ଥ୍ୟ କାରଣରୁ ବର୍ତ୍ତମାନ ଅତି ଅସହାୟ ଅବସ୍ଥାରେ ଅଛନ୍ତି । ଆଖି ଅପରେଶନ ପରେ ମଧ୍ୟ ଭଲ ଦୃଶ୍ୟ ହେଉନାହିଁ । ବାହାରକୁ ବିଶେଷ ଆସୁନାହାନ୍ତି । ମୋର ବୟସ ଓ ସ୍ୱାସ୍ଥ୍ୟ ଦୃଷ୍ଟିରୁ ମୁଁ ମଧ୍ୟ ଏବେ ତାଙ୍କ ପାଖକୁ ଆଗପରି ଯିବା ବା ସଂପର୍କ ରଖିବା ସମ୍ଭବପର ହୋଇପାରୁନାହିଁ । କିନ୍ତୁ ବ୍ୟକ୍ତିଗତ ସଂପର୍କ ଓ ଆମ ଭିତରେ ଥିବା ପରସ୍ପର ପ୍ରତି ସହୃଦୟତା ଅବ୍ୟାହତ ରହିଥିବ ଉଭୟଙ୍କର ଶେଷ ନିଃଶ୍ୱାସ ଥିବା ପର୍ଯ୍ୟନ୍ତ । ତାଙ୍କ ସ୍ୱାସ୍ଥ୍ୟ ଭଲ ରହୁ ଓ ସେ ସକ୍ରିୟ ରହନ୍ତୁ ଏହା ହିଁ ଜଗନ୍ନାଥଙ୍କ ପାଖେ ପ୍ରାର୍ଥନା ।

ମୁଁ ଆଗରୁ ସୂଚନା ଦେଇଛି ବିଜୁ ବାବୁ ୧୯୬୪ ଅଧିବେଶନ ପରେ ଏକ ବିରୋଧ ବାତାବରଣର ସମ୍ମୁଖୀନ ହେଲେ । କଂଗ୍ରେସ ଅଧିବେଶନ ତାଙ୍କରି ନେତୃତ୍ୱରେ ବିରାଟ ସଫଳତା ହାସଲ କରି ଏକ ଐତିହାସିକ ଆଦର୍ଶକୁ ଦିଗ୍‌ଦର୍ଶନ ଦେବାରେ ସମର୍ଥ ହେଲେ ସୁଦ୍ଧା ବିଧାତାର ବିଚାର ଥିଲା ଅନ୍ୟ ପ୍ରକାର । କଂଗ୍ରେସ ଦଳ ଭିତରେ ତାଙ୍କର ଅମାପ ପ୍ରଭାବ ଥିଲେ ସୁଦ୍ଧା, ଜନାଦେଶ ତାଙ୍କୁ ବିରୋଧ କରିବାକୁ ଦାନା ବାନ୍ଧିଲା । ଦିଲ୍ଲୀରେ ମଧ୍ୟ କଂଗ୍ରେସର ସିଣ୍ଡିକେଟ ଗୋଷ୍ଠୀ ବିଶେଷ କରି ଡଃ ସଂଜୀବ ରେଡ୍ଡୀ, ଶ୍ରୀ କାମରାଜ ନାଦର, ଶ୍ରୀମତି ଇନ୍ଦିରା ଗାନ୍ଧୀ, ମହାରାଷ୍ଟ୍ରର ବିଖ୍ୟାତ କଂଗ୍ରେସ ନେତା ଏସ.କେ.ପାଟିଲ ପ୍ରଭୃତିଙ୍କୁ ତାଙ୍କ ବିରୁଦ୍ଧରେ ହେଉଥିବା ପ୍ରଶାସନିକ ଅଭିଯୋଗ ଓ ତାଙ୍କର କେନ୍ଦ୍ର ନିର୍ଦ୍ଦେଶକୁ ବେଖାତିର ପଣିଆ ସ୍ୱଭାବ ଓ କେନ୍ଦ୍ର ନେତାମାନଙ୍କୁ ତାଚ୍ଛଲ୍ୟ ଭାବ ବହୁ ଅସୁବିଧା ପରିସ୍ଥିତିରେ ପହଞ୍ଚାଇଥିଲା ।

ଡଃ ହରେକୃଷ୍ଣ ମହତାବ କଂଗ୍ରେସରେ ଥିଲେ ମଧ୍ୟ କ୍ଷମତାରୁ ଓହରିଯାଇ କେବଳ ସାହିତ୍ୟ, ସଂସ୍କୃତି କ୍ଷେତ୍ରରେ ଅଧିକ ସମୟ ବିନିଯୋଗ କରି ଗାଁ ମଜଲିସ୍ ଜରିଆରେ ତାଙ୍କର ବଳିଷ୍ଠ ଲେଖା ଦ୍ୱାରା ବିଜୁବାବୁଙ୍କ ବିରୁଦ୍ଧରେ ଜନମତକୁ ଉତ୍ତେଜିତ କରିବାରେ ସଫଳତା ଅର୍ଜନ କଲେ । ଏହିପରି ଏକ ରାଜନୀତି କ୍ଷେତ୍ରରେ କ୍ରମଶଃ ଏକ ଶୂନ୍ୟତା ପରିଲକ୍ଷିତ ହେବାକୁ ଲାଗିଲା । ତାର ସୁଯୋଗ ନେଲେ ବିରୋଧି ଦଳମାନେ ଯେଉଁମାନେ ବିଜୁ ବାବୁଙ୍କ ପ୍ରଭାବରେ ସଂପୂର୍ଣ୍ଣ ମଳିନ ହୋଇଯାଇଥିଲେ ରାଜନୈତିକ କ୍ଷେତ୍ରରୁ । ଠିକ୍ ଏହି ପରିପ୍ରେକ୍ଷୀରେ ବିଜୁବାବୁଙ୍କ ବିରୁଦ୍ଧରେ ପ୍ରେରିତ ମେମୋରାଣ୍ଡମ ଉପରେ ସୁପ୍ରିମକୋର୍ଟ ବିଚାରପତି ଏଚ.ଆର. ଖାନ୍ନାଙ୍କୁ ଜଣିକିଆ କମିଶନ ରୂପେ ନିଯୁକ୍ତି ଦିଆଗଲା ଅଭିଯୋଗର ଯଥାର୍ଥତା ନେଇ ଏକ ରିପୋର୍ଟ ଦେବାପାଇଁ । ଏହି ସମୟ ବେଳକୁ ସିଣ୍ଡିକେଟ କଂଗ୍ରେସ କାମରାଜଙ୍କ ନେତୃତ୍ୱରେ ଏକ ଶକ୍ତିଶାଳୀ ଗୋଷ୍ଠୀ ରୂପେ କଂଗ୍ରେସ ସଂଗଠନକୁ ଅକ୍ତିଆର କରି ସାରିଲାଣି । ପଣ୍ଡିତ ନେହେରୁଙ୍କ ବିୟୋଗ ଫଳରେ ବିଜୁବାବୁଙ୍କ ପାଇଁ ଯେଉଁ ବିରାଟ

ଆଶ୍ରୟସ୍ଥଳୀ ଥିଲା ତାହା ରହିଲା ନାହିଁ । ବିଜୁବାବୁଙ୍କର ନିଜକୁ ରକ୍ଷା କରି କେନ୍ଦ୍ର ଓ ରାଜ୍ୟ ଉଭୟ ଆହ୍ୱାନକୁ ମୁକାବିଲା କରିବାର ଦୁଃସାହସ ଫଳରେ ବେଳେ ବେଳେ ଏପରି ଅନାବଶ୍ୟକୀୟ ବିବୃତି ଓ କେନ୍ଦ୍ର ନେତୃତ୍ୱ ପ୍ରତି ଏକ ଅବାଞ୍ଛନୀୟ ପରିସ୍ଥିତିକୁ ଟାଣିନେବାର ସୂଚନା ଆମେ ସବୁ ଉପଲବ୍ଧି କଲେ ସୁଦ୍ଧା ତାଙ୍କ ପ୍ରତି ଆମର ଅକୁଣ୍ଠ ସମର୍ଥନ ଅବ୍ୟାହତ ଥାଏ ଏବଂ ଆମେ ପରେ ସବୁ ପରିସ୍ଥିତିର ସମ୍ମୁଖୀନ ହେବୁ ଏବଂ ବିଜୁବାବୁ କଂଗ୍ରେସରେ ଥିବା ପର୍ଯ୍ୟନ୍ତ ତାଙ୍କ ନେତୃତ୍ୱକୁ ସ୍ୱୀକାର କରିବୁ – ଏହା ଥାଏ ଆମର ସିଦ୍ଧାନ୍ତ । ସେତେବେଳକୁ, ଜାନକୀ ବାବୁ ପ୍ରଜାତନ୍ତ୍ର ସଂପାଦକ ଭାବେ ଥାଇ ମହତାବ ବାବୁଙ୍କ ପଦାଙ୍କ ଅନୁସରଣ କରି ବିଜୁବାବୁଙ୍କ ବିରୁଦ୍ଧରେ ଶତମୁଖ ହୋଇ ତାଙ୍କର ଶକ୍ତିଶାଳୀ ଲେଖନୀ ପରିଚାଳନା କରିବାରେ ପଛାଉ ନଥାନ୍ତି । ମହତାବ ବାବୁ ବିଜୁ ବିରୋଧୀ ଆନ୍ଦୋଳନରେ ଇନ୍ଦିରା ଗାନ୍ଧୀଙ୍କ ସହଯୋଗ ନପାଇ କ୍ଷମତାରୁ ଅନ୍ତର ହେବା ପରେ ଇନ୍ଦିରା ବିରୋଧୀ ଗୋଷ୍ଠୀ, ସଂଜୀବ ରେଡ୍ଡୀ କାମରାଜଙ୍କ ଆଡକୁ ଢଳିଲେ ଓ ଲେଖାମାନ ପ୍ରକାଶ କରିବାକୁ ପଛେଇଲେ ନାହିଁ । ଏଚ.ଆର.ଖାନା ତାଙ୍କର ଅନୁସଂଧାନ ଆରମ୍ଭ କଲେ । ତତ୍‌କାଳୀନ ମନ୍ତ୍ରିମଣ୍ଡଳର ପ୍ରାୟ ସମସ୍ତ ସଭ୍ୟ, ସ୍ୱର୍ଗତ ସତ୍ୟପ୍ରିୟ ମହାନ୍ତି, ଶ୍ରୀ ସନ୍ତୋଷ ସାହୁ, ନୀଳମଣି ରାଉତରା, ବିରେନ ମିତ୍ର (ତତ୍‌କାଳୀନ ମୁଖ୍ୟମନ୍ତ୍ରୀ) ପ୍ରମୁଖ ଅନେକ କଂଗ୍ରେସ ନେତା ମଧ୍ୟ କମିଶନରେ ଅଭିଯୁକ୍ତ ହୋଇଥାଆନ୍ତି । ମୁଁ, ବିବୁଧେନ୍ଦ୍ର ମିଶ୍ର, ସୂରଜମଲ ସାହା ଓ ତତ୍‌କାଳୀନ ବହୁ ଆଇନଜୀବୀଙ୍କ ସହଯୋଗ ପାଇ ବିଜୁବାବୁ ଓ ତାଙ୍କ ସହଯୋଗୀମାନଙ୍କ ବିରୋଧରେ ଭ୍ରଷ୍ଟାଚାର ଅଭିଯୋଗର ଅନୁସଂଧାନ ବେଳେ ଅଭିଯୁକ୍ତମାନଙ୍କର ପକ୍ଷ ସମର୍ଥନ କରିବା ପାଇଁ ଅଣ୍ଟା ଭିଡ଼ିଲୁ । ଆଇନ ବ୍ୟବସାୟରେ ପ୍ରଥମ ଅଭିଜ୍ଞତା ଏପରି ଏକ ବିରାଟ ଅଭିଯୋଗ ବିରୁଦ୍ଧରେ ଆଇନଜୀବୀ ଭାବରେ ବିଜୁବାବୁ ଓ ତାଙ୍କ ସହିତ ଅଭିଯୁକ୍ତମାନଙ୍କ ପକ୍ଷ ସମର୍ଥନ କରି ଏକ ରାଜନୀତି-ପ୍ରତିହିଂସା-ପରାୟଣ ଦୋଷରେ ମୂଲ୍ୟହୀନ ଓ ଦାୟିତ୍ୱହୀନ ଅଭିଯୋଗ ବୋଲି ସାବ୍ୟସ୍ତ କରିବା ପାଇଁ ସୁଯୋଗ ମିଳିଲା । ପ୍ରତ୍ୟେକ ଦିନ ଖବରକାଗଜମାନଙ୍କରେ ପ୍ରମାଣ ସବୁ ପ୍ରଚାରିତ ହେଉଥାଏ । ଅଭିଯୋଗ ଯାହା ହେଉନା କାହିଁକି ବିଜୁବାବୁଙ୍କ ନେତୃତ୍ୱ ଓ ରାଜ୍ୟ କଂଗ୍ରେସକୁ ଜନ ବିରୋଧୀ ସାବ୍ୟସ୍ତ କରିବାରେ ସଫଳତା ମିଳିଲା ପ୍ରାୟ ଦୁଇବର୍ଷ ପରେ । ଭୁବନେଶ୍ୱର ଓ ଦିଲ୍ଲୀରେ ଲମ୍ବା ଶୁଣାଣୀ ପରେ ବିଚାରପତି ଖାନ୍ନା ସାହେବ ଏକ ଦୁଇ-ଭଲ୍ୟୁମ ବିଶିଷ୍ଟ ବିରାଟ ପୁସ୍ତକରେ ତାଙ୍କ ନିଷ୍ପତ୍ତି ପ୍ରତ୍ୟେକ ଅଭିଯୁକ୍ତଙ୍କ ବିରୋଧରେ ଉଲ୍ଲେଖ କରି ଘୋଷଣା କଲେ ଯେ କୌଣସି ଭ୍ରଷ୍ଟାଚାର ଅଭିଯୋଗର ପ୍ରାମାଣିକ ଯଥାର୍ଥତା ନାହିଁ ବା ଭିତ୍ତି ନାହିଁ । କିନ୍ତୁ ଅନ୍ୟ ସମସ୍ତ ଅଭିଯୁକ୍ତଙ୍କୁ ସଂପୂର୍ଣ୍ଣ ଭାବେ ଅଭିଯୋଗମୁକ୍ତ କରି ବିଜୁ ବାବୁ ଓ ବିରେନ ମିତ୍ରଙ୍କୁ ପ୍ରଶାସନିକ ଅଯୌକ୍ତିକତା

ଦୋଷରେ ଦୂଷିତ ବୋଲି ପ୍ରକାଶ କଲେ । Administrative impropriety ଦୋଷରେ ସେମାନଙ୍କ ବିରୁଦ୍ଧରେ ଖାନ୍ନାଙ୍କ ସ୍ପଷ୍ଟମତକୁ ଭିତ୍ତି କରି ସେ ଉଚ୍ଚ କ୍ଷମତାରେ ରହିବା ଅନୁଚିତ ବୋଲି ଦାବି କରି ତାଙ୍କ ବିରୁଦ୍ଧରେ ପୁଣି ଅଭିଯାନ ଆରମ୍ଭ ହେଲା । ସେତେବେଳକୁ କେନ୍ଦ୍ର କଂଗ୍ରେସ ହାଇକମାଣ୍ଡରେ ମଧ୍ୟ ମତାନ୍ତର ପ୍ରକାଶ ପାଉଥାଏ । ସିଣ୍ଡିକେଟ ଗୋଷ୍ଠୀ, କର୍ଣ୍ଣାଟକର ନେତା ମିଃ ନିଜଲିଙ୍ଗପ୍ପା ସେତେବେଳକୁ କଂଗ୍ରେସ ସଭାପତି । ସେମାନେ କ୍ଷମତାରେ ରହି ଏସ.କେ.ପାଟିଲଙ୍କ ପ୍ରଖର ବୁଦ୍ଧି ଓ ସଂଗଠନ ଶକ୍ତିର ସୁଯୋଗ ନେଇ ଡଃ ସଂଜୀବ ରେଡ଼ି ଏପରି କି କାମରାଜ ନାଦରଙ୍କ ପରି ପ୍ରତିପତ୍ତିଶାଳୀ ନେତାମାନେ ଇନ୍ଦିରାଗାନ୍ଧୀଙ୍କ କ୍ରମବର୍ଦ୍ଧମାନ ଶକ୍ତିକୁ ମୁକାବିଲା କରି ଜାତୀୟ କଂଗ୍ରେସକୁ ପ୍ରଭାବିତ କରିବା ପାଇଁ ଆପ୍ରାଣ ଉଦ୍ୟମ କରୁଥାଆନ୍ତି । କିନ୍ତୁ ଓଡ଼ିଶାରେ ତାଙ୍କର ଶକ୍ତି ବିଶେଷ ନଥାଏ, କାରଣ ବିଜୁବାବୁଙ୍କୁ ସମର୍ଥନ ଜଣାଇ ଯେଉଁ ଗୋଷ୍ଠୀ ତାଙ୍କୁ ଏ ଅନିଶ୍ଚିତ ଅବସ୍ଥାରୁ ମୁକ୍ତି ଦେଇ ପାରିବ ସେଇ ଗୋଷ୍ଠୀକୁ ଓଡ଼ିଶା ସାହାଯ୍ୟ କରିବ ବୋଲି ଆମର ସିଦ୍ଧାନ୍ତ ଚୂଡ଼ାନ୍ତ ହୋଇଥାଏ । ଆମର ଦାବିକୁ ଓ ଓଡ଼ିଶାରେ କଂଗ୍ରେସ ସଂଗଠନ ବିଜୁବାବୁଙ୍କ ନେତୃତ୍ୱରେ ପରିଚାଳିତ ହେଉଥିବା ହେତୁ ବିଜୁବାବୁଙ୍କ ବିରୋଧରେ କୌଣସି କାର୍ଯ୍ୟାନୁଷ୍ଠାନ ନକରି ଖାନ୍ନା କମିଶନଙ୍କ ଆଡମିନିଷ୍ଟ୍ରେଟିଭ୍ ଇମ୍‌ପ୍ରୋପାଇଟି ମନ୍ତବ୍ୟର ରାଜନୈତିକ ତାତ୍ପର୍ଯ୍ୟ ବହୁ ସୁଦୂରପ୍ରସାରୀ ହେବ ଓ କଂଗ୍ରେସର ବିନାଶ ସାଧନ ଘଟାଇବ ବୋଲି ଆମମାନଙ୍କ ଯୁକ୍ତିଯୁକ୍ତ ଦାବିକୁ ନିଜଲିଙ୍ଗପ୍ପାଙ୍କ 'ଗୋଷ୍ଠୀ ଗ୍ରହଣ କରି ଏକ କ୍ୟାବିନେଟ୍ ସବ୍ କମିଟି ତତ୍‌କାଳୀନ କେନ୍ଦ୍ର ଆଇନ ମନ୍ତ୍ରୀ ବମ୍ବେ ହାଇକୋର୍ଟର ପୂର୍ବତନ ମୁଖ୍ୟ ବିଚାରପତିଙ୍କ ନେତୃତ୍ୱରେ ଅନ୍ୟ ଦୁଇ ଜଣ କେନ୍ଦ୍ର ମନ୍ତ୍ରୀଙ୍କୁ ନେଇ ଗଠନ କଲେ । ସେମାନେ ବିଚାରପତି ଖାନ୍ନାଙ୍କ ନିଷ୍ପତ୍ତିକୁ ବିଚାରକୁ ନେଇ ଶେଷ ସିଦ୍ଧାନ୍ତ ଦେଲେ ଯେ ଏହି ନିଷ୍ପତ୍ତି ନ୍ୟାୟୋଚିତ ଏବଂ ଏହାର ଯୁକ୍ତିଯୁକ୍ତତା ଓ ବୈଧତା ଉପରେ ପ୍ରଶ୍ନ କରାଯାଇନପାରେ । ପୁଣି ମତ ଦେଲେ ଯେ ଏପରି ଜଣେ ବରିଷ୍ଠ ବିଚାରପତିଙ୍କ ନିଷ୍ପତ୍ତିର ଏକମାତ୍ର ପରିଣତି ହେଉଛି ବିଜୁ ଓ ବିରେନ ମିତ୍ର କୌଣସି କ୍ଷମତାର ଅଧିକାରୀ ହେବା ପାଇଁ ଅଯୋଗ୍ୟ । (Both of them are not eligible to occupy any high position of responsibility.) କ୍ୟାବିନେଟ୍ ସବ୍ କମିଟିର ଏହି ନିଷ୍ପତ୍ତି ଫଳରେ ବିଜୁ ବାବୁ ରାଜ୍ୟ ଯୋଜନା ବୋର୍ଡର ଅଧ୍ୟକ୍ଷ ପଦରୁ ଓ ବିରେନ ମିତ୍ର ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଲେ ଓ ପରେ ପରେ ସ୍ୱର୍ଗତ ସଦାଶିବ ତ୍ରିପାଠୀ ସିନିଅରମୋଷ୍ଟ ମନ୍ତ୍ରୀ ଭାବେ ଥାଇ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେଲେ । ଏହି ପରିସ୍ଥିତି ୧୯୬୭ ମସିହାର ।

ଏହିପରି ଏକ ଅସ୍ୱାଭାବିକ ରାଜନୈତିକ ପରିପ୍ରେକ୍ଷୀରେ ୧୯୬୭ ମସିହା ସାଧାରଣ ନିର୍ବାଚନ ଆରମ୍ଭ ହୁଏ । କେନ୍ଦ୍ରରେ ଶ୍ରୀମତି ଇନ୍ଦିରା ଗାନ୍ଧୀଙ୍କର ମୁକାବିଲା

ସିଣ୍ଡିକେଟ ଗୋଷ୍ଠୀ ସହିତ । ଶ୍ରୀମତି ଗାନ୍ଧୀଙ୍କୁ କଂଗ୍ରେସ କର୍ତ୍ତୃତ୍ୱରୁ ହଟାଇବା ପାଇଁ ଏହି ଗୋଷ୍ଠୀ ଆପ୍ରାଣ ଉଦ୍ୟମ କରୁଥାଆନ୍ତି । ତାମିଲନାଡୁର ପ୍ରମୁଖ କଂଗ୍ରେସ ନେତା ଓ କେନ୍ଦ୍ର ସରକାରଙ୍କ ଅର୍ଥମନ୍ତ୍ରୀ ଶ୍ରୀ ସୁବ୍ରମନିୟମ ଓ ଭାରତର ସୁପ୍ରସିଦ୍ଧ ହରିଜନ ସଂପ୍ରଦାୟର ନେତା, ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଓ କେନ୍ଦ୍ର ରେଳବାଇ ମନ୍ତ୍ରୀ ଶ୍ରୀ ଜଗତ ଜୀବନ ରାମ ଇନ୍ଦିରା ଗାନ୍ଧୀଙ୍କୁ ସମର୍ଥନ କରୁଥିବା ବେଳେ ସ୍ୱର୍ଗତ ମୋରାରଜି ଭାଇ ଦେଶାଇ, ମହାରାଷ୍ଟ୍ର ନେତା ଏସ.କେ. ପାଟିଲ, ଡକ୍ଟର ସଂଜୀବ ରେଡ୍ଡି, କର୍ଣ୍ଣାଟକର ପ୍ରବୀଣ ନେତା ନିଜଲିଙ୍ଗପ୍ପା, ଉତ୍ତରପ୍ରଦେଶର ମୁଖ୍ୟମନ୍ତ୍ରୀ ତଥା ବିଶିଷ୍ଟ ନେତା ଚନ୍ଦ୍ରଭାନୁ ଗୁପ୍ତ ପ୍ରଭୃତି କଂଗ୍ରେସର ବର୍ଷୀୟାନ ନେତାମାନେ ଶ୍ରୀମତି ଇନ୍ଦିରା ଗାନ୍ଧୀଙ୍କୁ ଭୀଷଣ ବିରୋଧ କରି କଂଗ୍ରେସରୁ ବହିଷ୍କାର କରିବା ପାଇଁ ପ୍ରବଳ ଉଦ୍ୟମ କରୁଥାଆନ୍ତି । ଓଡିଶାରେ ବିଜୁବାବୁଙ୍କ ବିରୋଧରେ ଡଃ ହରେକୃଷ୍ଣ ମହତାବ, ପ୍ରଜାତନ୍ତ୍ର ପ୍ରଚାର ସମିତି ଗୋଷ୍ଠୀର ଜାନକୀ ବଲ୍ଲଭ ପଟ୍ଟନାୟକ, ବନମାଳୀ ପଟ୍ଟନାୟକ ପ୍ରଭୃତି ତାଙ୍କୁ ବାହାର କରିଦେବା ପାଇଁ ମଧ୍ୟ ସଂଗ୍ରାମ ଚଳାଉ ଥାଆନ୍ତି । ଅନ୍ୟାନ୍ୟ ରାଜ୍ୟରେ ମଧ୍ୟ କଂଗ୍ରେସ ଦଳରେ ଘୋର ବିଭ୍ରାଟ । ଏହି ଲଢେଇ ଚରମ ସୀମାରେ ପହଞ୍ଚି ଶେଷରେ ଇନ୍ଦିରା ଗାନ୍ଧୀଙ୍କ ବିରୁଦ୍ଧରେ ସିଣ୍ଡିକେଟ ଗୋଷ୍ଠୀ ତାଙ୍କୁ କଂଗ୍ରେସ ଦଳରୁ ଶୃଙ୍ଖଳାଗତ ଶାସ୍ତିବିଧାନର ନୋଟିସ ଦେଲେ । ଶ୍ରୀମତି ଗାନ୍ଧୀଙ୍କ ସପକ୍ଷରେ କିନ୍ତୁ ଅଧିକ ଜନମତ ବିଶେଷ କରି ସମାଜବାଦୀ ଚିନ୍ତାଧାରାର କଂଗ୍ରେସ ନେତା, ଯୁବକ ସଂପ୍ରଦାୟ ଏହି ସଂଗ୍ରାମକୁ ଶେଷ ପର୍ଯ୍ୟାୟକୁ ନେଇ ଏପରି ପରିସ୍ଥିତି ସୃଷ୍ଟି କଲେ ଯେ ଶେଷରେ କଂଗ୍ରେସ ବିଭାଜନ ଆଡକୁ ମୁହାଁଇଲା । ଏପରି ଏକ ଐତିହାସିକ ପରିସ୍ଥିତିରେ ଓଡିଶାରେ ମଧ୍ୟ ସେହିପରି ଦୁର୍ଭାଗ୍ୟଜନକ ପରିସ୍ଥିତି । ମହତାବ ବାବୁ ଶ୍ରୀମତି ଗାନ୍ଧୀଙ୍କ ସହିତ ନ ରହି ମୋରାରଜୀ ଦେଶାଇଙ୍କୁ ସମର୍ଥନ ଜଣାଉଥିଲେ ତାଙ୍କ ସମର୍ଥକମାନଙ୍କୁ ନେଇ । ମହତାବ ବାବୁଙ୍କ ଗୋଷ୍ଠୀରେ ସେତେବେଳକୁ ଜାନକୀ ବାବୁଙ୍କ ପ୍ରଭାବ କ୍ରମଶଃ ବଢୁଥାଏ । ଜାନକୀ ବାବୁ ସେତେବେଳକୁ ଧର୍ମଶାଳା ନିର୍ବାଚନ ମଣ୍ଡଳୀରୁ ୧୯୬୧ ନିର୍ବାଚନରେ ସ୍ୱାଧୀନ ପ୍ରାର୍ଥୀ ଭାବରେ ପ୍ରତିଦ୍ୱନ୍ଦ୍ୱିତା କରି ତାଙ୍କର ଅମାନତ ହରାଇ ସାରିଥିଲେ । କିନ୍ତୁ ପ୍ରଜାତନ୍ତ୍ରର ସଂପାଦକ ଥାଇ ବିଜୁବାବୁଙ୍କ ବିରୋଧରେ ସଂପାଦକୀୟମାନ ଲେଖି ଶ୍ରୀମତି ଗାନ୍ଧୀଙ୍କୁ କଠୋର ସମାଲୋଚନା ପୂର୍ବକ ବିଜୁବାବୁଙ୍କ ନେତୃତ୍ୱ ବିରୋଧରେ 'ବିଜୁ ବିରେନ ଯେଉଁଠି, ମଦ ବୋତଲ ସେଇଠି' ପ୍ରଭୃତି ସ୍ଲୋଗାନମାନ ସୃଷ୍ଟି କରି ତା ସହିତ ଇନ୍ଦିରା ଗାନ୍ଧୀଙ୍କୁ ମଧ୍ୟ କଠୋର ଭାଷାରେ ସମାଲୋଚନା କରୁଥାଆନ୍ତି । ନନ୍ଦିନୀ ଦେବୀ ୧୯୬୪ ଛାତ୍ର ଆନ୍ଦୋଳନ ବେଳେ ଛାତ୍ର ସମାଜର ନେତୃତ୍ୱ ନେଇ କଂଗ୍ରେସ ଦଳ ଭିତରେ ସମାଜବାଦୀ ଗୋଷ୍ଠୀର ଜଣେ ପ୍ରମୁଖ ନାରୀ ନେତ୍ରୀ ଭାବେ

ନିଜକୁ ପ୍ରତିଷ୍ଠା କରିବାରେ ସମର୍ଥ ହୋଇଥିଲେ । ସେ ସିଣ୍ଡିକେଟ ଗୋଷ୍ଠୀର ଘୋର ବିରୋଧି ଥିଲେ । ସମସ୍ତ ସମାଜବାଦୀ ଗୋଷ୍ଠୀ ସେତେବେଳେ ଇନ୍ଦିରାଜୀଙ୍କୁ ପୂର୍ଣ୍ଣ ସମର୍ଥନ କରୁଥିଲେ । ସେମାନଙ୍କ ମତରେ ମୋରାରଜୀ ଥିଲେ ଆମେରିକାନ ପୁଂଜିବାଦର ଏକ ଶକ୍ତିଶାଳୀ ସମର୍ଥକ ଓ ସମାଜବାଦୀ ରାଜନୀତିର ପ୍ରଧାନ ଶତ୍ରୁ । ବିଜୁବାବୁଙ୍କ ପ୍ରମୁଖ ସମର୍ଥକମାନଙ୍କ ମଧ୍ୟରେ ମୁଁ ନୀଳମଣି ରାଉତରା, ବିରେନ ମିତ୍ର, ଭବାନୀ ଚରଣ ପଟ୍ଟନାୟକ, ମଧୁସୂଦନ ନନ୍ଦ ପ୍ରଭୃତି ମୁଖ୍ୟ ଭାବରେ ଥାଉ । ଭବାନୀ ବାବୁ ସେତେବେଳକୁ ରାଜ୍ୟସଭାର ସଦସ୍ୟ । ଆମେ ସବୁ ଶ୍ରୀମତି ଇନ୍ଦିରା ଗାନ୍ଧୀଙ୍କୁ ସମର୍ଥନ ଜଣାଇବା ସହିତ ବିଜୁ ପଟ୍ଟନାୟକ ଶେଷରେ ନିଜର ନେତୃତ୍ୱ ଅବ୍ୟାହତ ରଖିବା ପାଇଁ ଯେଉଁ ନିଷ୍ପତ୍ତି ନେବେ ତାଙ୍କୁ ସମର୍ଥନ କରି କଂଗ୍ରେସର ସେଇ ଗୋଷ୍ଠୀକୁ ସମର୍ଥନ କରିବୁ ବୋଲି ସ୍ଥିର କରିଥାଉ । ଏଇପରି ସାରା ଦେଶରେ କଂଗ୍ରେସରେ ୨ଟି ପ୍ରମୁଖ ଗୋଷ୍ଠୀର ସଂଘର୍ଷ ଓ ଓଡିଶାରେ ବିଜୁବାବୁଙ୍କ ବିରୋଧରେ ଅଭିଯାନ ଭିତରେ ୧୯୬୭ ମସିହା ସାଧାରଣ ନିର୍ବାଚନ ଆରମ୍ଭ ହୁଏ ।

ମୁଁ ସତ୍ୟବାଦୀରୁ କଂଗ୍ରେସ ପ୍ରାର୍ଥୀ ହେବା ପାଇଁ ମନସ୍ଥ କରିଥାଏ । ପଣ୍ଡିତ ନୀଳକଣ୍ଠ ସେତେବେଳକୁ ବୟସ ଦୃଷ୍ଟିରୁ ଓ ସ୍ୱାସ୍ଥ୍ୟ କାରଣ ହେତୁ ପ୍ରାୟ ଅବସର ନେବା ଅବସ୍ଥାରେ । ମହତାବ ବାବୁ ଏହାର ସୁଯୋଗ ନେଇ କଂଗ୍ରେସ ଦଳରୁ ଇସ୍ତଫା ଦେଇ 'ଜନ କଂଗ୍ରେସ' ନାମକ ଏକ ପ୍ରାନ୍ତୀୟ ଦଳ ସୃଷ୍ଟି କଲେ । ପ୍ରବୀଣ ପ୍ରଜା ଆନ୍ଦୋଳନ ନେତା ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ପବିତ୍ର ମୋହନ ପ୍ରଧାନ, ବନମାଳୀ ପଟ୍ଟନାୟକ, ସୁରେନ୍ଦ୍ର ମୋହନ ପଟ୍ଟନାୟକ ପ୍ରମୁଖ ଜନ କଂଗ୍ରେସରେ ଯୋଗ ଦେଇ ବଲାଙ୍ଗୀର ମହାରାଜା ସ୍ୱର୍ଗତ ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ କଳାହାଣ୍ଡି ମହାରାଜା ଶ୍ରୀ ପ୍ରତାପ କେଶରୀ ଦେଓଙ୍କ ନେତୃତ୍ୱରେ ସ୍ୱତନ୍ତ୍ର ପାର୍ଟି ସହିତ ନିର୍ବାଚନ ମେଣ୍ଟ କଲେ । ୧୯୬୭ ମସିହା ନିର୍ବାଚନରେ ଏପରି ଦୁର୍ଭାଗ୍ୟଜନକ ପରିସ୍ଥିତିରେ କେନ୍ଦ୍ରରେ ଓ ଅନେକ ରାଜ୍ୟରେ କଂଗ୍ରେସ ଦଳ ପରାଜୟର ସମ୍ମୁଖୀନ ହେଲା । ଓଡିଶାରେ ବିଜୁ ପଟ୍ଟନାୟକଙ୍କ ଉତ୍କଳ କଂଗ୍ରେସ ଦଳ ୧୪୦ଟି ସ୍ଥାନରୁ କେବଳ ୩୧ଟି ସ୍ଥାନରେ ଜୟଯୁକ୍ତ ହେଲା । ଶ୍ରୀମତି ନନ୍ଦିନୀ ଦେବୀ ମଧ୍ୟ ନିର୍ବାଚନରେ ଢେଙ୍କାନାଳ ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହେଲେ ଓ ତାଙ୍କ ସ୍ୱାମୀ ସ୍ୱର୍ଗତ ଦେବେନ୍ଦ୍ର ଶତପଥୀ ଲୋକସଭାକୁ ନିର୍ବାଚିତ ହେଲେ ଢେଙ୍କାନାଳର ତତ୍କାଳୀନ ରାଜା ବାହାଦୂର ଶଙ୍କର ସିଂ ପ୍ରତାପ ଦେଓଙ୍କ ପୁତ୍ର ଶ୍ରୀ କେ.ପି. ସିଂହଦେଓଙ୍କୁ ପରାସ୍ତ କରି । କେନ୍ଦ୍ର ଲୋକସଭାରେ ମଧ୍ୟ କଂଗ୍ରେସ ପରାଜୟ ସ୍ୱୀକାର କରି ମୋରାରଜୀ ଦେଶାଇଙ୍କ ନେତୃତ୍ୱରେ ଏକ ନୂତନ ସରକାର ଗଠିତ ହେଲା । ହରିୟାନାର ଶ୍ରୀ ଦେବୀଲାଲ ଉପ ପ୍ରଧାନମନ୍ତ୍ରୀ ଓ ସଂଜୀବ ରେଡ୍ଡୀ ପ୍ରଭୃତି କେନ୍ଦ୍ର ମନ୍ତ୍ରୀ ହେଲେ 'ଓ' କଂଗ୍ରେସ ନାମରେ ଏକ ଦଳ ଗଢି । ଏହା

ହେଉଛି ଭାରତ ବର୍ଷର ପ୍ରଥମ ଅଣ କଂଗ୍ରେସ ସରକାର, ୨୦ ବର୍ଷର ସ୍ୱାଧୀନତା ପରେ । ପଣ୍ଡିତଜୀଙ୍କ ବିୟୋଗ ୧୯୬୪ ମସିହା ମେ ମାସ ୨୬ ତାରିଖ । ତତ୍ ପରେ ପ୍ରଧାନମନ୍ତ୍ରୀ ହେଲେ ଶ୍ରୀ ଲାଲ ବାହାଦୂର ଶାସ୍ତ୍ରୀ ଏବଂ ତାଙ୍କ ପରେ ହେଲେ ଶ୍ରୀମତି ଇନ୍ଦିରା ଗାନ୍ଧୀ । ଶ୍ରୀମତି ଗାନ୍ଧୀ ସେତବେଳକୁ କଂଗ୍ରେସ ସଭାନେତ୍ରୀ ଥାଇ କଂଗ୍ରେସ ବିଭାଜନ ହେଲା ପରେ ଜଗଜୀବନ ରାମ କଂଗ୍ରେସ ବୋଲି 'କଂଗ୍ରେସ (ଜେ)' ନାମରେ ପରେ 'କଂଗ୍ରେସ (ଆର)' ଇନ୍ଦିରା କଂଗ୍ରେସ ନାମରେ, ଭାରତବର୍ଷରେ ପରବର୍ତ୍ତୀ ରାଜନୀତିକୁ ଏକ ନୂତନ ମୋଡ ଦେଲା ।

କଂଗ୍ରେସର ଆନୁଷ୍ଠାନିକ ବିଭାଜନ ୧୯୭୧ ନିର୍ବାଚନର ଅବ୍ୟବହିତ ପୂର୍ବରୁ । ସିଣ୍ଡିକେଟ ଗୋଷ୍ଠୀ ଇନ୍ଦିରାଜୀଙ୍କୁ ବହିଷ୍କାର ନୋଟିସ ଦେବା ପରେ, ଇନ୍ଦିରାଜୀ କଂଗ୍ରେସରୁ ଅଲଗା ହୋଇ ସୁବ୍ରମନିଅମଙ୍କ ନେତୃତ୍ୱରେ କଂଗ୍ରେସ୍ (ଏସ୍) ନାମରେ ଏକ ଦଳ ଗଢି ତାହା ହିଁ ପ୍ରକୃତ କଂଗ୍ରେସ ବୋଲି ଘୋଷଣା କରିବା ପରେ ମୋରାରଜୀଙ୍କ ନେତୃତ୍ୱରେ ସିଣ୍ଡିକେଟ ଗୋଷ୍ଠୀ ମୂଳ କଂଗ୍ରେସର ପ୍ରତିନିଧି ଭାବରେ କଂଗ୍ରେସ (ଓ) ଅର୍ଥାତ ସଂଗଠନ କଂଗ୍ରେସ ନାମରେ ଯେଉଁ ଗୋଷ୍ଠୀ ସୃଷ୍ଟି କଲେ ସେଥିରେ କେଉଁ ଗୋଷ୍ଠୀରେ ନ ରହି ଉଭୟ ଗୋଷ୍ଠୀରୁ ସମ ଦୂରରେ ରହି ଓଡିଶାରେ ଏକ ନୂତନ କଂଗ୍ରେସ ସୃଷ୍ଟି ହୁଏ 'ଉତ୍କଳ କଂଗ୍ରେସ' ନାମରେ । ବିଜୁ ବାବୁ ହୁଅନ୍ତି ତାର ଅଦ୍ୱିତୀୟ ନେତା । ଓଡିଶାର ପ୍ରାୟ ୮୦ ଭାଗ କଂଗ୍ରେସ ଲୋକ ଉତ୍କଳ କଂଗ୍ରେସରେ ଯୋଗ ଦିଅନ୍ତି । ଉତ୍କଳ କଂଗ୍ରେସ ବିଜୁବାବୁଙ୍କ ନେତୃତ୍ୱରେ ପ୍ରଥମ ନିଷ୍ପତ୍ତି ନେଲେ ସମସ୍ତେ କଂଗ୍ରେସ ଦଳରେ ରହିବା । କେନ୍ଦ୍ରରେ ଯେଉଁ କଂଗ୍ରେସ ଶକ୍ତିଶାଳୀ ହୋଇ ଅଧିକାଂଶ କଂଗ୍ରେସ ଲୋକଙ୍କ ସମର୍ଥନ ଲାଭ କରିବ ସେହି କଂଗ୍ରେସରେ ଉତ୍କଳ କଂଗ୍ରେସ ଯୋଗ ଦେବ । ଏହା ହିଁ ହେଲା ଉତ୍କଳ କଂଗ୍ରେସର ଜନ୍ମ ଇତିହାସ । ସେତେବେଳକୁ ସଦାଶିବ ତ୍ରିପାଠୀ ଓଡିଶା କଂଗ୍ରେସ ବିଧାୟକ ଦଳର ନେତା ନିର୍ବାଚିତ ହେଲେ ଓ ବ୍ରଜ ମୋହନ ମହାନ୍ତି ବ୍ରହ୍ମଗିରି ନିର୍ବାଚନ ମଣ୍ଡଳୀରୁ ପ୍ରଥମ ଥର ପାଇଁ କଂଗ୍ରେସ ପ୍ରାର୍ଥୀ ଭାବେ ନିର୍ବାଚିତ ହୋଇ କଂଗ୍ରେସ ଦଳର ସଂପାଦକ ନିର୍ବାଚିତ ହେଲେ । ମୁଁ ଦଳର ଉପନେତା ଭାବେ ସଦାଶିବ ତ୍ରିପାଠୀଙ୍କ ଦ୍ୱାରା ମନୋନୀତ ହେଲି । ଓଡିଶାରେ ସ୍ୱତନ୍ତ୍ର ଓ ଜନ କଂଗ୍ରେସ ଉଭୟ ଦଳର ନିର୍ବାଚନ ମେଣ୍ଟ ସରକାର ଗଢିବା ପାଇଁ ସମର୍ଥ ହୋଇଥିବାରୁ ରାଜ୍ୟରେ ପ୍ରଥମ ଅଣ କଂଗ୍ରେସ ମନ୍ତ୍ରିମଣ୍ଡଳ ପାଟଣା ମହାରାଜା ଆର.ଏନ.ସିଂହଦେଓଙ୍କ ନେତୃତ୍ୱରେ ଦାୟିତ୍ୱ ନେଲେ । ପବିତ୍ର ବାବୁ ଜନ କଂଗ୍ରେସ ନେତା ଭାବେ ଉପମୁଖ୍ୟମନ୍ତ୍ରୀର ଦାୟିତ୍ୱ ମଧ୍ୟ ଗ୍ରହଣ କଲେ । କେନ୍ଦ୍ରରେ ମୋରାରଜୀ ଦେଶାଇଙ୍କ ନେତୃତ୍ୱରେ ପ୍ରଥମ ଅଣ କଂଗ୍ରେସ ସରକାର ଗାନ୍ଧୀ ଘାଟରେ ସମବେତ ହୋଇ ମହାତ୍ମା ଗାନ୍ଧୀଙ୍କ ନାମରେ ଶପଥ ନେଲେ ଯେ

ସେମାନେ ଏହି ଅଣ କଂଗ୍ରେସ ସରକାରକୁ ଏକ ସ୍ଥାୟିତ୍ୱ ଦେବେ ଏବଂ ଭବିଷ୍ୟତରେ ମିଳିତ ମନ୍ତ୍ରିମଣ୍ଡଳ କଂଗ୍ରେସ ସଭାନେତ୍ରୀ ଶ୍ରୀମତି ଇନ୍ଦିରା ଗାନ୍ଧୀଙ୍କ ବିରୋଧରେ ଏକ ଶକ୍ତିଶାଳୀ ମେଣ୍ଟ କରି ଅଣ କଂଗ୍ରେସ ମିଳିତ ମନ୍ତ୍ରିମଣ୍ଡଳକୁ ଏକ ଆନୁଷ୍ଠାନିକ ସ୍ଥାୟିତ୍ୱ ଦେବେ । ସେମାନଙ୍କର ପ୍ରଥମ କାମ ହେଲା ଯେତେ କଂଗ୍ରେସ ଦଳ ସରକାର ବିଭିନ୍ନ ରାଜ୍ୟରେ ଦାୟିତ୍ୱ ନେଇଥିଲେ ନିର୍ବାଚନ ପରେ ସେଗୁଡିକ ଭାଙ୍ଗି ଦେଇ ରାଷ୍ଟ୍ରପତି ଶାସନ କରିବା । ଏହାହିଁ ଏହି ଅଣକଂଗ୍ରେସ ସରକାରର ପତନର ମଞ୍ଜି ପୋତିବାରେ ସହାୟକ ହେଲା । ଓଡିଶାରେ ରାଜେନ୍ଦ୍ର ନାରାୟଣ ସିଂଦେଓ ଓ ଡକ୍ଟର ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ୧୯୬୭ ମସିହାରେ ଯେଉଁ ସାଧାରଣ ନିର୍ବାଚନ ହେଲା ସେଥିରେ ବିଜୁ ପଟ୍ଟନାୟକ ଓ ନୀଳମଣି ଉଭୟଙ୍କୁ ଡଃ ହରେକୃଷ୍ଣ ମହତାବ ହରାଇବାରେ ସମର୍ଥ ହେଲେ ଓ ତାଙ୍କର ରାଜନୈତିକ ସ୍ଥିତି ପୁନର୍ବାର ଓଡିଶାରେ ସାଧାରଣ ଜନମତକୁ ପ୍ରଭାବିତ କରିବାରେ ସଂପୂର୍ଣ୍ଣ ସଫଳତା ହାସଲ କଲା ।

ବିଜୁ ପଟ୍ଟନାୟକଙ୍କ ପ୍ରଥମ ନିର୍ବାଚନ ପରାଜୟ ହୁଏ ଭୁବନେଶ୍ୱର ନିର୍ବାଚନ ମଣ୍ଡଳୀରୁ ଓ ନୀଳମଣି ରାଉତରା ପରାଜୟ ସ୍ୱୀକାର କରନ୍ତି ଚାନ୍ଦବାଲି ନିର୍ବାଚନ ମଣ୍ଡଳୀରୁ । ଏହି ଦୁଇ ଜଣ ବିଜୁ ବାବୁ ଓ ନୀଳମଣିଙ୍କୁ ରାଜନୀତିରେ ପ୍ରତିଷ୍ଠା କରାଇ ଉଭୟଙ୍କୁ ମୁଖ୍ୟମନ୍ତ୍ରୀ ଓ ରାଷ୍ଟ୍ରମନ୍ତ୍ରୀ ପଦରେ ବହୁ ବର୍ଷ ଦାୟିତ୍ୱ ଦେଇ ଓଡିଶାରେ ପ୍ରତିଷ୍ଠିତ ନେତା ଭାବେ ସ୍ୱୀକୃତ କରାଇଥିଲେ ସୁଦ୍ଧା ୧୯୬୦ ମସିହା ପ୍ରଦେଶ କଂଗ୍ରେସ ନିର୍ବାଚନରେ ଉଭୟ ତାଙ୍କୁ ପରାଜିତ କରାଇ ୧୯୬୧ ମସିହାରେ ଯେପରି ଅପଦସ୍ତ କରାଇଥିଲେ ତାର ପରିଣତି ଘଟିଲା ମହତାବ ବାବୁ ନିଜେ ପ୍ରତିଦ୍ୱନ୍ଦ୍ୱିତା କରି ଉଭୟଙ୍କୁ କ୍ଷମତା ରାଜନୀତିରୁ ୧୯୬୭ ନିର୍ବାଚନରେ ପରାଜିତ କରାଇ ରାଜନୀତିର ଗତି ବଦଳାଇ ଦେବା । ଏହାଦ୍ୱାରା ବିଜୁ ବାବୁଙ୍କର ଉଜ୍ଜ୍ୱଳ ରାଜନୀତିକ ଜୀବନକୁ ଏକ ଘୋର ସଂଘର୍ଷମୟ ପରିସ୍ଥିତି ଭିତରକୁ ଟାଣି ନେଲେ ।

୧୯୬୭ ନିର୍ବାଚନ ପରେ ବିଜୁ ବାବୁ କିଛି ଦିନ ପାଇଁ ହତୋତ୍ସାହ ହୋଇପଡିଲେ । ତା'ର କାରଣ କେନ୍ଦ୍ରରେ ମୋରାରଜୀଙ୍କ ନେତୃତ୍ୱରେ ମନ୍ତ୍ରିମଣ୍ଡଳ ତାଙ୍କ ପ୍ରତି ବିଶେଷ ଅନୁକୂଳ ନଥିଲା । ଉତ୍କଳ କଂଗ୍ରେସ ଦଳ ତା'ର ସ୍ୱାର୍ଥ ଦୃଷ୍ଟିରୁ କେନ୍ଦ୍ରରେ ମୋରାରଜୀ ଭାଇଙ୍କୁ ସମର୍ଥନ ଦେବ ନା କଂଗ୍ରେସ ନେତ୍ରୀ ଶ୍ରୀମତି ଗାନ୍ଧୀଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କରିବ ଏକ ନିଶ୍ଚିତ ପନ୍ଥା ଗ୍ରହଣ କରିପାରିନଥିଲା । ଫଳରେ ବିଜୁ ବାବୁ ଶ୍ରୀମତି ଗାନ୍ଧୀ ଓ ମୋରାର୍‌ଜୀ ଦେଶାଇ କାହାର ସମର୍ଥନ ପାଇବା ପାଇଁ ସମର୍ଥ ହୋଇ ପାରିଲେ ନାହିଁ । ତାର ପ୍ରଭାବ ଆମ ରାଜ୍ୟ ରାଜନୀତିରେ ମଧ୍ୟ ପ୍ରତିଫଳିତ ହେଲା । ଏ ମଧ୍ୟରେ ଶ୍ରୀମତି ନନ୍ଦିନୀ ଶତପଥୀ ଏକ ନୀତିଗତ ନିଷ୍ପତ୍ତି ନେଇ ରାଜ୍ୟସଭାର ସଭ୍ୟଭାବେ ଇନ୍ଦିରାଜୀଙ୍କୁ ସଂପୂର୍ଣ୍ଣ ସମର୍ଥନ କରିବା ଠିକ୍

କରିନେଲେ ଯଦିଓ ସେ ବିଜୁବାବୁଙ୍କ ମୁଖ୍ୟମନ୍ତ୍ରିତ୍ୱବେଳେ ତାଙ୍କର ସମର୍ଥନରେ ରାଜ୍ୟସଭାରେ ସଭ୍ୟ ଭାବେ ପ୍ରଥମ ଥର ପାଇଁ ମନୋନୀତ ହୋଇଥିଲେ । ବିଜୁବାବୁଙ୍କ ଉଦାରତା ହିଁ ତାଙ୍କୁ ରାଜ୍ୟସଭାର ସଭ୍ୟ ହେବାର ସୁଯୋଗ ଦେଇଥିଲା ନଚେତ ସେ କେଉଁଠି ଶିକ୍ଷକତା କରିବା ପାଇଁ ବିଜୁବାବୁଙ୍କ ସହାୟତା ଲୋଡିଥିଲେ ଗୋଟେ ସମୟରେ ମୁଁ ଯାହା ବିଜୁ ବାବୁଙ୍କଠାରୁ ଶୁଣିଛି କଥା ପ୍ରସଙ୍ଗରେ । ବିଜୁ ବାବୁଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ ପ୍ରଦେଶ କଂଗ୍ରେସ କାର୍ଯ୍ୟକାରୀ କମିଟି ବୈଠକରେ ଓଡିଶାରୁ ରାଜ୍ୟସଭା ପାଇଁ ୧୯୬୭ ପରେ ରାଜ୍ୟସଭା ପାଇଁ ଯେଉଁ ନିର୍ବାଚନ ହେଲା ସେତେବେଳେ ବିଜୁବାବୁ ଦୋ ଘାଇରେ ପଡିଥିଲେ । କାରଣ ରାଜକୃଷ୍ଣ ବୋଷ ପ୍ରାର୍ଥୀ ହେବା ପାଇଁ ଜିଦ୍ ଧରିଲେ । ସେ ଥିଲେ ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ତଥା ସେତେବେଳର ରାଜ୍ୟନେତା, ମନ୍ତ୍ରୀ ମଧ୍ୟ ଥିଲେ । ବୁଦ୍ଧିବନ୍ତ ଓ ଜଣେ ବୟସ୍କ ନେତା ତାଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରୁଥିଲେ ଯଦୁମଣି ମଙ୍ଗରାଜ । ସେ ମଧ୍ୟ ସ୍ୱାଧୀନତା ସଂଗ୍ରାମୀ, ସିନିଅର ନେତା ଭାବେ ପ୍ରତିଷ୍ଠିତ । ଏ ଦୁହିଁଙ୍କ ଭିତରୁ କାହାର ମନୋନୟନ ହେବ ସେଥିପାଇଁ ପ୍ରଦେଶ କଂଗ୍ରେସ କାର୍ଯ୍ୟକାରୀ କମିଟି ବୈଠକରେ ଦୀର୍ଘ ସମୟ ଧରି ଆଲୋଚନା ଯୁକ୍ତିତର୍କ ଚାଲିଥାଏ । ଚୂଡାନ୍ତ ନିଷ୍ପତ୍ତି ହୋଇ ପାରିବାର ସମ୍ଭାବନା କ୍ରମଶଃ ଜଟିଳ ପରିସ୍ଥିତି ସୃଷ୍ଟି କରୁଥିଲା । କାରଣ ଉଭୟଙ୍କ ତରଫରୁ ବିଜୁବାବୁଙ୍କ ବିଶ୍ୱସ୍ତମାନେ ଭିନ୍ନ ମତ ପୋଷଣ କରି ଉଭୟ ନେତାଙ୍କ ନାମ ସୁପାରିଶ କରିବା ପାଇଁ ଜିଦ୍ ଧରୁଥିଲେ । ଶେଷରେ ମୁଁ ବିଜୁବାବୁଙ୍କ କାନରେ ଚୁପ୍ କରି କହିଲି ଯଦି ଏପରି ଯୁକ୍ତିତର୍କ ଚାଲେ ରାଜ୍ୟ କଂଗ୍ରେସ ଦଳ ଦୁଇଭାଗ ହୋଇଯିବ । ସବୁଠାରୁ ଭଲ ହେବ ଆପଣଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ କରାଇ ଏକ ପ୍ରସ୍ତାବ ଗ୍ରହଣ କରାଯାଉ । ଶେଷରେ ଏ ଦୁଇ ଜଣଙ୍କ ଝଣ୍ଡ ଲଢେଇରେ ଆପଣ ଜଣେ ମହିଳାଙ୍କୁ ଅର୍ଥାତ ଶ୍ରୀମତି ନନ୍ଦିନୀ ଦେବୀଙ୍କୁ ମନୋନୀତ କଲେ ଉଭୟପକ୍ଷଙ୍କର ଆଉ ବିଶେଷ ପ୍ରତିବନ୍ଧକ ରହିବ ନାହିଁ । ବିଜୁବାବୁଙ୍କ ମନକୁ ମୋ ପ୍ରସ୍ତାବ ଗ୍ରହଣଯୋଗ୍ୟ ହେଲା ଏବଂ ନନ୍ଦିନୀ ଦେବୀ ରାଜ୍ୟସଭାକୁ ନିର୍ବାଚିତ ହେଲେ । କିନ୍ତୁ ପରବର୍ତ୍ତୀ ସମୟରେ ଭାରତର ପ୍ରଧାନମନ୍ତ୍ରିତ୍ୱ ପାଇଁ ମୋରାରଜୀ ଭାଇ ଓ ଶ୍ରୀମତି ଇନ୍ଦିରା ଗାନ୍ଧୀଙ୍କ ମଧ୍ୟରେ ଯେତେବେଳେ ପ୍ରତିଦ୍ୱନ୍ଦ୍ୱିତା ହୁଏ ନନ୍ଦିନୀ ଦେବୀ ସେତେବେଳେ ଶ୍ରୀମତି ଗାନ୍ଧୀଙ୍କର ଅତି ନିକଟ ହୋଇ ଶ୍ରୀମତି ଗାନ୍ଧୀଙ୍କୁ ସମର୍ଥନ ଦେଲେ ଓ ବିଜୁ ବାବୁ ଶ୍ରୀମତୀ ଗାନ୍ଧୀଙ୍କୁ ସମର୍ଥନ ଦେବେ ବୋଲି ପ୍ରତିଶ୍ରୁତି ଦେଇ ପୁଣି ଯାଇ ମୋରାରଜୀଙ୍କ ସହିତ ଗୁପ୍ତ ଆଲୋଚନା କରୁଥିବା କଥା ଶ୍ରୀମତି ଗାନ୍ଧୀଙ୍କୁ ଜଣାଇ ଶ୍ରୀମତି ଗାନ୍ଧୀ ଓ ବିଜୁ ବାବୁଙ୍କ ଭିତରେ ବିଭେଦ କରାଇଦେଲେ । ଫଳରେ ତୀବ୍ର ପ୍ରତିଦ୍ୱନ୍ଦ୍ୱିତାରେ ଶ୍ରୀମତି ଗାନ୍ଧୀ ବିଜୟ ଲାଭ କରିବା ପରେ ବିଜୁବାବୁଙ୍କ ପ୍ରତି ତାଙ୍କର ଦୃଷ୍ଟିକୋଣ ସଂପୂର୍ଣ୍ଣ ବଦଳିଗଲା ଓ

ବିଜୁବାବୁଙ୍କୁ ସେ ଅବିଶ୍ୱାସ କରିବାକୁ ଲାଗିଲେ । ନନ୍ଦିନୀ ଦେବୀ କ୍ରମଶଃ ଇନ୍ଦିରାଜୀଙ୍କ ନିକଟତର ହୋଇ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ସୂଚନା ବିଭାଗ ରାଷ୍ଟ୍ରମନ୍ତ୍ରୀ ଭାବେ ଶ୍ରୀମତି ଗାନ୍ଧୀଙ୍କର ଅତ୍ୟନ୍ତ ବିଶ୍ୱସ୍ତ ହୋଇ ସେତେବେଳର ବିବାଦମୟ କଂଗ୍ରେସ ରାଜନୀତିରେ ଇନ୍ଦିରାଜୀଙ୍କ କ୍ୟାମ୍ପର ସବୁଠାରୁ ଶକ୍ତିଶାଳୀ ମନ୍ତ୍ରୀ ଓ ବିଶ୍ୱସ୍ତ ସହକର୍ମୀ ହୋଇ ପଡ଼ିଲେ । ୧୯୭୧ ପର୍ଯ୍ୟନ୍ତ ତାଙ୍କର ପ୍ରତିପତ୍ତି କଂଗ୍ରେସ ଭିତରେ ବିଶେଷ ଭାବେ ପ୍ରଭାବଶାଳୀ ଥିଲା ।

୧୯୭୧ ନିର୍ବାଚନ ବେଳକୁ ଶ୍ରୀମତି ଗାନ୍ଧୀ ଭାରତର ସବୁଠାରୁ ଶକ୍ତିଶାଳୀ ପ୍ରଧାନମନ୍ତ୍ରୀ । ବିଜୁ ବାବୁ ମୋରାରଜୀ ବା ଇନ୍ଦିରାଜୀ କାହାର ନୁହନ୍ତି । ବିଧାନସଭା ବା ଲୋକସଭାର ସଦସ୍ୟ ମଧ୍ୟ ନୁହନ୍ତି । କେନ୍ଦ୍ର ଓ ରାଜ୍ୟରେ ମଧ୍ୟ କ୍ଷମତାଚ୍ୟୁତ । ଏହି ପରିପ୍ରେକ୍ଷୀରେ ୧୯୭୧ ନିର୍ବାଚନ ତାଙ୍କୁ ସବୁଠାରୁ ଅଧିକ ରାଜନୈତିକ ସ୍ତରରେ କ୍ଷତିଗ୍ରସ୍ତ କଲା ।

ରାଜ୍ୟରେ ୧୯୬୭ ନିର୍ବାଚନ ପରେ ବିଜୁବାବୁ ଓ ନୀଳମଣି ବାବୁ ଉଭୟଙ୍କୁ ମହତାବ ବାବୁ ଅତ୍ୟନ୍ତ ଚତୁରତାର ସହିତ ହରାଇ ନିଜେ ଉଭୟ ସ୍ଥାନରୁ (ଭୁବନେଶ୍ୱର ଓ ଚାନ୍ଦବାଲି) ନିର୍ବାଚିତ ହେଲେ । ୩୧ ଜଣ ସଭ୍ୟଙ୍କ ମଧ୍ୟରୁ ବିଜୁବାବୁଙ୍କୁ ପ୍ରାୟ ୨୩/୨୪ ଜଣଙ୍କର ସମର୍ଥନ ଅବ୍ୟାହତ ଥିଲା । କିନ୍ତୁ ଯେତେବେଳେ ଶ୍ରୀମତି ଗାନ୍ଧୀଙ୍କ ନେତୃତ୍ୱରେ କେନ୍ଦ୍ରରେ କଂଗ୍ରେସ ବିଭାଜନ ହୋଇ ଶ୍ରୀମତି ଗାନ୍ଧୀ ନେତୃତ୍ୱ ନେଲେ ଉତ୍କଳ କଂଗ୍ରେସରେ ମୁଁ ଓ ମୋ ସହିତ ଶ୍ରୀ ସନ୍ତୋଷ କୁମାର ସାହୁ ତତ୍‌କାଳୀନ ଯୁବ କଂଗ୍ରେସ ସଭାପତି ଓ ଉପମନ୍ତ୍ରୀଙ୍କ ସହିତ ପ୍ରାୟ ୨୨ ଜଣ ଉତ୍କଳ କଂଗ୍ରେସରେ ବିଜୁବାବୁଙ୍କ ନେତୃତ୍ୱରେ ରହିଲୁ । କେବଳ ୭ଜଣ ନନ୍ଦିନୀ ଦେବୀଙ୍କୁ ନେଇ କଂଗ୍ରେସ (ଇନ୍ଦିରା)ରେ ଯୋଗ ଦେଲେ । ବିଧାନସଭାରେ ୨ଟି ଗ୍ରୁପ୍ ହେଲା । ସଦାଶିବ ତ୍ରିପାଠୀ ଅଳ୍ପ ଦିନ ପରେ ସ୍ୱାସ୍ଥ୍ୟ କାରଣରୁ ଇସ୍ତଫା ଦେବା ପରେ ଉତ୍କଳ କଂଗ୍ରେସ ବିଧାୟକ ଦଳରେ ନିର୍ବାଚନ ହେବାରେ ମୁଁ ଉତ୍କଳ କଂଗ୍ରେସ ବିଧାୟକ ଦଳର ନେତା ନିର୍ବାଚିତ ହେଲି । ଦଳର ୨୧ ଜଣ ସଦସ୍ୟ ବାଚସ୍ପତିଙ୍କୁ ତାହା ଲିଖିତ ଭାବେ ଜଣାଇ ଦେବା ଫଳରେ ମୁଁ ବିଧାନସଭାରେ ୧୯୬୯ ଶେଷ ବେଳକୁ ବିରୋଧି ଦଳର ନେତା ଭାବେ ଓ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ସ୍ୱତନ୍ତ୍ର-ଜନକଂଗ୍ରେସ ମେଣ୍ଟ ତରଫରୁ ମୁଖ୍ୟମନ୍ତ୍ରୀ ଭାବେ ରହିଲୁ । ପ୍ରାୟ ଦୁଇ ବର୍ଷ ଧରି ୧୯୭୧ ମସିହାରେ ପୁନର୍ବାର ସାଧାରଣ ନିର୍ବାଚନ ହେବା ପର୍ଯ୍ୟନ୍ତ ମୁଁ ବିରୋଧୀ ଦଳ ନେତା ଭାବେ ବିଧାନସଭାରେ ଉତ୍କଳ-କଂଗ୍ରେସ ଦଳର ନେତୃତ୍ୱରେ ରହି ବିଜୁବାବୁଙ୍କୁ ଦଳର ମୁଖ୍ୟ ରୂପେ ଗ୍ରହଣ କରି ତାଙ୍କ ସହିତ ରାଜ୍ୟ ରାଜନୀତିରେ ଏକ ଦାୟିତ୍ୱପୂର୍ଣ୍ଣ ବିରୋଧି ଦଳ ଭୂମିକା ନେଲି । ନୀଳମଣି ବାବୁ ଓ ବିଜୁ ବାବୁ ଉଭୟ

ବିଧାନସଭାରେ ନ ରହିବାରୁ ରାଜନୈତିକ ପଶା ଖେଳରେ ଶୋଚନୀୟ ଭାବେ ପରାସ୍ତ ହେଲେ ।

ବିଜୁ ବାବୁଙ୍କର ରାଜ୍ୟ ସ୍ତରରେ ନେତୃତ୍ୱ ଉପରେ ତାର ପ୍ରତିକ୍ରିୟା ଓଡିଶା ରାଜନୀତିରେ ବହୁ ପରିବର୍ତ୍ତନର ସୂଚନା ଆଣିବାରେ ସହାୟକ ହେଲା ।

୧୯୬୯ ବେଳକୁ କ୍ୟାବିନେଟ କମିଟି ସୁପାରିଶ ଉପରେ ବିଶେଷ କରି ବମ୍ବେ ହାଇକୋର୍ଟର ପୂର୍ବତନ ମୁଖ୍ୟ ନ୍ୟାୟପତି ଚଗଲା କେନ୍ଦ୍ର ଆଇନ ମନ୍ତ୍ରୀ ଭାବରେ ଖାନ୍ନା କମିଶନଙ୍କ ରାୟ ଉପରେ ମନ୍ତବ୍ୟ ଦେଇ ସ୍ପଷ୍ଟ ଭାବରେ ଘୋଷଣା କଲେ ଯେ ବିଜୁ ପଟ୍ଟନାୟକ ସାଧାରଣ ସ୍ୱାର୍ଥ ପାଇଁ ଉଦ୍ଦିଷ୍ଟ ଦାୟିତ୍ୱପୂର୍ଣ୍ଣ କୌଣସି ଉଚ୍ଚ ପଦବୀରେ ରହିବାର ଯୋଗ୍ୟତା ହରାଇଛନ୍ତି । ଏପରି କଠୋର ମନ୍ତବ୍ୟ ଦେବା ସମୟରେ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ସ୍ୱର୍ଗତ ଲାଲ ବାହାଦୂର ଶାସ୍ତ୍ରୀ ବିଜୁବାବୁଙ୍କୁ ରାଜ୍ୟ ଯୋଜନା ବୋର୍ଡର ଅଧ୍ୟକ୍ଷ ପଦରୁ ଇସ୍ତଫା ଦେବା ପାଇଁ ପରାମର୍ଶ ଦେଲେ ଓ ବିରେନ ବାବୁ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବାକୁ ନିର୍ଦ୍ଦେଶ ଦେବା ଫଳରେ ବିରେନ ବାବୁ ମଧ୍ୟ ରାଜ୍ୟ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବା ପାଇଁ ବାଧ୍ୟ ହେଲେ । ସଦାଶିବ ତ୍ରିପାଠୀ ସେତେବେଳେ ଏକମାତ୍ର ସିନିଅର କ୍ୟାବିନେଟ ମନ୍ତ୍ରୀ । ସେ ପ୍ରାୟ ୧୬ ବର୍ଷ ଧରି ରାଜ୍ୟର ରାଜସ୍ୱ ମନ୍ତ୍ରୀ ଓ ଅନ୍ୟ ବିଭାଗ ମନ୍ତ୍ରୀ ଭାବରେ ଓ ପରେ ବିରୋଧୀ ଦଳ ନେତା ଭାବେ ନିଜକୁ ପ୍ରତିଷ୍ଠିତ କରିଥାଆନ୍ତି । ତାଙ୍କୁ ସେଥିପାଇଁ ମୁଖ୍ୟମନ୍ତ୍ରୀ ପଦବୀରେ ଅଧିଷ୍ଠିତ କରିବା ଛଡା ଅନ୍ୟ ଉପାୟ ନଥିଲା । ଏହା ଫଳରେ ଯେଉଁ ବିଜୁ ପଟ୍ଟନାୟକ ୧୯୬୧ ମସିହାରେ ଓଡିଶାରେ ପ୍ରଥମ ଥର ପାଇଁ ସ୍ୱାଧୀନତା ପରେ କଂଗ୍ରେସ ଦଳକୁ ଏପରି ଡାଇନାମିକ୍ ନେତୃତ୍ୱ ଦେଇ ରାଜ୍ୟର ୮୨ ଜଣ ସଦସ୍ୟଙ୍କୁ ନିର୍ବାଚିତ କରାଇ ଏକ ଦୃଢ ମନ୍ତ୍ରିମଣ୍ଡଳ ଗଠନ କରି ଏକ ନୂତନ ରାଜନୈତିକ ଇତିହାସ ସୃଷ୍ଟି କରିଥିଲେ ଏବଂ ଡକ୍ଟର ଲୋକନାଥଙ୍କ ଦ୍ୱାରା ଲିଖିତ 'ଡିକେଡ୍ ଅଫ୍ ଡେଷ୍ଟିନି' ପୁସ୍ତକରେ ଓଡିଶାକୁ ଏକ ଶ୍ରେଷ୍ଠ ଶିଳ୍ପ ସମୃଦ୍ଧ ରାଜ୍ୟ ଭାବେ ଭାରତ ମାନଚିତ୍ରରେ ଏକ ଅଦ୍ୱିତୀୟ ସ୍ଥାନ ଦେବେ ବୋଲି ରାଜ୍ୟବାସୀଙ୍କର ବିଶ୍ୱାସଭାଜନ ହୋଇ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେବା ବିଧିର ଏପରି ବିଧାନ ଥିଲା, କେବଳ ତାଙ୍କର ଧୈର୍ଯ୍ୟର ଅଭାବ, ଅନ୍ୟ ଅଭିଜ୍ଞ ରାଜନୈତିକ ନେତାଙ୍କ ପ୍ରତି ଅଶୋଭନୀୟ ଭାଷାରେ ସମାଲୋଚନା, ନିଜର ପାରିଦର୍ଶିତାକୁ ପ୍ରତିପାଦନ କରିବା ପାଇଁ ସମୟ ସମୟରେ ରୂକ୍ଷ ଭାଷା ପ୍ରୟୋଗ ପ୍ରଭୃତି ତାଙ୍କୁ ରାଜନୀତିରେ ଅସ୍ପୃଶ୍ୟ କରିଦେଲା । ପଣ୍ଡିତ ନେହେରୁଙ୍କ ଆଶୀର୍ବାଦ ଓ ଦୃଢ ସମର୍ଥନରେ ଯୋଜନା ବୋର୍ଡର ବିନା ପରାମର୍ଶରେ କେନ୍ଦ୍ରର ଆର୍ଥିକ ବ୍ୟବସ୍ଥା ନହୋଇ ମଧ ଯେଉଁ ବିଜୁ ପଟ୍ଟନାୟକ ଏକ୍ସପ୍ରେସ୍ ହାଇୱେ ରାସ୍ତା ଓ ପାରାଦ୍ୱୀପ ବନ୍ଦର ପ୍ରତିଷ୍ଠା କରାଇ ଭାରତରେ ବାହାବା

ପାଇଥିଲେ ସେପରି ଜଣେ ଶ୍ରେଷ୍ଠ ନାୟକଙ୍କୁ ବହୁ ହାନିମାନିଥା ଭାବେ କୌଣସି ଭ୍ରଷ୍ଟାଚାର ଅଭିଯୋଗ ପ୍ରମାଣିତ ନହୋଇଥିଲେ ସୁଦ୍ଧା ତାଙ୍କ ନିଜ ବକ୍ତବ୍ୟକୁ ଉଦ୍ଧାର କରି ନ୍ୟାୟପତି ଖାନ୍ନା ତାଙ୍କ ରାୟରେ ଉଲ୍ଲେଖ କରିଥିବା "Biju Pattanaik is deemed to have committed administrative improprieties and irregularities" ଉପରେ ପର୍ଯ୍ୟବସିତ ଟିପ୍ପଣୀ ଉପରେ କ୍ୟାବିନେଟ ସବ୍ କମିଟି ନ୍ୟାୟପତି ଚଗଲାଙ୍କର ତୀବ୍ର ମନ୍ତବ୍ୟ - "Biju Pattanaik in the circumstances of the case can safely be held to be unfit to hold any high public office" ତାଙ୍କୁ ହତୋତ୍ସାହ କରିଦେଲା । ପଣ୍ଡିତ ନେହେରୁଙ୍କ ବିୟୋଗ ପରେ ଯେଉଁ ୧୦ ଜଣ ତୁଙ୍ଗ ନେତା ଭାରତର ପ୍ରଧାନମନ୍ତ୍ରୀ ହୋଇପାରନ୍ତି ବୋଲି ଧରାଯାଉଥିଲା ତାଙ୍କ ଭିତରେ ଯୁବକ ବିଜୁ ପଟ୍ଟନାୟକଙ୍କ ନାମ ଥିଲେ ସୁଦ୍ଧା ଗଣତାନ୍ତ୍ରିକ ବ୍ୟବସ୍ଥାରେ ସେ ନିଜକୁ ଆଡଜଷ୍ଟ ନକରିପାରି ଅତିଶୟ ଆମ୍ବିସିଅସ ହୋଇପଡି ନିଜକୁ ନେହେରୁଙ୍କୁ ଦାୟାଦ ଭାବେ ଅନ୍ୟ ସିନିଅର ନେତାଙ୍କ ଉପରେ ଦାୟିତ୍ୱହୀନ ମନ୍ତବ୍ୟ ଦେଇ ସେମାନଙ୍କର ଆତ୍ମାଭିମାନକୁ ଆଘାତ କରିବାର ଅସତ୍ ସାହସ ତାଙ୍କ ଭବିଷ୍ୟତ ଉପରେ ଆଞ୍ଚ ଆଣିଛି । ଆଉ ଗୋଟିଏ କଥା, ନେହେରୁଙ୍କ ଜୀବଦ୍ଦଶାରେ ତାଙ୍କର କନ୍ୟା ଇନ୍ଦିରା ଗାନ୍ଧୀଙ୍କ ସହିତ କେତେକ ବିଷୟରେ ମନାନ୍ତର ଆରମ୍ଭ ହେଉଥାଏ ଯେଉଁଥିରେ ବିଜୁ ବାବୁଙ୍କର ମଧ୍ୟ କିଛି ଅବଦାନ ଥିଲା । ପଣ୍ଡିତ ନେହେରୁ ୩ ମୂର୍ତ୍ତି ମାର୍ଗ ସରକାରୀ ବାସ୍ଥିଅନରେ ରହୁଥିଲେ । ସେ ବିରାଟ ଘରଟି ଭାରତର ଶେଷ ବ୍ରିଟିଶ ସେନାଧ୍ୟକ୍ଷ ସାର୍ "Auchnileck" ଙ୍କ ବାସଭବନ ଥିଲା । ଏକ ଫୋର୍ଟ ସଦୃଶ । ପଣ୍ଡିତ ନେହେରୁ ଭାରତର ସ୍ୱାଧୀନତା ପରବର୍ତ୍ତୀ ପ୍ରଧାନମନ୍ତ୍ରୀ ଭାବରେ ସେହି ଦୁର୍ଗ ଭଳି ବିରାଟ ଘରର ଉପର ମହଲାରେ ରହୁଥିଲେ । ଶ୍ରୀମତି ଗାନ୍ଧୀ ଭାରତୀୟ ଜାତୀୟ କଂଗ୍ରେସର ସଭାପତି ତଥା ତାଙ୍କ ମନ୍ତ୍ରିମଣ୍ଡଳରେ ସୂଚନା ଓ ପ୍ରସାରଣ ମନ୍ତ୍ରୀ ଭାବେ ତଳ ମହଲାରେ ରହୁଥିଲେ । ବିଜୁବାବୁ ଓଡିଶାର ମୁଖ୍ୟମନ୍ତ୍ରୀ ଭାବେ ତାଙ୍କର ଦିଲ୍ଲୀ ରହଣୀ ବେଳେ ୩ ମୂର୍ତ୍ତି ମାର୍ଗ ରାଜବାଟୀ ସଦୃଶ ବିରାଟ କୋଠାରେ ମଧ୍ୟ ରହନ୍ତି । ବାହାରେ ପ୍ରଚାର ହେଉଥିଲା ଯେ ପଣ୍ଡିତଜୀଙ୍କ ଜାମାତା ଫିରୋଜ ଗାନ୍ଧୀ ଲୋକସଭା ସଦସ୍ୟ ଭାବେ କେତେକ ବିଶିଷ୍ଟ ନେତାଙ୍କ ଭ୍ରଷ୍ଟାଚାର ସଂପର୍କରେ ଯେଉଁସବୁ ଗୁରୁତର ଅଭିଯୋଗ ଆଣିଥିଲେ ପଣ୍ଡିତ ନେହେରୁ ସେଥିରୁ ନିଜକୁ ଦୂରେଇ ରଖୁଥିଲେ କାରଣ ତାଙ୍କ ମନ୍ତ୍ରିମଣ୍ଡଳର ପ୍ରତିଷ୍ଠା ଉପରେ ଓ କଂଗ୍ରେସ ଦଳର ଇମେଜ ଉପରେ ତାହା ବିରୋଧ ପ୍ରତିକ୍ରିୟା ସୃଷ୍ଟି କରୁଥିଲା । ଶ୍ରୀମତି ଇନ୍ଦିରା ଗାନ୍ଧୀ ସେଥିପାଇଁ ଫିରୋଜ ଗାନ୍ଧୀଙ୍କ ପ୍ରତି ଆଉ ବିଶେଷ ଆକୃଷ୍ଟ ହେଲେ ନାହିଁ ଏବଂ ଉଭୟେ ଅଲଗା ରହିବାର ସ୍ଥିର କରି ଇନ୍ଦିରାଜୀ ତାଙ୍କ ପିତା ପଣ୍ଡିତଜୀଙ୍କ ଘରେ ରହୁଥିଲେ । ଇନ୍ଦିରାଜୀ ମଧ୍ୟ ତାଙ୍କ ପିତାଙ୍କ ବିୟୋଗ ପରେ ତାଙ୍କର

ପାରିବାରିକ ଦାୟାଦ ଓ ନିଜର ପ୍ରତିଷ୍ଠା ବଳରେ ନିଜକୁ ଭାରତର ଭାବି ପ୍ରଧାନମନ୍ତ୍ରୀ ଭାବରେ ପ୍ରତିଷ୍ଠା କରିବା ପାଇଁ ଉଦ୍ୟମ କରୁଥାଆନ୍ତି ଓ କେନ୍ଦ୍ର ସରକାରଙ୍କର କେତେକ ନିଷ୍ପତ୍ତି ନେଇ ପଣ୍ଡିତଜୀଙ୍କ ମତ ସହିତ ତାଙ୍କର ମତ ସବୁ କ୍ଷେତ୍ରରେ ସହମତ ହେଉନଥାଏ । ସେଥିପାଇଁ ଦିଲ୍ଲୀରେ ରହୁଥିବା ଜାଣିବା ଶୁଣିବା ବହୁ ସାମ୍ବାଦିକ ଓ ନେହେରୁ ପରିବାର ସହିତ ଘନିଷ୍ଠ ସଂପର୍କ ରଖୁଥିବା କିଛି ଦାୟିତ୍ୱପୂର୍ଣ୍ଣ ଲୋକେ ଫୁସଫାସ ହେଉଥାଆନ୍ତି ପଣ୍ଡିତଜୀ ଓ ଶ୍ରୀମତି ଗାନ୍ଧୀଙ୍କ ମଧ୍ୟରେ ବୁଝାମଣାର ଅଭାବଜନିତ ଦୁଃଖଦାୟକ ପରିସ୍ଥିତିକୁ ସୁଧାରିବା ପାଇଁ । ପଣ୍ଡିତଜୀ ବିଜୁ ବାବୁଙ୍କ ପରାମର୍ଶ ନେଉଥିଲେ । ବିଜୁ ବାବୁ ଶ୍ରୀମତି ଗାନ୍ଧୀଙ୍କୁ ଇନ୍ଦୁ ବୋଲି ସମ୍ବୋଧନ କରୁଥିବାର ଦାୟିତ୍ୱପୂର୍ଣ୍ଣ ଲୋକେ ଶୁଣିଥାଆନ୍ତି । ଡଃ ହରେକୃଷ୍ଣ ମହତାବ କେନ୍ଦ୍ରରେ ଶିଳ୍ପ ଓ ବାଣିଜ୍ୟ ମନ୍ତ୍ରୀ ଥିବା ବେଳେ ବିଜୁ ବାବୁ ମହତାବ ବାବୁଙ୍କ ଘରକୁ ଆସନ୍ତି । ସେତେବେଳେ ଶ୍ରୀମତି ଇନ୍ଦିରା ଗାନ୍ଧୀ କଂଗ୍ରେସ ସଭାପତିର ଦାୟିତ୍ୱ ନେଇଥିଲେ ଓ କେରଳରେ ମନ୍ତ୍ରିମଣ୍ଡଳର ପତନ ଘଟାଇ ନିଜର ପ୍ରତିପତ୍ତି ବିସ୍ତାର କରିଥାଆନ୍ତି । ଏପରି ପାରିବାରିକ ସମ୍ପର୍କ ଦେଖିଥିବା ଓ ବିଜୁବାବୁଙ୍କ ଅନୁଗତମାନଙ୍କ ମଧ୍ୟରେ ମୁଁ ମଧ୍ୟ ସେତେବେଳେ ନିଜକୁ ସାମିଲ କରିଥିଲି । କେବେ କଳ୍ପନା କରିନଥିଲୁ ଏପରି ଜଣେ ଭାରତର ଶୀର୍ଷସ୍ଥାନରେ ଥିବା ପଣ୍ଡିତଜୀଙ୍କ ବିଶ୍ୱସ୍ତ, ଦୁଇ ବର୍ଷ ମଧ୍ୟରେ ସମସ୍ତ ଦାୟିତ୍ୱ ହରାଇ ଆଶ୍ରୟହୀନ ଅବସ୍ଥାରେ ପହଞ୍ଚିବ । କିନ୍ତୁ ତାଙ୍କର ଭାଗ୍ୟ ଓ ରାଜନୈତିକ ପରିସ୍ଥିତି ତାଙ୍କୁ ସେ ଅବସ୍ଥାରେ ପହଞ୍ଚାଇଲା । ଆଉ ଗୋଟିଏ ଘଟଣା ମଧ୍ୟ ନେହେରୁଜୀ ଓ ଅନ୍ୟ ରାଷ୍ଟ୍ରୀୟ ନେତାମାନଙ୍କ ମନରେ ବିଜୁବାବୁଙ୍କ ପ୍ରତି ବୈରଭାବ ସୃଷ୍ଟି କରିଥିଲା । ପଣ୍ଡିତଜୀ ବିଜୁବାବୁଙ୍କୁ ମୁଖ୍ୟମନ୍ତ୍ରୀ ଦାୟିତ୍ୱରୁ ଓହରିଯିବା ପରେ ଆମେରିକା ପଠାଇଥିଲେ ନିଜର ବ୍ୟକ୍ତିଗତ ପ୍ରତିନିଧି ଭାବେ ସୈନ୍ୟବାହିନୀକୁ ଶକ୍ତିଶାଳୀ କରିବା ଓ ଅସ୍ତ୍ରଶସ୍ତ୍ର ସଂପର୍କରେ ଖବର ସଂଗ୍ରହ କରିବାକୁ । କିନ୍ତୁ ଦୁର୍ଭାଗ୍ୟର ବିଷୟ ବିଜୁବାବୁ ସେଠାରେ ପଣ୍ଡିତଜୀଙ୍କ ବ୍ୟକ୍ତିଗତ ପ୍ରତିନିଧି ହିସାବରେ ଯାଇ ଯେଉଁ ଷ୍ଟେଟମେଣ୍ଟ ଖବରକାଗଜ ମାଧ୍ୟମରେ ଆମେରିକାରେ ପ୍ରକାଶ କଲେ ତାହା ଭାରତ ଓ ଆମେରିକା ସଂପର୍କରେ ତିକ୍ତତା ସୃଷ୍ଟି କରିବାରେ ସହାୟକ ହେଲା । ଆମେରିକାରୁ ଡିପ୍ଲୋମାଟିକ ଚ୍ୟାନେଲ୍‌ରେ ଗୁପ୍ତ ଖବର ଆସି ପଣ୍ଡିତ ନେହେରୁଙ୍କ କାନରେ ପଡିବାରେ ପଣ୍ଡିତଜୀ କ୍ଷୁବ୍ଧ ହୋଇ ତତ୍‌କ୍ଷଣାତ ବିଜୁବାବୁଙ୍କୁ ଆମେରିକା ଛାଡି ଭାରତ ଫେରି ଆସିବାକୁ ନିର୍ଦ୍ଦେଶ ଦେଲେ । ଆମେରିକାରେ ତାଙ୍କର ଏପରି ଦାୟିତ୍ୱହୀନ ମନ୍ତବ୍ୟ ମଧ୍ୟ ଭାରତର ତତ୍‌କାଳୀନ ତୁଙ୍ଗ ନେତାମାନଙ୍କୁ ବିବ୍ରତ କରି ଇନ୍ଦିରାଜୀଙ୍କର ତାଙ୍କ ସହିତ ବ୍ୟକ୍ତିଗତ ସମ୍ପର୍କରେ ବହୁତ ବିରୋଧଭାବ ସୃଷ୍ଟି କରିବାର ଆଭାସ ମିଳିଲା । ଆମେରିକାରେ ରହଣିବେଳେ ବିଜୁବାବୁଙ୍କ ଷ୍ଟେଟ୍‌ମେଣ୍ଟ ତାଙ୍କୁ ଆହୁରି

ଦାୟିତ୍ୱହୀନ ବୋଲି ପ୍ରମାଣିତ କରିବାରେ ସହାୟକ ହୋଇଥିଲା । ସେତେବେଳକୁ ଇନ୍ଦିରାଜୀ କଂଗ୍ରେସର ଅଧ୍ୟକ୍ଷା, ନେହେରୁଜୀ କ୍ରମଶଃ ଦୁର୍ବଳ ହୋଇ ଶଯ୍ୟାଶାୟୀ । ବିଜୁବାବୁଙ୍କ ଏକମାତ୍ର ଆଶ୍ରୟସ୍ଥଳ ଓ ସାହସ ଓ ଶକ୍ତିର କେନ୍ଦ୍ର କ୍ରମଶଃ ଦୁର୍ବଳ ହେବାକୁ ଲାଗିବା ବେଳକୁ ୧୯୬୪ ମେ ମାସ ବେଳକୁ ନେହେରୁଜୀଙ୍କ ବିୟୋଗ ଘଟେ ଓ ପରେ ପରେ ବିଜୁ ବାବୁଙ୍କ ରାଜନୈତିକ ଜୀବନରେ ଦାରୁଣ ଆଘାତ ଦିଏ ।

ଆମେ ସେତେବେଳେ ଅନୁଭବ କରିଥିଲୁ ଯେ ବିଜୁ ପଟ୍ଟନାୟକଙ୍କ ପରିବର୍ତ୍ତେ ଅନ୍ୟ କୌଣସି ନେତାଙ୍କର ତତ୍କାଳୀନ ପରିସ୍ଥିତିରେ କଂଗ୍ରେସକୁ ନେତୃତ୍ୱ ଦେବାର ଶକ୍ତି ନାହିଁ । କିନ୍ତୁ ବିଜୁବାବୁଙ୍କୁ ସାମନାରେ କେହି ସ୍ପଷ୍ଟ ଭାବରେ ତାଙ୍କର ଇନ୍ଦିରାଜୀଙ୍କୁ ସାମନା କରି କଂଗ୍ରେସରେ ନେତୃତ୍ୱ ନେବା ସମ୍ଭବପର ନୁହେଁ ବୋଲି ଏବଂ ଇନ୍ଦିରାଜୀଙ୍କୁ ସବୁକଥାରେ ସାମ୍ନା କରିବାର ଦୁଃସାହସ ନକରିବା ପାଇଁ ପ୍ରବର୍ତ୍ତାଇବାକୁ ସାହସ କରୁନଥାନ୍ତି । ମୁଁ ସେତେବେଳେ ଏ.ଜି. ଛକରେ ଥିବା ଏକ ନାଲି କୋଠାରେ ସରକାରୀ ବାସଭବନରେ ରହିବାର ସୁଯୋଗ ପାଇଥାଏ । ବିରୋଧି ଦଳ ନେତା ଭାବେ ମୋର ପି.ଏ. ଓ ଅନ୍ୟାନ୍ୟ ଅଫିସର କର୍ମଚାରୀମାନେ ଥିବା ହେତୁ ସେଇ କ୍ୱାର୍ଟରରେ ଉତ୍କଳ କଂଗ୍ରେସର ସଭ୍ୟମାନଙ୍କର ବିଶେଷ କରି ଉତ୍କଳ କଂଗ୍ରେସ ବିଧାୟକମାନଙ୍କର ମିଳନ ପୀଠ ଭାବେ କାର୍ଯ୍ୟ କରୁଥାଏ । ଏହି ପରିପ୍ରେକ୍ଷୀରେ ପ୍ରାୟ ୨ ବର୍ଷ ଧରି ଦାୟିତ୍ୱରେ ରହିବାର ସୁଯୋଗ ପାଇଥିଲେ ମଧ୍ୟ ୧୯୭୧ ମସିହା ସାଧାରଣ ନିର୍ବାଚନ ପ୍ରସ୍ତୁତି ପାଇଁ ଆମେ ଉଦ୍ୟମ ଚାଲୁ ରଖିଥାଉ । ବିଜୁ ପଟ୍ଟନାୟକ ବିଶ୍ୱାସ କରୁଥିଲେ ଓ ଆମମାନଙ୍କର ସେଥିରେ ସମ୍ମତି ଏବଂ ହୃଦବୋଧ ହୋଇଥିଲା ଯେ ନିର୍ବାଚନ ପରେ ବିଜୁବାବୁ ପୁନର୍ବାର ନିର୍ବାଚିତ ହେବେ ଏବଂ ଉତ୍କଳ କଂଗ୍ରେସ ଓଡିଶାରେ ସରକାର ଗଢିବାରେ ସମର୍ଥ ହୋଇପାରିବ ଓ ଇନ୍ଦିରାଜୀଙ୍କ ନେତୃତ୍ୱରେ କେନ୍ଦ୍ରରେ ଯଦି ସରକାର ଆସେ ଶ୍ରୀମତି ଗାନ୍ଧୀ ପୁନର୍ବାର ବିଜୁବାବୁଙ୍କ ସହିତ ସମଝୋତା କରି ଉତ୍କଳ କଂଗ୍ରେସ ଶେଷରେ କଂଗ୍ରେସର ଓଡିଶାରେ ପ୍ରକୃତ କଂଗ୍ରେସ(ଇ) ମନ୍ତ୍ରିମଣ୍ଡଳଭାବେ ସ୍ୱୀକୃତ ହୋଇ କ୍ଷମତାରେ ରହିବାରେ ବିଶେଷ ପ୍ରତିବନ୍ଧକ ହେବ ନାହିଁ ଏବଂ ବିଜୁ ବାବୁଙ୍କ ବ୍ୟକ୍ତିତ୍ୱ ଓ ଇନ୍ଦିରାଜୀଙ୍କ କ୍ଷମତାଶାଳୀ ନେତୃତ୍ୱ ଓଡିଶାରେ କଂଗ୍ରେସକୁ ଅଧିକ ଶକ୍ତିଶାଳୀ କରି କ୍ଷମତାରେ ରହି ରାଜ୍ୟର ରାଜନୈତିକ ସମୃଦ୍ଧିର ଏକ ନୂତନ ଅଧ୍ୟାୟ ସୃଷ୍ଟି କରିବ । କିନ୍ତୁ ଇଂରାଜୀରେ ଗୋଟିଏ ବାକ୍ୟ ଅଛି 'ମ୍ୟାନ୍ ପ୍ରୋପୋଜେସ୍ ବଟ୍ ଗଡ ଡିସ୍‌ପୋଜେସ୍ ।' ମଣିଷର ଚିନ୍ତା ଓ ସିଦ୍ଧାନ୍ତ କାର୍ଯ୍ୟରେ ପରିଣତ ହୋଇପାରେନା ଈଶ୍ୱରଙ୍କ ବିଚାରରେ । ଓଡିଶାର ଭାଗ୍ୟରେ ତାହାହିଁ ହେଲା ।

ଖାନ୍ନା ସାହେବଙ୍କ ଭଳି ଜଣେ ବରିଷ୍ଠ ସୁପ୍ରିମକୋର୍ଟ ଜଜ୍ ତାଙ୍କ ରାୟକୁ ଦୁଇଟି ଭଲ୍ୟୁମ୍‌ରେ ଲିପିବଦ୍ଧ କରିଥିଲେ । ଏହା ଏକ ଐତିହାସିକ ଜଜ୍‌ମେଣ୍ଟ ଯାହାକି ରାଜ୍ୟରେ ବିଜୁବାବୁଙ୍କ କ୍ଷମତା ଲିପ୍ସାର କେବଳ ଅବସାନ ଘଟାଇନଥିଲା, ଏହା ରାଜ୍ୟର ଭବିଷ୍ୟତ ପାଇଁ ଏକ ପ୍ରଶ୍ନବାଚୀ ହୋଇ ଉଠିଥିଲା । ଖାନ୍ନା କମିଶନଙ୍କ ଜଜ୍‌ମେଣ୍ଟ ଉପରେ କ୍ୟାବିନେଟ୍ ସବ୍ କମିଟି ତତ୍‌କାଳୀନ କେନ୍ଦ୍ର ଆଇନମନ୍ତ୍ରୀ ବମ୍ବେ ହାଇକୋର୍ଟର ପୂର୍ବତନ ମୁଖ୍ୟ ବିଚାରପତି ନ୍ୟାୟମୂର୍ତ୍ତି ଚଗଲାଙ୍କ ସ୍ପଷ୍ଟ ମନ୍ତବ୍ୟକୁ ଅବମାନନା କରିବା କାମରାଜଙ୍କ ପକ୍ଷରେ ସମ୍ଭବ ହୋଇପାରିନଥିଲା, ବିଶେଷ କରି ଇନ୍ଦିରାଜୀ ଓ କାମରାଜଙ୍କ ମଧ୍ୟରେ କ୍ରମଶଃ ବୃଦ୍ଧି ପାଉଥିବା ମତପାର୍ଥକ୍ୟ ଦୃଷ୍ଟିରୁ । କଂଗ୍ରେସ ଏସ୍ ନେତା ଓ କଂଗ୍ରେସ ସଭାପତି ନିଜଲିଙ୍ଗପା, କାମରାଜଜୀ, ସଂଜୀବ ରେଡୀ, ମହାରାଷ୍ଟ୍ରର ଏସ.କେ.ପାଟିଲ, ସିଣ୍ଡିକେଟ ଗୋଷ୍ଠୀଙ୍କ କଂଗ୍ରେସର ତତ୍‌କାଳୀନ କ୍ଷମତାସୀନ ଗୋଷ୍ଠୀ ଓ ଶ୍ରୀମତି ଇନ୍ଦିରା ଗାନ୍ଧିଙ୍କ ସହିତ ମତାନ୍ତର ଅଧିକ ଗୁରୁତର ହେବାକୁ ଯାଉଥିବାବେଳେ ସିଣ୍ଡିକେଟ ଗୋଷ୍ଠୀ ତରଫରୁ ମୋରାରଜୀ ଦେଶାଇଙ୍କୁ ପ୍ରଧାନମନ୍ତ୍ରୀ କରିବା ପାଇଁ ଦେଶବ୍ୟାପୀ ବିରାଟ ଉଦ୍ୟମ ହେଲା । ଯେପରି ମନେ ହେଉଥିଲା, ବିଜୁବାବୁ ଓ ତାଙ୍କ ଉତ୍କଳ କଂଗ୍ରେସ ଏହି ସୁଯୋଗରେ ଇନ୍ଦିରାଗାନ୍ଧୀଙ୍କ ସହିତ ସହଯୋଗ କରି ପୁନର୍ବାର କଂଗ୍ରେସକୁ ଫେରି ଆସି ରାଜ୍ୟ ରାଜନୀତିରେ ତାଙ୍କର କ୍ଷମତା ବିସ୍ତାର କରିବାର ସଫଳତା ହାସଲ କରିବେ । ମୁଁ ନିଜେ ଓ ମୋ ସହିତ ବହୁତ ଉତ୍କଳ କଂଗ୍ରେସ ସାଥୀ ମଧ୍ୟ ସେହି ଆଶା ପୋଷଣ କରିଥିଲୁ । ଶ୍ରୀମତି ଗାନ୍ଧୀ ମଧ୍ୟ ଓଡିଶାରେ କଂଗ୍ରେସ ଗୋଷ୍ଠୀକୁ ସଂପୂର୍ଣ୍ଣ ଅକ୍ତିଆର କରିବା ପାଇଁ ଉଦ୍ୟମ କରିବାକୁ ତାଙ୍କର ନିକଟତମ ସହଯୋଗୀ ଓ ସୂଚନା ଓ ଲୋକସଂପର୍କ ରାଷ୍ଟ୍ରମନ୍ତ୍ରୀ ଦାୟିତ୍ୱରେ ଥିବା ଶ୍ରୀମତି ନନ୍ଦିନୀ ଦେବୀଙ୍କ ଉପରେ ସଂପୂର୍ଣ୍ଣ ନିର୍ଭର କରୁଥାଆନ୍ତି । କିନ୍ତୁ ଶ୍ରୀମତି ଶତପଥୀ ଅତ୍ୟନ୍ତ ଚତୁରତାର ସହିତ ଗୋଟି ଚଳାଇ ଯେଉଁ ପରିସ୍ଥିତି ସୃଷ୍ଟି କଲେ ସେଥିରେ ବିଜୁବାବୁଙ୍କ ସମସ୍ତ ଉଦ୍ୟମ ବ୍ୟର୍ଥ ହେଲା । ବିଜୁବାବୁ ମଧ୍ୟ ସେତେବେଳେ ନିଜକୁ ଅତି ଶକ୍ତିଶାଳୀ ବିଚାରି ମୋରାରଜୀ ଭାଇ ଓ ଶ୍ରୀମତୀ ଗାନ୍ଧୀ ଉଭୟଙ୍କ କ୍ୟାମ୍ପର ବିଶ୍ୱାସ ଭାଜନ ହେବା ପାଇଁ ଉଦ୍ୟମ କଲେ ଯାହା ଫଳରେ ଉଭୟ ଗୋଷ୍ଠୀ ତାଙ୍କର ଉପରେ ବିଶ୍ୱାସ ହରାଇବାର ମୌକାର ସଂପୂର୍ଣ୍ଣ ସୁଯୋଗ ନେଲେ ନନ୍ଦିନୀ ଦେବୀ । ତାଙ୍କ ଉପରେ ଇନ୍ଦିରାଜୀଙ୍କ ବିଶ୍ୱାସର ସୁଯୋଗ ନେଇ ଏବଂ ତାଙ୍କ ଉଦ୍ୟମରେ ଓଡିଶା କଂଗ୍ରେସକୁ ସଂପୂର୍ଣ୍ଣ ଅକ୍ତିଆର କରିବା ଲକ୍ଷ୍ୟ ରଖି ଶ୍ରୀମତି ଶତପଥୀ ବିଜୁବାବୁଙ୍କର ଉଭୟ ଗୋଷ୍ଠୀ ସହିତ ସଂପର୍କ କେବଳ ତାଙ୍କ ନିଜ ସ୍ୱାର୍ଥ ପାଇଁ ଉଦ୍ଦିଷ୍ଟ ଏବଂ ତାଙ୍କ ସମର୍ଥନ ଉପରେ ନିର୍ଭର ନକରିବା ଉଚିତ ବୋଲି ଇନ୍ଦିରାଜୀଙ୍କୁ କେତେକ ଦୃଷ୍ଟାନ୍ତ ଦେଇ ଏପରି ବିରୋଧି

ମନୋଭାବ ସୃଷ୍ଟି କଲେ ଯେ ଯାହା ଫଳରେ ଇନ୍ଦିରାଜୀ ବିଜୁ ପଟ୍ଟନାୟକଙ୍କୁ ବିଶ୍ୱାସଯୋଗ୍ୟ ସହଯୋଗୀ ବୋଲି ଭାବିଲେ ନାହିଁ । ନିର୍ବାଚନ ପାଇଁ କଂଗ୍ରେସ ଦଳ ମଧ୍ୟରେ ପ୍ରବଳ ପ୍ରତିଯୋଗିତା ଫଳରେ ଦିଲ୍ଲୀ ସହର ଅତ୍ୟନ୍ତ ଉତ୍ତେଜନା ପ୍ରବଣ ହୋଇ ଉଠିଥାଏ । କଂଗ୍ରେସ ଦଳର ନେତା ନିର୍ବାଚନ ପୂର୍ବଦିନ ବହୁ ଉଦ୍ୟମ କରି ବିଜୁବାବୁ ଇନ୍ଦିରାଜୀଙ୍କ ସହିତ ସାକ୍ଷାତ କରି ତାଙ୍କୁ ତାଙ୍କ ଦଳର ଏମ.ପି.ମାନଙ୍କର ସଂପୂର୍ଣ୍ଣ ଆନୁଗତ୍ୟ ପ୍ରକାଶ କରିଥିଲେ ମଧ୍ୟ ସେହିଦିନ ସଂଧ୍ୟାରେ ମୋରାରଜୀଙ୍କ ନିମନ୍ତ୍ରଣରେ ତାଙ୍କ ବାସଭବନକୁ ଯାଉଥିବା ବେଳେ ଶ୍ରୀମତୀ ଶତପଥୀ କୌଣସି ସୂତ୍ରରୁ ଖବର ପାଇ ଇନ୍ଦିରାଜୀଙ୍କୁ ଜଣାଇଦେଲେ ଏବଂ ଇନ୍ଦିରାଜୀ ତାହା ଠିକ୍ ଭାବେ ଉପଲବ୍ଧି କରି ନିର୍ବାଚନର ଅବ୍ୟବହିତ ପୂର୍ବରୁ 'ବିଜୁ ଇଜ୍ ଅନଡିପେଣ୍ଡେବ୍‌ଲ୍' ବୋଲି ମତ ଦେଲେ । ତାହା ହିଁ ନନ୍ଦିନୀ ଦେବୀଙ୍କ ପାଇଁ ସୁବର୍ଣ୍ଣ ସୁଯୋଗ ଆଣିଦେଲା ସେ ଓଡିଶାର ଭବିଷ୍ୟତ ନେତ୍ରୀ ଭାବେ ପ୍ରତିଷ୍ଠିତ ହେବା ପାଇଁ । ପରଦିନ ନିର୍ବାଚନରେ କଂଗ୍ରେସ ଶ୍ରୀମତି ଗାନ୍ଧୀଙ୍କ ସାହାଯ୍ୟରେ ଅଧିକ ମତ ସାବ୍ୟସ୍ତ କରି ଇନ୍ଦିରାଜୀଙ୍କୁ ପ୍ରଧାନମନ୍ତ୍ରୀ ଦାୟିତ୍ୱରେ ଅଭିଷିକ୍ତ କରାଇବା ଫଳରେ ବିଜୁ ପଟ୍ଟନାୟକଙ୍କର ରାଜନୀତି କ୍ଷେତ୍ରରେ ଚରମ ଅବକ୍ଷୟର ଅଧ୍ୟାୟ ଆରମ୍ଭ ହେଲା ।

୧୯୬୯ ମସିହା ଶେଷ ଭାଗର ଘଟଣା । ମୋରାରଜୀ ଓ ତାଙ୍କ ସିଣ୍ଡିକେଟ ଗୋଷ୍ଠୀ କଂଗ୍ରେସ ଓ ଇନ୍ଦିରା ଗୋଷ୍ଠୀଠାରୁ ଅଲଗା ହୋଇ କଂଗ୍ରେସ (ଓ) ନାମରେ ଆଉ ଏକ ରାଜନୈତିକ ଦଳ ଗଢ଼ିଲେ ଓ ମହାନ୍ ଜାତୀୟ କଂଗ୍ରେସ ପ୍ରଥମ ଆନୁଷ୍ଠାନିକ ବିଭାଜନ ସ୍ୱାଧୀନତା ପରବର୍ତ୍ତୀ ଅବସ୍ଥାରେ ସଂପାଦିତ ହୋଇ ଶ୍ରୀମତି ଗାନ୍ଧୀଙ୍କର ଭାରତ ରାଜନୀତିରେ ଅଖଣ୍ଡ କ୍ଷମତାର ଅଧିକାରୀ ହେବାର ସୁଯୋଗ ସୃଷ୍ଟି କଲା । ପରେ ବମ୍ବେଠାରେ ଅଖିଳ ଭାରତ କଂଗ୍ରେସ କମିଟିର ବୈଠକ ବସିଥାଏ । ଶ୍ରୀମତି ଗାନ୍ଧୀ ସଭାନେତ୍ରୀ ତାଙ୍କ ଉଦ୍ୟମ ହେଉଥାଏ ନିଜ ଆସ୍ଥାନକୁ ଦୃଢ଼ୀଭୂତ କରିବା ପାଇଁ । ବିଜୁବାବୁ ମଧ୍ୟ ତାଙ୍କ ଦଳର ସମସ୍ତ ଏ.ଆଇ.ସି.ସି. ସଭ୍ୟଙ୍କୁ ନେଇ ତାଙ୍କ ନିଜ ବୋଇଙ୍ଗ ବିମାନରେ ବମ୍ବେ ଏ.ଆଇ.ସି.ସି.ରେ ଯୋଗ ଦେବା ପାଇଁ ଇନ୍ଦିରା କଂଗ୍ରେସକୁ ସର୍ତ୍ତମୂଳକ ସହଯୋଗ ଦେବାକୁ ପ୍ରେସ୍ ଜରିଆରେ ଘୋଷଣା କଲେ । ସେ ଜଣେ ସମାଜବାଦରେ ବିଶ୍ୱାସ କରୁଥିବା ରାଜନୀତିଜ୍ଞ ଭାବେ ଶ୍ରୀମତି ଗାନ୍ଧୀଙ୍କ ବ୍ୟାଙ୍କ ଜାତୀୟକରଣ ଓ ରାଜାରାଜୁଡ଼ାଙ୍କ ଭରାକାଟ ବ୍ୟବସ୍ଥା ଓ ଅନ୍ୟାନ୍ୟ ସମାଜବାଦୀ ବିଂଶସୂତ୍ରୀ କାର୍ଯ୍ୟକ୍ରମ ଉପରେ ତାଙ୍କର ବିଶ୍ୱାସ ଅଛି ଏବଂ ମୋରାରଜୀଙ୍କ ନେତୃତ୍ୱରେ ସଂଗଠନ କଂଗ୍ରେସ ଆମେରିକାର ପୁଂଜିବାଦୀ ରାଜନୀତିର ସ୍ତାବକ ଭାବରେ କାର୍ଯ୍ୟକ୍ରମ ଗ୍ରହଣ କରୁଥିବା ଦୃଷ୍ଟିରୁ ତାଙ୍କ ସହଯୋଗ ଆଦର୍ଶଗତ ଦୃଷ୍ଟିରୁ ମୋରାରଜୀଙ୍କ ସଂଗଠନ କଂଗ୍ରେସ ସହିତ ରହିନପାରେ ବୋଲି

ଘୋଷଣା କଲେ ସୁଦ୍ଧା ଇନ୍ଦିରାଜୀ ତାଙ୍କ ଷ୍ଟେଟମେଣ୍ଟ ଉପରେ ବିଶ୍ୱାସ କରିବା ଉଚିତ ନୁହେଁ ବୋଲି ସ୍ପଷ୍ଟ ଇଂଗିତ ଦେଲେ ଓ ଶ୍ରୀମତି ଶତପଥୀଙ୍କୁ ଓଡିଶା ରାଜନୀତିରେ ସକ୍ରିୟ ଅଂଶଗ୍ରହଣ କରି ବିଜୁବାବୁଙ୍କ ଶକ୍ତି ହ୍ରାସ କରିବା ପାଇଁ ନିର୍ଦ୍ଦେଶ ଦେଲେ । ଏକଥା ସ୍ପଷ୍ଟ ହେଇଗଲା ବମ୍ବେ ଏ.ଆଇ.ସି.ସି. ବୈଠକରେ । ଶ୍ରୀମତି ଶତପଥୀଙ୍କ ସହିତ ମୋର ବମ୍ବେ ଅଧିବେଶନ ବେଳେ ସାକ୍ଷାତ ହୁଏ । ସେ ମତେ ଇନ୍ଦିରାଜୀଙ୍କ ସ୍ପଷ୍ଟ ନିର୍ଦ୍ଦେଶ କଥା ଜଣାଇ କଂଗ୍ରେସ (ଇ) ସଂଗଠନରେ ରହିଲେ ଭବିଷ୍ୟତ ଅଧିକ ନିଶ୍ଚିତ (ଷ୍ଟେବୁଲ୍) ବୋଲି ପ୍ରବର୍ତ୍ତାଇବା ଫଳରେ ମୁଁ ତାଙ୍କ ଉପଦେଶ ଗ୍ରହଣଯୋଗ୍ୟ ବୋଲି ତାଙ୍କୁ ଜଣାଇଲି ସିନା କିନ୍ତୁ ଓଡିଶାରେ ଉତ୍କଳ କଂଗ୍ରେସରେ ବିଜୁବାବୁଙ୍କ ଶକ୍ତି ବହୁ ଅଧିକ ଥିବା ଦୃଷ୍ଟିରୁ ନିଜେ ଆଗଭର ହୋଇ କଂଗ୍ରେସ(ଇ) ସଂଗଠନରେ ନିଜକୁ ସାମିଲ କରି ବିଜୁବାବୁଙ୍କ ବିରୋଧରେ ସମ୍ମୁଖ ସଂଗ୍ରାମ କରିବା ମୋ ନୈତିକତା ବିରୁଦ୍ଧରେ ଯିବ ବୋଲି କହି ପରୋକ୍ଷ ଭାବେ ତାଙ୍କ ସହିତ ରହିବି ଓ ଇନ୍ଦିରା ଗାନ୍ଧୀଙ୍କ ଗୋଷ୍ଠୀଙ୍କୁ ସମର୍ଥନ କରିବି ବୋଲି ସ୍ପଷ୍ଟ ମତ ଜଣାଇଲି । ଏକଥା ସେଇ ଅଧିବେଶନରେ ବିଜୁବାବୁ ଜାଣିବାକୁ ପାଇଲେ ଓ ଶ୍ରୀମତି ଶତପଥୀ ମତେ ଇନ୍ଦିରାଜୀଙ୍କ ନିକଟକୁ ନେଇ ଦେଖା କରାଇ ସମର୍ଥନ ଜଣାଇବା କଥା କହିଥିବାର ଖବର ପାଇ ମୋ ଉପରେ ତାଙ୍କର ସନ୍ଦେହ ଆରମ୍ଭ ହେଲା ଯାହାକି ୧୯୭୧ ମସିହାରେ ପ୍ରତିଫଳିତ ହେଲା । ସେ ବିଷୟ ପରବର୍ତ୍ତୀ ସମୟରେ ଜଣେଇବାର ସୁଯୋଗ ମିଳିବ । କିନ୍ତୁ ଗୋଟିଏ ବିଷୟ ପରିଷ୍କାର ହେଇଗଲା ଯେ ଶ୍ରୀମତି ଗାନ୍ଧୀଙ୍କର ବିଜୁବାବୁଙ୍କ ଉପରେ ବିଶ୍ୱାସ ପ୍ରାୟ ତୁଟିଗଲା ଓ ଶ୍ରୀମତି ଶତପଥୀଙ୍କ ଉପରେ ଅତୁଟ ରହିବା ଫଳରେ ୧୯୭୪ ନିର୍ବାଚନ ପରେ ଶ୍ରୀମତି ଗାନ୍ଧୀଙ୍କ ସମର୍ଥନ କ୍ରମେ ନନ୍ଦିନୀ ଦେବୀ ମୁଖ୍ୟମନ୍ତ୍ରୀ ପଦରେ ଅଭିଷିକ୍ତ ହୋଇ ରାଜ୍ୟର ସବୁଠାରୁ ଶକ୍ତିଶାଳୀ ରାଜନୈତିକ କ୍ଷମତାର କେନ୍ଦ୍ରବିନ୍ଦୁ ହେଲେ ଏବଂ ବିଜୁବାବୁଙ୍କ ରାଜନୀତି କ୍ଷେତ୍ରରେ ସାମୟିକ ବିଳୟର ଏକ ନୂତନ ଅଧ୍ୟାୟ ସୃଷ୍ଟି ହେଲା । ପ୍ରାୟ ୫ ବର୍ଷ ପର୍ଯ୍ୟନ୍ତ ନନ୍ଦିନୀ ଦେବୀ ରାଜ୍ୟ ରାଜନୀତିରେ ନିରଙ୍କୁଶ କ୍ଷମତାର ଅଧିକାରୀ ଭାବେ ପ୍ରତିଷ୍ଠିତ ହେଲେ । ଏହି ସମୟ ମଧ୍ୟରେ ସେ ବିଜୁ ବାବୁ ଓ ମହତାବ ବାବୁଙ୍କ ବିରୋଧ ସତ୍ତ୍ୱେ ଦୁଇଥର ମୁଖ୍ୟମନ୍ତ୍ରୀ ଦାୟିତ୍ୱରେ ରହି ୧୯୭୬ ଡିସେମ୍ବର ୧୬ ତାରିଖ ଦିନ ପୁଣି ସେଇ ଇନ୍ଦିରାଗାନ୍ଧୀଙ୍କ କଠୋର ନିର୍ଦ୍ଦେଶର ଶିକାର ହୋଇ କ୍ଷମତାଚ୍ୟୁତ ହେଲେ । ଠିକ୍ ସେଇପରି ଭାବରେ ସେହି "Modus Operandi" ଜରିଆରେ ଇନ୍ଦିରାଜୀଙ୍କ କଠୋର ସମାଲୋଚକ ଭାବେ ଜଣାଶୁଣା ଜାନକୀ ବଲ୍ଲଭ ପଟ୍ଟନାୟକ ପରିବର୍ତ୍ତିତ ରାଜନୈତିକ ପଟ୍ଟଚିତ୍ରରେ ସଂଜୟ ଗାନ୍ଧୀଙ୍କ ସମର୍ଥନ ଲାଭ କରି ନନ୍ଦିନୀଜୀଙ୍କ ବିରୁଦ୍ଧରେ ଇନ୍ଦିରାଜୀଙ୍କ ନିକଟରେ ଚରମ ଅବିଶ୍ୱାସ ସୃଷ୍ଟି କରି

ନନ୍ଦିନୀ ହଟାଅ ଆନ୍ଦୋଳନକୁ ସଫଳ କରାଇ ନିଜେ କ୍ଷମତାବ୍ୟୁହ ଭିତରକୁ ଆସି ବହୁ ବର୍ଷ ପର୍ଯ୍ୟନ୍ତ ଓଡିଶା ରାଜନୀତିରେ କ୍ଷମତାର କେନ୍ଦ୍ରବିନ୍ଦୁ ଭାବେ ନେତୃତ୍ୱ ନେବାରେ ସମର୍ଥ ହୋଇଛନ୍ତି । ପରବର୍ତ୍ତୀ ଅଧ୍ୟାୟରେ ସେ ସଂପର୍କରେ ରାଜ୍ୟ ରାଜନୀତିରେ କିପରି ନନ୍ଦିନୀ ଯୁଗର ଅବସାନ ଘଟି, ଆଉ ଜଣେ ସାର୍ଥକ ପଟ୍ଟନାୟକ ଜାନକୀ ବାବୁଙ୍କ ଯୁଗର ଅୟମାରମ୍ଭ ହେଲା ସେ ସଂପର୍କରେ ପାଠକମାନେ ସମ୍ୟକ ଧାରଣା ପାଇପାରିବେ । କିନ୍ତୁ ଏତିକି କହି ରଖେ ଯେ ୧୯୭୧ ନିର୍ବାଚନରେ ବିଜୁ ବାବୁ ଏପରି ପରିସ୍ଥିତିର ଶିକାର ହେଲେ ଯେ କ୍ଷମତାରୁ ସଂପୂର୍ଣ୍ଣ ଅପସରି ଯାଇ ଓଡିଶା ରାଜନୀତିରୁ ତାଙ୍କର ନେତୃତ୍ୱର ବିଲୟ ଘଟିଲା ଓ ଚରମ ହୀନିମାନ ଅବସ୍ଥାର ସମ୍ମୁଖୀନ ହେବାକୁ ପଡିଲା । ଜଣେ ବିରାଟ ବ୍ୟକ୍ତିତ୍ୱ ଓ ରାଷ୍ଟ୍ରୀୟ ନେତାଙ୍କର ଏପରି ରାଜନୈତିକ ପରାଜୟ ଓ କ୍ଷମତାରୁ ବିତାଡନ ସ୍ୱାଧୀନତା ପର ଭାରତୀୟ କ୍ଷମତାରାଜନୀତିରେ ଏକ ଅଭୂତପୂର୍ବ ନାଟକୀୟ ଘଟଣା ଯାହାକି ଓଡିଶାର ରାଜନୈତିକ ଇତିହାସରେ ବିରଳ । ୧୯୭୧ ନିର୍ବାଚନରେ ହିଁ ସେ ୪ଟି ବ୍ୟବସ୍ଥାସଭା ଓ ଗୋଟିଏ ଲୋକସଭା ନିର୍ବାଚନ ମଣ୍ଡଳୀରୁ ପ୍ରତିଦ୍ୱନ୍ଦ୍ୱିତା କରି ୫ଟିରେ ଶୋଚନୀୟ ପରାଜୟର ସମ୍ମୁଖୀନ ହୋଇ ଓଡିଶା ଛାଡି ଚାଲିଯିବାକୁ ନିଷ୍ପତ୍ତି ନେଲେ । ଏପରି ଦୂର୍ଭାଗ୍ୟ ଜଣେ ରାଷ୍ଟ୍ରନୀତିଜ୍ଞ ସ୍ତରର ସାହସୀ ସ୍ୱାଧୀନତା ସଂଗ୍ରାମୀ ପକ୍ଷରେ ଅତ୍ୟନ୍ତ ଦୁଃସହ ହୋଇଥିଲେ ମଧ୍ୟ ବିଜୁବାବୁଙ୍କ ଧୈର୍ଯ୍ୟ, ସାହସ ଓ ସଂଗଠନ ଶକ୍ତି ତାଙ୍କୁ ପୁନର୍ବାର ୧୯୯୦ ମସିହାରେ ଓଡିଶାରେ ଶ୍ରେଷ୍ଠ ରାଜନୈତିକ ଶକ୍ତି ରୂପେ ଅବସ୍ଥାପିତ କରିଥିଲା ଓ ଇନ୍ଦିରାଗାନ୍ଧୀଙ୍କର କ୍ରମଶଃ ବିଲୟରେ ତାଙ୍କର ମଧ୍ୟ ଥିଲା ଉଲ୍ଲେଖନୀୟ ଅବଦାନ ଏଥିରେ ସନ୍ଦେହ ନାହିଁ । ୧୯୭୧ ମସିହାରେ ଅତ୍ୟନ୍ତ ଶୋଚନୀୟ ରାଜନୈତିକ ବିଲୟର ସମ୍ମୁଖୀନ ହୋଇଥିବା ଏହି ଦୁଃସାହସୀ ନେତା ନିଜ ଶକ୍ତି ବଳରେ ନିଜର ଅନ୍ତରଙ୍ଗ ବଂଧୁଙ୍କ ବିରୋଧରେ ନୂଆ ଦଳ ସୃଷ୍ଟି କରି ଇନ୍ଦିରା ଗାନ୍ଧୀଙ୍କ ପ୍ରବଳ ବିରୋଧ ସତ୍ତ୍ୱେ ପୁଣି କ୍ଷମତାସୀନ ହୋଇ ଶେଷରେ ୧୯୯୮ ମସିହାରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ସୁଦ୍ଧା ଓଡିଶାବାସୀ ତାଙ୍କୁ ଜଣେ ଶ୍ରେଷ୍ଠ ଦେଶସେବକ, ସାହସୀ ବୀର ଓ ରାଷ୍ଟ୍ରୀୟ ନେତାର ସମ୍ମାନ ଦେଇ ମୃତ୍ୟୁଞ୍ଜୟୀ କରିଛନ୍ତି । ଏହା ହିଁ ଏକ ରାଜନୈତିକ କ୍ଷେତ୍ରରେ ଐତିହାସିକ ଘଟଣା । ମୁଁ ତାଙ୍କର ସ୍ମୃତି ପ୍ରତି ରାଜ୍ୟବାସୀଙ୍କ ସହିତ ମୋର ଗଭୀର ଶ୍ରଦ୍ଧା ଜଣାଇବାରେ କେବେ ହେଲେ କୁଣ୍ଠା ବୋଧ କରିନାହିଁ । ଯଦିଓ ମୁଁ ୧୯୭୧ରେ ତାଙ୍କ ସହିତ ରାଜନୀତି କ୍ଷେତ୍ରରେ ଇନ୍ଦିରା କଂଗ୍ରେସରେ ମୋର ଭବିଷ୍ୟତ ଓ ରାଜନୈତିକ ଜୀବନ ଗଢିବାରେ ସଂଘର୍ଷର ସମ୍ମୁଖୀନ ହୋଇ ନିଜକୁ ପ୍ରତିଷ୍ଠିତ କରିବାରେ ସମର୍ଥ ହୋଇଛି ବୋଲି ଆତ୍ମସନ୍ତୋଷ ଲାଭ କରୁଛି ବର୍ତ୍ତମାନ ଏ ପରିଣତ ବୟସରେ ପାର୍ଲିଆମେଣ୍ଟାରୀ

ରାଜନୀତିରୁ ଦୂରରେ ରହି ଶେଷ ଅଧ୍ୟାୟରେ ତାର କିଞ୍ଚିତ ସୂଚନା ଦେବି । ମୋର ବିବରଣୀ ହୁଏତ ଅନେକ ଭ୍ରମପୂର୍ଣ୍ଣ ହୋଇପାରେ । କିନ୍ତୁ ମୁଁ ଯାହା ଅନୁଭୂତିରେ ଆଣିଛି ଓ ଯେଉଁ ସଂଘର୍ଷର ସମ୍ମୁଖୀନ ହୋଇ ଶେଷରେ ନିର୍ବାଚନରୁ ଓହରି ଜାତୀୟ କଂଗ୍ରେସରେ ରହି ଶେଷ ନିଃଶ୍ୱାସ ତ୍ୟାଗ କରିବି ବୋଲି ନିର୍ବାଚନ ରାଜନୀତିରୁ ନିଜ ତରଫରୁ ପରିସ୍ଥିତିର ଚାପରେ ଅଲଗା ରହିଛି ତାର କିଛିଟା ଅନୁଭୂତି ପ୍ରକାଶ ନକଲେ ମୋର ସଂଘର୍ଷ ରାଜନୈତିକ ଜୀବନର କାହାଣୀ ଅପୂର୍ଣ୍ଣ ରହିଯିବ ବୋଲି ତାହା ପ୍ରକାଶ କରି ଅନୁଭୂତିକୁ ପାଠକଙ୍କ ବିଚାର ପାଇଁ ଲେଖୁଛି । ମୋର ବିଜୁବାବୁଙ୍କ ସହିତ ଶେଷ ପର୍ଯ୍ୟାୟ ଅନୁଭୂତି ଅତ୍ୟନ୍ତ ଯନ୍ତ୍ରଣାଦାୟକ ହୋଇଥିଲେ ମଧ୍ୟ ତାହା ପ୍ରକାଶଯୋଗ୍ୟ ବୋଲି ମୁଁ ଅନୁଭବ କରୁଛି ।

୧୯୭୦ ମସିହା, ଜନକଂଗ୍ରେସ ଓ ସ୍ୱତନ୍ତ୍ର ସରକାର ସେତେବେଳକୁ ସାଢ଼େ ତିନି ବର୍ଷ ଦାୟିତ୍ୱରେ ରହିଥିଲେ ମଧ୍ୟ ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ ମହତାବ ବାବୁଙ୍କ ମଧ୍ୟରେ ବୁଝାମଣାର ଅଭାବ ଘଟି ସରକାରୀ ସ୍ତରରେ ଓ ପ୍ରଶାସନିକ କ୍ଷେତ୍ରରେ ଅନିଶ୍ଚିତ ବାତାବରଣ ସୃଷ୍ଟି ହୋଇଥାଏ । ଏଣେ କଂଗ୍ରେସ ଦଳର ବିଭାଜନ ଓ ଶ୍ରୀମତି ଗାନ୍ଧୀ ପ୍ରଧାନମନ୍ତ୍ରୀ ରହି ବିଜୁବାବୁଙ୍କ ସହିତ ତାଙ୍କର ଅସୂୟାଭାବ ଯୋଗୁ ଶ୍ରୀମତି ନନ୍ଦିନୀ ଶତପଥୀଙ୍କ ଓଡିଶା ରାଜନୀତିରେ ପ୍ରଭାବ ବିସ୍ତାର ଫଳରେ ବିଜୁବାବୁଙ୍କ ଭବିଷ୍ୟତ ନେଇ ଉତ୍କଳ କଂଗ୍ରେସ ଦଳ ମଧ୍ୟରେ ଗଭୀର ଆଶଙ୍କା ରାଜନୀତି କ୍ଷେତ୍ରରେ ଏକ ଅବାଞ୍ଛନୀୟ ପରିସ୍ଥିତି ସୃଷ୍ଟି କରୁଥାଏ । ବିଜୁବାବୁ ନିଜେ ମଧ୍ୟ ତାଙ୍କର ଭବିଷ୍ୟତ ନେଇ ଉଦ୍‌ବେଗ ପ୍ରକାଶ କରୁଥାଆନ୍ତି । ଏହି ପରିପ୍ରେକ୍ଷୀରେ କ୍ରମଶଃ ଗାଁ ମଜଲିସ୍‌ରେ ମହତାବ ବାବୁଙ୍କ ଶକ୍ତିଶାଳୀ ଲେଖନୀ ପରିଚାଳନା ଯୋଗୁଁ କୋଷ୍ଟାଲ ଜିଲ୍ଲାମାନଙ୍କରେ ଜନକଂଗ୍ରେସ-ସ୍ୱତନ୍ତ୍ର ମନ୍ତ୍ରିମଣ୍ଡଳ କ୍ରମଶଃ ଜନସଂପର୍କ ହରାଇବାକୁ ବସିଲା ଏବଂ ମେଣ୍ଟ ସରକାରୀ ଦଳ ଭିତରେ ପରସ୍ପର ପ୍ରତି ଅବିଶ୍ୱାସ ଘନିଭୂତ ହୋଇ ଶେଷରେ ଉପମୁଖ୍ୟମନ୍ତ୍ରୀ ପବିତ୍ର ମୋହନ ପ୍ରଧାନ ତାଙ୍କ ଦାୟିତ୍ୱରୁ ଓହରି ଯାଇ ମିଳିତ ମନ୍ତ୍ରିମଣ୍ଡଳକୁ ପତନୋନ୍ମୁଖୀ ଅବସ୍ଥାକୁ ନେଇଗଲେ । ଯେ କୌଣସି ମୁହୂର୍ତ୍ତରେ ମୁଖ୍ୟମନ୍ତ୍ରୀ ଇସ୍ତଫା ଦେବା ପାଇଁ ମନସ୍ଥ କଲେ ଏବଂ ଏକ ବିକଳ୍ପ ସରକାର ଗଢିବା ପାଇଁ ଉଦ୍ୟମ ଖୁବ ଜୋରରେ ଆରମ୍ଭ ହେଲା । ଏହି ପରିସ୍ଥିତିରେ ସ୍ୱତନ୍ତ୍ର ସରକାରକୁ ବା ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କୁ ପୁନର୍ବାର ମୁଖ୍ୟମନ୍ତ୍ରୀ ନ କରାଇ ଏକ ବିକଳ୍ପ ସରକାର ଗଠନ ପାଇଁ କମ୍ୟୁନିଷ୍ଟ ଦଳର ବର୍ଷୀୟାନ ନେତା ସ୍ୱର୍ଗତ ଗଙ୍ଗାଧର ପାଇକେରା ଏକ ଉଦ୍ୟମ ଆରମ୍ଭ କଲେ ଉତ୍କଳ କଂଗ୍ରେସ ସହିତ ଆଲୋଚନା ଆରମ୍ଭ କରି । ସ୍ୱତନ୍ତ୍ର ଦଳର ଅନ୍ୟତମ ନେତା ଲୋକସଭାର ବରିଷ୍ଠ ସଦସ୍ୟ କଳାହାଣ୍ଡି ମହାରାଜା ଶ୍ରୀ ପି.କେ. ଦେଓ ଆସି ଆମର

ବ୍ୟକ୍ତିଗତ ବନ୍ଧୁତା ଓ ଘନିଷ୍ଠତାର ସୁଯୋଗ ନେଇ ଏ.ଜି. ଛକ ସ୍ଥିତ ବିରୋଧୀ ଦଳ ନେତାଙ୍କ ସରକାରୀ ବାସଭବନରେ ମୋ ସହିତ ଦୀର୍ଘ ଆଲୋଚନା କରି ଗୋଟିଏ ରାଜିନାମା ତୁରନ୍ତ କରାର ଦସ୍ତଖତ କରାଇବା ପାଇଁ ମତେ ପ୍ରବର୍ତ୍ତାଇବାକୁ ଆନ୍ତରିକ ଚେଷ୍ଟା କଲେ । ମୁଁ ଏପରି ଏକ ଗୁରୁତର ପରିସ୍ଥିତିରେ ବ୍ୟକ୍ତିଗତ ଭାବରେ କୌଣସି ନିଷ୍ପତ୍ତି ନ ନେଇ ଦଳୀୟ ବୈଠକରେ ଆଲୋଚନା କରି ତାଙ୍କୁ ଯଥାଶୀଘ୍ର ଉତ୍କଳ କଂଗ୍ରେସର ପ୍ରତିକ୍ରିୟା ଜଣାଇବି ବୋଲି ଜଣାଇଲି । ସେତେବେଳେ ମୋ ସରକାରୀ ବାସଭବନରେ ପୂର୍ବତନ ଉପମନ୍ତ୍ରୀ ଓ ପରବର୍ତ୍ତୀ ସାଂସଦ ଶ୍ରୀ ସନ୍ତୋଷ କୁମାର ସାହୁ, ଉପ ବାଚସ୍ପତି ଶ୍ରୀ ଚିନ୍ତାମଣି ଜେନା ଓ ଅନ୍ୟମାନେ ଉପସ୍ଥିତ ଥିଲେ । ପାଟନା ମହାରାଜାଙ୍କ ସମାଧାନ ଫର୍ମୁଲା ଥିଲା ସେ ମୁଖ୍ୟମନ୍ତ୍ରୀ ରହିବେ, ଉତ୍କଳ କଂଗ୍ରେସ ତରଫରୁ ମୁଁ ଉପ ମୁଖ୍ୟମନ୍ତ୍ରୀ ହେବି ତା ସହିତ ସ୍ୱରାଷ୍ଟ୍ର ବିଭାଗ ଦାୟିତ୍ୱରେ ରହିବି । ମନ୍ତ୍ରିମଣ୍ଡଳରେ ସ୍ୱତନ୍ତ୍ର ଓ ଉତ୍କଳ କଂଗ୍ରେସର ସମାନ ସଂଖ୍ୟକ ମନ୍ତ୍ରୀ ରହିବେ । ଦାୟିତ୍ୱ ସେହିପରି ସମାନ ଭାବରେ ବଣ୍ଟନ କରାଯିବ । ଚିନ୍ତାମଣି ବାବୁ ଓ ସନ୍ତୋଷ ବାବୁ ଓ ଉପସ୍ଥିତ ବିଧାୟକଙ୍କ ସହିତ ଆଲୋଚନାରେ ମୋର ମନେ ହେଲା ସେମାନେ ଏ ପ୍ରସ୍ତାବର ବିରୋଧ ନକରି ସରକାରକୁ ଯେ କୌଣସି ମତେ ନ ଭାଙ୍ଗିବା ପାଇଁ ମତ ଦେବେ । ଏ ସମ୍ବାଦ ବିଦ୍ୟୁତ ବେଗରେ ସାରା ଭୁବନେଶ୍ୱରରେ ପ୍ରଚାରିତ ହେବାରେ, ବିରୋଧୀ ଦଳର ଅନ୍ୟ ଅଂଶୀଦାର ଯଥା ପ୍ରଜା ସମାଜବାଦୀ ଦଳର ବର୍ଷୀୟାନ ନେତା ଶ୍ରୀ ରବୀନ୍ଦ୍ର ମୋହନ ଦାସ, ସ୍ୱର୍ଗତ ନିଶାମଣି ଖୁଣ୍ଟିଆ, କମ୍ୟୁନିଷ୍ଟ ଦଳର ନେତା ଗଙ୍ଗାଧର ପାଇକେରା, ଲୋକନାଥ ଚୌଧୁରୀ ପ୍ରମୁଖ ସ୍ୱତନ୍ତ୍ର ଦଳକୁ ପୁନର୍ବାର ସରକାର ଗଢିବା ପାଇଁ ଉଦ୍ୟମର ଘୋର ବିରୋଧ କରି ଉତ୍କଳ କଂଗ୍ରେସ ସରକାର ଗଢିଲେ ସେମାନେ ସହଯୋଗ କରିବେ ବୋଲି ମତ ପ୍ରକାଶ କଲେ । କିଏ ନେତା ହେବ ସେ ବିଷୟ ଉଭୟ ଦଳ ଆଲୋଚନା କଲାବେଳେ ନୀଳମଣି ବାବୁ ସ୍ୱର୍ଗତ ରାଧାନାଥ ରଥଙ୍କ ନାମ ପ୍ରସ୍ତାବ କରିବାରେ ତାହା ଗୃହିତ ହୋଇ ନପାରିବାରୁ ଉତ୍କଳ କଂଗ୍ରେସ ବିଧାୟକ ଦଳର ନେତା ତଥା ବିରୋଧୀ ଦଳର ନେତା ଭାବେ ମୋ ନାମ କମ୍ୟୁନିଷ୍ଟଙ୍କ ତରଫରୁ ପ୍ରସ୍ତାବ ହେଲା ଏବଂ ଦୀର୍ଘ ଆଲୋଚନା ପରେ ମୋ ନାମ ଉପରେ ଉଭୟ ଦଳରେ ମତ ପ୍ରକାଶ ପାଇବା ପରେ, ରବି ଭାଇ ଓ ଗଙ୍ଗାଧର ପାଇକେରା (ମିତ ବୋଲି ମୁଁ ତାଙ୍କୁ ସମ୍ବୋଧନ କରୁଥିଲି), ଉଭୟ ମୋ ସହିତ ଆଲୋଚନା କରିବା ପାଇଁ ଆସିଲେ । ମୁଁ ଆଲୋଚନାରେ ପ୍ରକାଶ କଲି ଯେ ପ୍ରଥମେ ରାଜ୍ୟପାଳଙ୍କୁ ଭେଟି ଆମେ ସବୁ ବିରୋଧୀ ଦଳ ନେତାମାନେ ମିଳିତ ଭାବେ ଜଣାଇ ଦେବା ଯେ, ଆମେ ମନ୍ତ୍ରିମଣ୍ଡଳ ଗଢିବା ପାଇଁ ପ୍ରସ୍ତୁତ ଅଛୁ ଓ ଆବଶ୍ୟକୀୟ ସମର୍ଥନ ପାଇଁ ଆମକୁ ଅନ୍ୟୁନ ଏକ ସପ୍ତାହ ସମୟ ଦିଆଯାଉ । ସେତେବେଳେ ବିଧାନସଭାର

ସଭ୍ୟ ସଂଖ୍ୟା ଥିଲା ଶହେ ଚାଳିଶ । ବାଚସ୍ପତି ଓ ଉପବାଚସ୍ପତିଙ୍କୁ ଛାଡି ଅନ୍ୟୂନ ୬୭ ଜଣ ସଭ୍ୟଙ୍କ ସମର୍ଥନ ଲୋଡା । ସେତେବେଳେ ରାଜ୍ୟପାଳ ଦାୟିତ୍ୱରେ ଥିଲେ ଶ୍ରୀ ସରିଫ । ସେ ମଧ୍ୟ ଚାହୁଁ ନଥାନ୍ତି ବର୍ଷକ ପୂର୍ବରୁ ନିର୍ବାଚନ କରାଇବା ପାଇଁ । ମୁଁ ବିରୋଧି ଦଳର ନେତା ଭାବେ ଅନ୍ୟ ନେତାମାନଙ୍କ ସହିତ ମୋ ଆମ୍ବାସାଡାର ଗାଡିରେ ଆସି ପୁରୀ ରାଜଭବନରେ ପହଞ୍ଚିଲୁ । ରାତ୍ର ପ୍ରାୟ ୧୦ ହେବ । ମାନ୍ୟବର ରାଜ୍ୟପାଳ ଶ୍ରୀ ସରିଫ ସାହେବ ବିଶ୍ରାମ ନେଇଥିଲେ । ଆମେ ସବୁ ବିରୋଧି ଦଳର ନେତାମାନେ ତାଙ୍କୁ ଦେଖା କରିବା ପାଇଁ ଭୁବନେଶ୍ୱରରୁ ଆସି ତଳେ ଅପେକ୍ଷା କରିଥିବା ସମ୍ବାଦ ତାଙ୍କୁ ଦିଆଯିବାରେ ସେ ଆମମାନଙ୍କୁ ଉପରକୁ ଡାକି ଚର୍ଚ୍ଚା କଲେ ଏବଂ ରାଜ୍ୟର ରାଜନୈତିକ ପରିସ୍ଥିତି ସଂପର୍କରେ ପ୍ରାୟ ଅଧଘଣ୍ଟାଏ ଆଲୋଚନା ପରେ ଆମର ମିଳିତ ଲେଖାଟି ଦେଖି ସମୟ ଦେଲେ ଏବଂ ସମର୍ଥକମାନଙ୍କ ଦସ୍ତଖତ ସହିତ ଆମ ପକ୍ଷରେ ସଂଖ୍ୟାଧିକ ସମର୍ଥନ ଥିବାର ତାଙ୍କର ସ୍ପଷ୍ଟ ପ୍ରତୀୟମାନ ହେଲେ ସେ ସାମ୍ବିଧାନିକ ଦାୟିତ୍ୱ ତୁଲାଇ ଏକ ବିକଳ୍ପ ସରକାର ଗଠନ କରିବାପାଇଁ ମୋତେ ଯଥା ସମୟରେ ନିମନ୍ତ୍ରଣ ଦେବେ ବୋଲି ମତ ଦେଲେ । ମୁଁ ମିଳିତ ବିରୋଧୀ ଦଳର ନେତା ବୋଲି ପ୍ରଜା ସମାଜବାଦୀ ଓ କମ୍ୟୁନିଷ୍ଟ ପାର୍ଟି ଉଭୟ ଦଳ ଲିଖିତ ଭାବେ ଦେଲେ । ସେତେବେଳେ ଉତ୍କଳ କଂଗ୍ରେସ ଦଳର ସଭ୍ୟ ସଂଖ୍ୟା ଥିଲା ୨୩, ପ୍ରଜା ସମାଜବାଦୀ ଦଳର ସଭ୍ୟ ଥିଲେ ୧୭, ସି.ପି.ଆଇ. ସଭ୍ୟ ଥିଲେ ଚାରି ଜଣ । ଏ ସମସ୍ତଙ୍କୁ ମିଶାଇଲେ କେବଳ ୪୪ ଜଣ ଥିଲୁ । ଆଉ ୨୨ ଜଣଙ୍କ ସମର୍ଥନ ପାଇଁ ଜନ କଂଗ୍ରେସ ଓ ସ୍ୱତନ୍ତ୍ର ଦଳର କିଛିଟା ବିଧାୟକଙ୍କୁ ନେଇ ଏକ ମିଳିତ ମନ୍ତ୍ରିମଣ୍ଡଳ ଗଢିବାର ଉଦ୍ୟମ ଆରମ୍ଭ କରାଯିବା ପୂର୍ବରୁ ମୁଁ ପ୍ରସ୍ତାବ ଦେଲି ଯେ ଉତ୍କଳ କଂଗ୍ରେସର ପ୍ରତିଷ୍ଠାତା ବିଜୁ ପଟ୍ଟନାୟକ ଓ ନୀଳମଣି ରାଉତରାଙ୍କ ସହିତ ଆଲୋଚନା କରିବା ପରେ ଓ ସେମାନଙ୍କର ଆମ ଉଦ୍ୟମ ପ୍ରତି ସମର୍ଥନ ଥିବାର ଦୃଢ ପ୍ରତିଶ୍ରୁତି ଏବଂ ଆମ ଉଦ୍ୟମକୁ ଆଗେଇ ନେବାରେ ସେମାନଙ୍କ ଦୃଢ ସମର୍ଥନ ନ ମିଳିଲେ ଆମେ ଆଗେଇବା ଉଚିତ ହେବ ନାହିଁ । ମୋ ପ୍ରସ୍ତାବରେ ସମସ୍ତେ ଏକମତ ହେବାରୁ ବିଜୁବାବୁଙ୍କୁ ଟେଲିଫୋନ କରିବାର ଦାୟିତ୍ୱ ମତେ ଦିଆଗଲା । ବିଜୁବାବୁ ବଲାଙ୍ଗୀରରେ ଥିଲେ, ସେ ଟେଲିଫୋନରେ ଉତ୍ତର ଦେଇ କଟକ ସେହି ରାତ୍ର ଫେରିବେ ବୋଲି ରାଜି ହୋଇ ମୋତେ ନୀଳମଣି ବାବୁଙ୍କୁ ଚୌଦ୍ୱାର କଳିଙ୍ଗ ଟ୍ୟୁବ୍ସ ଅତିଥିଭବନଠାରେ ଅପେକ୍ଷା କରିବା ପାଇଁ ନିର୍ଦ୍ଦେଶ ଦେଲେ । ମୁଁ ଓ ନୀଳମଣି ବାବୁ ଉଭୟେ ତଦନୁଯାୟୀ କଳିଙ୍ଗ ଅତିଥିଭବନରେ ଅପେକ୍ଷା କରି ରାତ୍ର ପ୍ରାୟ ୧୨ଟା ବେଳେ ବିଜୁବାବୁଙ୍କ ଫେରିବାପରେ ସମସ୍ତ ବିଷୟ ଆଲୋଚନା କଲୁ । ଶେଷରେ ସ୍ଥିର ହେଲା ଯେ, ତା ପରଦିନ ସକାଳ ୯ଟା ବେଳେ ଭୁବନେଶ୍ୱରସ୍ଥ ନବୀନ ନିବାସରେ

ପୁଣି ଆଲୋଚନା ପରେ ଶେଷ ସିଦ୍ଧାନ୍ତ ନିଆଯିବ । ଏ ସମ୍ବାଦ ସବୁ ବିରୋଧି ଦଳ ନେତାମାନଙ୍କୁ ଜଣେଇ ଦିଆଗଲା । ପରଦିନ ସକାଳେ ପୂର୍ବ ନିଷ୍ପତ୍ତି ମତେ ଆମେ ନବୀନ ନିବାସରେ ଏକତ୍ର ହେଲୁ । ବିଜୁବାବୁ ଆଲୋଚନା ବେଳେ ସୂଚନା ଦେଲେ ଯେ ଯଦି ନିର୍ବାଚନ ହୁଏ ଉତ୍କଳ କଂଗ୍ରେସ ଅବସ୍ଥା କ'ଣ ହେବ ଏବଂ ନିର୍ବାଚନ ନକରି ଯଦି ପୁନଶ୍ଚ ଏକ ମିଳିତ ମନ୍ତ୍ରିମଣ୍ଡଳ ଗଢାଯାଏ ତାହା କେତେଦିନ ସ୍ଥାୟୀ ହୋଇପାରିବ । ନିର୍ବାଚନ ପାଇଁ ପାଣ୍ଠି କଥା ମଧ୍ୟ ଉଠିଥିଲା । ଆଲୋଚନା ବେଳେ ମୁଁ ସଂକେତ ପାଇଲି ଯେ ନନ୍ଦିନୀ ଶତପଥୀଙ୍କ ଉଦ୍ୟମରେ ମୁଁ ଶ୍ରୀମତି ଇନ୍ଦିରା ଗାନ୍ଧୀଙ୍କ ସହିତ ସାକ୍ଷାତକୁ (ଏ.ଆଇ.ସି.ସି. ବୈଠକ ବେଳେ) ବିଜୁବାବୁଙ୍କୁ ଭଲ ଲାଗିନଥିଲା, ତାଙ୍କ ଅନୁମତି ନ ନେଇ ମୁଁ ଦେଖା କରିବା । ମୁଁ ଯଦି ମିଳିତ ମନ୍ତ୍ରିମଣ୍ଡଳରେ ମୁଖ୍ୟମନ୍ତ୍ରୀ ରହେ, ପ୍ରଜା ସୋସାଲିଷ୍ଟ ଓ କମ୍ୟୁନିଷ୍ଟ ଦଳ ଅଧିକ ଶକ୍ତିଶାଳୀ ହେବାର ସମ୍ଭାବନା ଏବଂ ସେମାନଙ୍କର ଆର୍ଥିକ ଶକ୍ତି ବଢିବାର ସମ୍ଭାବନା ଅଧିକ ହେବ ବୋଲି ବିଜୁ ବାବୁଙ୍କ ମନରେ ଧାରଣା ସୃଷ୍ଟି କରାଯାଉଛି । ସେ ଓ ନୀଳମଣି ବାବୁ ଉଭୟ ବ୍ୟବସ୍ଥାସଭା ସଦସ୍ୟ ନଥାଇ ଯେଉଁ ମନ୍ତ୍ରିମଣ୍ଡଳ ହେବ ସେଥିରେ ଉଭୟଙ୍କର ବିଶେଷ ସ୍ୱାର୍ଥ ସାଧନ ନଘଟି ଯଦି ପୁଣିଥରେ ନିର୍ବାଚନ ହୁଏ ବିଜୁ ବାବୁ ଓ ନୀଳମଣି ଉଭୟ କ୍ଷମତା ବଳୟରେ ଅଧିକ ଶକ୍ତିଶାଳୀ ହୋଇପଡିବାର ସମ୍ଭାବନା ଅଧିକ ବୋଲି ବିଜୁବାବୁଙ୍କ ମନରେ ଧାରଣା ହେଉଥିଲା । ଏକଥା ନୀଳମଣି ବିଶେଷ ଭାବରେ ଉପଲବ୍ଧି କରି ବିଜୁବାବୁଙ୍କ ସାମ୍ନାରେ ଆଉ ବିଶେଷ ଯୁକ୍ତି ନକରି ଚୁପ୍ ରହିଲେ । ମୁଁ ବିଜୁବାବୁଙ୍କ ସହିତ ଅଧଘଣ୍ଟାଏ ବିଭିନ୍ନ ଦିଗରୁ ଆଲୋଚନା କଲି ତାଙ୍କର ଆସନ୍ତା ନିର୍ବାଚନରେ ଉତ୍କଳ କଂଗ୍ରେସ ଦଳର କେତେକଦୂର ସାମର୍ଥ୍ୟ ହେବ ବିଧାନସଭା ନିର୍ବାଚନରେ ସାଫଲ୍ୟ ନେଇ । ଏହି ସବୁ ଆଲୋଚନା ପରେ ମଧ୍ୟ ତାଙ୍କର ନିଜ ଉପରେ ଏତେ ବିଶ୍ୱାସ ଥିଲା ଯେ ଓ ଇନ୍ଦିରାଜୀଙ୍କ ବ୍ୟବହାରରେ ସେ ଏତେ ବିବ୍ରତ ହୋଇଥିଲେ ଯେ ସେ ନିଜେ ଇନ୍ଦିରାଜୀଙ୍କୁ ନିର୍ବାଚନରେ ସାମ୍ନା କରିବେ ପଛକେ କିନ୍ତୁ ଏପରି ଏକ ଆମ ପ୍ରସ୍ତାବିତ ଅନିଶ୍ଚିତ ମିଳିତ ମନ୍ତ୍ରିମଣ୍ଡଳର ପାଇଁ ତାଙ୍କର ଆଗ୍ରହ ନାହିଁ ଏବଂ ଭବିଷ୍ୟତରେ ତାଙ୍କର ନେତୃତ୍ୱ ଉପରେ ଆଞ୍ଚ ଆସିପାରେ ଏହି ଆଶଙ୍କା କରି ସେ ମୋ ସହିତ ଏକମତ ନହୋଇ ସାନି ନିର୍ବାଚନ ପାଇଁ ପ୍ରସ୍ତୁତ ଓ ସେଥିପାଇଁ ସମ୍ବଳ ସଂଗ୍ରହ କରିବା ପାଇଁ ସମସ୍ତ ଉଦ୍ୟମ କରିବେ ବୋଲି ପ୍ରତିଶ୍ରୁତି ଦେଇ ମତେ ମନ୍ତ୍ରିମଣ୍ଡଳ ଗଠନ ଉଦ୍ୟମକୁ ଆଉ ଅଧିକ ପ୍ରଶ୍ରୟ ନ ଦେବାକୁ ପ୍ରବର୍ତ୍ତାଇଥିଲେ । ବିଜୁବାବୁଙ୍କୁ ଛାଡି ଓ ତାଙ୍କ ମତ ବିରୋଧରେ ଏକ ମିଳିତ ମନ୍ତ୍ରିମଣ୍ଡଳ ଗଢିବାର ସମ୍ଭାବନାକୁ ମୁଁ ଶେଷରେ ତ୍ୟାଗ କରି ବିଜୁବାବୁଙ୍କ ସହିତ ଏକମତ ହେଲି ଏବଂ ମୋର ସହକର୍ମୀ ଅନ୍ୟାନ୍ୟ ବ୍ୟବସ୍ଥାସଭାଦଳର ନେତାମାନଙ୍କୁ ଜଣାଇଦେଲି । ପରେ

ପରେ ରାଜ୍ୟପାଳଙ୍କୁ ଏପରି ଏକ ମିଳିତ ମନ୍ତ୍ରିମଣ୍ଡଳର ଆବଶ୍ୟକତା ଉପଲବ୍ଧ ନ ହେବାରୁ ମୁଁ ସେ ଉଦ୍ୟମରୁ ବିରତ ହେଲି ବୋଲି ଜଣାଇ ଦେଲି । ଫଳରେ ମିଳିତ ମନ୍ତ୍ରିମଣ୍ଡଳର ସମ୍ଭାବନା ସଫଳ ହେଲା ନାହିଁ । ବ୍ୟବସ୍ଥାସଭାରେ ମୁଖ୍ୟମନ୍ତ୍ରୀ ପାଟଣା ମହାରାଜା ମଧ୍ୟ ଅନ୍ୟ ବିକଳ୍ପ ସରକାର ଗଢ଼ିବାରେ ସକ୍ଷମ ନ ହେବାରୁ ବ୍ୟବସ୍ଥାସଭା ଭଙ୍ଗ କରାଯାଇ ରାଷ୍ଟ୍ରପତି ଶାସନ ଜାରି ହେଲା ଏବଂ ୧୯୭୧ ପ୍ରାରମ୍ଭରେ ସାଧାରଣ ନିର୍ବାଚନ ସହିତ ଓଡ଼ିଶାରେ ମଧ୍ୟ ସାଧାରଣ ନିର୍ବାଚନ ହେବାର ସ୍ଥିର ହେଲା । ଏହା ହିଁ ହେଲା ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ପାଟଣା ମହାରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ନେତୃତ୍ୱର ଅବସାନ । ମହତାବ ବାବୁଙ୍କର ପ୍ରତ୍ୟକ୍ଷ ନେତୃତ୍ୱର ବିଲୟ ଓ ନନ୍ଦିନୀ ଦେବୀଙ୍କ ଓଡ଼ିଶା ରାଜନୀତିରେ ଅଭ୍ୟୁଦୟର ଅୟମାରମ୍ଭ ।

ଏବେ ମୁଁ କିଛି ମାତ୍ରାରେ ସୂଚନା ଦେଲି କେଉଁ ପରିସ୍ଥିତିରେ ମୋର ମୁଖ୍ୟମନ୍ତ୍ରୀ ହେବାର ପ୍ରଥମ ସ୍ୱପ୍ନ ସ୍ୱପ୍ନରେ ହିଁ ରହିଗଲା । ମୋର ବିଜୁବାବୁଙ୍କ ନେତୃତ୍ୱ ପ୍ରତି ଚରମ ଆସ୍ଥା ଓ ବିଜୁବାବୁଙ୍କର ମୋ ନେତୃତ୍ୱରେ ଅନ୍ତରୀଣ ସରକାର ହେଲେ ୧୯୭୧ ନିର୍ବାଚନ ପରେ ମୋର ରାଜନୀତିକ ପ୍ରାଧାନ୍ୟ ବଢ଼ିବାର ସମ୍ଭାବନା, ଏଇ ଦୁଇଟି କଥା ରାଜନୀତିକ ସଂକଟକୁ ଅଧିକ ଘନୀଭୂତ କରିଦେଲା । ରାଜ୍ୟପାଳ ଶାସନ ହାତକୁ ନେଲେ । କିନ୍ତୁ ମୁଁ ଗୋଟିଏ ନିଷ୍ପତ୍ତିରେ ଅଟଳ ରହିଲି ଯେ ଭବିଷ୍ୟତ ନିର୍ବାଚନରେ ଉତ୍କଳ କଂଗ୍ରେସର ଭବିଷ୍ୟତ ଅତ୍ୟନ୍ତ ଅନିଶ୍ଚିତ । ମୁଁ ଯଦି ଉତ୍କଳ କଂଗ୍ରେସରେ ପୁନର୍ବାର ନିର୍ବାଚନ ଲଢ଼େ ଭାରତୀୟ ଜାତୀୟ କଂଗ୍ରେସର ଦ୍ୱାର ମୋ ପାଇଁ ବନ୍ଦ ରହିବ ଏବଂ ମୋର ରାଜନୈତିକ ସ୍ଥିତି ଅନ୍ଧକାର ହେବ । କାରଣ ୧୯୭୧ ନିର୍ବାଚନ ପାଇଁ ବିଜୁବାବୁ ସେତେବେଳେ ଅର୍ଥର ଅତ୍ୟନ୍ତ ଅଭାବ ଅନୁଭବ କରି ଉତ୍କଳ କଂଗ୍ରେସର କିଛି ବିତ୍ତଶାଳୀ ଲୋକଙ୍କଠାରୁ ସମ୍ବଳ ସଂଗ୍ରହ କରି ନିର୍ବାଚନ ଲଢ଼ିବାର ମନସ୍ଥ କରୁଥିବା ମୁଁ ହୃଦୟଙ୍ଗମ କରୁଥିଲି । କାରଣ ମୋର ବିଜୁବାବୁଙ୍କ ଓ ନୀଳମଣି ବାବୁଙ୍କ ସହିତ ନବୀନ ନିବାସରେ ଶେଷ ଆଲୋଚନା ରାଜ୍ୟ ସରକାର ଗଠନ ନେଇ ଚାଲିଥିବାବେଳେ ବିଜୁ ବାବୁ ଆଲୋଚନା ଛଳରେ କହି ପକାଇଥିଲେ 'ତୁ ଏହି କେତେ ମାସ ଭିତରେ ଯଦି ୩୦ ଲକ୍ଷ ଟଙ୍କା ନିର୍ବାଚନ ପାଣ୍ଠି ପାଇଁ ଆଦାୟ କରିପାରିବୁ ତାହାହେଲେ ମୁଁ ଉତ୍କଳ କଂଗ୍ରେସ ନିର୍ବାଚନ ପାଇଁ ଅଧିକ ଦରକାର ହେଉଥିବା ପାଣ୍ଠି ସଂଗ୍ରହର ଦାୟିତ୍ୱ ନେଇଯିବି ।' ମୁଁ ଉତ୍ତରରେ କହିଥିଲି ସରକାରୀ ଦାୟିତ୍ୱରେ ରହି ନିର୍ବାଚନ ପାଇଁ ଏତେ କମ ସମୟରେ ଗୋଟିଏ ମିଳିତ ସରକାର ପକ୍ଷରେ ଉତ୍କଳ କଂଗ୍ରେସ ଦଳ ପାଇଁ ୩୦ ଲକ୍ଷ ଅର୍ଥ ସଂଗ୍ରହ କରିବା ସମ୍ଭବପର ହେବାର ଗ୍ୟାରେଣ୍ଟି ଦେବା ମୋ ପକ୍ଷରେ ସମ୍ଭବପର ହୋଇନପାରେ । ସେ ମଧ୍ୟ ମୋର ସାମର୍ଥ୍ୟ ଉପରେ ସନ୍ଦୀହାନ ହୋଇ ଉଠିବାର ମୁଁ ଲକ୍ଷ୍ୟ କଲି । ଶେଷରେ ସେ

ଏକ ମିଳିତ ସରକାର ପାଇଁ ସମର୍ଥନ ସଂଗ୍ରହ କରିବାରେ ସମୟ ଓ ସମ୍ବଳ ବିନିଯୋଗ ନକରି, ଯଥା ସମ୍ବଳ ଧରି ନିର୍ବାଚନକୁ ଯିବା ଉଚିତ ବୋଲି ନିଷ୍ପତ୍ତି ନେଇ ରାଜ୍ୟପାଳଙ୍କୁ ମୋର ଏକ ବିକଳ୍ପ ମନ୍ତ୍ରିମଣ୍ଡଳର ଦାୟିତ୍ୱ ନେବା ସମ୍ଭବପର ନୁହେଁ ବୋଲି ଜଣାଇ ଦେବାକୁ ନିର୍ଦ୍ଦେଶ ଦେଲେ । ସେଇଠାରେ ମୋ ନେତୃତ୍ୱରେ ପ୍ରଥମ ଥର ପାଇଁ ଏକ ବିକଳ୍ପ ସରକାର ଗଠନର ସ୍ୱପ୍ନ ସ୍ୱପ୍ନରେ ହିଁ ରହିଗଲା । ୧୯୭୧ ନିର୍ବାଚନରେ ଜଣେ ଉଦୀୟମାନ ଶିଳ୍ପପତି ସତ୍ୟବାଦୀ ନିର୍ବାଚନ ମଣ୍ଡଳୀରୁ ପ୍ରତିଦ୍ୱନ୍ଦ୍ୱିତା କରିବା ପାଇଁ ଉଦ୍ୟତ ହୋଇ ବିଜୁବାବୁଙ୍କ ନିର୍ବାଚନ ପାଣ୍ଠିକୁ ପ୍ରଚୁର ଅର୍ଥ ଦାନ କରିବା ଖବର ମୁଁ ଶୁଣିବାକୁ ପାଇଲି ଓ ସର୍ବତ୍ର ପ୍ରଚାରିତ ମଧ୍ୟ ହେଲା ।

ବିରୁଦ୍ଧ ଦଳର ନେତା ତଥା ଉତ୍କଳ କଂଗ୍ରେସ ବିଧାୟକ ଦଳର ନେତା ଭାବେ ପ୍ରାୟ ଦୁଇ ବର୍ଷ ରହିବା ପରେ ଉତ୍କଳ କଂଗ୍ରେସ ଦଳ ତ୍ୟାଗ କରି ମୁଁ ନିର୍ବାଚନ ଟିକଟ ପାଇଁ ଅନ୍ୟ ଦଳ ବିଶେଷ କରି କଂଗ୍ରେସ ଦଳର ଦ୍ୱାରସ୍ଥ ହେବା ଉଚିତ୍ ହେବ ନାହିଁ ଓ ଦଳତ୍ୟାଗୀ ଭାବେ ଖ୍ୟାତ ହେବି ବିଚାରି ଶେଷ ମୁହୂର୍ତ୍ତରେ ବିଜୁବାବୁ କ'ଣ ନିଷ୍ପତ୍ତି ନେବେ ବୋଲି ଅପେକ୍ଷା କଲି । ଚନ୍ଦ୍ରମାଧବ ମିଶ୍ର, ଜଣେ ଯୁବ ଶିଳ୍ପପତି ଭାବେ ରାଜନୀତିରେ ବିଜୁବାବୁଙ୍କ ସହିତ ନିର୍ବାଚନରେ ସମ୍ବଳ ସଂଗ୍ରହ କରିବାରେ ସହାୟକ ହୋଇ ନିଜର ରାଜନୈତିକ ଜୀବନ ଆରମ୍ଭ କରି କ୍ଷମତା ବଳୟକୁ ଆସିବା ସର୍ବତ୍ର ପ୍ରଚାରିତ ହେଲା । ଶେଷରେ ବିଜୁବାବୁ ଚନ୍ଦ୍ର ମାଧବ ବାବୁଙ୍କୁ ଉତ୍କଳ କଂଗ୍ରେସ ପ୍ରାର୍ଥୀ ଭାବେ ସତ୍ୟବାଦୀ ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ଦେବେ ବୋଲି ଘୋଷଣା କରିବାରେ ମୋର ଉତ୍କଳ କଂଗ୍ରେସରୁ ବିଦାୟ ନେବା ପାଇଁ ଦଳ ତ୍ୟାଗ କରିବା ପଡିଲା ନାହିଁ । ଶ୍ରୀ ରବି ଦାସ ସେତେବେଳକୁ ଜିଲ୍ଲା କଂଗ୍ରେସର ପ୍ରମୁଖ ଭାବରେ ଥାଇ ଜାତୀୟ କଂଗ୍ରେସ ଦଳର ପ୍ରାର୍ଥୀ ହେବେ ବୋଲି ପ୍ରାୟ ସ୍ଥିର ହୋଇଗଲା । ସ୍ୱର୍ଗତ ବ୍ରଜ ମୋହନ ମହାନ୍ତି ସେତେବେଳକୁ କଂଗ୍ରେସ ବିଧାୟକ ଦଳର ସଂପାଦକ ଥାଇ ନନ୍ଦିନୀ ଦେବୀଙ୍କ ନେତୃତ୍ୱରେ କଂଗ୍ରେସ ଦଳର ନିର୍ବାଚନରେ ବିଜୟ ହାସଲ କରିବା ପାଇଁ ନେତୃତ୍ୱ ନେଇଥିଲେ । ତାଙ୍କର ମଧ୍ୟ ମୋର କଂଗ୍ରେସ ଦଳରେ ପ୍ରବେଶକୁ ଘୋର ବିରୋଧ ଥିଲା । କାରଣ ପୁରୀ ଜିଲ୍ଲାରେ କଂଗ୍ରେସ ନେତା ଲୋକନାଥ ମିଶ୍ର (ପକ ବାବୁ)ଙ୍କ ନେତୃତ୍ୱ ୧୯୫୭ ନିର୍ବାଚନ ପରେ ଆଉ ରହିଲା ନାହିଁ । ବ୍ରଜବାବୁ ପୁରୀ ମ୍ୟୁନିସିପାଲିଟି ନିର୍ବାଚନରେ ଦ୍ୱିତୀୟ ଥର ପାଇଁ ମୋ ସହିତ ପ୍ରତିଦ୍ୱନ୍ଦ୍ୱିତା କରି ସଫଳତା ଲାଭ ନ କରିବାରେ ଆମ ଦୁହିଁଙ୍କ ମଧ୍ୟରେ ରାଜନୈତିକ ପ୍ରତିଦ୍ୱନ୍ଦ୍ୱିତା ପାଇଁ କ୍ଷେତ୍ର ପ୍ରସ୍ତୁତ ହୋଇ ଜିଲ୍ଲା ରାଜନୀତିରେ ମୁଁ ଜିଲ୍ଲା କଂଗ୍ରେସ ସଭାପତି, ବିରୋଧି ଦଳର ନେତା ବିଜୁବାବୁଙ୍କ ବିଶ୍ୱସ୍ତ ଭାବେ ଉତ୍କଳ କଂଗ୍ରେସ ନେତା ଭାବେ ରାଜ୍ୟ ରାଜନୀତିରେ ତତ୍କାଳୀନ ଜଣେ ପ୍ରମୁଖ ପ୍ରତିଦ୍ୱନ୍ଦ୍ୱୀ ଭାବରେ ତାଙ୍କ ଆଗରେ ଥିବା

ହେତୁ ସେ ଉତ୍କଳ କଂଗ୍ରେସରେ ମୋ ସହିତ ପ୍ରତିଦ୍ୱନ୍ଦିତା କରିବା ତାଙ୍କ ପକ୍ଷରେ ସମ୍ଭବପର ହୋଇପାରୁନଥିବାରୁ ସେ ନନ୍ଦିନୀ ଦେବୀଙ୍କ ନେତୃତ୍ୱ ସ୍ୱୀକାର କରି ଅଳ୍ପସଂଖ୍ୟକ ବିଶିଷ୍ଟ ଜାତୀୟ କଂଗ୍ରେସର ନେତୃତ୍ୱ ପାଇଁ ସୁବର୍ଣ୍ଣ ସୁଯୋଗ ପାଇଲେ ବିଜୁବାବୁଙ୍କ ରାଜନୈତିକ ବିଳୟ ଆରମ୍ଭ ବେଳେ । ବିଶେଷ କରି ଖାନ୍ନା କମିଶନ ଜଜ୍‌ମେଣ୍ଟ ପରେ ବିଜୁବାବୁ ମୁଖ୍ୟମନ୍ତ୍ରିତ୍ୱରୁ ବିଦାୟ ନେବାର ଅବ୍ୟବହିତ ପରେ ନନ୍ଦିନୀ ଦେବୀ ଓଡିଶାକୁ ଆସି ତାଙ୍କର ନେତୃତ୍ୱରେ ଶ୍ରୀମତି ଇନ୍ଦିରା ଗାନ୍ଧୀଙ୍କ ଆଶୀର୍ବାଦରେ ଓଡିଶାରେ ଇନ୍ଦିରା କଂଗ୍ରେସର ପ୍ରାଧାନ୍ୟ ବିସ୍ତାର କରିବା ପାଇଁ ଉଦ୍ୟମ କରୁଥିବା ଅବସ୍ଥାରେ ବ୍ରଜ ବାବୁ ନିଜ ଭବିଷ୍ୟତ ପାଇଁ ନନ୍ଦିନୀ ଦେବୀଙ୍କ ନେତୃତ୍ୱ ଗ୍ରହଣ କରିବାରେ ବିଶେଷ ଆଶ୍ଚର୍ଯ୍ୟ ହେବାର କିଛି ନଥିଲା । ରାଜନୀତି କ୍ଷେତ୍ରରେ ସୁଯୋଗ ଯେତେବେଳେ ଆସେ ତାକୁ ଉପଯୋଗ କରି ନିଜର ଭବିଷ୍ୟତ ଗଢିବାରେ ଯଦି ସେ ସୁଯୋଗର ସୁବିଧା ନ ନିଆଯାଏ ଆଉ ସେପରି ସୁଯୋଗ ଆସିବ ନାହିଁ । ବ୍ରଜବାବୁଙ୍କ ତୀକ୍ଷ୍ଣ ବୁଦ୍ଧି ଏହି ସୁଯୋଗ ନେବାର ଠିକ୍ ସମୟକୁ ଯେପରି ଅପେକ୍ଷା କରିଥିଲା । ନନ୍ଦିନୀ ଦେବୀଙ୍କ ରାଜ୍ୟସଭା ସଦସ୍ୟ, ଇନ୍ଦିରା ଗାନ୍ଧୀଙ୍କ ନିକଟ ହୋଇ ବିଜୁବାବୁଙ୍କୁ କଂଗ୍ରେସ ନେତୃତ୍ୱରୁ ଅପସାରିତ କରି ଶୂନ୍ୟସ୍ଥାନରେ ନିଜକୁ ଅବସ୍ଥାପିତ କରିବା ପାଇଁ ବ୍ରଜବାବୁଙ୍କ ସହଯୋଗ, ଏସବୁ ଏକ ସମୟରେ ତାଙ୍କୁ ଓ ସ୍ୱର୍ଗତ ବିନାୟକ ଆଚାର୍ଯ୍ୟଙ୍କୁ ମୁଖ୍ୟମନ୍ତ୍ରୀ ଆସନରେ ବସାଇ ଅଳ୍ପ ଦିନ ପରେ ବିନାୟକ ମାଷ୍ଟ୍ରଙ୍କୁ ନେତୃତ୍ୱରୁ ଅପସାରିତ କରି ନିଜକୁ ରାଜ୍ୟର ମୁଖ୍ୟମନ୍ତ୍ରୀ ଭାବେ ଅବସ୍ଥାପିତ କରିବାର ଯୋଜନାଟି ନନ୍ଦିନୀ ଦେବୀ ଏପରି ରାଜନୈତିକ ନିପୁଣତାର ସହିତ ସମ୍ପାଦନ କଲେ ଯାହା ତାଙ୍କ ରାଜନୈତିକ ପ୍ରଖର ବୁଦ୍ଧିମତାର ପରିଚୟ ଦେଇଥିଲା । ସେ ସମ୍ପର୍କରେ ମୁଁ ପରବର୍ତ୍ତୀ ରାଜନୈତିକ ଅବସ୍ଥା ଆଲୋଚନା କରିବା ସମୟରେ ବିସ୍ତୃତ ଭାବେ ସୂଚନା ଦେବି । ଏଠାରେ କେବଳ ଏତିକି କହି ରଖେ ଯେ ୧୯୭୧ ମସିହା ନିର୍ବାଚନ ବେଳକୁ ଉତ୍କଳ କଂଗ୍ରେସରୁ ଲଢିବା ଚନ୍ଦ୍ରମାଧବଙ୍କ ପାଇଁ ଶିଳ୍ପପତି ଭାବରେ ବିଜୁବାବୁଙ୍କ ସହିତ ଆର୍ଥିକ ସହଯୋଗ ଓ ମୋ ପ୍ରତି ବିଜୁବାବୁଙ୍କ ସନ୍ଦେହ ମୋ ପାଇଁ ଏକ ରାଜନୀତିରେ ଅଶୁଭ ସମୟ ସୃଷ୍ଟି କରିଥିଲା । କେବଳ ନିଜ ଉପରେ ଆତ୍ମବିଶ୍ୱାସ ରଖି ରାଷ୍ଟ୍ରବାଦୀ ନେତାଙ୍କ ସହିତ ମୋର ଯେଉଁ ନିବିଡ ସଂପର୍କ ଥାଏ ତାକୁ ହିଁ ସମ୍ବଳ କରି ମୁଁ ୧୯୭୧ ନିର୍ବାଚନରେ ବିଜୁବାବୁଙ୍କ ନିଷ୍ପତ୍ତିକୁ ଦୃଢ ପ୍ରତିବାଦ କରି ନିଜେ ସ୍ୱାଧୀନ ପ୍ରାର୍ଥୀ ହେବି ବୋଲି ସ୍ଥିର କରି ଭବିଷ୍ୟତ ଉପରେ ଆତ୍ମବିଶ୍ୱାସ ରଖି ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିବାର ସାହସ କଲି । ଏହି ନିର୍ବାଚନର ଫଳାଫଳ ଓଡିଶା ରାଜନୀତିରେ ଏକ କଳ୍ପନାତୀତ ପରିସ୍ଥିତି ସୃଷ୍ଟି କଲା । ବିଜୁବାବୁ ୫ଟି ନିର୍ବାଚନ ମଣ୍ଡଳୀରେ ଛିଡା ହେଲେ ଏବଂ ଭୁବନେଶ୍ୱର ପାର୍ଲିଆମେଣ୍ଟ ନିର୍ବାଚନ

ମଣ୍ଡଳୀ ଓ ଖୋର୍ଦ୍ଧା ନିର୍ବାଚନ ମଣ୍ଡଳୀ ତା ମଧ୍ୟରୁ ଅନ୍ୟତମ । କିନ୍ତୁ ସମସ୍ତ ନିର୍ବାଚନମଣ୍ଡଳୀରେ ତାଙ୍କର ଶୋଚନୀୟ ପରାଜୟ ଘଟିଲା । ଡକ୍ଟର ହରେକୃଷ୍ଣ ମହତାବ ତାଙ୍କୁ ଭୁବନେଶ୍ୱର ନିର୍ବାଚନ ମଣ୍ଡଳୀରୁ ବିପୁଳ ଭୋଟରେ ପରାଜିତ କଲେ । ବିଜୁବାବୁ ପରାଜୟ ସ୍ୱୀକାର କରି ନିଜର ରାଜନୈତିକ ପ୍ରତିଷ୍ଠାକୁ ସଂପୂର୍ଣ୍ଣ ଭାବେ କ୍ଷତିଗ୍ରସ୍ତ କରିବା ସହିତ ମୋର ମଧ୍ୟ ସ୍ୱାଧୀନ ପ୍ରାର୍ଥୀ ଭାବେ ସତ୍ୟବାଦୀ ନିର୍ବାଚନ ମଣ୍ଡଳୀରେ ପରାଜୟର କାରଣ ହେଲେ । ସେଠାରେ ୩ଜଣ ପ୍ରାର୍ଥୀଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦିତା ହୋଇ, ରବିବାବୁ କଂଗ୍ରେସ ପ୍ରାର୍ଥୀ ଓ ମୁଁ ସ୍ୱାଧୀନ ପ୍ରାର୍ଥୀ ଉଭୟ ପରାଜିତ ହୋଇ ଉତ୍କଳ କଂଗ୍ରେସ ପ୍ରାର୍ଥୀ ଭାବେ ଚନ୍ଦ୍ର ମାଧବ ମିଶ୍ର ୧୨୦୦ ଅଧିକ ଭୋଟରେ ବିଜୟ ହାସଲ କଲେ । ଉତ୍କଳ କଂଗ୍ରେସ ପ୍ରାର୍ଥୀ ଭାବେ ସେଥର ନୀଳମଣିବାବୁ ବିଜୟ ହାସଲ କଲେ ଚାନ୍ଦବାଲି ନିର୍ବାଚନ ମଣ୍ଡଳୀରୁ । ସ୍ୱର୍ଗତ ସତ୍ୟପ୍ରିୟ ମହାନ୍ତି ଭୁବନେଶ୍ୱର ନିର୍ବାଚନମଣ୍ଡଳୀରୁ ଶେଷ ଥର ପାଇଁ ନିର୍ବାଚିତ ହେବା ପାଇଁ ସମର୍ଥ ହୋଇଥିଲେ ଉତ୍କଳ କଂଗ୍ରେସ ଦଳ ପକ୍ଷରୁ । କିନ୍ତୁ ଏହି ନିର୍ବାଚନର ଫଳାଫଳ ଓଡିଶାକୁ ଏକ ତ୍ରିଶଙ୍କୁ ଅବସ୍ଥାକୁ ଠେଲି ଦେଲା । କୌଣସି ଦଳ ଉତ୍କଳ କଂଗ୍ରେସ, ଜାତୀୟ କଂଗ୍ରେସ ବା ସ୍ୱତନ୍ତ୍ର ଦଳ କେହି ସରକାର ଗଢିବା ଅବସ୍ଥାରେ ରହିଲେ ନାହିଁ । ଏକ ରାଜନୈତିକ ଶୂନ୍ୟତା ସୃଷ୍ଟି ହେବାର ସମ୍ଭାବନା ଏହି ପ୍ରମୁଖ ଦଳଙ୍କୁ ଏକ ଅନିଶ୍ଚିତ ଅବସ୍ଥାକୁ ଠେଲି ଦେଲା ।

ଓଡିଶାର ରାଜନୀତିକ ଶୂନ୍ୟତାକୁ ଏଡାଇବା ପାଇଁ ପୁନର୍ବାର ଉଦ୍ୟମ ଆରମ୍ଭ ହୁଏ ବିଜୁବାବୁଙ୍କୁ ବାହାରେ ରଖି । ବିଜୁବାବୁ ମଧ୍ୟ ସେତେବେଳକୁ ରାଜନୈତିକ ଆକାଶରୁ ଏକରକମ ଅବସର ନେବା ପାଇଁ ମନସ୍ଥ କରିଥାଆନ୍ତି । ନୀଳମଣି ବାବୁ, ସତ୍ୟପ୍ରିୟ ମହାନ୍ତି, ପ୍ରତାପ ମହାନ୍ତି ଓ ବର୍ତ୍ତମାନର ବାଚସ୍ପତି ଶ୍ରୀ ଶରତ କର ଓ ଚନ୍ଦ୍ରମାଧବ ମିଶ୍ର ପ୍ରଭୃତି ଉତ୍କଳ କଂଗ୍ରେସ ଦଳ ତରଫରୁ ବିଜୟ ହାସଲ କରି କ୍ଷମତାକୁ ଆସିବା ପାଇଁ କୌଣସି ଥଳକୂଳ ନପାଇ ଏକ ଅନିଶ୍ଚିତ ଅବସ୍ଥାରେ ଭବିଷ୍ୟତକୁ ଅପେକ୍ଷା କରିଥାନ୍ତି । ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ବିରୋଧି ଦଳର ନେତା ଭାବେ ଦାୟିତ୍ୱ ନେବେ ବୋଲି ସ୍ଥିର କରି ସରକାର ଗଢିବା ପାଇଁ ଉଦ୍ୟମ ନକରିବା ପାଇଁ ମନସ୍ଥ କରି ଅପେକ୍ଷା କରିଥାନ୍ତି ସୁଯୋଗକୁ । ଏହିପରି ଏକ ଅପ୍ରତ୍ୟାଶିତ ପରିସ୍ଥିତିରେ ମୁଁ ମଧ୍ୟ ଆଇନ ବ୍ୟବସାୟକୁ ଫେରି ଯିବା ସ୍ଥିର କଲି । ମହତାବ ବାବୁଙ୍କ ଜନ କଂଗ୍ରେସ ଏହି ନିର୍ବାଚନରେ ସଂପୂର୍ଣ୍ଣ ଏକ ନୂଆ ଅଧ୍ୟାୟ ସୃଷ୍ଟି କରିଥିଲା ଓଡିଶା ରାଜନୀତିକ ପରିସ୍ଥିତିରେ ।

୧୯୭୧ ସାଧାରଣ ନିର୍ବାଚନ ପରେ ମୁଁ ବିଜୁବାବୁଙ୍କ ନବୀନ ନିବାସ ରାଜନୀତି ସହିତ ବିଶେଷ ସଂପର୍କ ରଖିବା ପାଇଁ କୌଣସି ଆଗ୍ରହ ପ୍ରକାଶ ନକରି ମୋ ଆଇନ

ବ୍ୟବସାୟକୁ ୫/୬ ବର୍ଷ ବ୍ୟବଧାନ ପରେ ଫେରିଯିବା ପାଇଁ ନିଷ୍ପତ୍ତି ନେଇ ପୁରୀ ଯିବା ପାଇଁ ସମସ୍ତ ପ୍ରସ୍ତୁତି କରୁଥାଏ । ବିଜୁବାବୁ ଏକାବେଳେକେ ୫ଟି ନିର୍ବାଚନ ମଣ୍ଡଳୀରେ ଅପ୍ରତ୍ୟାଶିତ ପରାଜୟରେ ଅତ୍ୟନ୍ତ ମ୍ରିୟମାଣ ହୋଇ ନବୀନ ନିବାସରେ ରହୁଥିଲେ ମଧ୍ୟ ତାଙ୍କ କଟକ ତୁଳସୀପୁର ନିବାସରେ ରହିବା ପାଇଁ ସେ ଘରକୁ ପ୍ରସ୍ତୁତ କରାଯାଉଥାଏ । ତାଙ୍କର ବିଶ୍ୱସ୍ତ ଖାନସାମା ତାଙ୍କ ପାଖ ଛାଡୁନଥାଏ । ସେହି ସ୍ଥାନକୁ ବହୁ ଉତ୍କଳ କଂଗ୍ରେସର ନୂତନ ବିଧାୟକ କର୍ମୀମାନେ ବିଜୁବାବୁଙ୍କୁ ପୁନର୍ବାର ନେତୃତ୍ୱ ନେବା ପାଇଁ ପ୍ରବର୍ତ୍ତାଉ ଥାଆନ୍ତି । କାରଣ ସେମାନଙ୍କର ନୀଳମଣିବାବୁଙ୍କ ନେତୃତ୍ୱ ଉପରେ ଭରସା ନଥାଏ । ଏକମାତ୍ର କାରଣ ହେଉଛି ବିଜୁବାବୁଙ୍କର ନୀଳମଣିବାବୁଙ୍କ ମତ ପ୍ରତି ହେୟ ଜ୍ଞାନ ଓ ବ୍ୟବସ୍ଥାପକମାନଙ୍କର ନୀଳମଣିଙ୍କ ପ୍ରତି ସମ୍ମାନ ଥିଲେ ମଧ୍ୟ ବିଜୁବାବୁଙ୍କ ନେତୃତ୍ୱ ଉପରେ ଅଟଳ ବିଶ୍ୱାସ ଅବ୍ୟାହତ ରଖିଥିବାରୁ ନୀଳମଣିବାବୁଙ୍କୁ ନେତା କରିବା ପାଇଁ ଅନାଗ୍ରହ । ନୀଳମଣିବାବୁ ତାଙ୍କ ଆତ୍ମଜୀବନୀରେ ବିଜୁବାବୁଙ୍କୁ କଠୋର ସମାଲୋଚନା କରିଛନ୍ତି । ମୁଁ ସେ ସବୁର ଯଥାର୍ଥତା ସଂପର୍କରେ ମତ ଦେବା ଉଚିତ ମନେ ନକରୁଥିଲେ ମଧ୍ୟ ଗୋଟିଏ କଥା ଏଠାରେ ସ୍ପଷ୍ଟ କରିଦେବାକୁ ଚାହେଁ ଯେ ବିଜୁବାବୁଙ୍କ ୧୯୭୧ ମସିହାରେ ଶୋଚନୀୟ ପରାଜୟ ହୋଇନଥିଲେ ଓ ବିଶ୍ୱନାଥ ଦାଶ ମନ୍ତ୍ରିମଣ୍ଡଳର ଅବସାନ ବିଜୁବାବୁ ଘଟାଇନଥିଲେ ନୀଳମଣି ବାବୁଙ୍କ ନେତୃତ୍ୱ ଉପରେ ଭରସା ରଖି ତାଙ୍କୁ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଦିଆଯିବାର ପ୍ରଶ୍ନ ନଥିଲା । ନୀଳମଣି ବାବୁଙ୍କ ମୁଖ୍ୟମନ୍ତ୍ରୀ ହେବାର ସ୍ୱପ୍ନ ସାର୍ଥକ ହେବାର ଦୁଇଟି କାରଣ ଥିଲା । ପ୍ରଥମଟି ୧୯୭୧ ମସିହା ନିର୍ବାଚନରେ ଉତ୍କଳ କଂଗ୍ରେସ ଭାରତୀୟ ଜାତୀୟ କଂଗ୍ରେସ ଓ ସ୍ୱତନ୍ତ୍ର ଦଳ କେହି ସରକାର ଗଢ଼ିବା ପାଇଁ ସମର୍ଥ ହୋଇନଥିଲେ । କେବଳ ଉତ୍କଳ କଂଗ୍ରେସ ଓ ସ୍ୱତନ୍ତ୍ର ଦଳ ଏକାଠି ମିଶିଲେ ହିଁ ବିଧାନସଭାରେ ମନ୍ତ୍ରିମଣ୍ଡଳ ଗଠନ କରିବା ସମ୍ଭବପର ହୋଇପାରନ୍ତା । ଦ୍ୱିତୀୟ କାରଣ ହେଉଛି ଯେ ୧୯୭୧ ମସିହା ନିର୍ବାଚନରେ ବିଜୁବାବୁ ୫ଟି ନିର୍ବାଚନ ମଣ୍ଡଳୀରେ ପ୍ରତିଦ୍ୱନ୍ଦିତା କରି ବିଧାନସଭା ବା ଲୋକସଭା କେଉଁଥିରେ ନିର୍ବାଚନ ସଫଳତା ହାସଲ ନକଲେ ମଧ୍ୟ ଉତ୍କଳ କଂଗ୍ରେସରେ ପ୍ରାୟ ୨୬/୨୭ ଜଣ ବିଧାୟକଙ୍କୁ ଜିତାଇ ଆଣିବାରେ ସକ୍ଷମ ହୋଇଥିଲେ ଯେଉଁମାନେ କି ଆଉ ଥରେ ନିର୍ବାଚନ ରଣାଙ୍ଗନରେ ଅବତୀର୍ଣ୍ଣ ହେବା ପାଇଁ ଆଦୌ ପ୍ରସ୍ତୁତ ନଥିଲେ । ଏପରି ତ୍ରିଶଙ୍କୁ ଅବସ୍ଥା ସୃଷ୍ଟି ହେଲା ଯେ, ୧୯୭୧ ନିର୍ବାଚନର ଫଳାଫଳ ପୁଣି ରାଷ୍ଟ୍ରପତି ଶାସନର ସୁଯୋଗ ସୃଷ୍ଟି କଲା । ଏଥିରେ ଆତଙ୍କିତ ହୋଇ ଉତ୍କଳ କଂଗ୍ରେସ ବିଧାୟକମାନେ ବିଜୁବାବୁଙ୍କୁ କେନ୍ଦ୍ର କରି ଏ ତ୍ରିଶଙ୍କୁ ଅବସ୍ଥାରୁ ରାଜ୍ୟକୁ ମୁକ୍ତ କରିବା ପାଇଁ ଆପ୍ରାଣ ଉଦ୍ୟମ କଲେ । ଠିକ୍ ସେହିପରି ଭାବରେ ସ୍ୱତନ୍ତ୍ର ଦଳର

ବିଧାୟକମାନେ ପୂର୍ବତନ ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ଦ୍ୱାରସ୍ଥ ହେଲେ କୌଣସି ମତେ ରାଷ୍ଟ୍ରପତି ଶାସନର ସୁଯୋଗ ସୃଷ୍ଟି ନକରିବା ପାଇଁ । କିନ୍ତୁ ପାଟଣା ମହାରାଜା ମୁଖ୍ୟମନ୍ତ୍ରୀ ସାଢ଼େ ତିନି ବର୍ଷ ରହି ପୁନର୍ବାର ଆଉ ଜଣେ ମୁଖ୍ୟମନ୍ତ୍ରୀଙ୍କ ନେତୃତ୍ୱରେ କେବଳ ମନ୍ତ୍ରୀ ହୋଇ ରହିବା ପାଇଁ ଅନିଚ୍ଛା ପ୍ରକାଶ କରୁଥାଆନ୍ତି ଓ ବିଜୁବାବୁଙ୍କ ସହିତ ଆଲୋଚନା କରିବା ପାଇଁ ମଧ୍ୟ ଉତ୍ସୁକ ନଥାନ୍ତି । ବିଜୁବାବୁ ମଧ୍ୟ ପାଟଣା ମହାରାଜାଙ୍କ ସହିତ ଆଲୋଚନା କରିବା ପାଇଁ କଦାପି ରାଜି ହେଉନଥାନ୍ତି । ଏପରି ଏକ ସ୍ଥାଣୁ ଅବସ୍ଥା ସୃଷ୍ଟି ହୋଇଥିବାବେଳେ ଉତ୍କଳ କଂଗ୍ରେସର ତିନି ଜଣ ପ୍ରମୁଖ ନେତା ସ୍ୱର୍ଗତ ସତ୍ୟପ୍ରିୟ ମହାନ୍ତି, ପ୍ରତାପ ମହାନ୍ତି ଓ ବର୍ତ୍ତମାନର ବାଚସ୍ପତି ଶ୍ରୀ ଶରତ କର ନବୀନ ନିବାସଠାରେ ବିଜୁବାବୁଙ୍କ ସହିତ ବାରମ୍ବାର ଆଲୋଚନା କରି ଉଭୟ ନେତାଙ୍କ ସମ୍ମତି କ୍ରମେ ଜଣଙ୍କୁ ମୁଖ୍ୟମନ୍ତ୍ରୀ କରି ଦୁଇ ଜଣ ଉପମୁଖ୍ୟମନ୍ତ୍ରୀ (ଉଭୟ ଉତ୍କଳ କଂଗ୍ରେସ ଓ ସ୍ୱତନ୍ତ୍ର ଦଳରୁ) କରି ପାଟଣା ମହାରାଜା ଓ ନୀଳମଣିବାବୁଙ୍କ ନାମ ପ୍ରସ୍ତାବ ନେଇ ଓଡିଶାକୁ ରାଷ୍ଟ୍ରପତି ଶାସନରୁ ବଞ୍ଚାଇବା ପାଇଁ ବହୁ ଅନୁନୟ ବିନୟ କରିଥିଲେ । ଶେଷରେ ବିଜୁବାବୁ ରାଜି ହେଲେ । ତା'ର ଏକମାତ୍ର କାରଣ ଥିଲା, ମନ୍ତ୍ରିମଣ୍ଡଳ ଗଠନ ହେଲେ କିଛି ମାସ ପରେ ସେ ପୁଣି ଥରେ ଉଦ୍ୟମ କରିବେ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେବା ପାଇଁ । ଏହି ସମ୍ଭାବନା ଉପରେ ଉତ୍କଳ କଂଗ୍ରେସର ପ୍ରାୟ ସମସ୍ତଙ୍କର ସମ୍ମତି ଥିଲା କାରଣ ସବୁଦଳର ବିଧାୟକମାନେ ଆଶଙ୍କା କରୁଥିଲେ ଯଦି ପୁଣି ସାଳି ନିର୍ବାଚନ ହୁଏ ଇନ୍ଦିରା କଂଗ୍ରେସର ଶକ୍ତି ସମସ୍ତଙ୍କୁ ପଛରେ ପକାଇ ବିଧାନସଭାରେ ସଂଖ୍ୟା ଗରିଷ୍ଠତା ହାସଲ କରିବ । ସେତେବେଳକୁ ଶ୍ରୀମତି ଇନ୍ଦିରା ଗାନ୍ଧୀ ନିଜର ନେତୃତ୍ୱ କେନ୍ଦ୍ରରେ ଦୃଢ କରି ଭାରତକୁ ଏକ ଶକ୍ତିଶାଳୀ କେନ୍ଦ୍ରୀୟ ଶାସନ ଦେବାରେ ସଫଳତା ହାସଲ କରିସାରିଥିଲେ ଏବଂ ଓଡିଶାରେ କଂଗ୍ରେସ ଶାସନ ପାଇଁ ରାଜ୍ୟର ତତ୍କାଳୀନ ଅନିଶ୍ଚିତ ରାଜନୈତିକ ବାତାବରଣରେ ଓଡିଶା ଲୋକେ କଂଗ୍ରେସକୁ ବିକଳ୍ପ ବୋଲି ଗ୍ରହଣ କରିନେଇଥିଲେ । ଏହିସବୁ ରାଜନୈତିକ ବିଚାର ଆଲୋଚନା ଫଳରେ ଏକମାତ୍ର ପନ୍ଥା ଥିଲା ଉତ୍କଳ କଂଗ୍ରେସ ଓ ସ୍ୱତନ୍ତ୍ର ଦଳର ମିଳିତ ମନ୍ତ୍ରିମଣ୍ଡଳ ଗଠନ ନଚେତ ପୁନର୍ବାର ନିର୍ବାଚନ । ଜଣେ ନେତା ଖୋଜା ଚାଲିଥିବାବେଳେ ଏକମାତ୍ର ବର୍ଷୀୟାନ ନେତା ଯାହାଙ୍କୁ ବିଜୁବାବୁ ଗ୍ରହଣ କରିବାର ସମ୍ଭାବନା ଥିଲା ସେ ଥିଲେ ବିଶ୍ୱନାଥ ଦାଶ । ସେ ସେତେବେଳକୁ କଟକ ସହର ବାଙ୍କାବଜାରରେ ତାଙ୍କ ପୃଥକ ଘରେ ରହୁଥିଲେ । ନବୀନ ନିବାସରେ ବିଜୁବାବୁଙ୍କ ସହିତ ଏ ସଂପର୍କୀୟ ଦୀର୍ଘ ଆଲୋଚନା ଭିତରେ ବିଶ୍ୱନାଥ ବାବୁଙ୍କ ସହିତ ଆଲୋଚନା କରି ତାଙ୍କର ସମ୍ମତି ଆଣିବା ପାଇଁ ବିଜୁବାବୁ ରାଜି ହେଲେ । ତାଙ୍କୁ ମଙ୍ଗାଇ ସମ୍ମତି ଆଣିବା ପାଇଁ ସକ୍ଷମ

ବ୍ୟକ୍ତିମାନଙ୍କ ସଂପର୍କରେ ଆଲୋଚନା ବେଳେ ଶ୍ରୀ ଶରତ କର ଓ ସତ୍ୟପ୍ରିୟ ମହାନ୍ତି ମୋ ନାମ ଉଠାଇବାରେ ବିଜୁବାବୁ ସନ୍ଦେହ ପ୍ରକାଶ କଲେ ସୁଦ୍ଧା, ଶରତ ବାବୁ ଓ ସତ୍ୟପ୍ରିୟ ବାବୁଙ୍କ ବାରମ୍ବାର ଏ ସଂପର୍କୀୟ ଅନୁରୋଧକୁ ପ୍ରତ୍ୟାଖ୍ୟାନ କରିବା ଅବସ୍ଥାରେ ନଥିଲେ । କାରଣ ତାଙ୍କର ପରାଜୟ ଓ ମୋ ପରାଜୟ ପାଇଁ ତାଙ୍କର ମୋ ପ୍ରତି ଅବିଶ୍ୱାସ ଓ ଉତ୍କଳ କଂଗ୍ରେସ ଟିକଟରୁ ମତେ ବଞ୍ଚିତ କରିବାରେ ତାଙ୍କର ଦାୟିତ୍ୱହୀନତା ତାଙ୍କ ମନରେ ମୋର ନାମ ଉପରେ ନିଶ୍ଚିତ ପ୍ରତିକ୍ରିୟା ସୃଷ୍ଟି କରିଥିବା ସ୍ୱାଭାବିକ । କିନ୍ତୁ ଉତ୍କଳ କଂଗ୍ରେସର ଏହି ତିନିଜଣ ପ୍ରମୁଖ ନେତା (ଶରତ ବାବୁ, ପ୍ରତାପ ବାବୁ ଓ ସତ୍ୟପ୍ରିୟ ବାବୁ)ଙ୍କ ଅନୁରୋଧ ପରେ ସେ ନିଜେ ଦୁର୍ବଳ ହୋଇ ମତେ ଡକାଇବା ପାଇଁ ଖବର ପଠାଇଲେ । ସେତେବେଳକୁ ରାତ୍ରି ପ୍ରାୟ ୧୦ଟା ବାଜି ଥାଏ । ମୋ ପାଖୁ ଖବର ଫୋନରେ ଦିଆଗଲା ଓ ସତ୍ୟପ୍ରିୟ ବାବୁଙ୍କ ସହିତ ନୀଳମଣି ବାବୁ ମଧ୍ୟ ମତେ ବ୍ୟକ୍ତିଗତ ଅନୁରୋଧ କରି ରାଜ୍ୟର ଏହି ଦୟନୀୟ ତ୍ରିଶଙ୍କୁ ଅବସ୍ଥାର ପରିସମାପ୍ତି ଘଟାଇବାରେ ସହଯୋଗ କରିବା ପାଇଁ ଅନୁରୋଧ କରିବାରେ ମୁଁ ତାଙ୍କ ସହିତ ବିଶ୍ୱନାଥବାବୁଙ୍କୁ ଅନୁରୋଧ କରିବା ପାଇଁ ସମ୍ମତ ହେଲି । ଆମେ ଚାରିଜଣ ବିଶ୍ୱନାଥ ବାବୁଙ୍କ ବାଙ୍କାବଜାର ଘରକୁ ପ୍ରାୟ ରାତ୍ରି ୧୧ଟା ୧୫ ମିନିଟ୍ ସମୟରେ ଯାଇ ତାଙ୍କ ସହିତ ଆଲୋଚନା କରିବାର ଉଦ୍ଦେଶ୍ୟ ସଂପର୍କରେ ସୂଚନା ଦେବାରେ ସେ ଭୀଷଣ ପ୍ରତିକ୍ରିୟା ପ୍ରକାଶ କରି ତାଙ୍କର ବୟସ ଓ ସ୍ୱାସ୍ଥ୍ୟ ଦୃଷ୍ଟିରୁ ଓ ପୂର୍ବ ଅଭିଜ୍ଞତାକୁ ସ୍ମରଣ କରି ବିଜୁବାବୁଙ୍କ ଉପରେ ଭରସା କରି ରାଜ୍ୟରେ ପୁଣିଥରେ ସରକାର ଗଠନ କରିବାର ପ୍ରସ୍ତାବକୁ ଗ୍ରହଣ କଲେ ନାହିଁ । ଏପରିକି ଏ ସଂପର୍କରେ ବିଶେଷ ଆଲୋଚନାର ଆବଶ୍ୟକତା ନାହିଁ ବୋଲି ରୋକଠୋକ ମନା କରିଦେଲେ । ପ୍ରାୟ ଦୁଇଘଣ୍ଟା କାଳ ଶରତ ବାବୁ, ସତ୍ୟପ୍ରିୟ ବାବୁ, ପ୍ରତାପ ବାବୁ ଓ ମୁଁ ତାଙ୍କ ସହିତ ଦୀର୍ଘ ଆଲୋଚନା କରି ରାଜ୍ୟକୁ ଏକ ଗଣତାନ୍ତ୍ରିକ ଶାସନ ଦେବାରେ ସେ ନେତୃତ୍ୱ ନେବା ପାଇଁ ବାରମ୍ବାର ଅନୁରୋଧ କରି ନୀରସ୍ତ ହେବା ବେଳେ ମୁଁ ଅନ୍ୟ ଯୁକ୍ତି ଛାଡି ତାଙ୍କ ସାମନାରେ ଦୁଇ ଆଣ୍ଠୁ ଉପରେ ବସିରହି ବିଶ୍ୱନାଥ ବାବୁଙ୍କର ପାଦ ବୁଢା ଆଙ୍ଗୁଠି ଦୁଇଟି ଧରି କହି ଉଠିଲି 'ବିଶ୍ୱନାଥବାବୁ, ୧୯୩୭ ମସିହା ପ୍ରଥମ ନିର୍ବାଚନ ପରେ ପଣ୍ଡିତ ନୀଳକଣ୍ଠ ପ୍ରଥମ ପ୍ରଧାନମନ୍ତ୍ରୀ ହେବେ ବୋଲି ସମସ୍ତଙ୍କର ଧାରଣା ଥିଲା । କିନ୍ତୁ ସମସ୍ତଙ୍କ ଧାରଣାକୁ ଅଯଥାର୍ଥ ବୋଲି ପ୍ରତିପାଦିତ କରି ଆପଣ ଓଡିଶାର ପ୍ରଥମ କଂଗ୍ରେସ ପ୍ରଧାନମନ୍ତ୍ରୀ ଭାବେ ଇତିହାସ ସୃଷ୍ଟି କରିଥିଲେ । ଆଜି ସେହିପରି ଏକ ସଂକଟଜନକ ପରିସ୍ଥିତିରେ ଓଡିଶାରେ ଗଣତାନ୍ତ୍ରିକ ଶାସନ ପୁନଃ ପ୍ରତିଷ୍ଠା କରିବା ପାଇଁ ପ୍ରାଣପ୍ରାୟଶ୍ଚିତ ଉଦ୍ୟମ ଚାଲିଥିବା ବେଳେ ଆପଣ ଏ ରାଜ୍ୟକୁ ରକ୍ଷା କରିବା ପାଇଁ ଶେଷ ଜୀବନରେ ୧୯୩୭ ମସିହାର

ଇତିହାସର ପୁନରାବୃତ୍ତି କରନ୍ତୁ ଓ ମୁଖ୍ୟମନ୍ତ୍ରୀ ଭାବରେ ଏ ରାଜ୍ୟକୁ ଏକ ନିର୍ମଳ ଶାସନ ଓ ସ୍ୱଚ୍ଛ ଶାସନ ଦେବାରେ ସହାୟକ ହୁଅନ୍ତୁ । ଆପଣ ସମ୍ମତି ନ ଦେବା ପର୍ଯ୍ୟନ୍ତ ମୁଁ ଆପଣଙ୍କ ଚରଣ ତଳେ ମୋର ଧାରଣା ଅବ୍ୟାହତ ରଖିବି । କାରଣ ରାଜ୍ୟର ତିନି କୋଟି ଲୋକଙ୍କ ସ୍ୱାର୍ଥ ପାଇଁ ଓ ଗଣତାନ୍ତ୍ରିକ ଶାସନରେ ଆପଣଙ୍କ ବ୍ୟତୀତ ରାଜ୍ୟରେ ଆଉ କେହି ସେପରି ଯୋଗ୍ୟ ବ୍ୟକ୍ତି ନାହାନ୍ତି ବୋଲି ସମସ୍ତେ ଉପଲବ୍ଧି କରୁଛନ୍ତି । ଆପଣଙ୍କ ନିଜ ସ୍ୱାସ୍ଥ୍ୟ ଓ ବିଶ୍ରାମର ଆବଶ୍ୟକତା ସହିତ କୋଟି କୋଟି ରାଜ୍ୟବାସୀଙ୍କ ସ୍ୱାର୍ଥ ଓ ଗଣତାନ୍ତ୍ରିକ ପରମ୍ପରାର ରକ୍ଷା କବଚ ଏ ଦୁଇଟିରୁ କେଉଁଟି ଗ୍ରହଣୀୟ ତାହା ଆପଣଙ୍କ ପରି ପରିଣତ ବୟସର ବିଦ୍ୱାନ ବ୍ୟକ୍ତିଙ୍କୁ ମୋ ପରି ଜଣେ ଅପରିପକ୍ୱ ଲୋକ ପରାମର୍ଶ ଦେବା କେବଳ ଧୃଷ୍ଟତା ଛଡା ଆଉ କିଛି ନୁହେଁ । ଆମର ଶେଷ ଅନୁରୋଧକୁ ଆପଣ ଏ ମଧ୍ୟରାତ୍ରରେ ଗ୍ରହଣ କଲେ ରାଜ୍ୟବାସୀ ଆସନ୍ତାକାଲି ଆଶ୍ୱସ୍ତିର ନିଶ୍ୱାସ ମାରିବେ । ଏହା ହିଁ ଆମମାନଙ୍କର ଆପଣଙ୍କୁ ନିବେଦନ ।' ମୋର ଏପରି ନିବେଦନ ତାଙ୍କୁ ବିଚଳିତ କରିଥିବାର ଆମେ ଉପସ୍ଥିତ ବନ୍ଧୁମାନେ ଅନୁଭବ କଲୁ । ବିଶ୍ୱନାଥ ବାବୁ ଖଣ୍ଡେ ଚାରି ହାତି ଗାମୁଛା ପିନ୍ଧିଥାଆନ୍ତି । ସମସ୍ତ ଦେହରେ କିଛି ନଥାଏ ଦେହ ଘୋଡାଇବା ପାଇଁ । ସେ ନିଶ୍ଚଳ ହୋଇ ୨ ମିନିଟ ଆଖି ବୁଜି ବସିଲା ପରେ କହି ଉଠିଲେ 'ଗଙ୍ଗାଧର, ତୁମ ନିବେଦନ ମତେ ସ୍ପର୍ଶ କରିଛି । ମୁଁ କିନ୍ତୁ ବିଜୁବାବୁଙ୍କ ଉପରେ ଭରସା କରୁନାହିଁ । ସେ ମତେ କେତେବେଳେ ନିଷ୍ଠୁର ଭାବେ ପ୍ରତ୍ୟାଖ୍ୟାନ କରିଦେଇପାରନ୍ତି ଏ କଥା ଏଡାଇ ଦେଇ ହେବ ନାହିଁ । କିନ୍ତୁ ଆପଣମାନେ ଆସିଛନ୍ତି । ଆପଣମାନଙ୍କର ଏ ମଧ୍ୟରାତ୍ର ଅଭିଯାନ ଓ ଆବେଦନକୁ ମୁଁ ଏଡାଇ ପାରୁନାହିଁ । କିନ୍ତୁ ଦୁଇଟି ସର୍ତ୍ତରେ ମୁଁ ରାଜି ହେବି । ପ୍ରଥମ ସର୍ତ୍ତ ହେଲା ମୁଁ ମୁଖ୍ୟମନ୍ତ୍ରୀ ହୋଇ କେଉଁ ବିଭାଗ କାହାକୁ ଦେବି ତାହା ନିଷ୍ପତ୍ତି କରିବାରେ କେହି ବାଧା ସୃଷ୍ଟି କରିବେ ନାହିଁ । ଦୁଇଜଣ ଉପ-ମୁଖ୍ୟମନ୍ତ୍ରୀ (ଉତ୍କଳ କଂଗ୍ରେସ ଓ ସ୍ୱତନ୍ତ୍ର ଦଳରୁ) କାହାକୁ କେଉଁ ବିଭାଗ ଦିଆଯିବ ସେ ନିଷ୍ପତ୍ତିରେ କେହି ମତେ ପ୍ରଭାବିତ କରିବାକୁ ଉଦ୍ୟମ କରିବେ ନାହିଁ । ଏହି ଦୁଇଟି ସର୍ତ୍ତରେ ଆପଣ ଚାରିଜଣ ଏହି ପ୍ରତିଶ୍ରୁତି ମତେ ଦେଲେ ମୁଁ କାଲି ନୀଳମଣି ବାବୁ ଓ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ସହିତ କଥା ହେବି କଟକରେ । ଆମେ ଚାରି ଜଣ ଏ ସଂପର୍କରେ ଅତ୍ୟନ୍ତ ସନ୍ତର୍ପଣ ସହିତ ସ୍ୱୀକୃତି ଦେଇ ଭୋର ପ୍ରାୟ ୨ଟା ବେଳେ ଭୁବନେଶ୍ୱର ଫେରି ଆସିଲୁ । ଏ ସଂପର୍କରେ ଶ୍ରୀ ଶରତ କର ଏକ ବିସ୍ତୃତ ବିବରଣୀ ମୋର ୮୬ ବର୍ଷ ଜନ୍ମ ଜୟନ୍ତୀ ଉତ୍ସବ ପାଳନ ଅବସରରେ ପ୍ରକାଶିତ ଅଭିନନ୍ଦନିକାରେ ପ୍ରକାଶ କରିଛନ୍ତି । ମୁଁ ଅଧିକ ଲେଖିବା ନିଷ୍ପ୍ରୟୋଜନ ।

ଆମେ ଫେରି ଆସିବାପରେ ମୁଁ ବିଜୁବାବୁଙ୍କ ଘରକୁ ନ ଯାଇ ମୁଖ୍ୟମନ୍ତ୍ରୀ ନିବାସକୁ ସିଧା ଗଲି । ସେତେବେଳେ ମୟୂରଭଂଜ ମହାରାଜା ଏକମାତ୍ର ଶ୍ରୀ ରାଜେନ୍ଦ୍ର

ନାରାୟଣ ସିଂହଦେଓଙ୍କ ପାଖେ ବସି ଆଲୋଚନା କରୁଥାଆନ୍ତି । ମୁଁ ତାଙ୍କୁ ସମସ୍ତ ବିବରଣୀ ଦେବା ପରେ ସେ ବିଶ୍ୱନାଥ ଦାଶଙ୍କ ସହିତ ଆମର ଆଲୋଚନା ଓ ତାଙ୍କ ସମ୍ମତି ଉପରେ ବିଶେଷ ଆଗ୍ରହ ପ୍ରକାଶ ନକରି କହି ଉଠିଲେ 'ବିଶ୍ୱନାଥ ବାବୁଙ୍କୁ ଆମେ ମୁଖ୍ୟମନ୍ତ୍ରୀ କରିବା ପାଇଁ ସମ୍ମତି ଦେଲୁ । ମୋ ଯୋଗୁ ସେ ମୁଖ୍ୟମନ୍ତ୍ରୀତ୍ୱର ଦାୟିତ୍ୱ ନେବେ । ମୁଁ କେଉଁ ବିଭାଗ ନେବି ସେକଥା ମୁଁ ନିଷ୍ପତ୍ତି ନକରି ସେ କରିବେ ଓ ସେଥିରେ ମୋର କିଛି ଆପତ୍ତି କରିବାର ଅଧିକାର ରହିବ ନାହିଁ । ଏହା ଏକ ଗ୍ରହଣୀୟ ପ୍ରସ୍ତାବ ନୁହେଁ ।' ମୁଁ କୌଣସି ବିଳମ୍ବ ନକରି ଉତ୍ତର ଦେଲି 'ରାଜେନ୍ଦ୍ର ନାରାୟଣ ସିଂହ ଦେଓଙ୍କ ମୁହଁରେ ଏପରି କଥା ଶୋଭା ପାଏ ନାହିଁ ।' ଥରେ ଆପଣ ବିଶ୍ୱନାଥ ବାବୁଙ୍କୁ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଦେବାପରେ ତେଣିକି ସାମ୍ବିଧାନିକ ବ୍ୟବସ୍ଥାରେ ମନ୍ତ୍ରୀ, ଉପମୁଖ୍ୟମନ୍ତ୍ରୀ ଓ ବିଭାଗ ବଣ୍ଟନ ଇତ୍ୟାଦିରେ ମୁଖ୍ୟମନ୍ତ୍ରୀଙ୍କ ସାମ୍ବିଧାନିକ ଦାୟିତ୍ୱ କ'ଣ ଓ କେତେ ଏକଥା ବିରୋଧି ଦଳର ନେତା ଭାବେ ଆପଣଙ୍କ ସହିତ ସାମ୍ବିଧାନିକ ବ୍ୟବସ୍ଥା ନେଇ ଅନେକ ଆଲୋଚନାରେ ଆପଣ ନିଜେ ସାମ୍ବିଧାନିକ ବ୍ୟବସ୍ଥାରେ ଜଣେ ଅତ୍ୟନ୍ତ ଅଭିଜ୍ଞ ବ୍ୟକ୍ତି ଭାବେ ରାଜ୍ୟରେ ପ୍ରଶଂସିତ ହେଉଥିବା ବେଳେ ଏପରି ମତ ପ୍ରକାଶ କରିବାରେ ମୁଁ ଅତ୍ୟନ୍ତ ଆଶ୍ଚର୍ଯ୍ୟାନ୍ୱିତ । ମୁଁ ବ୍ରାହ୍ମଣ ଓ ଆପଣ କ୍ଷତ୍ରୀୟ, ଅର୍ଥାତ କ୍ଷତ୍ରୀୟ ଭାବେ ଆପଣ ଶାସନ କରିବେ ଓ ମୁଁ ବ୍ରାହ୍ମଣ ଭାବେ ଆପଣଙ୍କୁ ପରାମର୍ଶ ଦେବାର ଅଧିକାର ମୋର ଅଛି । ମୋର ପରାମର୍ଶ ଆପଣ ବିଧାନସଭାରେ ଗ୍ରହଣ କରିଛନ୍ତି । ଓଡିଶାକୁ ଏକ ଗଣତାନ୍ତ୍ରିକ ଶାସନ ଦେବାରେ ଯେଉଁ ସଂକଟ ଉପସ୍ଥିତ ତାର ସମାଧାନ କରିବାରେ ଆପଣଙ୍କ ପରି ବିଜ୍ଞଲୋକ ନୂତନ ଦିଗନ୍ତ ସୃଷ୍ଟି କରନ୍ତୁ ।' ମୋଠାରୁ ଉତ୍ତର ଶୁଣି ମୟୂରଭଞ୍ଜ ରାଜା ହଠାତ୍ କହି ଉଠିଲେ 'ପୁରୀର ବ୍ରାହ୍ମଣ ଗଙ୍ଗାଧର ବାବୁଙ୍କ ସୁପରାମର୍ଶ ମହାରାଜା ସାହେବ ଆପଣ ଗ୍ରହଣ କରନ୍ତୁ । ଓଡିଶାକୁ ରାଷ୍ଟ୍ରପତି ଶାସନରୁ ଉଦ୍ଧାର ପାଇଁ ଓ ଗଣତାନ୍ତ୍ରିକ ଶାସନ ପ୍ରତିଷ୍ଠା ପାଇଁ ଆପଣ ଅଗ୍ରଣୀ ହେବା ଆବଶ୍ୟକ ବୋଲି ଅନୁରୋଧ ।' ଏହାପରେ ମହାରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ସମ୍ମତି ପ୍ରକାଶ କରି ମୁଁ ଅର୍ଥ ବା ସାଧାରଣ ପ୍ରଶାସନର (ଜେନେରାଲ ଆଡ୍‌ମିନିଷ୍ଟ୍ରେସନ)ର ଦାୟିତ୍ୱ ନେବା ଉଚିତ ରାଜ୍ୟର ସ୍ୱାର୍ଥ ପାଇଁ ବୋଲି କହି ପରଦିନ ସକାଳେ କଟକ ଠାରେ ସୋନପୁର କୋଠୀରେ ବିଶ୍ୱନାଥ ବାବୁଙ୍କ ସହିତ ସାକ୍ଷାତ କରିବେ ବୋଲି ବିଶ୍ୱନାଥ ବାବୁଙ୍କୁ ମୋ ସାମ୍ନାରେ ଜଣାଇ ଦେଲେ । ମୋ ଉପରେ ଯେଉଁ ଦାୟିତ୍ୱ ନ୍ୟସ୍ତ କରାଯାଇଥିଲା ତାହା ମୁଁ ତୁଲାଇବାରେ ସମର୍ଥ ହୋଇପାରିଛି ବୋଲି ଜଗନ୍ନାଥଙ୍କୁ ପ୍ରଣତି ଜଣାଇ ମୋ ସରକାରୀ ବାସଭବନକୁ ଫେରିଆସିଲି । କିନ୍ତୁ ଅତ୍ୟନ୍ତ ଦୁର୍ଭାଗ୍ୟ ଓ ପରିତାପର ବିଷୟ ଯେ ପ୍ରଥମରୁ ଯେଉଁ ଆଶଙ୍କା ପ୍ରକାଶ

ପାଇଥିଲା ଯେ ବିଜୁବାବୁ ଅନ୍ୟ କାହାକୁ ରଖାଇ ଦେବେ ନାହିଁ, ମୋ ପ୍ରତି ଯେଉଁ ଅସହିଷ୍ଣୁ ମନୋଭାବ ପୋଷଣ କରି ୩୦ ଲକ୍ଷ ଟଙ୍କା ଅର୍ଥଦାନ ପାଇଁ ମୁଁ ହଠାତ୍ ପ୍ରସ୍ତୁତ ନ ହୋଇପାରିବାରୁ ମୋର ମନ୍ତ୍ରିମଣ୍ଡଳ ଗଠନ ଉଦ୍ୟମକୁ ପଣ୍ଡ କରି ୧୯୭୧ ମସିହାରେ ରାଜ୍ୟକୁ ନିର୍ବାଚନକୁ ଠେଲି ଦେଇ ରାଜ୍ୟରେ ଏକ ଘାଣ୍ଟୁ ଅବସ୍ଥା ସୃଷ୍ଟି କଲେ ଓ ନିଜେ ୫ଟି ନିର୍ବାଚନ ମଣ୍ଡଳୀରେ ପରାଜୟ ସ୍ୱୀକାର କରି ସମଗ୍ର ଦେଶରେ ଏକ ନୂତନ ରାଜନୈତିକ ପରାଜୟର ପରମ୍ପରା ଆରମ୍ଭ କଲେ, ଠିକ୍ ସେହିପରି ଏକ ବର୍ଷ ପରେ ବିଶ୍ୱନାଥ ଦାଶଙ୍କୁ ଅପସାରଣ କରି ଏ ପରିଣତ ବୟସରେ ତାଙ୍କୁ ଅପମାନିତ କରି ଦାୟିତ୍ୱମୁକ୍ତ କଲେ ସେ କଥା ସ୍ମରଣ କଲା ବେଳେ ରାଜନୀତିରେ ଏପରି ବିଶ୍ୱାସଘାତକତା ମଣିଷକୁ ଏକ ହିଂସ୍ର ପଶୁଠାରୁ ଅଧିକ ଘୃଣ୍ୟ କରିଦେଇପାରେ ସେକଥା ଚିନ୍ତା କରି ହେଉନାହିଁ । ତାହା ହିଁ ମୋ ଭାଗ୍ୟରେ ଆଉ ଥରେ ଘଟିଥିଲା । ସେ କଥା ଶେଷ ଅଧ୍ୟାୟରେ ସୂଚନା କେବଳ ଦେଇ ଏହି ପୁସ୍ତକ ଶେଷ କରିବି ବୋଲି ମନସ୍ଥ କରିଛି । ୧୯୭୨ ମସିହା ମଧ୍ୟ ଭାଗରେ ବିଶ୍ୱନାଥ ବାବୁ ଆମ୍ଭମାନଙ୍କୁ ଅଭିଶାପ ଦେଇ ବିଜୁ ପଟ୍ଟନାୟକଙ୍କ ବିଶ୍ୱାସଘାତକତା ସଂପର୍କରେ ସେ ଯେଉଁ ଆଶଙ୍କା ଆମ ଆଗରେ ପ୍ରକାଶ କରିଥିଲେ ତାର ଯଥାର୍ଥତା କେତେ ଦୂର ସତ୍ୟ ସେକଥା ପ୍ରମାଣିତ କରି ବିଜୁବାବୁଙ୍କଠାରୁ ସିଧା ରାଜଭବନକୁ ଯାଇ ତାଙ୍କର ଇସ୍ତଫା ପ୍ରଦାନ କରିଥିଲେ ଯାହା ଫଳରେ ନୀଳମଣି ବାବୁ ବର୍ଷାଧିକ ମୁଖ୍ୟମନ୍ତ୍ରୀ ହେବାର ସୁଯୋଗ ପାଇଲେ । କିନ୍ତୁ ସେ ନିଜେ ମଧ୍ୟ ସେହିପରି ବିଜୁବାବୁଙ୍କ ନିକଟରୁ କ୍ଷମତା ରାଜନୀତିରୁ ବିଦାୟ ନେଇଥିଲେ । ଏହା ହିଁ ଓଡିଶା ରାଜନୀତିକ ଇତିହାସରେ ବିଶେଷ ସ୍ଥାନ ପାଇ ଭବିଷ୍ୟତରେ ଯୁବ ପିଢ଼ିକୁ ସାବଧାନ କରୁଥିବ ବୋଲି ମୋର ବିଶ୍ୱାସ । ଏହିଠାରେ ଏହି ଅଧ୍ୟାୟ ଶେଷ କରୁଛି ଓ ବିଜୁ ପଟ୍ଟନାୟକଙ୍କ ସହିତ ରାଜନୀତିକ ସଂପର୍କ ୧୯୭୨ ପରଠାରୁ କ୍ଷୁର୍ଣ୍ଣ ହେଲେ ମଧ୍ୟ ବ୍ୟକ୍ତିଗତ ଭାବରେ ତାଙ୍କ ସହିତ ମୋର ସଂପର୍କ ତାଙ୍କର ଅନ୍ତିମ ଦିନ ପର୍ଯ୍ୟନ୍ତ ଅତ୍ୟନ୍ତ ମଧୁର ଥିଲା ଓ ସେ ଜଣେ ଓଡିଶାର ବରପୁତ୍ର ଏବଂ ମହାନ ଦେଶ ସେବକ ଓ ଦେଶଭକ୍ତିର ଚରମ ପରାକାଷ୍ଠା ଦେଖାଇ ରାଜ୍ୟବାସୀଙ୍କ ସ୍ମୃତିରେ ଜୀବିତ ହୋଇ ରହିବେ ବୋଲି ମୁଁ ବିଶ୍ୱାସ କରେ । ତାଙ୍କର ଆତ୍ମା ଶାନ୍ତି ପାଉ ଓ ତାଙ୍କ ତ୍ୟାଗ ଓଡିଶାର ଯୁବ ଶକ୍ତିକୁ ପ୍ରେରଣା ଦେଉଥିବ ବୋଲି ମୁଁ ଏବେ ମଧ୍ୟ ବିଶ୍ୱାସ କରେ । ବିଶ୍ୱାସଘାତକତା ରାଜନୀତିର ଏକ ଅଂଗ ବୋଲି ମୋର ନିଜ ଅନୁଭୂତିରୁ ମୁଁ ବିଚାରେ । Faithlessness is a part of diplomacy and an integral part of the present political culture ଏଥିରେ ସନ୍ଦେହ ନାହିଁ । ବିଜୁ ତାହା ମଧ୍ୟ ରାଜନୈତିକ ଜୀବନରେ ଭୁଲିନଥିଲେ ।

# ନନ୍ଦିନୀ ଦେବୀଙ୍କ ନେତୃତ୍ୱ ଓ ବିଲୟ

ବର୍ଷୀୟାନ ନେତା ବିଶ୍ୱନାଥ ଦାଶ ପ୍ରଥମରୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେବା ପାଇଁ ଘୋର ଅନିଚ୍ଛା ପ୍ରକାଶ କରିଥିଲେ ଏବଂ ମୁଖ୍ୟତଃ ଆମମାନଙ୍କ ବହୁ ଅନୁରୋଧ ଓ ଆନ୍ତରିକ ନିବେଦନକୁ ସମ୍ମାନ ଦେଇ ବହୁ ସନ୍ତର୍ପଣ ସହିତ ପାଟଣା ମହାରାଜାଙ୍କୁ ମଙ୍ଗାଇ ସ୍ୱରାଷ୍ଟ୍ର ବିଭାଗ ଏବଂ ନୀଳମଣିବାବୁଙ୍କୁ ଅର୍ଥ ବିଭାଗ ଦାୟିତ୍ୱ ଦେଇ ନିଜେ ସାଧାରଣ ପ୍ରଶାସନ ବିଭାଗର ଦାୟିତ୍ୱ ତୁଲାଇ ଆଇନର ଶାସନ ପ୍ରତିଷ୍ଠା କରି ଏ ରାଜ୍ୟକୁ ବାରମ୍ବାର ରାଷ୍ଟ୍ରପତି ଶାସନରୁ ରକ୍ଷା କରିବାରେ ପ୍ରମୁଖ ଦିଗ୍‌ଦର୍ଶନ ଦେଇଥିଲେ । ତାଙ୍କ ପ୍ରତି ବିଜୁ ବାବୁଙ୍କ ବ୍ୟବହାର ଅତ୍ୟନ୍ତ ଦୁର୍ବିସହ ହୋଇପଡିଥିଲା । ବିଶ୍ୱନାଥ ବାବୁ ରାଜନୀତିରେ ଜଣେ ପ୍ରତିଷ୍ଠିତ ସାଧୁ ଓ ସଚ୍ଚୋଟ ନେତା ଭାବରେ ସାରା ରାଷ୍ଟ୍ରରେ ଉଚ୍ଚ ପ୍ରଶଂସିତ ନେତା ଭାବେ ପ୍ରତିଷ୍ଠା ଅର୍ଜନ କରିଥିଲେ । ଉତ୍ତରପ୍ରଦେଶର ରାଜ୍ୟପାଳ ଭାବେ ସାମ୍ବିଧାନିକ ଶାସନ ଦେବାରେ ଜଣେ ଆଦର୍ଶ ରାଜ୍ୟପାଳ ଭାବରେ ଏକ ନୂତନ ପରମ୍ପରା ସୃଷ୍ଟି କରି ୮୨ ବର୍ଷରେ ପୁଣି ଥରେ ରାଉରକେଲାରୁ ବିନାୟକ ଆଚାର୍ଯ୍ୟଙ୍କୁ ପରାଜିତ କରି ବିଧାନସଭାକୁ ନିର୍ବାଚିତ ହୋଇ ଶାସନ ଦାୟିତ୍ୱ ଅତ୍ୟନ୍ତ ଦକ୍ଷତାର ସହିତ ସଂପାଦନ କରୁଥିଲେ । ତାଙ୍କୁ ସାଦର ନିମନ୍ତ୍ରଣ କରିବାରୁ ରାଜ୍ୟରେ ଉତ୍କଳ କଂଗ୍ରେସର ମର୍ଯ୍ୟାଦା ରକ୍ଷା କଲେ ଓ ନିଜର କର୍ତ୍ତୃତ୍ୱ କେତେକ ସ୍ଥଳରେ ଅବ୍ୟାହତ ରଖିବାରେ ସମର୍ଥ ହୋଇଥିଲେ । ତାଙ୍କ ପ୍ରତି ବିଜୁ ଏପରି ଗର୍ହିତ ବ୍ୟବହାର ଦେଖାଇ ଓ ଲଜ୍ଜାକର ପରିସ୍ଥିତିର ସମ୍ମୁଖୀନ କରାଇଲେ ଏଥିରେ ମୋର ବିଜୁ ବାବୁଙ୍କ ସହିତ ଆଉ ରାଜନୈତିକ ସଂପର୍କ ରଖିବା ସମ୍ଭବପର ହେଲା ନାହିଁ । ମୁଁ ଉତ୍କଳ କଂଗ୍ରେସରୁ ଆଗରୁ ଅଲଗା ହୋଇଥିଲେ ମଧ୍ୟ ଇସ୍ତଫା ଦେଇନଥିଲି । କିନ୍ତୁ ଏହି ମର୍ମନ୍ତୁଦ ଘଟଣାରେ ଉତ୍କଳ କଂଗ୍ରେସ ସହିତ କୌଣସି ରାଜନୈତିକ ସଂପର୍କ ରଖିବା ଆଉ ନିଜର ସ୍ୱାଭିମାନକୁ ଜଳାଞ୍ଜଳି ଦେଇ, ହୀନିମାନିଆ ଅବସ୍ଥାରେ ତିଷ୍ଠି ରହିବା ଅପେକ୍ଷା ରାଜନୀତିରୁ ବିଦାୟ ନେବା ଶ୍ରେୟସ୍କର ଭାବି ଆନୁଷ୍ଠାନିକ ଭାବେ ସମସ୍ତ ସଂପର୍କ ତୁଟାଇଦେଲି । ପରେ ପରେ ଚୁପ୍‌ଚାପ୍ କିଛି ଦିନ ରହି ଜାତୀୟ କଂଗ୍ରେସକୁ ଫେରିଆସିବା ଏବଂ ଅବଶିଷ୍ଟ ରାଜନୈତିକ ଜୀବନ କଂଗ୍ରେସ ଦଳ ସହିତ ନିବିଡ କରିବାର ସଂକଳ୍ପ ନେଇ ସୁଯୋଗ ଅପେକ୍ଷାରେ ରହି ପୁନର୍ବାର ମୋର ଆଇନ ବ୍ୟବସାୟକୁ ଫେରି ଆସିଲି । ଏ

ମଧ୍ୟରେ ବ୍ରଜ ବାବୁ କଂଗ୍ରେସ ଦଳରେ ଜଣେ ବିଶେଷ ଶକ୍ତିଶାଳୀ ନେତା ରୂପେ ସଂଗଠନରେ ଆସନ ଦୃଢ କରି ସାରିଥିଲେ । ସେ ଚାହୁଁନଥିଲେ ମୁଁ କଂଗ୍ରେସକୁ ଫେରି ଆସି ପୁଣି ତାଙ୍କର ପ୍ରତିଦ୍ୱନ୍ଦୀ ହେବି । ବିପିନ ଦାଶ ସେତେବେଳକୁ ପୁରୀ ଜିଲ୍ଲା କଂଗ୍ରେସ କମିଟିର ସଭାପତି । ମଧୁସୂଦନ ନନ୍ଦ ଓ ବିପିନ ବାବୁ ଉଭୟ ମୁଁ କଂଗ୍ରେସକୁ ଫେରି ଆସିବା ପାଇଁ ଉଦ୍ୟମ କରୁଥିଲେ । ସେତେବେଳକୁ ଓଡିଶାରେ ନନ୍ଦିନୀ ଦେବି ଓ ଜାନକୀ ବଲ୍ଲଭ ପଟ୍ଟନାୟକ ଉଭୟ ଓଡିଶାର ପ୍ରମୁଖ ନେତା ରୂପେ ପ୍ରତିଷ୍ଠିତ ହେଲେଣି । ବିଜୁବାବୁଙ୍କ ସଂପର୍କ ଶ୍ରୀମତି ଗାନ୍ଧୀଙ୍କ ସହିତ ଅତି ମାତ୍ରାରେ ତିକ୍ତ ହୋଇଥାଏ । ଦଳର ନେତା ନିର୍ବାଚନରେ ସେ ମୋରାରଜୀଙ୍କୁ ସମର୍ଥନ ଦେଇ ତାଙ୍କ ପ୍ରତି ପ୍ରତିଶ୍ରୁତି ଭଙ୍ଗ କରିଥିବା ଦୃଷ୍ଟିରୁ ସେ ଚାହୁଁଥାଆନ୍ତି ରାଜ୍ୟରେ ଏକ ବିକଳ୍ପ ନେତୃତ୍ୱ ସୃଷ୍ଟି କରିବା ପାଇଁ । ବିଶ୍ୱନାଥ ଦାଶଙ୍କ ଇସ୍ତଫା ଓ ତତ୍‌କାଳୀନ ରାଜନୈତିକ ପରିସ୍ଥିତି ତାଙ୍କୁ ଏହି ସୁଯୋଗ ଦେଲା । ଏଠାରେ ଆଉ ଗୋଟିଏ ଉଲ୍ଲେଖନୀୟ ଘଟଣା ସଂପର୍କରେ ସୂଚନା ନ ଦେଲେ ପରିସ୍ଥିତି ସଂପର୍କରେ ଭୁଲ୍ ଧାରଣା ସୃଷ୍ଟି ହେବାର ଆଶଙ୍କା ଥିବା ଦୃଷ୍ଟିରୁ ଉଲ୍ଲେଖ କରୁଛି ।

ସେତେବେଳେ ଓଡିଶାର ରାଜ୍ୟପାଳ ଥିଲେ ଶ୍ରୀ ଆନସାରୀ ସାହେବ । ତାଙ୍କ ସହଧର୍ମିଣୀ ଶ୍ରୀମତି ଅନସାରୀ ବିଜୁବାବୁଙ୍କ ସହିତ ଭାରତଛାଡ ଆନ୍ଦୋଳନ ବେଳୁ ପଣ୍ଡିତ ନେହେରୁଙ୍କ ପରିବାର ସହିତ ବିଜୁବାବୁଙ୍କ ଘନିଷ୍ଠତା ସଂପର୍କକୁ ବ୍ୟକ୍ତିଗତ ଅଭିଜ୍ଞତା ଥିବା ଦୃଷ୍ଟିରୁ ଏବଂ ବିଜୁବାବୁଙ୍କ ତ୍ୟାଗ ଓ ସାହସିକତା ସଂପର୍କରେ ଅବହିତ ଥିବା ଦୃଷ୍ଟିରୁ ଶ୍ରୀମତି ଗାନ୍ଧୀଙ୍କ ସହିତ ବିଜୁବାବୁଙ୍କର ପୁନର୍ବାର ସୁସଂପର୍କକୁ ପ୍ରତିଷ୍ଠିତ କରାଇ ଦେବା ପାଇଁ ଉଭୟ ମିଃ ଓ ମିସେସ୍ ଅନସାରୀ ଆଗ୍ରହ ପ୍ରକାଶ କରୁଥିଲେ । ବିଶ୍ୱନାଥ ଦାଶଙ୍କ ଇସ୍ତଫାରେ ଶୂନ୍ୟସ୍ଥାନ ପୂରଣ ହେବାର ସମ୍ଭାବନା ନଥିବା ଓ ପାଟଣା ମହାରାଜାଙ୍କ ନେତୃତ୍ୱକୁ ପୁଣି ରାଜ୍ୟରେ ପ୍ରତିଷ୍ଠା କରିବା ପାଇଁ ଉତ୍କଳ କଂଗ୍ରେସ ରାଜି ନହେବା ଦୃଷ୍ଟିରୁ ରାଷ୍ଟ୍ରପତି ଶାସନ ଅବଶ୍ୟମ୍ଭାବୀ ହୋଇ ପଡିଥିଲା । ରାଜ୍ୟପାଳ ଓ ତାଙ୍କ ସହଧର୍ମିଣୀ ଉଭୟ ଇନ୍ଦିରାଜୀଙ୍କ ସହିତ ବ୍ୟକ୍ତିଗତ ଭାବେ ଘନିଷ୍ଠ ଥିବାରୁ ଏହି ପରିସ୍ଥିତିରେ ହଠାତ ଶ୍ରୀମତି ଗାନ୍ଧୀ ଓଡିଶା ଆସିବା ପ୍ରୋଗ୍ରାମ ଜଣା ପଡିବାରେ ରାଜଭବନରେ ତାଙ୍କ ସହିତ ବିଜୁବାବୁଙ୍କୁ ଦେଖା କରାଇଦେବା ପାଇଁ ରାଜ୍ୟପାଳଙ୍କ ସହଧର୍ମିଣୀଙ୍କ ଉଦ୍ୟମ ଫଳରେ ଶ୍ରୀମତି ଗାନ୍ଧୀ ରାତ୍ର ଭୋଜନ ପରେ ସାକ୍ଷାତ ଦେବା ପାଇଁ ରାଜି ହୋଇଥିଲେ । ଶ୍ରୀମତି ଆନ୍‌ସାରୀ ବିଜୁବାବୁଙ୍କ ସହିତ ଟେଲିଫୋନରେ ପରାମର୍ଶ କରି ସେ ଦେଖା କରିବାକୁ ରାତ୍ର ୯ଟା ବେଳେ ଆସିବେ ବୋଲି ପ୍ରତିଶ୍ରୁତି ପାଇ ଶ୍ରୀମତି ଗାନ୍ଧୀଙ୍କ ଅନୁମତି ଲୋଡି ଏହି ଦେଖା ସାକ୍ଷାତର ବ୍ୟବସ୍ଥା କରିଥିଲେ । କିନ୍ତୁ ଯେତେବେଳେ ଦୁର୍ଭାଗ୍ୟ ଆସେ ମଣିଷ ବିଚାରଶକ୍ତି

ହରାଇ ବସେ । ଶ୍ରୀମତି ଗାନ୍ଧୀଙ୍କ ରାତ୍ର ଭୋଜନ ସରିବା ପରେ ଶ୍ରୀମତି ଆନସାରୀ ଯେତେବେଳେ ବିଜୁବାବୁଙ୍କୁ ଟେଲିଫୋନ କରନ୍ତି, ବିଜୁବାବୁ ହଠାତ୍ ଯିବାକୁ ମନା କଲେ । ଏଥିରେ ଶ୍ରୀମତି ଆନ୍‌ସାରୀ ହତବାକ ହୋଇ ବିଜୁବାବୁଙ୍କୁ ବହୁତ ଅନୁନୟ ବିନୟ ହୋଇ କହି ଉଠିଲେ 'ମୁଁ ତୁମ ସହିତ କଥା ହୋଇ ଇନ୍ଦିରାଜୀଙ୍କୁ ବହୁତ ପ୍ରବର୍ତ୍ତାଇବା ପରେ ସେ ଅପେକ୍ଷା କରିଛନ୍ତି । ତୁମେ ଆସି କେବଳ ସୌଜନ୍ୟମୂଳକ ସାକ୍ଷାତ କରି ଫେରିଯାଅ ପଛେ କିନ୍ତୁ ନ ଆସିବା ଅତ୍ୟନ୍ତ ଗର୍ହିତ ହେବ ଏବଂ ତାହା ଭବିଷ୍ୟତ ପାଇଁ ତୁମର ମଙ୍ଗଳ ହେବ ନାହିଁ ।' ମୁଁ ବିଜୁବାବୁଙ୍କ ନିକଟରେ ଥାଇ ଟେଲିଫୋନରେ ଉଭୟଙ୍କ କଥା ଶୁଣୁଥାଏ । ମୁଁ ସେତେବେଳେ ବିଜୁବାବୁଙ୍କୁ ବହୁତ ଅନୁରୋଧ କରି ଆବେଗଭରା ସ୍ୱରରେ କହି ଉଠିଲି 'ବିଜୁବାବୁ ଏହା ଆପଣଙ୍କ ପାଇଁ ଓ ଆପଣଙ୍କ ସମର୍ଥକମାନଙ୍କ ପାଇଁ କଂଗ୍ରେସ ସଂଗଠନ ଭିତରକୁ ଫେରିଯିବାର ଏକ ସୁବର୍ଣ୍ଣ ସୁଯୋଗ, ଆପଣ ଯାଇ ଦେଖା କରି ଆସନ୍ତୁ ନଚେତ ପରିଣାମ ଭଲ ହେବ ନାହିଁ । ଭାରତର ପ୍ରଧାନମନ୍ତ୍ରୀ ଇନ୍ଦିରାଜୀ ନିଶ୍ଚିତ ଭାବେ ତାଙ୍କ ପ୍ରତି ଆପଣଙ୍କର ବ୍ୟକ୍ତିଗତ ସଂପର୍କ ଦୃଷ୍ଟିରୁ ସେ ଯେତେବେଳେ ସାକ୍ଷାତ କରିବା ପାଇଁ ରାଜଭବନରେ ଅପେକ୍ଷା କରିଛନ୍ତି ଏବଂ ଶ୍ରୀମତି ଆନସାରୀ ଏ ସାକ୍ଷାତ ସୁଯୋଗ ସୃଷ୍ଟି କରିଛନ୍ତି ଆପଣଙ୍କ ପ୍ରତ୍ୟାଖ୍ୟାନ ଉଭୟ ନେତ୍ରୀଙ୍କ ପ୍ରତି ବ୍ୟକ୍ତିଗତ ଅପମାନ ସଦୃଶ ହେବ ଏବଂ ଏହାର ପରିଣତି ଓଡିଶା ପାଇଁ ଅତ୍ୟନ୍ତ କ୍ଷତିକାରକ ହେବ ।' କିନ୍ତୁ ମୁଁ ଏ ପର୍ଯ୍ୟନ୍ତ ମଧ୍ୟ ବୁଝି ପାରିଲି ନାହିଁ କାହିଁକି ସେ ଏପରି ଏକ ସୁଯୋଗ ପ୍ରତ୍ୟାଖ୍ୟାନ କଲେ ଯାହା ଫଳରେ ପରବର୍ତ୍ତୀ ଅବସ୍ଥାରେ ତାଙ୍କୁ ବହୁତ ପ୍ରତିକୂଳ ପରିସ୍ଥିତିର ମୁକାବିଲା କରିବାକୁ ପଡିଲା । କିନ୍ତୁ ମୋର ଏପରି ନିବେଦନ ବ୍ୟର୍ଥ ହେଲା ଏବଂ ଅବଶେଷରେ ବିଜୁବାବୁ ଯିବା ପାଇଁ ମନା କରି ଫୋନଟି ରଖିଦେଲେ । ଏପରି ଏକ ଆବେଗମୟ ସମୟରେ ଆଉ କେହି ନଥାନ୍ତି ପରାମର୍ଶ ଦେବା ପାଇଁ । ମୁଁ ନିର୍ବାକ ହୋଇ ଏପରି ଏକ ବିପର୍ଯ୍ୟସ୍ତ ପରିସ୍ଥିତିରେ କିଛି କରି ନପାରି ଏବଂ ବିଜୁବାବୁ କିପରି ଏକ୍ସାସ୍‌ପେରେଟେଡ୍ ହୋଇପଡିଛନ୍ତି ଏବଂ ହତୋସାହିତ ମାନସିକ ଅବସ୍ଥାରେ ତାଙ୍କୁ କିଛି କହିଲେ ସେ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ତାଙ୍କ ମାନସିକ ଭାରସାମ୍ୟ ହରାଇବେ ବୋଲି ଭାବି ତାଙ୍କୁ ନମ୍ରତାର ସହିତ ସମ୍ମାନ ଜଣାଇ ନବୀନ ନିବାସରୁ ବିଦାୟ ନେଲି । ଦୀର୍ଘ ୧୦/୧୧ ବର୍ଷ ନବୀନ ନିବାସ ଓ ବିଜୁବାବୁଙ୍କ ସହିତ ଘନିଷ୍ଠତା ଓ ଅତ୍ୟନ୍ତ ନିବିଡ ରାଜନୈତିକ ସଂପର୍କର ଶେଷ ପରଦା ଟାଣି ହୋଇଗଲା ଏହି ରାତ୍ରର ଏପରି ଅଭିନୟର ଦାରୁଣ ଦୁଃଖଦ ଦୃଶ୍ୟର ଏକମାତ୍ର ମୂକ ସାକ୍ଷୀ ଭାବେ ବାକ୍‌ଶୂନ୍ୟ ଅବସ୍ଥାର ସମ୍ମୁଖୀନ ହୋଇ । ପରଦିନ ମୁଁ ଫେରିଗଲି ପୁରୀକୁ ମୋର ପୁନର୍ବାର ପ୍ରିୟ ଆଇନ ବ୍ୟବସାୟରେ ମନଦେବାକୁ । ଇନ୍ଦିରାଜୀ ଫେରିଗଲେ । କିନ୍ତୁ ଶ୍ରୀମତି

ଆନ୍‌ସାରୀଙ୍କୁ ସେ ଅତ୍ୟନ୍ତ ଭଲ ପାଉଥିବା ଦୃଷ୍ଟିରୁ କହିଗଲେ 'ମୁଁ ତୁମର ଉଦ୍‌ବେଗ ବୁଝିପାରୁଛି, ତୁମେ ତୁମର କର୍ତ୍ତବ୍ୟ କରିଛ। କିନ୍ତୁ ମୁଁ ଜାଣିଥିଲି ବିଜୁ ଇଜ୍ ଅନଡିପେଣ୍ଡେବଲ୍ ।' ଏହା ମତେ କତିପୟ ବଂଧୁ ପରେ କହିଲେ । ସେହିଦିନଠାରୁ ଶ୍ରୀମତି ଗାନ୍ଧୀଙ୍କ ଶେଷ ନିଃଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ଶ୍ରୀମତି ଗାନ୍ଧୀ ବିଜୁବାବୁଙ୍କ ସହିତ କୌଣସି ସଂପର୍କ ରଖୁନଥିଲେ ଏବଂ ପ୍ରଧାନମନ୍ତ୍ରୀଙ୍କ ନିବାସ ତାଙ୍କ ପାଇଁ ପ୍ରାୟ ବନ୍ଦ ହୋଇଯାଇଥିଲା । ଏ ମଧ୍ୟରେ ବିଜୁବାବୁ ନିଜର ସ୍ଥିତି ରକ୍ଷା କରିବା ପାଇଁ ନୀଳମଣି ବାବୁଙ୍କୁ ପ୍ରବର୍ତ୍ତାଇ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେବା ପାଇଁ ରାଜି କରାଇଥିଲେ । ନୀଳମଣି ବାବୁ ମୁଖ୍ୟମନ୍ତ୍ରୀ ହେବା ପରେ ବିଜୁବାବୁ ପୁନର୍ବାର ଯୋଜନା ବୋର୍ଡର ଅଧ୍ୟକ୍ଷ ହେଲେ ।

କିଛି ଦିନ ପରେ ହଠାତ ମୁଁ ମୁଖ୍ୟମନ୍ତ୍ରୀ ନୀଳମଣିବାବୁଙ୍କ ଠାରୁ ଗୋଟିଏ ଏନକ୍ୱାରୀ କମିଶନର ରାଜ୍ୟ ସରକାରଙ୍କ ତରଫରୁ ସରକାରୀ ଓକିଲ ଭାବେ ଯୋଗ ଦେବାକୁ ଖବର ପାଇବାରେ ଜାଣିଲି ଯେ ବିଜୁବାବୁଙ୍କ ନିର୍ଦ୍ଦେଶରେ ନୀଳମଣି ବାବୁ ମୁଖ୍ୟମନ୍ତ୍ରୀ ଭାବେ କେନ୍ଦ୍ର ସରକାରଙ୍କ ଅନୁମତି କ୍ରମେ ମଧ୍ୟ ପ୍ରଦେଶର ମୁଖ୍ୟ ବିଚାରପତି ନ୍ୟାୟମୂର୍ତ୍ତି ମୁଧୋଲକରଙ୍କୁ ନିଯୁକ୍ତି କରିଛନ୍ତି ମହତାବଙ୍କ ବିରୁଦ୍ଧରେ କିଛି ଭ୍ରଷ୍ଟାଚାର ଅଭିଯୋଗର ପ୍ରାଥମିକ ତଦନ୍ତ କରି କିଛି ପ୍ରମାଣଯୋଗ୍ୟ ତଥ୍ୟ ଅଛି କି ନାହିଁ ପରୀକ୍ଷା କରିବାକୁ । ଏହା କମିଶନ ଅଫ୍ ଇନକ୍ୱାରୀ ନ ଥିଲା । କେବଳ ନ୍ୟାୟମୂର୍ତ୍ତି ମୁଧୋଲକର ପ୍ରାଥମିକ ଅନୁସଂଧାନ କରିବେ ଅଭିଯୋଗ ସଂପର୍କରେ କମିଶନ ବସାଇବା ପାଇଁ କିଛି ପ୍ରାଥମିକ ତଥ୍ୟ ଅଛି କି ନାହିଁ । ମୁଁ ଜଣେ ଆଇନଜୀବୀ ଭାବେ ଏହି ପ୍ରାଥମିକ ଅନୁସଂଧାନରେ ସହଯୋଗ କରିବା ପାଇଁ ଆପାତତଃ ଅନୁସଂଧାନ ଯୋଗ୍ୟ ପ୍ରମାଣ ଅଛି କି ନାହିଁ ପରୀକ୍ଷା କରିବାରେ ବିଚାରପତି ମୁଧୋଲକରଙ୍କ ନିକଟରେ ଆପାତଃ ପ୍ରମାଣ ଯୋଗ୍ୟ ତଥ୍ୟ ଉପସ୍ଥାପନରେ ସରକାରଙ୍କ ତରଫରୁ ପ୍ରତିନିଧିତ୍ୱ କରିବା ପାଇଁ ନିଯୁକ୍ତ ହେଲି ।

ପୁରୁଣା ଭୁବନେଶ୍ୱର ମହତାବ ରୋଡ୍‌ରେ ଥିବା ଏକାମ୍ର ନିବାସ ନିର୍ମାଣ ଓ ବିସ୍ତୃତ ଜାଗାର ମୂଲ୍ୟାୟନ କରିବା ଓ ଖଣି ମାଲିକ କେଉଁଝର ଜିଲ୍ଲାର ବ୍ୟବସାୟୀ ସିରାଜୁଦ୍ଦିନଙ୍କଠାରୁ ଉତ୍କୋଚ ଗ୍ରହଣ କରି ତାଙ୍କୁ ଅନୁକମ୍ପା ଦେଖାଇଥିବା ଓ ତାଙ୍କର ବ୍ୟକ୍ତିଗତ ସଂପତ୍ତି ଆୟ ବହିର୍ଭୂତ ହୋଇଥିବା ଥିଲା ପ୍ରଧାନ ଅଭିଯୋଗ । ଏକାମ୍ର ନିବାସ ମହତାବ ବାବୁଙ୍କ ନାମରେ ନଥିଲା । ତାହା ତାଙ୍କ ସାନଭାଇ ଗୋପୀନାଥ ଦାସଙ୍କ ନାମରେ ଥିଲା । ମହତାବ ବାବୁ ଅଗରପଡା ଜମିଦାର ଘରକୁ ପୋଷ୍ୟପୁତ୍ର ହୋଇ ଆସିଥିଲେ । କ୍ଷମତାରେ ରହି ଏତେ ବଡ ଜାଗା ଓ ସେଠାରେ ଏପରି ଏକ କୋଠାଘର କରିବା ଗୋପୀନାଥବାବୁଙ୍କ ପକ୍ଷରେ ସମ୍ଭବପର ନଥିବା ଦର୍ଶାଇ

ମହତାବ ବାବୁ ବେନାମୀ ସୂତ୍ରେ ନିଜର ସଂପତ୍ତିକୁ ତାଙ୍କ ଭାଇଙ୍କ ନାମରେ କରିଥିବା ଏବଂ ମୁଖ୍ୟମନ୍ତ୍ରୀ ଭାବେ କ୍ଷମତାରେ ରହି ଖଣି ମାଲିକଙ୍କୁ ଅଯଥା ସାହାଯ୍ୟ ଦେଇ କ୍ଷମତାର ଅପବ୍ୟବହାର କରିଥିବା ସଂପର୍କରେ ଅଧିକ ପରୀକ୍ଷା କରିବାର ଆବଶ୍ୟକତା ଅଛି ବୋଲି ଅବଶେଷରେ ମାଧୋଲକରଙ୍କ ସୁପାରିଶ ଉପରେ, ରାଜ୍ୟ ସରକାର ପାଟନା ହାଇକୋର୍ଟର ବିଚାରପତି ନ୍ୟାୟମୂର୍ତ୍ତି ସରଜୁ ପ୍ରସାଦଙ୍କୁ ଏକ ଜଣିକିଆ କମିଶନ ରୂପେ ନିଯୁକ୍ତ କଲେ । ମୁଁ ମାଧୋଲକରଙ୍କ ଅନୁସଂଧାନରେ ରାଜ୍ୟ ସରକାରଙ୍କ ସରକାରୀ ଆଡଭୋକେଟ୍ ଥିବା ଦୃଷ୍ଟିରୁ ଏହି କମିଶନରେ ମୁଁ, କଟକର ବରିଷ୍ଠ ଆଡଭୋକେଟ ପୂର୍ବତନ କେନ୍ଦ୍ର ମନ୍ତ୍ରୀ ଶ୍ରୀ ବିବୁଧେନ୍ଦ୍ର ମିଶ୍ର ଏବଂ ବ୍ରହ୍ମପୁରର ସୁନାମଧନ୍ୟ ଆଇନଜୀବୀ ଶ୍ରୀ ସନ୍ୟାସୀ ରାଓ ଏହି ତିନିଜଣଙ୍କୁ ସରକାରୀ ଆଡଭୋକେଟ୍ ଭାବେ ସରଜୁ ପ୍ରସାଦ କମିଶନ ଆଗରେ ତଥ୍ୟ ଉପସ୍ଥାପିତ କରିବା ପାଇଁ ନିଯୁକ୍ତି ପାଇ ଭୁବନେଶ୍ୱର ସଚିବାଳୟର ୩ୟ ମହଲାରେ ମୁଖ୍ୟମନ୍ତ୍ରୀଙ୍କ ଦପ୍ତର ନିକଟରେ ଏକ ଅଫିସ୍ ଯୋଗାଇ ଦିଆଗଲା । ସେତେବେଳକୁ ବିଜୁ ବାବୁ ରାଜ୍ୟ ଯୋଜନା ବୋର୍ଡର ଅଧ୍ୟକ୍ଷ ଓ ନୀଳମଣି ବାବୁ ମୁଖ୍ୟମନ୍ତ୍ରୀ । ସରଜୁ ପ୍ରସାଦ ଭୁବନେଶ୍ୱରରେ ପ୍ରମାଣ ସଂଗ୍ରହ କରି ଦିଲ୍ଲୀ କଦମ କୁଆଁ ଜଗନ୍ନାଥ ମନ୍ଦିର ନିକଟସ୍ଥ ଏକ ଭଡା ଘରେ କୋର୍ଟ କରି ପ୍ରାୟ ଏକବର୍ଷ ଧରି ବିଚାର କଲେ, କେନ୍ଦ୍ର ସରକାରଙ୍କ ଫାଇଲ ଦେଖିବା ଓ କେନ୍ଦ୍ର ମନ୍ତ୍ରୀ କେ.ଡି. ମାଲବ୍ୟଙ୍କ ସହ ଅନ୍ୟ ବହୁତ ବିଶିଷ୍ଟ ବ୍ୟକ୍ତିଙ୍କ ସାକ୍ଷ୍ୟ ଗ୍ରହଣ କରିବା ପାଇଁ । ଡକ୍ଟର ମହତାବଙ୍କ ତରଫରୁ ତତ୍‌କାଳୀନ ଏଲ୍ଲାବାଦ ହାଇକୋର୍ଟର ବରିଷ୍ଠ ବିଚାରପତି ମାନ୍ୟବର କେନ୍ଦ୍ର ଆଇନ ମନ୍ତ୍ରୀ ଗୋଖଲେଙ୍କ ଜାମାତା ସୁପ୍ରିମକୋର୍ଟର ବରିଷ୍ଠ ଆଡଭୋକେଟ୍ ଦେଶପାଣ୍ଡେ ଓ ତାଙ୍କ ପତ୍ନୀ ଶ୍ରୀମତି ଦେଶପାଣ୍ଡେଙ୍କୁ ନିଯୁକ୍ତି ଦିଆଯାଇଥାଏ । ଶ୍ରୀ ଦେଶପାଣ୍ଡେ ପରେ ରାଜ୍ୟସଭା ସଦସ୍ୟ ହେଲେ ଓ ପାଣ୍ଡେ ମଧ୍ୟ ଉତ୍ତରପ୍ରଦେଶର ମନ୍ତ୍ରୀ ହେଲେ । ଉଭୟଙ୍କର କିନ୍ତୁ ଅରିଜିନାଲ କେଶ୍ ଚଳାଇବାର ଅଭିଜ୍ଞତା ନଥିଲା । ବିଶେଷ କରି ସାକ୍ଷୀମାନଙ୍କୁ ଜେରା କରିବାର ଅଭ୍ୟାସ ବହୁତ କମ ଥିଲା । କେଶରେ ଯେପରି ଦକ୍ଷତାର ସହିତ ତଳକୋର୍ଟରେ ସାକ୍ଷ୍ୟ ପ୍ରଦାନ, ସାକ୍ଷୀମାନଙ୍କୁ ନେଇ ଜେରା ପ୍ରଭୃତି କରିବାର ବିଶେଷ ଦକ୍ଷତା ସେମାନଙ୍କର ଥିବା ଆମେ ଅନୁଭବ ନକରି ମହତାବବାବୁଙ୍କ ବିରୋଧରେ ବିଶ୍ୱାସଯୋଗ୍ୟ ପ୍ରମାଣ ସଂଗ୍ରହ ହୋଇଯାଉଛି ବୋଲି ଅନୁଭବ କରୁଥିଲୁ । ମହତାବବାବୁଙ୍କ ଅନ୍ୟ ଜୁନିଅର ଆଡଭୋକେଟ୍‌ମାନେ ମଧ୍ୟ ଅନୁରୂପ ଅନୁରୋଧ କରି ଜଣାଇଲେ ମଧ୍ୟ ଶେଷରେ ଏକ ରାଜନୈତିକ ନିଷ୍ପତ୍ତିରେ ମହତାବ ବାବୁ ବିଶ୍ୱାସ କରି ସେହି ଦୁଇଜଣଙ୍କ ଉପରେ ନିର୍ଭର କରିଥିଲେ । କେ.ଡି. ମାଲବ୍ୟଙ୍କୁ କୋର୍ଟରେ ଜମାନବନ୍ଦୀ ବେଳେ ଅତର୍କିତ ଭାବେ କେତେକ ପ୍ରଶ୍ନରେ ସେ

ଅତ୍ୟନ୍ତ ବିରକ୍ତ ହୋଇ, ମହତାବବାବୁଙ୍କ ବିରୋଧରେ ବହୁତ ତଥ୍ୟ କମିଶନଙ୍କ ଆଗରେ ଉପସ୍ଥାପିତ କରିଥିଲେ ଓ କେନ୍ଦ୍ର ସରକାରଙ୍କ ସଚିବାଳୟରୁ ବହୁ ଦଲିଲ୍ ଉପସ୍ଥାପନ କରିବାରେ ମାନ୍ୟବର ବିଚାରପତି ସରଜୁ ପ୍ରସାଦ ଚାରିଟି ମୁଖ୍ୟ ଅଭିଯୋଗରେ ଡଃ ମହତାବଙ୍କୁ ଦୋଷୀ ସାବ୍ୟସ୍ତ କରି ରାୟ ଦେଲେ । ତାଙ୍କ ରାୟ ଉପରେ ଅଧିକ ଅନୁସଂଧାନ ଚଳାଇ ଅଭିଯୋଗ ପତ୍ର, କ୍ରିମିନାଲ ପ୍ରୋସିକ୍ୟୁସନ ପାଇଁ ସୁପାରିଶ ଦେଲେ । ଏହା ଫଳରେ ମହତାବ ବାବୁଙ୍କ ବିରୁଦ୍ଧରେ କ୍ରାଇମ ବ୍ରାଞ୍ଚର ଉଚ୍ଚ ଅଫିସରମାନେ ପ୍ରାୟ ତିନି ବର୍ଷରୁ ଉର୍ଦ୍ଧ୍ୱ ଅନୁସଂଧାନ ଚଳାଇ ଚାର୍ଜଶିଟ୍ ଦେବାରେ ମହତାବ ବାବୁ ହାଇକୋର୍ଟରେ ଏହି ଚାର୍ଜଶିଟ୍ ବିରୁଦ୍ଧରେ ଆଇନଗତ ତ୍ରୁଟି ଦେଖାଇ ରିଟ୍ ଦାଖଲ କଲେ ପ୍ରାୟ ୫ ବର୍ଷ ତାହା ବିଚାରାଧିନ ରହି ଶେଷରେ ଓଡିଶା ହାଇକୋର୍ଟର ତତ୍‌କାଳୀନ ପ୍ରଧାନ ବିଚାରପତି ରଙ୍ଗନାଥ ମିଶ୍ର, ଏହି ସବୁ ଅଭିଯୋଗ ଗୁଡିକ ବିଚାର ଶେଷବେଳକୁ ମହତାବ ବାବୁଙ୍କ ଜୀବନର ଅବସାନ ଘଟିବାର ଆଶଙ୍କା ଏବଂ ମହତାବବାବୁଙ୍କ ଦେଶ ପ୍ରତି ତ୍ୟାଗ ଓ ଦେଶ ଗଠନରେ ତାଙ୍କର ଉଲ୍ଲେଖନୀୟ ଭୂମିକା ଓ ଓଡିଶାର ସାଂସ୍କୃତିକ, ଅର୍ଥନୈତିକ ଓ ରାଜନୈତିକ ଅଗ୍ରଗତିରେ ତାଙ୍କ ଦିଗ୍‌ଦର୍ଶନ ଓ ଐତିହାସିକ ଭୂମିକାକୁ ବିଚାରକୁ ନେଇ ଏହି ସବୁ ଅଭିଯୋଗ ଉପରେ ଆଉ ଅଧିକ ଅନୁସଂଧାନ ଓ ବିଚାରର ଆବଶ୍ୟକତା ନାହିଁ ବୋଲି ଏକ ଐତିହାସିକ ରାୟ ଦେଇ ଆଉ କୌଣସି ମକଦ୍ଦମା ତାଙ୍କ ବିରୋଧରେ ମାନ୍ୟବର ସରଜୁ ପ୍ରସାଦଙ୍କ ସୁପାରିଶ ଉପରେ ଚାଲୁ ହେବ ନାହିଁ ବୋଲି ଉଲ୍ଲେଖ କରି ସେ ଅଭିଯୋଗମୁକ୍ତ ବୋଲି ଘୋଷଣା କରିଥିଲେ । ଏ ମଧ୍ୟରେ ୧୯୭୪ ମସିହାରେ ଯେଉଁ ନିର୍ବାଚନ ହେଲା ସେଥିରେ ଉଭୟ ବିଜୁ ପଟ୍ଟନାୟକ ଓ ନୀଳମଣି ରାଉତରାଙ୍କୁ ମହତାବବାବୁ ଉଭୟ ଭୁବନେଶ୍ୱର ଓ ଚାନ୍ଦବାଲି ନିର୍ବାଚନ ମଣ୍ଡଳୀରୁ ପରାସ୍ତ କରି ଜନମତ ତାଙ୍କ ସପକ୍ଷରେ ଅଛି ଓ ଜନତା ଦରବାରରେ ସରଜୁ ପ୍ରସାଦଙ୍କ ରାୟ ଗ୍ରହଣ ଯୋଗ୍ୟ ନୁହେଁ ବୋଲି ପ୍ରମାଣିତ କରିଥିଲେ । ଅବଶେଷରେ ମହତାବବାବୁ ନିର୍ବାଚିତ ହୋଇ ଉଭୟ ଉତ୍କଳ କଂଗ୍ରେସ ନେତାଙ୍କୁ ଲୋକଙ୍କ ରାୟରେ ସେମାନଙ୍କ ନେତୃତ୍ୱ ପ୍ରତି ଅବିଶ୍ୱାସ ପ୍ରତିପାଦିତ କରି ଶେଷ ଜୀବନୀରେ ତାଙ୍କର ନେତୃତ୍ୱ ପ୍ରତି ଜନାଦେଶ ସାବ୍ୟସ୍ତ କରିଥିଲେ ।

ଓଡିଶାର ରାଜନୈତିକ ପରିସ୍ଥିତି ସଂପର୍କରେ ଏହିପରି ଜଟିଳତା ମଧ୍ୟରେ ୧୯୭୪ ନିର୍ବାଚନ ହୁଏ । କିନ୍ତୁ ତାହା ପୂର୍ବରୁ ଉତ୍କଳ କଂଗ୍ରେସର ଶକ୍ତି କ୍ରମଶଃ ହ୍ରାସ ପାଇ ଇନ୍ଦିରା କଂଗ୍ରେସ ପ୍ରକୃତ ଜାତୀୟ କଂଗ୍ରେସର ସ୍ୱୀକୃତି ଲୋକମୁଖରେ ପ୍ରତିପାଦିତ ହୋଇଥାଏ । ନୀଳମଣିବାବୁଙ୍କର ଏ ମଧ୍ୟରେ ବିଜୁବାବୁଙ୍କ ସହିତ ବହୁ ସମସ୍ୟା ଉପରେ ମତଭେଦ ଆରମ୍ଭ ହୋଇ ଯାଇଥାଏ । ନୀଳମଣି ବାବୁଙ୍କ

ସହଧର୍ମିଣୀ ଶ୍ରୀମତି ନଳିନୀ ଦେବୀ ସେତେବେଳକୁ ଏକ ଗୁରୁତର ରୋଗରେ ଶ୍ରୀରାମଚନ୍ଦ୍ର ଭଂଜ ମେଡିକାଲ କଲେଜର ନର୍ସିଂ ହୋମ୍‌ରେ ମୃତ୍ୟୁ ଅପେକ୍ଷାରେ ଥାଆନ୍ତି । ମୁଁ ସେହି ସମୟରେ କମିଶନ ଅଫ୍ ଏନକ୍ୱାରୀରେ ସରକାରୀ ଆଡଭୋକେଟ୍ ଦାୟିତ୍ୱରୁ ଅବ୍ୟାହତ ନେଲେ ମଧ୍ୟ ରାଜ୍ୟ ଖଦୀ ଓ ଗ୍ରାମୋଦ୍ୟୋଗ ସଂସ୍ଥାର ଅଧ୍ୟକ୍ଷ ଥାଏ । ସେହି ଦାୟିତ୍ୱରେ ଥିବା ସମୟରେ ମୁଁ ନୀଳମଣି ବାବୁଙ୍କ ସହିତ ନଳିନୀ ଦେବୀଙ୍କୁ ଦେଖିବାକୁ ଯିବା ସମୟରେ, ନଳିନୀ ଦେବୀଙ୍କ ଶେଷ ଅବସ୍ଥା । ସେଇ ମୋର ତାଙ୍କ ସହିତ ଶେଷ ଦେଖା । ତାଙ୍କୁ ମୁଁ ନିଜ ସାନ ଭଉଣୀ ଭାବେ ଦେଖେ । ଅନେକ ବର୍ଷ ଧରି ସଂପର୍କ । ସେଥିରେ ନୀଳମଣି ବାବୁଙ୍କ ରାଜନୀତି ଓ ମୋର ତାଙ୍କ ସହିତ ରାଜନୈତିକ ସଂପର୍କର କୌଣସି ବିଚାର ନଥିଲା । ନଳିନୀ ଦେବୀ ଜଣେ ସୁଲେଖିକା ଓ ଅତ୍ୟନ୍ତ ସୁରୁଚି ସଂପନ୍ନ, ଶିକ୍ଷିତା ଓ ବନ୍ଧୁବତ୍ସଳା ଭାବରେ ସମସ୍ତଙ୍କ ଆଦର ପାଉଥିଲେ । ନୀଳମଣିବାବୁ ମୁଖ୍ୟମନ୍ତ୍ରୀ ଥିବା ବେଳେ ମଧ୍ୟ ନଳିନୀ ଦେବୀ ପୁରୀ ଆସିଲେ ଆମ ସୁଆର ସାହି ଘରେ ରହନ୍ତି ଏବଂ ଭଉଣୀ ଭାବେ ମୋ ସ୍ତ୍ରୀଙ୍କୁ ଭାଉଜ ସମ୍ବୋଧନ କରନ୍ତି । ତାଙ୍କ ପରି ଜଣେ ଆଦର୍ଶ ନାରୀ ସମାଜସେବୀ, ସଂସ୍କୃତି ପ୍ରେମୀ, ବିଶିଷ୍ଟ ଲେଖିକା ଏପରି ସରଳ ଜୀବନଯାପନ କରି ପରିବାର ପ୍ରତି ନିଜର ପବିତ୍ର କର୍ତ୍ତବ୍ୟ ସାଧନ ସହିତ ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ନିଜକୁ ନିମଜ୍ଜିତ ରଖିଥିବା ନାରୀ ବିରଳ । ପୂଜା ସମୟରେ ଓ କୁମାରପୂର୍ଣ୍ଣିମା ଉତ୍ସବରେ ମୁଁ ଭାଇନା ଭାବେ ତାଙ୍କୁ ନୂତନ ସାଢ଼ିଟିଏ ଉପହାର ଦେଲେ କେତେ ଯେ ସେ ଖୁସି ହୁଅନ୍ତି ତାହା ଭାବିଲେ ଆଖିରେ ସ୍ୱତଃ ଲୁହ ଆସେ । ନୀଳମଣିବାବୁଙ୍କର ସବୁବେଳେ ଅବଶୋଷ ରହୁଥିଲା ଯେ ସେ ଘର ସଂସାର ଓ ନଳିନୀ ଦେବୀଙ୍କ ପ୍ରତି ଯେପରି ପାରିବାରିକ ବଂଧନ ରଖିବାର କଥା ରାଜନୀତିର ଜାଲ ଭିତରେ ଛନ୍ଦି ହୋଇ ତାହା କରିନାହାନ୍ତି କିମ୍ବା ତାଙ୍କ ପାଇଁ ସମୟ ସେ ଦେଇପାରିନାହାଁନ୍ତି । ଏକଥା ମୁଁ ତାଙ୍କ ସହିତ ଶେଷ ଦେଖାରେ ଜାଣିଲି । ମୋର ମନେ ପଡୁଛି ଯେଉଁଦିନ ନୀଳମଣି ବାବୁ ଓ ମୁଁ ନଳିନୀ ଦେବୀଙ୍କ ସହିତ ଶେଷ ସାକ୍ଷାତ କଲୁ ନର୍ସିଂ ହୋମ୍‌ରେ ସେ ମତେ ଗୋଟିଏ କଥା କହି ପକାଇଲେ, 'ଭାଇନା ତୁମେ ବମ୍ବେରୁ ଫେରିଲା ବେଳକୁ ହୁଏତ ମୁଁ ନଥିବି; ମୋର ଶେଷ ଅନୁରୋଧ ତୁମେ ନୀଳମଣିବାବୁଙ୍କୁ କହିବ ସେ ଶେଷ ଜୀବନରେ ଭାରତୀୟ ଜାତୀୟ କଂଗ୍ରେସ କେବେ ହେଲେ ଛାଡିବେ ନାହିଁ । ମନ୍ତ୍ରୀ ରହନ୍ତୁ ବା ନ ରହନ୍ତୁ ।' ସେତେବେଳକୁ ନୀଳମଣିବାବୁ ଉପ-ମୁଖ୍ୟମନ୍ତ୍ରୀ ଦାୟିତ୍ୱରେ ଥାଆନ୍ତି । ବିଜୁବାବୁଙ୍କ ନେତୃତ୍ୱ ସ୍ୱୀକାର କରି, ବିଜୁବାବୁ ରାଜ୍ୟ ଯୋଜନା ବୋର୍ଡ ଅଧ୍ୟକ୍ଷରୁ ମଧ୍ୟ ଓହରି ଯାଇଥାଆନ୍ତି । ମହତାବବାବୁଙ୍କର ଏକମାତ୍ର କାର୍ଯ୍ୟ ଥାଏ ନନ୍ଦିନୀ ଦେବୀ ଓ ନୀଳମଣିଙ୍କ ଭିତରେ ବିଭେଦ ସୃଷ୍ଟି କରି ନୀଳମଣି ବାବୁଙ୍କୁ ଉପମୁଖ୍ୟମନ୍ତ୍ରୀ ଦାୟିତ୍ୱରୁ

ଓହରି ଯିବାକୁ ପ୍ରବର୍ତ୍ତାଇ ସରକାରକୁ ଭାଙ୍ଗିଦେବା ଓ ରାଜ୍ୟରେ ରାଷ୍ଟ୍ରପତି ଶାସନ ଜାରି କରାଇ ପୁନର୍ବାର ନିର୍ବାଚନ କରାଇ ସେ କ୍ଷମତାକୁ ଫେରିବା ପାଇଁ ।

ଏଠାରେ ଗୋଟିଏ ବିଶେଷ କଥା ଉଲ୍ଲେଖ କରାନଗଲେ ଏକ ବଡ ଐତିହାସିକ ଅଧ୍ୟାୟ ଲୁଚି ରହିଯାଇପାରେ ସ୍ମରଣରୁ । ୧୯୭୧ ମସିହା ନିର୍ବାଚନ ପରେ ଯେଉଁ ରାଜନୈତିକ ପରିବର୍ତ୍ତନ ହେଲା ସେ କଥା ମୁଁ ପୂର୍ବରୁ ଉଲ୍ଲେଖ କରିଛି । ନୀଳମଣି ବାବୁ ମୁଖ୍ୟମନ୍ତ୍ରୀ ଥାଇ, ବିଜୁବାବୁ ଯୋଜନା ବୋର୍ଡ ସଭ୍ୟ ଥିବା ସମୟରେ କ୍ୟାବିନେଟ୍ ସବ୍ କମିଟି ନ୍ୟାୟପତି ଚଗଲାଙ୍କ ମତ ଅନୁଯାୟୀ ବିଜୁବାବୁଙ୍କ ବିରୋଧରେ ଯେଉଁ ମତ ଦେଲେ ତାକୁ ଭିତ୍ତି କରି ବିଜୁବାବୁଙ୍କୁ ଯୋଜନା ବୋର୍ଡ ଅଧ୍ୟକ୍ଷରୁ ଅପସରିଯିବାକୁ ପଡିଥିଲା । ଓଡିଶାରେ କିଏ ମୁଖ୍ୟମନ୍ତ୍ରୀ ହେବ ସେକଥା ନେଇ ଦିଲ୍ଲୀରେ ବହୁ ବିଚାର ଆଲୋଚନା ପରେ କଂଗ୍ରେସ ହାଇକମାଣ୍ଡ ସ୍ଥିର କଲେ ଯେ ଶ୍ରୀମତି ନନ୍ଦିନୀ ଶତପଥୀ ରାଜ୍ୟର ମୁଖ୍ୟମନ୍ତ୍ରୀ ହୋଇ ଦାୟିତ୍ୱ ନେବେ । ତଦନୁଯାୟୀ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଲାଲ ବାହାଦୂର ଶାସ୍ତ୍ରୀଙ୍କ ନିର୍ଦ୍ଦେଶରେ ହାଇକମାଣ୍ଡଙ୍କ ପକ୍ଷରୁ ତତ୍‌କାଳୀନ ସ୍ୱରାଷ୍ଟ୍ରମନ୍ତ୍ରୀ ଉମାଶଙ୍କର ଦୀକ୍ଷିତ ଓଡିଶା ଆସି ଉତ୍କଳ କଂଗ୍ରେସ ଦଳରୁ କଂଗ୍ରେସ ଦଳରେ ଯୋଗ ଦେଇଥିବା ବିଧାୟକଙ୍କ ସହିତ ଓ କଂଗ୍ରେସ ବିଧାୟକ ଦଳର ନେତାମାନଙ୍କ ସହିତ ଦୀର୍ଘ ଆଲୋଚନା କରିଥିଲେ । ନୀଳମଣିବାବୁ ନନ୍ଦିନୀ ଦେବୀ ମୁଖ୍ୟମନ୍ତ୍ରୀ ହେବା ପ୍ରସ୍ତାବରେ ଆଦୌ ସମ୍ମତ ହେଲେ ନାହିଁ । ସେଥିପାଇଁ ନୀଳମଣିବାବୁଙ୍କୁ ଗୁଜରାଟର ରାଜ୍ୟପାଳ ହୋଇ ଯିବା ପାଇଁ ମଧ୍ୟ ଅନୁରୋଧ କରାଯାଇଥିଲା । କିନ୍ତୁ ସେଥିରେ ମଧ୍ୟ ସେ ସମ୍ମତ ନହୋଇ ଶେଷରେ ବହୁ ଉଦ୍ୟମ ପରେ ଉତ୍କଳ କଂଗ୍ରେସର ସଂଖ୍ୟା ଓ ତତ୍‌କାଳୀନ କଂଗ୍ରେସ ଦଳର ଅଭ୍ୟୁଦୟ ଓ ନନ୍ଦିନୀ ଦେବୀଙ୍କର କଂଗ୍ରେସର ଜାତୀୟ ନେତୃତ୍ୱ ସହିତ ଘନିଷ୍ଠ ସଂପର୍କ ଓ ବିଶ୍ୱାସ ସବୁ ଆଲୋଚନା ପରେ ଶେଷରେ ସେ ନନ୍ଦିନୀ ଦେବୀଙ୍କ ନେତୃତ୍ୱରେ ଯେଉଁ ବିକଳ୍ପ ମନ୍ତ୍ରିମଣ୍ଡଳ ହେଲା ସେଥିରେ ଉପମୁଖ୍ୟମନ୍ତ୍ରୀ ଦାୟିତ୍ୱ ସହିତ ଆଇନ ଓ ଶିକ୍ଷମନ୍ତ୍ରୀ ଦାୟିତ୍ୱ ନେଲେ ଏବଂ ଅଳ୍ପ କିଛି ଦିନ ପରେ ମତେ ରାଜ୍ୟ ଖଦୀ ବୋର୍ଡର ଅଧ୍ୟକ୍ଷ ରୂପେ ତାଙ୍କ ବିଭାଗ ତରଫରୁ ପ୍ରସ୍ତାବକୁ ମୁଖ୍ୟମନ୍ତ୍ରୀଙ୍କ ସମ୍ମତି କ୍ରମେ, ନିଯୁକ୍ତି ଦିଆଗଲା ୧୯୭୧ ମସିହା ଜୁଲାଇ ମାସ ବେଳକୁ । ସେତେବେଳକୁ ନୀଳମଣିବାବୁଙ୍କ ବିଶ୍ୱସ୍ତ ଭାବେ ଏକମାତ୍ର ଉତ୍କଳ କଂଗ୍ରେସ ବେଞ୍ଚର ସହଯୋଗୀ ଭାବେ ମୁଁ ଥାଏ । ୧୯୭୧ ମସିହା ନିର୍ବାଚନରେ ବିଜୁବାବୁ ଯେପରି ଭାବେ ମତେ ତତ୍‌କାଳୀନ ଉତ୍କଳ କଂଗ୍ରେସର ଟିକଟ ନଦେଇ ଶ୍ରୀ ଚନ୍ଦ୍ରମାଧବ ମିଶ୍ରଙ୍କୁ ଦେବାରୁ ସତ୍ୟବାଦୀ ନିର୍ବାଚନ ମଣ୍ଡଳୀରେ କଂଗ୍ରେସ, ଉତ୍କଳ କଂଗ୍ରେସ ବିରୁଦ୍ଧରେ ମୁଁ ସ୍ୱାଧୀନ ପ୍ରାର୍ଥୀ ଭାବେ ପ୍ରତିଦ୍ୱନ୍ଦ୍ୱିତା କରି ପରାଜୟ ସ୍ୱୀକାର କଲି, ସେକଥା ପୁନର୍ବାର ଉଲ୍ଲେଖ

କରିବାର ଏକମାତ୍ର ଉଦ୍ଦେଶ୍ୟ ନୀଳମଣିବାବୁ ଏକମାତ୍ର ଲୋକ ଯେକି ସଂପୂର୍ଣ୍ଣ ଭାବେ ଅବଗତ ଥିଲେ ବିଜୁବାବୁ କିପରି ମୁଁ ୧୯୭୧ ମସିହା ପୂର୍ବରୁ ମୁଖ୍ୟମନ୍ତ୍ରୀ ହେବାର ସୁଯୋଗରୁ ଓହରିଯିବାକୁ ବାଧ୍ୟ କରାଇ ତାଙ୍କର ମୋ ପ୍ରତି ସନ୍ଦେହ ସୃଷ୍ଟି ହେବା ଓ ସେଇ ଲକ୍ଷ୍ୟ ରଖି ମୁଁ ପୁନର୍ବାର ନିର୍ବାଚିତ ହୋଇ ଆସିଲେ ନୀଳମଣିବାବୁଙ୍କ ସହିତ ରହି ତାଙ୍କୁ ମୁଖ୍ୟମନ୍ତ୍ରୀ ହେବାର ସୁଯୋଗରୁ ବଞ୍ଚିତ କରିବାର ଆଶଙ୍କାକୁ ଏଡାଇବା ପାଇଁ ଶ୍ରୀ ଚନ୍ଦ୍ରମାଧବ ମିଶ୍ରଙ୍କ ପରି ଜଣେ ତତ୍‌କାଳୀନ ଶିଳ୍ପପତିଙ୍କ ଆର୍ଥିକ ସହାୟତା ନିର୍ବାଚନରେ ପାଇବା ପାଇଁ ତାଙ୍କୁ ଉତ୍କଳ କଂଗ୍ରେସର ଟିକେଟ ଦେଇ କୌଣସି ମତେ ଜିତାଇବାରେ ସଫଳ ହୋଇଥିଲେ । ଚନ୍ଦ୍ରମାଧବ ବାବୁ କେବଳ ୧୨୦୦ରୁ ସାମାନ୍ୟ ଅଧିକ ଭୋଟରେ ଜୟଯୁକ୍ତ ହୋଇଥିଲେ । ଉତ୍କଳ କଂଗ୍ରେସରେ ସମସ୍ତେ ଏକଥା ଜାଣିଥିଲେ ଓ ନୀଳମଣି ବାବୁ ମୋ ପ୍ରତି ଏହି ନିଷ୍ପତ୍ତିର ପ୍ରତିଶୋଧ ନେଇ ମୋର ସମ୍ମାନ ବଜାୟ ରଖିବା ପାଇଁ ପ୍ରତିଶ୍ରୁତିବଦ୍ଧ ଥିଲେ । ସେ ଉପମୁଖ୍ୟମନ୍ତ୍ରୀ ହେବା ପାଇଁ ବାଧ୍ୟ ହେଲା ପରେ ପୁଣିଥରେ ମୁଖ୍ୟମନ୍ତ୍ରୀ ହେବା ଆଶାରେ ତାଙ୍କର ଅତ୍ୟନ୍ତ ବିଶ୍ୱସ୍ତ ଶ୍ରୀ ଶଶୀ ଭୂଷଣ ମିଶ୍ରଙ୍କ ପରାମର୍ଶ କ୍ରମେ ଶଶୀବାବୁଙ୍କୁ ଲୋକ ସଂପର୍କ ବିଭାଗର ନିର୍ଦ୍ଦେଶକ ଭାବେ ଓ ମତେ ଖଦୀ ଓ ଗ୍ରାମୋଦ୍ୟୋଗ ବିଭାଗର ଅଧ୍ୟକ୍ଷ ରୂପେ ରାଜ୍ୟମନ୍ତ୍ରୀର ସମ୍ମାନ ଦେଇ ଜଣେ ବିଶ୍ୱସ୍ତ ସହଯୋଗୀ ଭାବେ ତାଙ୍କର ଦାୟିତ୍ୱ ତୁଲାଇ ସେ ନିଜର ପ୍ରତିପତ୍ତି ବଜାୟ ରଖିବା ପାଇଁ କରିଥିବା ଉଦ୍ୟମର ଏହା ଥିଲା ଏକ ଅଂଶ । ସେ ଯାହା ହେଉ, ନୀଳମଣିବାବୁ ଉପମୁଖ୍ୟମନ୍ତ୍ରୀ ରହି ନନ୍ଦିନୀ ଦେବୀ ମୁଖ୍ୟମନ୍ତ୍ରୀ ଦାୟିତ୍ୱରେ ରହିଲେ ମହତାବବାବୁଙ୍କ ଗୁରୁତ୍ୱ ରାଜ୍ୟରେ କ୍ରମଶଃ ହ୍ରାସ ପାଇବ ଏହି ଆଶଙ୍କାରେ ନୀଳମଣିବାବୁଙ୍କ ଅସନ୍ତୋଷର ସୁବିଧା ନେଇ ସେ ଯେପରି ଉପମୁଖ୍ୟମନ୍ତ୍ରୀ ଦାୟିତ୍ୱରୁ ଓହରି ଯିବେ ସେଥିପାଇଁ ଡଃ ମହତାବ ଆପ୍ରାଣ ଉଦ୍ୟମ ଚଳାଇ ଥାଆନ୍ତି ଓ ଆମର ମଧ୍ୟ ସହାୟତା ନେବାରେ ସେ କୁଣ୍ଠାବୋଧ କରୁନଥାନ୍ତି ।

ମୁଁ ଆଗରୁ କହିଛି ନନ୍ଦିନୀ ଦେବୀ ମୁଖ୍ୟମନ୍ତ୍ରୀ ରହି ତାଙ୍କ ନେତୃତ୍ୱରେ ମନ୍ତ୍ରିମଣ୍ଡଳରେ ସେ ଉପମୁଖ୍ୟମନ୍ତ୍ରୀ ରହିବେ ଏକଥା ନୀଳମଣି ବାବୁ କେବେହେଲେ ବରଦାସ୍ତ କରିବା ପାଇଁ ପ୍ରସ୍ତୁତ ନଥାନ୍ତି । କିନ୍ତୁ ସେତେବେଳକୁ ଅନ୍ୟ ଉପାୟ ନଥାଏ । ନୀଳମଣିବାବୁ ନନ୍ଦିନୀ ଦେବୀ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେବା ପୂର୍ବରୁ ନିଜେ ମୁଖ୍ୟମନ୍ତ୍ରୀ ହେବାର ଉଦ୍ଦେଶ୍ୟ ରଖି କଂଗ୍ରେସରେ ଯୋଗ ଦେଇ ସାରିଥାଆନ୍ତି । ଉପମୁଖ୍ୟମନ୍ତ୍ରୀ ଦାୟିତ୍ୱରୁ ଓହରିଗଲେ ପୁଣି କଂଗ୍ରେସରୁ ବିଦାୟ ନେବାକୁ ପଡିବ ଏକଥା ଭାବି ସେ କଂଗ୍ରେସ (ଆଇ)ରେ ରହିଥାଆନ୍ତି ଉପମୁଖ୍ୟମନ୍ତ୍ରିତ୍ୱକୁ ସ୍ୱୀକାର କରି । ନନ୍ଦିନୀ ଦେବୀଙ୍କ ଏହି ଶେଷ ଅନୁରୋଧ ମୁଁ ଯେତେବେଳେ ନୀଳମଣି ବାବୁଙ୍କୁ ଜଣାଇଲି ସେତେବେଳେ ତାଙ୍କ ଆଖିରୁ ଦୁଇଧାର ଲୁହ ଗଡିପଡିଲା । ଆମେ ଦୁହେଁ ତାଙ୍କ

ଗାଡିରେ ଭୁବନେଶ୍ୱର ଫେରି ଆସିଲୁ ଓ ମୁଁ ବମ୍ବେଠାରେ କେନ୍ଦ୍ର ଖାଦ୍ୟ କମିଶନ ବୈଠକରେ ଯୋଗ ଦେବା ପାଇଁ ସେଇଦିନ ସିଧା ପ୍ଲେନ୍‌ରେ ବସିଲି । ତା ପରଦିନ ଖଦୀ କମିଶନ ବୈଠକ ପରେ ଶ୍ରୀ ରବି ମହାନ୍ତି ଆଇ.ଏ.ଏସ. ଯେକି ସେତେବେଳେ ସଚିବ ଥାନ୍ତି ବମ୍ବେରେ, ମତେ ରାତ୍ରଭୋଜନ ପାଇଁ ନିମନ୍ତ୍ରଣ କରିଥାଆନ୍ତି । ମୁଁ ରାତ୍ର ୯ଟା ବେଳେ ଠିକ୍ ଭୋଜନକୁ ଯିବା ସମୟରେ ରବିବାବୁ ଏକ ଫୋନ ପାଇ ନନ୍ଦିନୀଦେବୀଙ୍କ ବିୟୋଗ ସମ୍ବାଦ ପାଇଲେ । ମତେ ନ ଜଣାଇ ଖାଇ ସାରିବା ପରେ କହିବାରୁ ମୁଁ ତାଙ୍କୁ ମୋ ପାଇଁ ପ୍ଲେନ୍ ଟିକେଟ ସକାଳକୁ କରାଇ ଦେବା ପାଇଁ ଅନୁରୋଧ କରି ମୋ ରହୁଥିବା ଗେଷ୍ଟହାଉସ୍‌କୁ ଫେରି ଆସିଲି । ବମ୍ବେରୁ ଭୁବନେଶ୍ୱରକୁ ସିଧା ପ୍ଲେନ ନଥାଏ । ସକାଳୁ କଲିକତା ଉଡ଼ାଣରେ ଆସି କଲିକତାରୁ ଦିନ ଦୁଇଟା ବେଳେ ଆଉ ଗୋଟିଏ ପ୍ଲେନ୍‌ରେ ଭୁବନେଶ୍ୱର ଫେରିଲି ।

ଦମଦମରେ ଅପେକ୍ଷା କରୁଥିବାବେଳେ ସ୍ୱର୍ଗତ ବଳରାମ ମିଶ୍ର ଶକ୍ତି ବିଭାଗର ତତ୍‌କାଳୀନ ମୁଖ୍ୟଯନ୍ତ୍ରୀ ମତେ ଦେଖି ଆଶ୍ଚର୍ଯ୍ୟ ହୋଇ ଖବର ଦେଲେ 'ଭାଇନା ତୁମେ କିପରି ଏଠାରେ ? ଓଡିଶାରେ ରାଜନୈତିକ ପରିବର୍ତ୍ତନ ହୋଇ ନନ୍ଦିନୀ ଦେବୀ ଇସ୍ତଫା ଦେଇ ରାଷ୍ଟ୍ରପତି ଶାସନ ପ୍ରତିଷ୍ଠିତ ହୋଇସାରିଲାଣି । ନୀଳମଣି ବାବୁ ତାଙ୍କ ସମର୍ଥକଙ୍କ ସହିତ କଂଗ୍ରେସ ଦଳରୁ ଇସ୍ତଫା ଦେଇ ସରକାର ଓ ନନ୍ଦିନୀ ଦେବୀଙ୍କୁ ମୁଖ୍ୟମନ୍ତ୍ରୀ ଦାୟିତ୍ୱରୁ ଅପସାରି ଦେଇ ସାରିଲେଣି ।' ମହତାବ ବାବୁଙ୍କ ଅଭିଷ୍ଟ ସିଦ୍ଧି ପାଇଁ ରାଜ୍ୟରେ ଏପରି ପରିବର୍ତ୍ତନ ହୋଇଛି ଓ ନୀଳମଣି ବାବୁ ତାଙ୍କ ସହଧର୍ମିଣୀଙ୍କ ଅନୁରୋଧକୁ ଭ୍ରୂକ୍ଷେପ ନକରି କଂଗ୍ରେସ ଦଳରୁ ପୁନର୍ବାର ଇସ୍ତଫା ଦେଇ ନନ୍ଦିନୀ ଦେବୀଙ୍କ ଶାସନର ଅବସାନ ଘଟାଉଛନ୍ତି ଏହାହିଁ ଥିଲା ଉଭୟଙ୍କ ବ୍ୟକ୍ତିଗତ ସ୍ୱାର୍ଥସାଧନର ଚରମ ଉଦ୍ଦେଶ୍ୟ ।

ଏହି ପରିପ୍ରେକ୍ଷୀରେ ୧୯୭୪ ମସିହା ନିର୍ବାଚନ ଓଡିଶାରେ ଆରମ୍ଭ ହୁଏ । ଶ୍ରୀମତି ଗାନ୍ଧୀ ଅତ୍ୟନ୍ତ ଦୁଃଖପ୍ରକାଶ କରି ଯେପରି ଭାବରେ ରାଜ୍ୟ ମନ୍ତ୍ରିମଣ୍ଡଳର ପତନ ଘଟିଲା, ଶ୍ରୀମତି ନନ୍ଦିନୀ ଦେବୀଙ୍କୁ ପୁନର୍ବାର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଦେବା ପାଇଁ ମନସ୍ଥ କରି ଡକ୍ଟର ହରେକୃଷ୍ଣ ମହତାବ, ନୀଳମଣି ରାଉତରା ପ୍ରଭୃତି ରାଜନୀତି କ୍ଷେତ୍ରରେ ଅସ୍ଥିରତା ଉପୁଜାଉଥିବା ନେତାଙ୍କ କବଳରୁ ଓଡିଶାକୁ ରକ୍ଷା କରିବା ପାଇଁ ବଦ୍ଧ ପରିକର ଥିଲେ । ନିର୍ବାଚନ ବେଳେ ମୁଁ ରାଜ୍ୟ ଖଦୀ ଓ ଗ୍ରାମ୍ୟୋଦ୍ୟୋଗ ବୋର୍ଡରୁ ଇସ୍ତଫା ଦେଇ ପୁନର୍ବାର କଂଗ୍ରେସ ପ୍ରାର୍ଥୀ ଭାବେ ସତ୍ୟବାଦୀ ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ ହୋଇ ଚନ୍ଦ୍ର ମାଧବ ମିଶ୍ରଙ୍କୁ ବହୁ ଭୋଟରେ ପରାଜିତ କରି ବିଧାନସଭାକୁ ନିର୍ବାଚିତ ହୋଇଗଲି । କିନ୍ତୁ ଆଇନ ବ୍ୟବସାୟରେ ମୋର ସେତେବେଳକୁ ବିଶେଷ ପାରଦର୍ଶିତା ଫଳରେ ଆର୍ଥିକ ଦିଗଟି ସୁଧୁରି ଯାଇଥିଲା । ମୁଁ

ନିର୍ବାଚନରେ ଜୟଲାଭ କରି ଶ୍ରୀମତି ନନ୍ଦିନୀ ଦେବୀଙ୍କ ପ୍ରତି ମୋର ଆନୁଗତ୍ୟ ଜଣାଇ ତିନୋଟି ନରହତ୍ୟାରେ ଅଭିଯୁକ୍ତ ଥିବା ୭୦ ଜଣ ଲୋକଙ୍କ ତରଫରୁ ଦୌରାଜଜ୍ ଶ୍ରୀ ଆଚାର୍ଯ୍ୟଙ୍କ କୋର୍ଟରେ ଆଡଭୋକେଟ ଭାବରେ ବିଚାରଟି ଶେଷ କରି ଭୁବନେଶ୍ୱର ଯିବା ପାଇଁ ବିଶେଷ ତତ୍ପର ଥାଏ ।

ମୋର ମନେ ପଡୁଛି ମୁଁ ମକଦ୍ଦମାଟିର ଶେଷ ବିଚାର ଦିନ ମୋର ସୁଆଲ କରୁଥିବା ସମୟରେ କେତେ ବେଳେ ମୋ ପଛରେ ଜିଲ୍ଲାପାଳ ଆସି ଠିଆ ହୋଇଛନ୍ତି । ମୋ ପଛପଟେ ଅନେକ ଆଇନଜୀବୀ ମୋର ଜବାବ ସୁଆଲ ଶୁଣିବା ପାଇଁ ବସି ଥାଆନ୍ତି । କିଛି ସମୟ ପରେ ପ୍ରାୟ ୧ଟା ସମୟରେ ସେସନ୍ସ ଜଜ ଆଚାର୍ଯ୍ୟ ହଠାତ୍ କହି ଉଠିଲେ, 'Mr Mahapatra will you please look back ? We will meet half an hour after.' ଗଙ୍ଗାଧର ବାବୁ ଆପଣଙ୍କ ପଛରେ ଜଣେ ଦଣ୍ଡାୟମାନ ଥିବା ବ୍ୟକ୍ତିଙ୍କୁ ଚାହାନ୍ତୁ । ଆମେ ଅଧଘଣ୍ଟାଏ ପରେ ପୁନର୍ବାର କୋର୍ଟ କାର୍ଯ୍ୟ ଆରମ୍ଭ କରିବା । ମୁଁ ଜଜ୍‌ଙ୍କ ଟିପ୍ପଣୀ ପରେ କଲେକ୍ଟରଙ୍କୁ ପଚାରିବାବେ ଜାଣିଲି ଯେ, ମୁଖ୍ୟମନ୍ତ୍ରୀ ଶ୍ରୀମତି ଶତପଥୀଙ୍କ ନିର୍ଦ୍ଦେଶ ମତେ ତୁରନ୍ତ ଭୁବନେଶ୍ୱର ଯିବାକୁ ହେବ ବୋଲି କଲେକ୍ଟରଙ୍କୁ ନିର୍ଦ୍ଦେଶ ଆସିଛି । ମୁଁ ତତ୍‌କ୍ଷଣାତ ମିଃ କାଳୀ ପ୍ରସନ୍ନ ଆଚାର୍ଯ୍ୟଙ୍କ ଚାମ୍ବରକୁ ଯାଇ, ଯେତେ ସମୟ ଲାଗୁ ପଛେ ମତେ ଅନୁଗ୍ରହ କରି ସମୟ ଦେଇ ସୁଆଲ ସାରିବା ପାଇଁ ଅନୁମତି ଦିଆଯାଉ । ସେ ବୋଧହୁଏ ଅନୁମାନ କଲେ ମୋର ଆଇନଜୀବୀ ଭାବରେ ପୁରୀରେ ରହିବା ସମ୍ଭବପର ନୁହେଁ । ଏହି ସମୟରେ ଜଜ୍‌ଙ୍କ ଚାମ୍ବରକୁ ପୁଣି ଫୋନ୍ ଆସିଲା ସ୍ୱରାଷ୍ଟ୍ର ସଚିବଙ୍କ ନିକଟରୁ, ପ୍ରାୟ ଅପରାହ୍ନ ଏକଟା ପଇଁଚାଳିଶରେ । ପରଦିନ ମତେ ସକାଳ ୮ଟା ସୁଦ୍ଧା ରାଜଭବନରେ ପହଞ୍ଚି କାବିନେଟ ମନ୍ତ୍ରୀ ଭାବରେ ଶପଥ ନେବାକୁ ହେବ । ସେଥିପାଇଁ ସତ୍ୱର ଯିବା ପାଇଁ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶ । କାଳିବାବୁ ଟେଲିଫୋନଟି ମତେ ଦେଇ ନିଜେ କଥା ହେବା ପାଇଁ ନିର୍ଦ୍ଦେଶ ଦେଲେ । ସେତେବେଳକୁ ବନ୍ଧୁ ବ୍ରଜ ମୋହନ ମହାନ୍ତି ବିଧାନସଭାର ବାଚସ୍ପତି ଭାବେ ନିର୍ବାଚିତ ହୋଇସାରି ଥାଆନ୍ତି ଏବଂ ମୁଁ ରାଜ୍ୟ କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର କୁଳାଧିପତି ଭାବେ ରାଜ୍ୟ ସରକାରଙ୍କ ମୁଖ୍ୟ ନନ୍ଦିନୀ ଦେବୀଙ୍କ ଦ୍ୱାରା ମନୋନୀତ ହୋଇ ମନ୍ତ୍ରୀ ହେବାର ହଠାତ୍ ସମ୍ଭାବନା ନକରି ଆଇନ ବ୍ୟବସାୟରେ ମନ ଦେଇଥାଏ ମଧ୍ୟବର୍ତ୍ତୀ ସମୟ ମଧ୍ୟରେ । ମୁଁ ଶୁଣିଲି ନନ୍ଦିନୀ ଦେବୀ ବ୍ରଜବାବୁଙ୍କୁ କ୍ୟାବିନେଟ ମନ୍ତ୍ରୀ କରି କୌଣସି ଗୁରୁତ୍ୱପୂର୍ଣ୍ଣ ବିଭାଗ ଦେଇ ଆଉ ଏକ କ୍ଷମତା କେନ୍ଦ୍ର ସୃଷ୍ଟି କରିବା ମତଲବରେ ନଥାଇ, ତାଙ୍କୁ ବାଚସ୍ପତି ଭାବରେ କିଛି ଦିନ ଦାୟିତ୍ୱରେ ରଖିବା ପରେ ମନ୍ତ୍ରିମଣ୍ଡଳରେ ମୋତେ ନେବେ ବୋଲି ମନସ୍ଥ କରିଥିଲେ । ବ୍ରଜବାବୁଙ୍କର କିନ୍ତୁ ମନ ନଥିଲା ବାଚସ୍ପତି

ଦାୟିତ୍ୱରେ ରହିବା ପାଇଁ । ସେ ନିଶ୍ଚିତ ହୋଇଥିଲେ ଯେ ପୂର୍ବ ମନ୍ତ୍ରିମଣ୍ଡଳରେ ସେ ଯେପରି ଗୁରୁତ୍ୱପୂର୍ଣ୍ଣ ଜଳସଂପଦ ଓ ରେଭିନ୍ୟୁ ବିଭାଗରେ ମନ୍ତ୍ରୀ ଥାଇ, ରାଜ୍ୟ କଂଗ୍ରେସ ସଭାପତି ଭାବରେ କ୍ଷମତାର କେନ୍ଦ୍ରବିନ୍ଦୁ ହୋଇଥିଲେ, ନନ୍ଦିନୀ ଦେବୀ ମୁଖ୍ୟମନ୍ତ୍ରୀ ହେଲେ ସୁଦ୍ଧା ଓ ପ୍ରଦେଶ କଂଗ୍ରେସ କମିଟିର ସଭାପତି ଭାବେ ନିର୍ବାଚନ ଦାୟିତ୍ୱରେ କଂଗ୍ରେସକୁ କ୍ଷମତାରେ ପୁନର୍ବାର ଅଧିଷ୍ଠିତ କରାଇଲେ ମଧ୍ୟ ତାଙ୍କୁ ମନ୍ତ୍ରିମଣ୍ଡଳରେ ସଭ୍ୟ ଭାବେ ଏକ ଗୁରୁତ୍ୱପୂର୍ଣ୍ଣ ବିଭାଗ ଦେବେ । ମନ୍ତ୍ରିମଣ୍ଡଳ ସଭ୍ୟରେ ନ ରହି ବ୍ରଜବାବୁ ଶାନ୍ତ ହୋଇ ରହିବେ ନାହିଁ ଏବଂ କ୍ଷୁବ୍ଧ ହେବେ ବୋଲି ନନ୍ଦିନୀ ଦେବୀ ଆଗରୁ ଧରି ନେଇଥିଲେ । ସେଥିପାଇଁ ମତେ ହଠାତ ମନ୍ତ୍ରୀ କଲେ ତାଙ୍କର ବିରୋଧ ଭାବ ସଂଗେ ସଂଗେ ହୋଇପାରେ ଏହି ଆଶଙ୍କାରେ ମତେ ସେତେବେଳେ ଖାଲି ଥିବା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର କୁଳାଧିପତି ନିଯୁକ୍ତ କରି ୬ ନମ୍ବର ଭୁବନେଶ୍ୱର କ୍ଲବ ନିକଟସ୍ଥ ଏକ ସରକାରୀ ଘର ଦେଇ ବିଶ୍ୱବିଦ୍ୟାଳୟ ତରଫରୁ ମୋର ଦାୟିତ୍ୱ ତୁଲାଇବାରେ ସମସ୍ତ ବ୍ୟବସ୍ଥା କରି ଦେଇଥାନ୍ତି । ସେତେବେଳେ ଉପକୁଳପତି ଭାବେ ବିଶିଷ୍ଟ ବୈଜ୍ଞାନିକ ପୁଷା କୃଷି ଗବେଷଣା କେନ୍ଦ୍ରର ଡାଇରେକ୍ଟର ଦାୟିତ୍ୱରେ ଥିବା ଡକ୍ଟର କିଶନ୍ କାନୁନ୍‌ଗୋ ଦାୟିତ୍ୱ ତୁଲାଉଥିଲେ ।

ମୋର ଯାହା ମନେ ପଡୁଛି ମନ୍ତ୍ରିମଣ୍ଡଳ ଗଠନର ୪/୫ ମାସ ପରେ ମୁଁ ନନ୍ଦିନୀ ଦେବୀଙ୍କ ମନ୍ତ୍ରିମଣ୍ଡଳରେ ଖାଦ୍ୟ, ଖାଉଟି ସୁରକ୍ଷା, ପର୍ଯ୍ୟଟନ ଓ ସଂସ୍କୃତି ଏପରି ୩ଟି ବିଭାଗର କ୍ୟାବିନେଟ ମନ୍ତ୍ରୀ ଭାବେ ପ୍ରଥମେ ଯୋଗ ଦେଲି । ସେତେବେଳକୁ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ କେନ୍ଦ୍ରରେ ରାଜ୍ୟସଭା ସଦସ୍ୟ ଥାଇ ରାଷ୍ଟ୍ର ଉପ ମନ୍ତ୍ରୀ ଭାବେ ସୂଚନା ଓ ପ୍ରସାରଣ ଦାୟିତ୍ୱରେ ଥିଲେ ଶ୍ରୀମତି ଗାନ୍ଧୀଙ୍କ ମନ୍ତ୍ରିମଣ୍ଡଳରେ । ଶ୍ରୀମତି ଶତପଥୀ ସେହି ସମୟରେ ଅତ୍ୟନ୍ତ ପ୍ରତିପତ୍ତିଶାଳୀ ହୋଇ ଉଠିଥିଲେ ମୁଖ୍ୟମନ୍ତ୍ରୀ ଭାବରେ ଓ ପ୍ରଧାନମନ୍ତ୍ରୀ ଇନ୍ଦିରାଜୀଙ୍କ ଅତ୍ୟନ୍ତ ବିଶ୍ୱସ୍ତ ଭାବେ । ରାଜ୍ୟର ରାଜନୀତିରେ ଇତିହାସର ପୁନରାବୃତ୍ତି ଘଟିଥାଏ । ବିଜୁ ପଟ୍ଟନାୟକ ଯେପରି ପଣ୍ଡିତ ନେହେରୁଙ୍କର ଅତ୍ୟନ୍ତ ବିଶ୍ୱସ୍ତ ଭାବେ ଭାରତର ଜଣେ ପ୍ରତିପତ୍ତିଶାଳୀ ରାଜନୀତିଜ୍ଞ ଭାବେ, ଓଡିଶାର ମୁଖ୍ୟମନ୍ତ୍ରୀ ଭାବେ ଡଃ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀଙ୍କ ପରି ନେତାମାନଙ୍କୁ ପଛ ବେଞ୍ଚକୁ ଠେଲି ଦେଇ ପାରାଦ୍ୱୀପ ବନ୍ଦର ଓ ଏକ୍ସପ୍ରେସ୍ ରାଜପଥ, ରାଉରକେଲାରେ ଆଞ୍ଚଳିକ ଇଂଜିନିୟରିଂ କଲେଜ, ରାଉରକେଲାରେ ଇସ୍ପାତ କାରଖାନା ଓ ପାରାଦ୍ୱୀପ ବନ୍ଦରଠାରେ ଏକ ଶିଳ୍ପ କେନ୍ଦ୍ର ପ୍ରତିଷ୍ଠା କରିବାର ସାହସିକ ପଦକ୍ଷେପମାନ ନେଇ ସମଗ୍ର ଦେଶରେ ଜଣେ ସୁନାମଧନ୍ୟ ନେତା ଭାବେ ପ୍ରତିଷ୍ଠା ଲାଭ କରିପାରିଥିଲେ, ଠିକ୍ ୧୦ ବର୍ଷ ଭିତରେ ଇତିହାସ ଓଲଟପାଲଟ ହୋଇ ବିଜୁବାବୁ ୧୯୭୪ ବେଳକୁ ବିରୋଧି ଦଳର ଉତ୍କଳ କଂଗ୍ରେସ ଦଳର ନେତା

ଏବଂ ପୂର୍ବରୁ ନିର୍ବାଚନରେ ସର୍ବତ୍ର ପ୍ରତିଦ୍ୱନ୍ଦ୍ୱିତା କରି ଶୋଚନୀୟ ପରାଜୟ ଓ ହିନିମାନିଆ ଅବସ୍ଥାରେ କ୍ଷମତାହୀନ ହୋଇ ସମୟ କଟାଉ ଥିବାବେଳେ ନନ୍ଦିନୀ ଦେବୀ ଶ୍ରୀମତି ଇନ୍ଦିରା ଗାନ୍ଧୀଙ୍କ ଅତି ନିକଟ ଓ ବିଶ୍ୱସ୍ତ ଭାବେ ଓଡିଶାର ଦ୍ୱିତୀୟ ବାର ମୁଖ୍ୟମନ୍ତ୍ରୀ ଭାବେ ଭାରତ ପୂର୍ବ ଦିଗର ଉଦୀତ ସୂର୍ଯ୍ୟର ଆଖ୍ୟା ପାଇ ନିଜକୁ ଅତ୍ୟନ୍ତ କ୍ଷମତାଶାଳୀ ନେତ୍ରୀ ଭାବେ ପ୍ରତିଷ୍ଠିତ କରାଇ ପାରିଥିଲେ ।

ଶ୍ରୀମତୀ ଗାନ୍ଧୀ ଶାସନରେ ପ୍ରଶାସନିକ ଦୃଢତା ଆଣି କ୍ଷମତାର ଶୀର୍ଷ ସ୍ଥାନରେ ରହି ପ୍ରଶାସନିକ ପରମ୍ପରାର ବିରୋଧ କରି ନିଜସ୍ୱ ଏକଛତ୍ରବାଦ ନେତୃତ୍ୱକୁ ସ୍ଥାୟୀ କରିବାରେ ଉଦ୍ୟମ କରୁଥିଲେ ବୋଲି ତାଙ୍କ ଡିକ୍ଟେଟରଶିପ୍ (ଏକଛତ୍ରବାଦ) ବିରୁଦ୍ଧରେ ଦେଶବ୍ୟାପୀ ଏକ ଆନ୍ଦୋଳନର ସୂତ୍ରପାତ ହେଉଥାଏ ଏବଂ ଦେଶର ସର୍ବସମ୍ମାନିତ ସମାଜବାଦୀ ନେତା ଜୟ ପ୍ରକାଶ ନାରାୟଣଜୀ ସେଇ ଆନ୍ଦୋଳନର ନେତୃତ୍ୱ ନେଉଥାଆନ୍ତି । ଶ୍ରୀମତି ଗାନ୍ଧୀ ତାଙ୍କର ୨୦ ଦଫା ଅର୍ଥନୈତିକ କାର୍ଯ୍ୟସୂଚୀକୁ କାର୍ଯ୍ୟକାରୀ କରିବା ପାଇଁ ଦେଶବ୍ୟାପୀ ଯେଉଁ ଉଦ୍ୟମ କରୁଥିଲେ ନିଜର କ୍ଷମତା ବଳୟକୁ ଅଧିକ ଶକ୍ତିଶାଳୀ କରିବା ପାଇଁ, ତା ବିରୁଦ୍ଧରେ ଜୟ ପ୍ରକାଶ ନାରାୟଣ, ମୋରାରଜୀ ଭାଇ ଓ ତାଙ୍କ ସିଣ୍ଡିକେଟ ଗୋଷ୍ଠୀ ଉତ୍ତର ପ୍ରଦେଶର ମୂଲାୟମ ସିଂ, ବିହାରର ଲାଲୁ ଯାଦବ, ସୋସାଲିଷ୍ଟ ପାର୍ଟି, କମ୍ୟୁନିଷ୍ଟ ଦଳର ଉଭୟ ଗୋଷ୍ଠୀ ସମସ୍ତେ ଏକତ୍ରିତ ହୋଇ ଏକ ବିରାଟ ଇନ୍ଦିରା ବିରୋଧି ଆନ୍ଦୋଳନର ସୂତ୍ରପାତ କଲେ । ଏହି ଆନ୍ଦୋଳନକୁ ଦବାଇବା ପାଇଁ ଶ୍ରୀମତି ଗାନ୍ଧୀ ସାରା ଭାରତରେ ଯୁବ କଂଗ୍ରେସ ଗୋଷ୍ଠୀକୁ କଂଗ୍ରେସ ସଂଗଠନର ଏକ ସମାନ୍ତରାଳ ଗୋଷ୍ଠୀ ଭାବେ ସୃଷ୍ଟି କରି ତାଙ୍କର କନିଷ୍ଠପୁତ୍ର ସଂଜୟ ଗାନ୍ଧୀଙ୍କ ଉପରେ ଯୁବ କଂଗ୍ରେସର ସଂପୂର୍ଣ୍ଣ ଦାୟିତ୍ୱ ଦେଇ ସଂଜୟ ଗାନ୍ଧୀଙ୍କ ୫ ଦଫା କାର୍ଯ୍ୟକ୍ରମକୁ ନିଜର ୨୦ ଦଫା କାର୍ଯ୍ୟକ୍ରମରେ ସାମିଲ କରି ଏକ ୨୫ ଦଫା କାର୍ଯ୍ୟକ୍ରମକୁ ଜାତୀୟ ପ୍ରୋଗ୍ରାମରେ ପରିଣତ କଲେ । ସଂଜୟ ଗାନ୍ଧୀ ତାଙ୍କର ପ୍ରଧାନ ପରାମର୍ଶଦାତା ଭାବେ ସର୍ବ ଭାରତ କ୍ଷେତ୍ରରେ ଯୁବ କଂଗ୍ରେସକୁ ଶକ୍ତିଶାଳୀ କରିବାରେ ଲାଗିଲେ । ଓଡିଶାର ଅସନ୍ତୁଷ୍ଟ କଂଗ୍ରେସ ଗୋଷ୍ଠୀ, କେନ୍ଦ୍ର ଉପମନ୍ତ୍ରୀ ଜାନକୀ ବାବୁଙ୍କ ଜରିଆରେ ସଞ୍ଜୟଙ୍କ ନିକଟତର ହେବାର ଚେଷ୍ଟା ସୃଷ୍ଟି କରି ଓଡିଶାରେ ନନ୍ଦିନୀ ଦେବୀଙ୍କୁ କ୍ଷମତାଚ୍ୟୁତ କରିବା ପାଇଁ ଏକ ଗଭୀର ଷଡଯନ୍ତ୍ରରେ ଲିପ୍ତ ରହିଲେ । ନନ୍ଦିନୀ ଦେବୀଙ୍କର ସଂକଳ୍ପ, ନିଷ୍ଠା ଓ ପ୍ରଶାସନିକ ଦୃଢତା ଏବଂ ପ୍ରଭାବଶାଳୀ ନେତୃତ୍ୱ କଂଗ୍ରେସ ସଂଗଠନକୁ ଅତି ଶକ୍ତିଶାଳୀ କରିବାରେ ସହାୟକ ହୋଇଥିଲା । ଡଃ ହରେକୃଷ୍ଣ ମହତାବ କ୍ଷମତାରେ ନଥିଲେ । ବିଜୁ ପଟ୍ଟନାୟକ ନିରସ୍ତ । ବ୍ରଜବାବୁ ପ୍ରଭୃତି ସାହସ କରି ନନ୍ଦିନୀ ଦେବୀଙ୍କ ବିରୋଧରେ କୌଣସି ପ୍ରତିବାଦ ଜଣାଇବା ଅବସ୍ଥାରେ ନଥାନ୍ତି । ସେମାନଙ୍କର ଏପରି ଦୟନୀୟ

ଅବସ୍ଥାରେ ସବୁଦିନ ପାଇଁ ରହିବା ଅସହ୍ୟ ହୋଇପଡୁଥିଲେ ମଧ୍ୟ ଶ୍ରୀମତି ଗାନ୍ଧୀ କଂଗ୍ରେସ ସଭାପତି ଭାବେ ସଂଗଠନର ସର୍ବଶ୍ରେଷ୍ଠ (ହାଇକମାଣ୍ଡ) ବ୍ୟକ୍ତିଭାବେ ଥିବା ହେତୁ ରାଜନୀତିରେ ନନ୍ଦିନୀ ଦେବୀଙ୍କ ବିରୁଦ୍ଧରେ ଏକ ସଂଗଠିତ ଶକ୍ତି ସୃଷ୍ଟି କରିବା ସମ୍ଭବ ହେଉନଥାଏ । ସବୁ ସଂଧ୍ୟାରେ ବୃଜବାବୁଙ୍କ ସରକାରୀ ନିବାସରେ ମୁଷ୍ଟିମେୟ କଂଗ୍ରେସ ଲୋକଙ୍କର ବୈଠକ ବସେ କେବଳ ଏକ ବିରୋଧି ଗୋଷ୍ଠୀ ସୃଷ୍ଟି କରିବା ପାଇଁ । ଏହି ଗୋଷ୍ଠୀରେ ବିନାୟକ ବାବୁ ଥାଆନ୍ତି । ସେମାନଙ୍କର ଏକମାତ୍ର ଲକ୍ଷ୍ୟ ଥାଏ ନନ୍ଦିନୀ ଦେବୀଙ୍କୁ ଦୁର୍ବଳ କରି କ୍ଷମତାଚ୍ୟୁତ କରିବାକୁ, ହେଲେ ପଶ୍ଚିମାକାଶରେ ଭାରତ ରାଜଧାନୀରେ ଆଉଜଣେ ଦୂରଦୃଷ୍ଟିସଂପନ୍ନ କ୍ଷମତା ରାଜନୀତିରେ କ୍ରମଶଃ ପ୍ରତିଷ୍ଠିତ ହେଉଥିବା ଜାତୀୟ ସ୍ତରର ନେତା ଭାବେ ପ୍ରତିପତ୍ତି ଜମାଉଥିବା ବ୍ୟକ୍ତି ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ଆପଣାର କରି ଦରକାର ପଡିଲେ ଓଡିଶାରେ ଏକ ଅସନ୍ତୁଷ୍ଟ ଗୋଷ୍ଠୀର ନେତୃତ୍ୱ ନେଇ କ୍ରମଶଃ ନନ୍ଦିନୀ ଦେବୀଙ୍କୁ କ୍ଷମତାର ବ୍ୟୁହରୁ ହଟାଇବା ପାଇଁ ଉଦ୍ୟମ ଆରମ୍ଭ ହେଉଥିବାର ସୂଚନା ମିଳୁଥାଏ । ନନ୍ଦିନୀ ଦେବୀ ଅତ୍ୟନ୍ତ ଚତୁର ଓ ଦୃଢତାର ସହିତ ବାଚସ୍ପତିଙ୍କ ବାସଗୃହରେ ଘଟୁଥିବା ଚୁପଚାପ ମନ୍ତ୍ରଣା ସଂପର୍କରେ ଗୁଇନ୍ଦା ଲଗାଇ ଟିକିନିଖି ଖବର ରଖୁଥାଆନ୍ତି । ବୃଜ ବାବୁଙ୍କ ସରକାରୀ ଭବନରେ ହେଉଥିବା ଉଦ୍ୟମକୁ ପଣ୍ଡ କରିବା ପାଇଁ ତାଙ୍କୁ କ୍ଷମତା ବଳୟରୁ ଦୂର କରିବା ପାଇଁ ସେ ମତେ ବହୁତ ବିଶ୍ୱାସ କରୁଥିଲେ ଏବଂ ସବୁ ଖବର ରଖୁଥିଲେ ।

ଓଡିଶାରେ ଶ୍ରୀମତି ନନ୍ଦିନୀ ଥିଲେ ଇନ୍ଦିରାଜୀଙ୍କ ଦକ୍ଷିଣ ହସ୍ତ ସଦୃଶ । ନନ୍ଦିନୀ ଦେବୀ ଅତ୍ୟନ୍ତ ଶକ୍ତିଶାଳୀ ହୋଇ ସମସ୍ତ ବିରୋଧର ମୁକାବିଲା ପାଇଁ ଓ ଇନ୍ଦିରାଜୀଙ୍କ ସପକ୍ଷରେ ଜନମତ ସୃଷ୍ଟି କରି ନିଜକୁ ଓଡିଶାର ସବୁଠାରୁ ଶକ୍ତିଶାଳୀ ଏପରିକି ବିଜୁ ପଟ୍ଟନାୟକଙ୍କଠାରୁ ଅଧିକ ଶକ୍ତିଶାଳୀ ଭାବରେ ନିଜକୁ ପ୍ରତିପାଦିତ କରି ପ୍ରଶାସନକୁ ନିଜ ଅକ୍ତିଆରରେ ରଖିଥିଲେ । ସେଥିପାଇଁ ତାଙ୍କ ବିରୁଦ୍ଧରେ କିଛି କଂଗ୍ରେସ ନେତାମାନେ ଅସହିଷ୍ଣୁ ହୋଇ ତାଙ୍କର ଶକ୍ତି ହ୍ରାସ କରିବା ପାଇଁ ସଂଗଠିତ ହେଲେ । ସେମାନଙ୍କ ମଧ୍ୟରେ କର୍ଣ୍ଣଧାର ଥିଲେ ଜାନକୀ ବଲ୍ଲଭ ପଟ୍ଟନାୟକ । କିନ୍ତୁ ଓଡିଶାରେ ଇନ୍ଦିରାଜୀଙ୍କର ନନ୍ଦିନୀଙ୍କ ଉପରେ ଅତ୍ୟନ୍ତ ବିଶ୍ୱାସ ଥିବା ଦୃଷ୍ଟିରୁ ଜାନକୀ ବାବୁ ଓ ବୃଜ ବାବୁ ପ୍ରଭୃତି ବିଶେଷ କିଛି ପ୍ରକାଶ୍ୟ ଉଦ୍ୟମ କରିବା ପାଇଁ ସାହସ କରିପାରୁନଥିଲେ । ମାତ୍ର ସଂଜୟ ଗାନ୍ଧୀ ଅତ୍ୟନ୍ତ କ୍ଷମତାଶାଳୀ ହେବା ପରେ ଏବଂ ଦିଲ୍ଲୀରେ ବିରୋଧି ଶକ୍ତିଙ୍କ ସହିତ ରାସ୍ତା ଉପରେ ତାଙ୍କର ସମ୍ମୁଖ ସଂଘର୍ଷ ମଧ୍ୟ ହୋଇ ତାଙ୍କୁ ଗିରଫ କରାଯାଇ ଛାଡି ଦିଆଯିବା ଫଳରେ କ୍ରମାଗତ ଯୁବ କଂଗ୍ରେସ ହିଁ କଂଗ୍ରେସ ସଂଗଠନଠାରୁ ଅଧିକ ଶକ୍ତିଶାଳୀ ହୋଇ ଇନ୍ଦିରା ଗାନ୍ଧୀଙ୍କ ରକ୍ଷାକବଚ ସାଜିଲେ । ଏହି

ମୌକାର ସୁଯୋଗ ନେଇ ଓଡିଶାରେ ଯୁବ କଂଗ୍ରେସକୁ ଅଧିକ ଶକ୍ତିଶାଳୀ କରିବା ପାଇଁ ଜାନକୀ ବାବୁ ତାଙ୍କର ନନ୍ଦିନୀ ବିରୋଧି ସମର୍ଥକମାନଙ୍କୁ ଏକାଠି କରି ସଂଜୟ ଗାନ୍ଧୀଙ୍କ ହାତମୁଠା ଟାଣ କରିବା ପାଇଁ ପ୍ରାଣମୂର୍ଚ୍ଛା ଉଦ୍ୟମ କଲେ ଓ ସଂଜୟ ଗାନ୍ଧୀଙ୍କ ଜରିଆରେ ଇନ୍ଦିରାଗାନ୍ଧୀଙ୍କ ମନରେ ଏକ ଅସ୍ୱାଭାବିକ ଧାରଣା ସୃଷ୍ଟି କରାଗଲା ଯେ ଶ୍ରୀମତି ନନ୍ଦିନୀ ଶତପଥୀ ସଂଜୟଙ୍କ ବିରୋଧରେ ରହି ଯୁବ କଂଗ୍ରେସର ଶକ୍ତିଶାଳୀ ନେତୃତ୍ୱକୁ ଦୁର୍ବଳ କରୁଛନ୍ତି । ସେଥିରେ ଇନ୍ଦିରାଜୀ ଏପରି ଉତ୍ତ୍ୟକ୍ତ ହେଲେ ଯେ ସେ ସଂଜୟଙ୍କୁ ବିଶ୍ୱାସ କରି ନନ୍ଦିନୀ ଦେବୀଙ୍କୁ ଅବିଶ୍ୱାସ କଲେ । ଜାନକୀ ବାବୁଙ୍କର ଏହି ଉଦ୍ୟମ କ୍ରମଶଃ ନନ୍ଦିନୀ ଦେବୀଙ୍କ ବିରୋଧରେ ଏକ ବାତାବରଣ ରାଜ୍ୟରେ ସୃଷ୍ଟି କରି ଇନ୍ଦିରାଜୀଙ୍କ ଆଶୀର୍ବାଦ ଲାଭ କରିବାକୁ ଆରମ୍ଭ କଲା । ଏହାର ସୁଯୋଗ ନେଇ ଜାନକୀ ବାବୁ ସେତେବେଳକୁ ପ୍ରତିରକ୍ଷା ବିଭାଗର ରାଷ୍ଟ୍ରମନ୍ତ୍ରୀ ଭାବରେ ଉନ୍ନୀତ ହୋଇ ସଂଜୟ ଗାନ୍ଧୀଙ୍କ ପ୍ରଧାନ ସମର୍ଥକ ଓ ବିଶ୍ୱସ୍ତ ହେବାରେ ସକ୍ଷମ ହେଲେ । ସେ ପ୍ରତିରକ୍ଷା ବିମାନରେ ବାରମ୍ବାର ଓଡିଶା ଆସି ନନ୍ଦିନୀଜୀଙ୍କ ବିରୋଧରେ ଏକ ଶକ୍ତ ଯୁବ ସଂଗଠନ ଗଢିବାରେ ସକ୍ଷମ ହୋଇ ନନ୍ଦିନୀଜୀଙ୍କୁ ଦୁର୍ବଳ କରି ଶେଷରେ କ୍ଷମତାଚ୍ୟୁତ କରିବା ପାଇଁ ଏକ ବିରାଟ ଷଡଯନ୍ତ୍ରର ସୂତ୍ରପାତ କଲେ । ସଂଜୟଙ୍କ ସହିତ ତତ୍କାଳୀନ ସ୍ୱରାଷ୍ଟ୍ର ରାଜ୍ୟମନ୍ତ୍ରୀ ଶ୍ରୀ ବୁଟା ସିଂହ ସଂଜୟ ଗାନ୍ଧୀଙ୍କ ପ୍ରଧାନ ପୃଷ୍ଠପୋଷକ ଭାବେ ଓଡିଶାରେ ନନ୍ଦିନୀ ହଟାଓ ଆନ୍ଦୋଳନକୁ ପୃଷ୍ଠପୋଷକତା କଲେ । ସେତେବେଳେ ସମଗ୍ର ଦେଶରେ ଇନ୍ଦିରାଜୀ ଓ ତାଙ୍କର କେତେକ ଦୃଢ ସମର୍ଥକଙ୍କ ପରାମର୍ଶ କ୍ରମେ ଜରୁରୀ ପରିସ୍ଥିତି ଘୋଷଣା କରି ସମସ୍ତ ବିରୋଧକୁ ନିଷ୍ଠୁର ଭାବେ ଦମନ କରିବା ପାଇଁ ଖବର କାଗଜ ଓ ପ୍ରଚାର ମାଧ୍ୟମକୁ ଜରୁରୀକାଳୀନ ପରିସ୍ଥିତିର ଯଥାର୍ଥତା ସଂପର୍କରେ ଲଗାଇ ଦେଲେ ଫଳରେ ସମସ୍ତ ମିଡିଆ ଇନ୍ଦିରାଜୀଙ୍କ ବିରୋଧ କଲେ । ଶହ ଶହ ବିରୋଧି ଦଳ ନେତା ଗିରଫ ହେଲେ । ଏନ.ଏସ.ଏ. (ବିନା ବିଚାରରେ ବନ୍ଦୀ) ସଂସ୍ଥାକୁ ଜାତୀୟ ସୁରକ୍ଷା ପାଇଁ ନୁହେଁ ଇନ୍ଦିରା ସୁରକ୍ଷା ପାଇଁ ବ୍ୟବହାର କରାଯାଉଛି ବୋଲି ଅଭିଯୋଗ କରି ସମଗ୍ର ଦେଶରେ ଏକ ବିରାଟ ଜାତୀୟ ଆନ୍ଦୋଳନ ରୂପରେଖ ନେଲା । ୧୯୪୨ ମସିହା ଭାରତ ଛାଡ ଆନ୍ଦୋଳନର ସଫଳତା ସହିତ ଏହାର ତୁଳନା କରାଯାଇପାରେ । ଜୟପ୍ରକାଶଜୀଙ୍କୁ ବନ୍ଦୀ କରାଗଲେ ମଧ୍ୟ ଲକ୍ଷ ଲକ୍ଷ ଲୋକ ଜୟପ୍ରକାଶଙ୍କ ମୁକ୍ତି ସଂଗ୍ରାମରେ ଯୋଗ ଦେଇ ଭାରତ ବର୍ଷରେ ଏକ ବିରାଟ ଗୃହଯୁଦ୍ଧର ଭୟାବହତା ସୃଷ୍ଟି କଲେ । ଓଡିଶାରେ ତାହା ନନ୍ଦିନୀ ହଟାଓ ଆନ୍ଦୋଳନର ରୂପରେଖ ନେଲା । ସମସ୍ତଙ୍କର ଧାରଣା ସୃଷ୍ଟି ହେବାରେ ଲାଗିଲା ସଂଜୟ ଗାନ୍ଧି ଚାହୁଁନାହାନ୍ତି ନନ୍ଦିନୀ ଦେବୀ କ୍ଷମତାରେ ରୁହନ୍ତୁ ଓ ନନ୍ଦିନୀ ଦେବୀ ସଂଜୟ ବିରୋଧି ଭାବେ କାର୍ଯ୍ୟ କରି

ଇନ୍ଦିରାଜୀଙ୍କ ବିରୁଦ୍ଧରେ ସମ୍ମୁଖ ସଂଗ୍ରାମ ପାଇଁ ଉଦ୍ୟମ କରୁଛନ୍ତି । ରାଜ୍ୟ ମନ୍ତ୍ରିମଣ୍ଡଳର ସଭ୍ୟମାନେ ମଧ୍ୟ ଏଥିରେ ଆତଙ୍କିତ ହୋଇ ବାରମ୍ବାର ଦିଲ୍ଲୀ ଯାଇ ଇନ୍ଦିରାଜୀଙ୍କୁ ସାକ୍ଷାତ କରି ଯେତେ ବୁଝାଇଲେ ମଧ୍ୟ ଇନ୍ଦିରାଜୀ ସଂଜୟଙ୍କଠାରୁ ଇଙ୍ଗିତ ପାଇ ନନ୍ଦିନୀ ଦେବୀଙ୍କ କ୍ରମଶଃ ବିଶ୍ୱାସ ହରାଉଥିବା କଥା ଆମେ ଉପଲବ୍ଧି କରୁଥିଲୁ । ପରେ ଖବର ପ୍ରଚାର ହେଲା ଯେ ସଂଜୟଜୀ ଓଡିଶା ଆସିବେ ନାହିଁ ଯେତେ ଦିନ ପର୍ଯ୍ୟନ୍ତ ନନ୍ଦିନୀ ଦେବୀ ମୁଖ୍ୟମନ୍ତ୍ରୀ ଦାୟିତ୍ୱରେ ଅଛନ୍ତି । ମୋ ସହିତ ଅନ୍ୟ କେତେକ କ୍ୟାବିନେଟ ମନ୍ତ୍ରୀ ନନ୍ଦିନୀ ଦେବୀଙ୍କୁ ବୁଝାଇ ଅନୁରୋଧ କଲୁ ଇନ୍ଦିରାଜୀଙ୍କ ସହିତ ସାକ୍ଷାତ କରି ଏହି କ୍ରମବର୍ଦ୍ଧମାନ ଅବିଶ୍ୱାସର ବାତାବରଣକୁ ମୂଳପୋଛ କରିବା ପାଇଁ । ନନ୍ଦିନୀ ଦେବୀ ଶେଷ ବେଳକୁ ଆମ ଅନୁରୋଧ ରକ୍ଷା କରି ଶ୍ରୀମତି ଗାନ୍ଧୀଙ୍କ ସହିତ ଦୀର୍ଘ ସମୟ ସାକ୍ଷାତ ଆଲୋଚନା ପରେ ଆଶ୍ୱସ୍ତ ହୋଇଛନ୍ତି ବୋଲି ଆମକୁ ଧାରଣା ଦେଲେ । କିନ୍ତୁ କଂଗ୍ରେସ ସଭାପତି ଦେବକାନ୍ତ ବରୁଆ ସେତେବେଳକୁ 'ଇନ୍ଦିରା ହେଉଛନ୍ତି ଭାରତ ବର୍ଷ ଓ କଂଗ୍ରେସ ଦଳ ହେଉଛି ଇନ୍ଦିରାଜୀଙ୍କ ଦଳ' (ଇନ୍ଦିରା ଇଜ୍ ଇଣ୍ଡିଆ, ଇନ୍ଦିରା ଇଜ୍ କଂଗ୍ରେସ) ବୋଲି କହି ଚାଲିଥିଲେ । ସେ ମଧ୍ୟ ନନ୍ଦିନୀଜୀଙ୍କୁ ବହୁତ ପ୍ରବର୍ତ୍ତାଇଲେ ସଂଜୟଙ୍କୁ ସାକ୍ଷାତ କରି ତାଙ୍କ ସହିତ ସମଝୌତା କରିବା ପାଇଁ, କିନ୍ତୁ ନନ୍ଦିନୀ ଦେବୀ ସେଥିରେ ଏକମତ ନହୋଇ ଭୁବନେଶ୍ୱର ଫେରି ଆସିଲା ପରେ ମୁଁ ତାଙ୍କୁ ବହୁତ ପ୍ରବର୍ତ୍ତାଇଲି ଇସ୍ତଫା ଦେଇ କ୍ଷମତାରୁ ଅପସରି ଯିବା ଅପେକ୍ଷା ସଂଜୟଙ୍କ ସହିତ ସମଝୌତା କରି ଏହି ସଂକଟରୁ ମୁକ୍ତ ହେବା ଉଚିତ । ଏ ମଧ୍ୟରେ ବସନ୍ତ ବିଶ୍ୱାଳ ଜାନକୀ ବାବୁଙ୍କ ସପକ୍ଷରେ ହାତ ମିଳାଇ ଏହି ସୁଯୋଗରେ ସଂଜୟଙ୍କ ଆଶୀର୍ବାଦ ପାଇଁ ରାଜ୍ୟରେ ଏକ ଶକ୍ତିଶାଳୀ ଜାନକୀବାବୁଙ୍କ ସମର୍ଥକ ଭାବେ କ୍ଷମତା ବଳୟକୁ ଆସିବା ପାଇଁ ବହୁ ଅର୍ଥ ଓ ଲୋକ ବଳ ମଧ୍ୟ ସଂଗ୍ରହ କରୁଥାଆନ୍ତି । ବସନ୍ତ ବାବୁ ମତେ ବାରମ୍ବାର ଅନୁରୋଧ କଲେ ନନ୍ଦିନୀ ଦେବୀ କ୍ଷମତାଚ୍ୟୁତ ହେବା ନିଶ୍ଚିତ ଓ ମୁଁ ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଇ ଜାନକୀ ବାବୁଙ୍କ ସହିତ ଯୋଗ ଦେଲେ ନନ୍ଦିନୀ ଦେବୀଙ୍କୁ ବହିଷ୍କାର କରି ଯେଉଁ ବିକଳ୍ପ ମନ୍ତ୍ରିମଣ୍ଡଳ ହେବ ସେଥିରେ ଜଣେ ପ୍ରଭାବଶାଳୀ ମନ୍ତ୍ରୀ ହେବାର ସୁଯୋଗ ପାଇବି । କିନ୍ତୁ ମୋର ବିବେକ ବାଧା ଦେଲା । ନନ୍ଦିନୀ ଦେବୀ ଯେ କି ମତେ ମନ୍ତ୍ରିମଣ୍ଡଳରେ ସହଯୋଗୀ ରଖି ଅତ୍ୟନ୍ତ ବିଶ୍ୱାସ କରୁଥିଲେ ତାଙ୍କର ଏ ସଂକଟ ବେଳେ ତାଙ୍କଠାରୁ ସମର୍ଥନ ପ୍ରତ୍ୟାହାର କରି ମୁଁ ମନ୍ତ୍ରୀ ହେବାର ପ୍ରଲୋଭନର ଶିକାର ହେବା ପାଇଁ ମୋର ନୈତିକ ମୂଲ୍ୟବୋଧ ମତେ ବାଧା ଦେଲା । ଯାହା ଫଳରେ ୧୯୭୬ ଡିସେମ୍ବର ୧୫ ତାରିଖ ଦିନ ଗୃହମନ୍ତ୍ରୀ ସି.ଆର.ପି. ଉଡାଜାହାଜରେ ଆସି ପହଞ୍ଚିଲା ପରେ ପ୍ରଚାର ହେଲା ଯେ ସି.ଆର.ପି. ଫୋର୍ସ ଆସି ୧୬ ତାରିଖ ଦିନ

ସମଗ୍ର ସଚିବାଳୟ ଓ ଭୁବନେଶ୍ୱର ଉଡାଜାହାଜ ପଡିଆ ପ୍ରଭୃତି ଘେରାଉ କରିବେ । ନନ୍ଦିନୀ ଦେବୀ ଇସ୍ତଫା ନ ଦେଲେ ତାଙ୍କୁ ଓ ତାଙ୍କ ମନ୍ତ୍ରିମଣ୍ଡଳର ସଦସ୍ୟମାନଙ୍କୁ ଗିରଫ କରାଯିବ ଏବଂ ବରଖାସ୍ତ କରାଯିବ । ଏହି ସମ୍ବାଦ ବିଜୁଳି ବେଗରେ ସମଗ୍ର ଓଡିଶାରେ ପ୍ରଚାରିତ ହେଲା ଏବଂ ତିନୋଟି ପ୍ଲେନ୍‌ରେ ସି.ଆର.ପି. ଫୋର୍ସ ମଧ୍ୟ ଭୁବନେଶ୍ୱରରେ ପହଞ୍ଚିଥିଲେ ଅପରାହ୍ନରେ । ସେତେବେଳକୁ ନନ୍ଦିନୀ ଦେବୀ ଢେଙ୍କାନାଳରେ ସଭା କରିବା ପାଇଁ ଯାଇଛନ୍ତି । କଂଗ୍ରେସ ସଭାପତି ନିଜେ ଓ ଉତ୍ତରପ୍ରଦେଶ ମୁଖ୍ୟମନ୍ତ୍ରୀ ତଥା ବରିଷ୍ଠ କଂଗ୍ରେସ ନେତା ଏନ.ଡି. ତିୱାରୀ ବାରମ୍ବାର ଟେଲିଫୋନ କରି ନନ୍ଦିନୀ ଦେବୀଙ୍କୁ ଇସ୍ତଫା ଦେବା ପାଇଁ ପ୍ରବର୍ତ୍ତାଇବା ଉଦ୍ୟମ କରି ବିଫଳ ହୋଇଛନ୍ତି । ସକାଳେ ଢେଙ୍କାନାଳରେ ଏ ସମ୍ବାଦ ପ୍ରଚାରିତ ହେବାପରେ ନନ୍ଦିନୀ ଦେବୀ ତାଙ୍କ କାର୍ଯ୍ୟସୂଚୀ ସାରି ଦିନ ୨ଟା ବେଳେ ଭୁବନେଶ୍ୱର ଫେରି ଆସି ମନ୍ତ୍ରିମଣ୍ଡଳର ଏକ ଜରୁରୀ ବୈଠକ ଡକାଇ ସମସ୍ତ ବିଷୟ ଆଲୋଚନା କରି ପ୍ରତ୍ୟେକ ମନ୍ତ୍ରୀଙ୍କ ମତ ନେବାରେ ଅଧିକାଂଶ ମତ ଦେଲେ ଇସ୍ତଫା ଦେବା ପାଇଁ । ନନ୍ଦିନୀ ଏଥିରେ ଟିକେ ବିରକ୍ତ ହୋଇ ସାହସର ସହିତ ଏ ସଂକଟର ମୁକାବିଲା କରିବା ପାଇଁ ହିମ୍ମତ ନେଇ ବିଶେଷ ସମର୍ଥନ ନ ପାଇବାରୁ ଠିକ୍ ସେତିକିବେଳେ କଂଗ୍ରେସ ସଭାପତିଙ୍କୁ ଫୋନ କରି ବୁଝିଲେ ଯେ ସେ ଇସ୍ତଫା ନ ଦେଲେ ତାଙ୍କୁ ସଂଗେ ସଂଗେ ବରଖାସ୍ତ କରାଯାଇ ରାଷ୍ଟ୍ରପତି ଶାସନ ହେବ ଏବଂ ତାଙ୍କୁ ମଧ୍ୟ ବିଶେଷ ବ୍ୟକ୍ତିଗତ ଅସୁବିଧାର ସମ୍ମୁଖୀନ ହେବାକୁ ପଡିପାରେ ବୋଲି ଆଶଙ୍କା ପ୍ରକାଶ କରି ତୁରନ୍ତ ଇସ୍ତଫା ଦେବା ପାଇଁ ପରାମର୍ଶ ଦେଲେ । ଏସବୁ ଶୁଣିଲା ପରେ ନନ୍ଦିନୀ ଦେବୀ ଆଉ କ୍ଷମତାରେ ଓ କଂଗ୍ରେସ ଦଳରେ ରହି ଇନ୍ଦିରା ଓ ସଂଜୟଙ୍କ ସହିତ ମୁକାବିଲା କରିବା ସମ୍ଭବପର ନୁହେଁ ବୋଲି ଅନୁଭବ କରି ଅପରାହ୍ନ ପ୍ରାୟ ୪ଟା ବେଳେ ନିଜେ ରାଜଭବନକୁ ଯାଇ ତତ୍‌କାଳୀନ ରାଜ୍ୟପାଳ (ଓଡିଶା ହାଇକୋର୍ଟର ମୁଖ୍ୟ ବିଚାରପତି ମିଃ ବରମନ୍)ଙ୍କୁ ତାଙ୍କ ମନ୍ତ୍ରିମଣ୍ଡଳର ଇସ୍ତଫା ପ୍ରଦାନ ପୂର୍ବକ ଫେରି ଆସିଥିଲେ । ସେଦିନ ସନ୍ଧ୍ୟାରେ ଦିଲ୍ଲୀ ଯାଇ ଠିକ୍ ପରଦିନ ଉତ୍ତରପ୍ରଦେଶର ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ଏଚ୍.ଏନ୍.ବହୁଗୁଣାଙ୍କ ନେତୃତ୍ୱରେ କଂଗ୍ରେସ ଫର ଡିମୋକ୍ରାସି ନାମରେ ଏକ ନବଗଠିତ ରାଷ୍ଟ୍ରୀୟ ଦଳରେ ଯୋଗ ଦେଇ ସଂପାଦକ ଭାବେ ଦାୟିତ୍ୱ ନେଇଗଲେ ଆମ୍ଭମାନଙ୍କ ସହିତ କୌଣସି ସଂପର୍କ ନରଖି । ପରେ ପରେ ଅଳ୍ପଦିନ ପାଇଁ ରାଷ୍ଟ୍ରପତି ଶାସନର ଅବସାନ ଘଟାଇ ସଂଜୟ ଗାନ୍ଧୀଙ୍କ ନିର୍ଦ୍ଦେଶ ମତେ ବିନାୟକ ଆଚାର୍ଯ୍ୟଙ୍କ ନେତୃତ୍ୱରେ ଏକ ନୂତନ ମନ୍ତ୍ରିମଣ୍ଡଳ ଗଠନ କରାଗଲା । ନନ୍ଦିନୀ ଦେବୀଙ୍କ ସହିତ ଶେଷ ପର୍ଯ୍ୟନ୍ତ ଦୃଢ଼ ସମର୍ଥକ ଭାବରେ ରହିଥିବା ମୋ ପରି ମନ୍ତ୍ରୀମାନଙ୍କୁ ସେଇ ମନ୍ତ୍ରିମଣ୍ଡଳରେ ନିଆଗଲା ନାହିଁ ।

୧୯୭୭ ଡିସେମ୍ବର ୧୬ ତାରିଖ ଦିନଠାରୁ ନନ୍ଦିନୀ ଦେବୀଙ୍କ ଦ୍ୱିତୀୟ ମନ୍ତ୍ରିମଣ୍ଡଳର ଅବସାନ ଘଟି ରାଜ୍ୟ ରାଜନୀତିରେ ଏକ ନୂତନ ଅଧ୍ୟାୟ ଆରମ୍ଭ ହେଲା । ଶ୍ରୀ ବିନାୟକ ଆଚାର୍ଯ୍ୟ ଏହାପରେ ଚାରି ମାସ ପାଇଁ ମୁଖ୍ୟମନ୍ତ୍ରୀ ରହିଲେ ।

ବନ୍ଧୁ ସ୍ୱର୍ଗତ ବିନାୟକ ଆଚାର୍ଯ୍ୟ ଜଣେ ଆଦର୍ଶ ଶିକ୍ଷକ ଭାବେ ବ୍ରହ୍ମପୁର ମ୍ୟୁନିସିପାଲ୍ ହାଇସ୍କୁଲ୍‌ର ପ୍ରଧାନଶିକ୍ଷକ ରୂପେ ବିଶେଷ ପ୍ରଶଂସା ଲାଭ କରିଥିଲେ । ତାଙ୍କୁ ଗଂଜାମରେ ବିନାୟକ ମାଷ୍ଟ୍ରେ ବୋଲି ସମସ୍ତେ ଜାଣନ୍ତି । ବିନାୟକ ବାବୁ ଜଣେ କମ୍ୟୁନିଷ୍ଟ ମତବାଦି, ଏକ ନିଷ୍ଠାପରସେବୀ ଓ ପ୍ରଗତିଶୀଳ ଚିନ୍ତାଧାରାର ଲୋକ ଥିଲେ । ବିଜୁବାବୁଙ୍କ ନେତୃତ୍ୱରେ ଓଡିଶାରେ ମହତାବଙ୍କ ମୁଖ୍ୟମନ୍ତ୍ରିତ୍ୱର ଅବସାନ ପରେ ୧୯୬୭ ନିର୍ବାଚନରେ ବିଜୁ ବାବୁ ବ୍ରହ୍ମପୁର ନିର୍ବାଚନ ମଣ୍ଡଳୀରୁ ତାଙ୍କୁ ବିଧାନସଭା ସଦସ୍ୟ ଭାବେ ନିର୍ବାଚିତ କରାଇବାରେ ପ୍ରବର୍ତ୍ତାଇ ସଫଳ ହୋଇଥିଲେ । ବିନାୟକ ବାବୁ ସେତେବେଳେ କହିଥିବାର ମୋର ସ୍ମରଣ ଅଛି – 'ବିଜୁବାବୁ ମୋର ପ୍ରଧାନଶିକ୍ଷକ ଭାବେ ଆମ ପରିବାର ଚଳାଇବାର ଏକମାତ୍ର ସମ୍ବଳ । ମୁଁ ଥରେ ନିର୍ବାଚନରେ ହାରିଯାଇଛି ଯଦି ଏଥର ପରାଜୟ ଘଟେ ମତେ ସଂପୂର୍ଣ୍ଣ ସମ୍ବଳହୀନ ହେବାକୁ ପଡିବ । ଆପଣ ମୋର ଦାୟିତ୍ୱ ନେବା ପାଇଁ ପ୍ରତିଶ୍ରୁତି ଦେଲେ ମୁଁ ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରିବି ।' ତତ୍‌କାଳୀନ ଗଂଜାମର ବିଶିଷ୍ଟ ନେତା ବୃନ୍ଦାବନ ନାୟକ ବ୍ରହ୍ମପୁର ମ୍ୟୁନିସିପାଲିଟିର ଅଧ୍ୟକ୍ଷ ଭାବେ ଓ ଗଂଜାମର ବିଜୁବାବୁଙ୍କ ଗୋଷ୍ଠୀର ପ୍ରମୁଖ ନେତା ଭାବେ ଏବଂ ତାଙ୍କ ସହିତ ଦିବାକର ପଟ୍ଟନାୟକ ଗଂଜାମ ଜିଲ୍ଲାର ଅଦ୍ୱିତୀୟ ଜନନେତା ଭାବେ ବିଜୁବାବୁଙ୍କର ଅତ୍ୟନ୍ତ ନିକଟ ଥିବା ଦୃଷ୍ଟିରୁ ସେମାନଙ୍କୁ ନିର୍ଭର କରି ବିଜୁ ବାବୁ ବିନାୟକ ବାବୁଙ୍କ ଅନୁରୋଧକୁ ରକ୍ଷା କରି ସେ ଚାହୁଁଥିବା ପ୍ରତିଶ୍ରୁତି ଦେଲେ ଓ ପରବର୍ତ୍ତୀ ଅବସ୍ଥାରେ ନନ୍ଦିନୀ ଦେବୀଙ୍କ ମନ୍ତ୍ରିମଣ୍ଡଳରେ ଶିକ୍ଷା ମନ୍ତ୍ରୀ ଦାୟିତ୍ୱ ଦେଇଥିଲେ । କିନ୍ତୁ ଯେତେବେଳେ ନନ୍ଦିନୀ ଦେବୀଙ୍କ ମନ୍ତ୍ରିମଣ୍ଡଳରେ ପରିବର୍ତ୍ତନ ଅନୁଭୂତ ହେଲା, ନନ୍ଦିନୀ ସେବୀ ବିନାୟକ ବାବୁଙ୍କୁ ସେତେବେଳର ଅର୍ଥମନ୍ତ୍ରୀ ବିଭାଗରୁ ବଞ୍ଚିତ କରି ଶିକ୍ଷା ବିଭାଗ ଦେଲେ ଏବଂ ମୋ ବିଭାଗରେ ପରିବର୍ତ୍ତନ କରି ମତେ ଖାଦ୍ୟ ଓ ଯୋଗାଣ ବିଭାଗ ସହିତ ବିନାୟକ ବାବୁଙ୍କ ଦାୟିତ୍ୱରେ ଥିବା ଜଙ୍ଗଲ, ପଶୁସଂପଦ ଓ ମତ୍ସ୍ୟ ବିଭାଗ ଦେଇ ତାଙ୍କ ମନ୍ତ୍ରିମଣ୍ଡଳରେ ପ୍ରାଧାନ୍ୟ ଦେବାପରେ ବିନାୟକ ବାବୁଙ୍କ ସମର୍ଥନ କ୍ରମଶଃ ଜାନକୀବାବୁଙ୍କ ଆଡକୁ ଢଳିଲା । ତାହା ଫଳରେ ନନ୍ଦିନୀ ଦେବୀଙ୍କ ଇସ୍ତଫା ପରେ ଯେଉଁ ମନ୍ତ୍ରିମଣ୍ଡଳ ଚାରି ମାସ ପାଇଁ ଦାୟିତ୍ୱ ନେଲା ସେଥିରେ ମୁଖ୍ୟମନ୍ତ୍ରୀ ହେବାର ସୁଯୋଗ ପାଇଲେ । କିନ୍ତୁ ୧୯୮୦ ମସିହା ନିର୍ବାଚନରେ ଶୋଚନୀୟ ଭାବେ ପରାଜିତ ହେବା ପରେ ତାଙ୍କର ରାଜନୈତିକ ଜୀବନର ପରିସମାପ୍ତି ଘଟିଲା । ଶେଷ

ଜୀବନରେ ବହୁତ ଅସୁବିଧା ଓ ଆର୍ଥିକ ଦୁରବସ୍ଥାର ସମ୍ମୁଖୀନ ହୋଇ ଶେଷନିଃଶ୍ୱାସ ତ୍ୟାଗ କଲେ । ଜାନକୀ ଓ ବସନ୍ତବାବୁଙ୍କ ଉଦ୍ୟମ ଓ ସଂଜୟ ଗାନ୍ଧୀଙ୍କ ନିର୍ଦ୍ଦେଶରେ ନନ୍ଦିନୀ ଦେବୀଙ୍କୁ ହଟାଇ ଯେଉଁ ମନ୍ତ୍ରିମଣ୍ଡଳ ଗଠିତ ହେଲା ସେଥିରେ ମୁଁ ବସନ୍ତ ବାବୁଙ୍କ ଅନୁରୋଧକୁ ଏଡି ଦେଇ ମନ୍ତ୍ରିମଣ୍ଡଳରୁ ଅପସାରିତ ହୋଇଥିଲେ ମଧ୍ୟ ପରବର୍ତ୍ତୀ ନିର୍ବାଚନରେ ବିଧାନସଭାକୁ ନିର୍ବାଚିତ ହୋଇ ମନ୍ତ୍ରିମଣ୍ଡଳରେ ଶିକ୍ଷାମନ୍ତ୍ରୀ ଭାବରେ ଦାୟିତ୍ୱ ତୁଲାଇବାବେଳେ ବିନାୟକବାବୁଙ୍କ ଦୟନୀୟ ଆର୍ଥିକ ଅବସ୍ଥା ନିଜେ ଦେଖିଛି ଓ ସାମାନ୍ୟ ସାହାଯ୍ୟ କରିବା ପାଇଁ ଚେଷ୍ଟା କରିଛି । ତାଙ୍କ ପୁଅମାନେ ବିଶେଷ କିଛିଃଆର୍ଥିକ ସହାୟତା ଦେବା ପାଇଁ ସମର୍ଥ ହେଲେ ନାହିଁ । ବସ୍ ଖଣ୍ଡିଏ ଦ୍ୱିତୀୟ ପୁତ୍ରକୁ ଋଣରେ କରାଇ ଦେଇଥିଲେ ତାହା ମଧ୍ୟ ରୁଟ୍ ପଡିଲାନି । ବସ୍‌ଟି ନିଲାମ ହେଲା । ଶେଷରେ ନିର୍ବାଚନରେ ସେ ପରାଜିତ ହୋଇ ଶେଷନିଃଶ୍ୱାସ ତ୍ୟାଗ କଲେ । କିନ୍ତୁ ଜଣେ ସାଧୁ ଓ ସଚ୍ଚୋଟ ବ୍ୟକ୍ତି ଭାବେ ରାଜନୀତି କ୍ଷେତ୍ରରେ ସେ ଅତ୍ୟନ୍ତ ଲୋକପ୍ରିୟତା ଓ ସମ୍ମାନ ଅର୍ଜନ କରିଥିଲେ ମଧ୍ୟ, ରାଜନୀତିର ବିବର୍ତ୍ତନ ତାଙ୍କୁ ଅତ୍ୟନ୍ତ ଦୟନୀୟ ଅବସ୍ଥାକୁ ଠେଲିଦେଇ ଶେଷରେ ଅକାଳ ମୃତ୍ୟୁ ଘଟାଇଲା । ରାଜନୀତିରେ ଆନୁଗତ୍ୟ ବାରମ୍ବାର ତ୍ୟାଗ କରିବାରେ ଶୋଚନୀୟ ପରିସ୍ଥିତିର ଏକ ନିଷ୍ଠୁର ଦୃଷ୍ଟାନ୍ତ ବିନାୟକବାବୁଙ୍କ ଭଳି ଜଣେ ଉଚ୍ଚକୋଟୀର ପ୍ରଗତିଶୀଳ ଚିନ୍ତାଧାରାର ପ୍ରତୀକ ଓ ସାଧୁ ସଚ୍ଚୋଟ ନେତାଙ୍କର ଏପରି ଦୟନୀୟ ଶେଷ ଜୀବନ । ମୂଲ୍ୟବୋଧହୀନ ରାଜନୀତିକ ବାତାବରଣ ମଧ୍ୟରେ ଅର୍ଥ ଓ ବାହୁବଳର ପ୍ରାଧାନ୍ୟର ଏକମାତ୍ର ଆଧିପତ୍ୟ ବେଳେ ସାଧୁ, ନିଷ୍ପାପର ଲୋକଙ୍କର ସ୍ଥାନ ଦୟନୀୟ ନିଶ୍ଚିତ ଏଥିରେ ବହୁ ଦୃଷ୍ଟାନ୍ତ ଦିଆଯାଇପାରେ । ସଦାଶିବ ତ୍ରିପାଠୀ ଅନ୍ୟ ଏକ ଦୃଷ୍ଟାନ୍ତ ଯେ କି ୧୭ ବର୍ଷ କ୍ରମାଗତ ଭାବରେ ରେଭିନ୍ୟୁ ବିଭାଗରେ ମନ୍ତ୍ରୀ ରହିବା ପରେ କିଛି ଦିନ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେଇ ୧୯୬୪-୬୬ ପ୍ରାୟ ୨ ବର୍ଷ ଥିଲେ ମଧ୍ୟ ଶେଷ ଜୀବନରେ ରାଜ୍ୟସରକାରଙ୍କ ଦୟାରେ ଡାକ୍ତରଖାନାରେ ଅର୍ଥହୀନ ଅବସ୍ଥାରେ ବହୁ ମାସ କଟାଇ ଦୟନୀୟ ଅବସ୍ଥାରେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ସେ ଦୃଶ୍ୟ ମଧ୍ୟ ମୁଁ ଦେଖିଛି ଓ ତାଙ୍କୁ ମନ୍ତ୍ରୀ ଭାବରେ ବାରମ୍ବାର ସରକାରୀ ବ୍ୟବସ୍ଥାରେ କଟକ ମେଡିକାଲରେ ସମସ୍ତ ଖର୍ଚ୍ଚ ବହନ କରି ଚିକିତ୍ସା ବ୍ୟବସ୍ଥା କରାଇବା ଦିଗରେ ମୋର କର୍ତ୍ତବ୍ୟ କରିବାରେ ହେଳା କରିନାହିଁ । ସେ ବି ଥିଲେ ଜଣେ ଅତ୍ୟନ୍ତ ସଚ୍ଚୋଟ ରାଜନୀତିଜ୍ଞ ଏବଂ ପ୍ରାୟ ୨୦ ବର୍ଷ ଧରି କ୍ଷମତା ବଳୟରେ ଜଣେ ପ୍ରବୀଣ ମନ୍ତ୍ରୀ ଓ ଶେଷରେ ମୁଖ୍ୟମନ୍ତ୍ରୀ ଭାବରେ ରାଜ୍ୟ ଶାସନର ମୁଖ୍ୟ ଥାଇ ଏପରି ଶୋଚନୀୟ ଅବସ୍ଥାରେ ସଂସାରରୁ ବିଦାୟ ନେଲେ । ତାହା ସ୍ମରଣ କଲେ ରାଜନୀତି ଜୀବନ କେତେ ଅନିଶ୍ଚିତ ତାହା ସ୍ପଷ୍ଟ ପ୍ରତୀୟମାନ ହୁଏ ।

# ଜାନକୀ ବାବୁଙ୍କ ନେତୃତ୍ୱ ଓ ପତନ

ମୁଁ ଆଗରୁ ସୂଚନା ଦେଇଛି, ଜାନକୀ ବାବୁ କିପରି ସଂଜୟ ଗାନ୍ଧୀଙ୍କ ସହିତ ଜରୁରୀ ପରିସ୍ଥିତିର ସୁଯୋଗ ନେଇ ଏବଂ ସଂଜୟ ଗାନ୍ଧୀଙ୍କ ଉପରେ ତାଙ୍କ 'ମା' ଶ୍ରୀମତି ଇନ୍ଦିରା ଗାନ୍ଧୀଙ୍କ ସଂପୂର୍ଣ୍ଣ ନିର୍ଭର କରୁଥିବାର ସୁଯୋଗକୁ ନିଜ ଭବିଷ୍ୟତ ପାଇଁ ସଂପୂର୍ଣ୍ଣ ଭାବେ ବିନିଯୋଗ କରିଥିଲେ । ପ୍ରଜାତନ୍ତ୍ରର ପୂର୍ବତନ ସଂପାଦକ ଓ ଜଣେ ବିଶିଷ୍ଟ ଦୈନିକ ସମ୍ବାଦପତ୍ରର ସଂପାଦକ ଭାବେ କଂଗ୍ରେସ ବିରୋଧରେ ବିଶେଷତଃ ବିଜୁ ପଟ୍ଟନାୟକ ଓ ନନ୍ଦିନୀ ଦେବୀଙ୍କ ମନ୍ତ୍ରିମଣ୍ଡଳରେ ଘୋର ବିରୋଧି ଭାବେ ନିଜକୁ ପ୍ରତିପାଦିତ କରିଥିବା ଜାନକୀ ବଲ୍ଲଭ ପଟ୍ଟନାୟକ ପରିସ୍ଥିତିର ସୁଯୋଗ ନେଇ ନନ୍ଦିନୀ ଦେବୀଙ୍କ ମୁଖ୍ୟମନ୍ତ୍ରିତ୍ୱ ବେଳେ କଂଗ୍ରେସ ଦଳ ତରଫରୁ ରାଜ୍ୟସଭା ସଭ୍ୟ ମନୋନୀତ ହେବା ପରେ ତାଙ୍କର ପ୍ରଖର ବୁଦ୍ଧି ପ୍ରୟୋଗ କରି କେନ୍ଦ୍ର ମନ୍ତ୍ରିମଣ୍ଡଳରେ ଜଣେ ଉପମନ୍ତ୍ରୀ ଭାବେ ଯୋଗ ଦେଇ ନିଜର ପତିଆରା ଦିଲ୍ଲୀରେ ବଢାଉଥିବା ବେଳେ ଜରୁରୀକାଳୀନ ପରିସ୍ଥିତି ଓ ସଂଜୟ ଗାନ୍ଧୀଙ୍କ ଆବିର୍ଭାବ ଓ ଜାତୀୟ ଯୁବ କଂଗ୍ରେସର ସଭାପତି ଭାବେ ସଂଜୟ ଗାନ୍ଧିଙ୍କ ଯୁବ କଂଗ୍ରେସ ସହିତ ସଂପୂର୍ଣ୍ଣ ସାମିଲ ହୋଇ ନନ୍ଦିନୀ ଦେବୀଙ୍କ ଅଖଣ୍ଡ କ୍ଷମତାକୁ ଖର୍ବ କରି ନିଜେ ରାଜ୍ୟର ମୁଖ୍ୟ ହେବା ପାଇଁ ଅଭିଳାଷ ରଖି ନନ୍ଦିନୀ ଦେବୀଙ୍କ ଅପସାରଣ ଡ୍ରାମାରେ ପ୍ରମୁଖ ଭାଗ ନେଇଥିଲେ । ସେତେବେଳେ ପ୍ରଜାତନ୍ତ୍ର ସମୟରୁ ତାଙ୍କ ସହିତ ବ୍ୟକ୍ତିଗତ ସଂପର୍କ ରଖିଥିବା ଜଣେ ଯୁବକ କଣ୍ଟ୍ରାକ୍ଟର ଭାବେ ରାଜନୀତିର ମଇଦାନରେ ନୂଆ ହୋଇ ଯୋଗ ଦେଇଥିବା, ବସନ୍ତ ବିଶ୍ୱାଳ ନାମକ ଜଣେ ଉଦୀୟମାନ ବ୍ୟବସାୟୀଙ୍କୁ ରାଜନୀତିକ ଚିତ୍ରପଟରେ ସଂପୂର୍ଣ୍ଣ ଭାବରେ ସାମିଲ କରାଇଥିଲେ । ବସନ୍ତ ବାବୁ ପୁରୀ ଜିଲ୍ଲାରେ କଣ୍ଟ୍ରାକ୍ଟର ଭାବେ କାର୍ଯ୍ୟ କରୁଥିବା ସମୟରେ ମୋ ସହ ପରିଚିତ ଥିଲେ । ତାଙ୍କର ଶ୍ୱଶୁର ଜଣେ ପୂର୍ବତନ ବିଶିଷ୍ଟ ବ୍ୟବସାୟୀ ସ୍ୱର୍ଗତ ଧନଞ୍ଜୟ ଲେଙ୍କା (ଧନୁଭାଇ) ଓଡିଶା ବିଧାନସଭାରେ କଂଗ୍ରେସ ଦଳର ସଭ୍ୟ ଥିବାବେଳେ ମତେ ନିଜର ସାନ ଭାଇ ପରି ଭଲ ପାଉଥିଲେ । ସେ କଂଗ୍ରେସ ଦଳରେ ଜଣେ ଅତ୍ୟନ୍ତ ପ୍ରିୟଜନ ଭାବେ ସମସ୍ତଙ୍କର ଜଣେ ସ୍ନେହୀ ବଂଧୁ ଓ ଶୁଭେଚ୍ଛୁ ଭାବେ ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲେ । ଧନୁଭାଇ ମଧ୍ୟ ମୋ ସରକାରୀ ବାସଭବନରେ (୬ ନମ୍ବର ଇଉନିଟ୍ ଭୁବନେଶ୍ୱର କ୍ଲବ ନିକଟ) ଅନେକ ସମୟରେ ରହୁଥିଲେ । ୧୯୮୦ ନିର୍ବାଚନରେ କଟକ ଜିଲ୍ଲା

ବଡଚଣା ନିର୍ବାଚନ ମଣ୍ଡଳୀରୁ ପୁନର୍ବାର ନିର୍ବାଚିତ ନହୋଇପାରି ଓ ସ୍ୱାସ୍ଥ୍ୟ ଖରାପ ହେବାରୁ ତାଙ୍କର ଆର୍ଥିକ ଅବସ୍ଥା ସେତେବେଳେ ସ୍ୱଚ୍ଛଳ ନଥିବା ଦୃଷ୍ଟେ ମୋ ପ୍ରତି ତାଙ୍କର ବଡଭାଇର ସ୍ନେହ ଥିବା ଦୃଷ୍ଟିରୁ ସେ ମୋର କ୍ୱାର୍ଟରରେ କିଛି ମାସ ରହିଲା ପରେ ତାଙ୍କ ପୁତ୍ର ମଙ୍ଗୁଳି ବାବୁ କଳ୍ପନା କଲୋନୀରେ ଏକ ନୂତନ ଗୃହ ଖରିଦ କରିବା ପରେ ସେଇଠାରେ ଶେଷ ଜୀବନ ପର୍ଯ୍ୟନ୍ତ ରହିଥିଲେ । ଏପରି ଉତ୍ତମ ଲୋକ ରାଜନୀତିରେ ବିଶେଷ କରି ଆଜିକାଲି ରାଜନୀତିରେ ନିଜକୁ ତିଷ୍ଠାଇପାରିବା ସମ୍ଭବ ନୁହେଁ । ଧନୁଭାଇଙ୍କ ମୋ ସହିତ ବ୍ୟକ୍ତିଗତ ସଂପର୍କ ଯୋଗୁଁ ବସନ୍ତ ବାବୁ ନିଜେ କଣ୍ଟ୍ରାକ୍ଟରୀ ବ୍ୟବସାୟ କରୁଥିଲେ ମଧ୍ୟ ଜାନକୀବାବୁଙ୍କୁ ସାହାଯ୍ୟ କରି ନନ୍ଦିନୀ ଦେବୀଙ୍କୁ କ୍ଷମତାରୁ ଅପସାରଣ ଡ୍ରାମାରେ ପ୍ରମୁଖ ସହାୟକ ଭାବେ ତାଙ୍କର ଆର୍ଥିକ ସହାୟତା, ଗାଡି ପ୍ରଭୃତି ଯୋଗାଇ ରାଜନୈତିକ କାର୍ଯ୍ୟରେ ଜାନକୀବାବୁଙ୍କର ପ୍ରମୁଖ ସହାୟକ ହେଇଥିଲେ ଓ ମୋ ସହିତ ତାଙ୍କର ବ୍ୟକ୍ତିଗତ ସାମାଜିକ ସଂପର୍କ ଦୃଷ୍ଟିରୁ ମତେ ଜାନକୀବାବୁଙ୍କ ନନ୍ଦିନୀ ହଟାଓ ଉଦ୍ୟମରେ ସାମିଲ ହୋଇ ଇସ୍ତଫା ଦେଇ ବିକଳ୍ପ ମନ୍ତ୍ରିମଣ୍ଡଳରେ ସଭ୍ୟ ହୋଇ ରହିବାର ପ୍ରଲୋଭନ ଦେଖାଇଥିଲେ । କିନ୍ତୁ ମୁଁ ବ୍ୟକ୍ତିଗତ ଭାବରେ ବସନ୍ତ ବାବୁଙ୍କୁ ତାଙ୍କ ପରାମର୍ଶ ପାଇ ବିଶେଷ ଧନ୍ୟବାଦ ଦେଇ ନନ୍ଦିନୀ ଦେବୀଙ୍କ ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଇ ଉପରେ ବର୍ଣ୍ଣିତ ସଂକଟ ବେଳେ ତାଙ୍କ ସହିତ ବିଶ୍ୱାସଘାତକତା କରିବା ସମୀଚୀନ ହେବ ନାହିଁ ବୋଲି ତାଙ୍କ ପରାମର୍ଶ ଗ୍ରହଣ କରିବା ପାଇଁ ମୋର ଅସମର୍ଥତା ଜଣାଇଥିଲି । ନଚେତ ମୋର ବିନାୟକ ମନ୍ତ୍ରିମଣ୍ଡଳରେ ଜଣେ ପ୍ରମୁଖ ମନ୍ତ୍ରୀ ଭାବରେ ରହିବାରେ ବସନ୍ତ ବାବୁ ନିଶ୍ଚିତ ଦାୟିତ୍ୱ ନେଇଥାଆନ୍ତେ ଓ ଜାନକୀ ବାବୁ ମଧ୍ୟ ପ୍ରୀତ ହୋଇଥାଆନ୍ତେ । ଏହିପରି ଭାବରେ ନନ୍ଦିନୀ ଦେବୀଙ୍କ ରାଜ୍ୟ ଶାସନରେ ପ୍ରଭୁତ୍ୱ ଶେଷ ହେଲେ ମଧ୍ୟ, ରାଜ୍ୟର ଜଣେ ବିଶିଷ୍ଟ ସମାଜସେବୀ ଭାବେ ଓ କଂଗ୍ରେସ ଦଳର ବରିଷ୍ଠ ନେତ୍ରୀ ଭାବେ ସମ୍ମାନ ଓ ଲୋକପ୍ରିୟତା ବଜାୟ ରଖିପାରିଛନ୍ତି ।

ସେ ଯାହା ହେଉ ନନ୍ଦିନୀ ଦେବୀ ସଂଜୟ ଗାନ୍ଧୀଙ୍କ ନେତୃତ୍ୱରେ ଯୁବ କଂଗ୍ରେସର ଅତ୍ୟଧିକ ନୀତିହୀନ କାର୍ଯ୍ୟରୁ କ୍ଷମତାଚ୍ୟୁତ ହୋଇ ବହୁଗୁଣାଙ୍କ ନେତୃତ୍ୱରେ ଗଣତାନ୍ତ୍ରିକ କଂଗ୍ରେସ ସଂଗଠନର ସଂପାଦକ ଭାବେ ଯୋଗ ଦେଲେ ଓ ତାଙ୍କୁ ଶେଷ ପର୍ଯ୍ୟନ୍ତ ଦୃଢ ସମର୍ଥନ କରୁଥିବା ସହଯୋଗୀମାନେ ମଧ୍ୟ ଇନ୍ଦିରା କଂଗ୍ରେସ ବିଶେଷ କରି ଯୁବ କଂଗ୍ରେସ ନେତାମାନଙ୍କର କୋପଦୃଷ୍ଟିରେ ପଡିଲେ । ମତେ ମଧ୍ୟ ସେହି ଶ୍ରେଣୀର ଲୋକ ବୋଲି କଂଗ୍ରେସ ସଂଗଠନରେ ମୋର ସ୍ଥାନ ନାହିଁ ବୋଲି ମୋର ପ୍ରତିଯୋଗୀମାନେ ପରବର୍ତ୍ତୀ ବିଧାନସଭା ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତାର ସୁଯୋଗରୁ ବଞ୍ଚିତ କରିବା ପାଇଁ ପ୍ରାଣପଣେ ଉଦ୍ୟମ କଲେ । ସେତେବେଳକୁ ବିପିନ ଦାଶ ପୁରୀ

ଜିଲ୍ଲା କଂଗ୍ରେସର ସଭାପତି ଓ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ନେତୃତ୍ୱ ଓ ଦିଗଦର୍ଶନ ଓ ସଂଜୟ ଗାନ୍ଧୀଙ୍କ ସଂପୂର୍ଣ୍ଣ ବିଶ୍ୱାସ ଓ ସମର୍ଥନ ଫଳରେ ଇନ୍ଦିରାଜୀଙ୍କ ଆର୍ଶୀବାଦ ଲାଭ ତାଙ୍କର ଓଡିଶାକୁ ଫେରି ଆସିବା ଓ ନେତୃତ୍ୱ ନେବାର ସୁଯୋଗକୁ ନିଶ୍ଚିତ କରିଥିଲା ।

ମୁଁ ଜିଲ୍ଲା କଂଗ୍ରେସ କମିଟିକୁ ଆବେଦନ କଲି ମୋର କଂଗ୍ରେସ ସଂଗଠନରେ ପ୍ରବେଶ କରି ନିର୍ବାଚନ ଲଢିବାର ଅଧିକାର ସାବ୍ୟସ୍ତ କରିବା ପାଇଁ । ସେଥିପାଇଁ ପ୍ରବଳ ବିରୋଧ ବ୍ରଜବାବୁଙ୍କ ନେତୃତ୍ୱରେ ଚାଲିଥିଲା । କିନ୍ତୁ ବିପିନ ବାବୁ, ସ୍ୱର୍ଗତ ମଧୁସୂଦନ ନନ୍ଦ ଓ ସର୍ବୋପରି ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ବିପିନ ବାବୁଙ୍କୁ ସ୍ପଷ୍ଟ ନିର୍ଦ୍ଦେଶ ଫଳରେ ପୁରୀ ଜିଲ୍ଲା କଂଗ୍ରେସ କାର୍ଯ୍ୟକାରୀ କମିଟିରେ ଦୀର୍ଘ ଆଲୋଚନା ଓ ତିକ୍ତତା ବାତାବରଣ ସତ୍ୱେ ବିପିନ ବାବୁ ଭୋଟ ପାଇଁ ଆଦେଶ ଦେଲେ । ଭୋଟରେ ମୋ ସପକ୍ଷରେ ବହୁ ଅଧିକ ଭୋଟ ହେବାରେ ମୁଁ କଂଗ୍ରେସର ବିଧିବଦ୍ଧ ସଭ୍ୟ ଭାବରେ ଜାନକୀବାବୁଙ୍କ ସହିତ ୧୯୮୦ ମସିହା ନିର୍ବାଚନରେ ପୁରୀ ଜିଲ୍ଲାରେ ସର୍ବତ୍ର ସଭାସମିତିରେ ଜିଲ୍ଲା କଂଗ୍ରେସର ଜଣେ ପ୍ରମୁଖ କର୍ମୀଭାବରେ ମୋର ଆହ୍ୱାନକୁ ଦୃଢୀଭୂତ କରିବାରେ ଆଉ କୌଣସି ପ୍ରତିବନ୍ଧକ ଅନୁଭୂତ ହେଲା ନାହିଁ । ସେତେବେଳକୁ ଜାନକୀବାବୁ କେନ୍ଦ୍ର ମନ୍ତ୍ରିମଣ୍ଡଳର ଜଣେ କ୍ୟାବିନେଟ ମନ୍ତ୍ରୀ ଓ ପ୍ରଦେଶ କଂଗ୍ରେସ କମିଟି ସଭାପତି । ନିର୍ବାଚନ ତାଙ୍କ ନେତୃତ୍ୱରେ ହେବାର ଥିଲା । ମୋର ପ୍ରାର୍ଥୀତ୍ୱ ପାଇଁ ବହୁ ବିରୋଧ ସେହି ବଂଧୁମାନେ କଲେ ଯେଉଁମାନେ ମୋର କଂଗ୍ରେସକୁ ଆସିବା ପାଇଁ ନନ୍ଦିନୀ ଦେବୀଙ୍କ ସମର୍ଥକ ଭାବେ ସଂଜୟ ବିରୋଧୀ ଆଖ୍ୟା ଦେଇ ଘୋର ବିରୋଧ କରୁଥିଲେ । ଅବଶେଷରେ ଜାନକୀ ବାବୁଙ୍କ ଉଦ୍ୟମ ଫଳରେ ମୁଁ ସତ୍ୟବାଦୀ ନିର୍ବାଚନ ମଣ୍ଡଳୀରୁ ପ୍ରତିଦ୍ୱନ୍ଦ୍ୱିତା ନକରି ବ୍ରହ୍ମଗିରି ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀ ମନୋନୀତ ହେଲି । ସତ୍ୟବାଦୀ ନିର୍ବାଚନ ମଣ୍ଡଳୀ ପାଇଁ ପୂର୍ବରୁ ୧୯୭୧ ମସିହାରେ କଂଗ୍ରେସ ପ୍ରାର୍ଥୀ ବର୍ତ୍ତମାନ ଜିଲ୍ଲା କଂଗ୍ରେସ ସଭାପତି ରବି ଦାସ ପ୍ରାର୍ଥୀ ହେଲେ । କିନ୍ତୁ ନନ୍ଦିନୀ ଦେବୀ ଜଣେ ସ୍ୱାଧୀନ ପ୍ରାର୍ଥୀ ଭାବେ ନିଜ ଢେଙ୍କାନାଳ ଜିଲ୍ଲାରୁ ଗନ୍ଦିଆ ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ ହେଲେ । ନନ୍ଦିନୀ ଦେବୀଙ୍କୁ ପରାଜିତ କରିବା ପାଇଁ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ଶ୍ରୀମତି ମାଳତୀ ଚୌଧୁରୀଙ୍କୁ ସମର୍ଥନ କରି ତାଙ୍କର ସ୍ୱାମୀ ନବକୃଷ୍ଣ ଚୌଧୁରୀ ଦୁଇଜଣ ପୂର୍ବତନ ମୁଖ୍ୟମନ୍ତ୍ରୀ ଡଃ ହରେକୃଷ୍ଣ ମହତାବ ଏବଂ ଜାନକୀ ବାବୁ ସମସ୍ତେ ଏକାଠି ହୋଇ ପ୍ରବଳ ଉଦ୍ୟମ କଲେ ମଧ୍ୟ ସ୍ୱାଧୀନ ପ୍ରାର୍ଥୀ ଭାବେ ସ୍ୱୀକାର କଲେ । ନନ୍ଦିନୀ ଦେବୀଙ୍କ ଉତ୍ତମ ଲୋକ ସଂପର୍କ ଓ ଢେଙ୍କାନାଳ ଜିଲ୍ଲାରେ ତାଙ୍କ ପ୍ରତି ବିପୁଳ ଜନ ସମର୍ଥନ ଓ ମୁଖ୍ୟମନ୍ତ୍ରୀ ଭାବେ ତାଙ୍କର

ଓଡିଶା ପ୍ରତି ଅବଦାନ ଓ ତାଙ୍କୁ ଯେପରି ଭାବେ କ୍ଷମତାରୁ ଅନ୍ତର କରାଗଲା ତାହା ଢେଙ୍କାନାଳବାସୀଙ୍କ ସ୍ୱାଭିମାନ ଉପରେ ଗଭୀର ପ୍ରତିକ୍ରିୟା ସୃଷ୍ଟି କରିଥିବା ଦୃଷ୍ଟିରୁ ଶ୍ରୀମତି ଶତପଥୀ, ଡଃ ହରେକୃଷ୍ଣ ମହତାବ, ନବବାବୁ, ମାଳତୀ ଚୌଧୁରୀ ଓ ଜାନକୀବାବୁଙ୍କ ସମ୍ମିଳିତ ଉଦ୍ୟମକୁ ମୁକାବିଲା କରି ନିର୍ବାଚିତ ହେଲେ ଏବଂ ତାଙ୍କର ସ୍ୱାମୀ ଦେବେନ୍ଦ୍ର ଶତପଥୀ ମଧ୍ୟ ଲୋକସଭାକୁ ଢେଙ୍କାନାଳ ନିର୍ବାଚନ ମଣ୍ଡଳୀରୁ ଢେଙ୍କାନାଳ ରାଜା ସାହେବ ଶ୍ରୀ କେ.ପି. ସିଂହଦେଓଙ୍କୁ ବହୁ ଭୋଟରେ ପରାଜିତ କରି ବିଜୟ ହାସଲ କରିବାରେ ସକ୍ଷମ ହୋଇଥିଲେ । ଶ୍ରୀମତି ଗାନ୍ଧୀ ପରେ ବୁଝିଲେ ନନ୍ଦିନୀ ଦେବୀଙ୍କ ପ୍ରତି ସେ ଉଚିତ ନ୍ୟାୟ ଦେଇ ନଥିଲେ ।

ସେ ଢେଙ୍କାନାଳ ଜିଲ୍ଲାର ପ୍ରାକୃତିକ ନେତ୍ରୀ (ନାଚୁରାଲ ଲିଡ୍‌ର) । ଏଠାରେ ମୁଁ କହି ରଖେ ଯେ ଶ୍ରୀମତି ଶତପଥୀଙ୍କ ସ୍ୱାସ୍ଥ୍ୟ ସଂପୂର୍ଣ୍ଣ ରୂପେ ଭାଙ୍ଗି ଯାଇଥିଲେ ମଧ୍ୟ ଓ ଦେବେନ୍ଦ୍ରବାବୁଙ୍କ ବିୟୋଗ ତାଙ୍କୁ ଅତୀବ ଶୋକାଗ୍ରସ୍ତ କରିଥିଲେ ସୁଦ୍ଧା ସେ ଢେଙ୍କାନାଳରେ ଆଜି ପର୍ଯ୍ୟନ୍ତ ଯେତେ ନିର୍ବାଚନ ହୋଇଛି ସବୁଥିରେ ବିଜୟ ଲାଭ କରିଛନ୍ତି ଏବଂ କ୍ରମାଗତ ତିନିଥର କେ.ପି. ସିଂହଦେଓଙ୍କୁ ସେ, ଦେବେନ୍ଦ୍ର ବାବୁ ଓ ପୁତ୍ର ତଥାଗତ ଲୋକସଭା ନିର୍ବାଚନରେ ପରାଜିତ କରିଛନ୍ତି ୧୯୯୦ ପର୍ଯ୍ୟନ୍ତ । କେବଳ ୧୯୯୫ ନିର୍ବାଚନରେ କେ.ପି. ସିଂହଦେଓ ୧୪ ବର୍ଷ ପରେ ଲୋକସଭାକୁ ଯିବାର ସୁଯୋଗ ପାଇଲେ ନନ୍ଦିନୀ ଦେବୀ ବିରୋଧ ନ କରିବା ଯୋଗେ । ତାଙ୍କର ବାରମ୍ବାର ନିର୍ବାଚନ ବିଜୟ ବହୁ ସିନିଅର ନେତ୍ରୀଙ୍କ ଇଚ୍ଛା ବିରୁଦ୍ଧରେ ତାଙ୍କ ମର୍ଯ୍ୟାଦା ବୃଦ୍ଧିରେ ଓ ରାଜନୈତିକ ପ୍ରତିଷ୍ଠାରେ ଏକ ଗୌରବମୟ ଅଧ୍ୟାୟ ସୃଷ୍ଟି କରିଥିଲା ସେ ପୁନର୍ବାର ଯଦିଓ କ୍ଷମତାକୁ ଫେରି ଆଉ ମୁଖ୍ୟମନ୍ତ୍ରୀ ତୃତୀୟ ଥର ପାଇଁ ହୋଇପାରିନାହାନ୍ତି । ୧୯୯୫ ପରେ ନନ୍ଦିନୀ ଦେବୀ ଯୋଜନା ବୋର୍ଡର ଅଧ୍ୟକ୍ଷ ଥାଇ ଏବେ ଜାନକୀବାବୁଙ୍କ ସହିତ ତାଙ୍କ ମତଭେଦର ଅବସାନ ଘଟିଛି । ତାଙ୍କର ସ୍ୱାସ୍ଥ୍ୟ ଭଲ ରହୁ ନାହିଁ । କିନ୍ତୁ ସ୍ମରଣ ଶକ୍ତି ଓ ଲେଖନୀ ଶକ୍ତି ବଳରେ ଶ୍ରୀମତି ନନ୍ଦିନୀ ଦେବୀ ଆଜି କେବଳ ଓଡିଶାର ରାଜନୀତି କ୍ଷେତ୍ରରେ ନୁହଁନ୍ତି ଜଣେ ବିଶିଷ୍ଟ ସାହିତ୍ୟିକ ଓ ବିଶେଷ କରି ଅନୁବାଦ ସାହିତ୍ୟରେ ଜଣେ ପ୍ରବୀଣ ଲେଖିକା ଭାବେ ପ୍ରତିଷ୍ଠିତ ହୋଇଛନ୍ତି । ତାଙ୍କର ଓଡିଆରେ ଲିଖିତ ଅନୁବାଦ ପୁସ୍ତକ 'ଲଜ୍ଜା' ଓଡିଶା ସାହିତ୍ୟରେ ତାଙ୍କୁ ବିଶେଷ ଭାବେ ପ୍ରତିଷ୍ଠା ଓ ସମ୍ମାନ ଦେଇଛି । ସମାଜସେବାରେ ଅଧିକ ସକ୍ରିୟ ହୋଇ ରାଜ୍ୟର ଅଭିବୃଦ୍ଧିରେ ଦିଗ୍‌ଦର୍ଶନ ଓ ନେତୃତ୍ୱ ଦେବାରେ ସ୍ୱାସ୍ଥ୍ୟ ପ୍ରତିବନ୍ଧକ ହେଲେ ମଧ୍ୟ ମାନସିକ ଶକ୍ତି ଓ ପ୍ରଭାବ ଏବେ ମଧ୍ୟ ଲୋକମୁଖରେ ବିଶେଷ ଭାବେ ଅନୁଭୂତ । ମୁଁ ନନ୍ଦିନୀ ଦେବୀଙ୍କର ସଂପୂର୍ଣ୍ଣ ଆରୋଗ୍ୟ କାମନା କରିବା ସହିତ

ରାଜ୍ୟବାସୀଙ୍କୁ ତାଙ୍କର ଦିଗ୍‌ଦର୍ଶନ ଓ ନେତୃତ୍ୱ ଅବ୍ୟାହତ ରଖିବା ପାଇଁ ଈଶ୍ୱରଙ୍କଠାରେ ପ୍ରାର୍ଥନା କରୁଛି । ୧୯୮୦ ମସିହା ନିର୍ବାଚନରେ ମୁଁ ବ୍ରହ୍ମଗିରି ପାଇଁ ସଂପୂର୍ଣ୍ଣ ନୂଆ ହୋଇଥିଲି ଓ ମୋ ବିରୁଦ୍ଧରେ ସ୍ଥାନୀୟ ଲୋକ ପ୍ରତିବାଦର ସ୍ୱର ଉଠାଇଥିଲେ । ସେମାନେ ବ୍ରଜବାବୁଙ୍କ ସମର୍ଥକ ଥିଲେ । କାରଣ ବ୍ରଜବାବୁ ସେଇ ନିର୍ବାଚନ ମଣ୍ଡଳୀର ପୂର୍ବ ବିଧାୟକ ଥିଲେ । କିନ୍ତୁ ଜାନକୀ ବାବୁଙ୍କ ନେତୃତ୍ୱରେ ଓ ତାଙ୍କର ମୋ ପ୍ରତି ବିଶ୍ୱାସ ଓ ସମର୍ଥନ ଯୋଗୁଁ ମୋର ତୃତୀୟ ଥର ପାଇଁ ବିଧାନସଭାକୁ ନିର୍ବାଚିତ ହେବାରେ କୌଣସି ଅସୁବିଧା ସୃଷ୍ଟି କରିନଥିଲା । ନିର୍ବାଚନ ପରେ ତାଙ୍କର ପ୍ରବଳ ବିରୋଧ ସତ୍ତ୍ୱେ ଜାନକୀ ବାବୁଙ୍କ ମନ୍ତ୍ରିମଣ୍ଡଳରେ କ୍ୟାବିନେଟ ମନ୍ତ୍ରୀ ଭାବେ ସ୍ଥାନ ପାଇ ଦାୟିତ୍ୱ ନେଲି ଏ ସଂପର୍କରେ ଆଗରେ ସୂଚନା ଦେଇଛି । ମୋର ଘନିଷ୍ଠ ବଂଧୁ ତତ୍‌କାଳୀନ କଂଗ୍ରେସ ନେତା ସ୍ୱର୍ଗତ ବାସୁଦେବ ମହାପାତ୍ର ମୋ ମନ୍ତ୍ରୀତ୍ୱକୁ ଦୃଢ ସମର୍ଥନ ଦେଲେ । ଓଡ଼ିଶାରେ ଜାନକୀବାବୁଙ୍କ ନେତୃତ୍ୱ ଓ ରାଜ୍ୟର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଦୀର୍ଘ ୧୨ ବର୍ଷ ଓ ମୋର ମଧ୍ୟ ଏହି ସମୟ ମଧ୍ୟରେ ରାଜ୍ୟ ମନ୍ତ୍ରିମଣ୍ଡଳରେ ପ୍ରମୁଖ ସ୍ଥାନ ଥିଲା । ମାତ୍ର ୧୯୮୭ ମସିହାରେ କେତେକ ଗୁରୁତର ମତଭେଦ ଫଳରେ ମତେ ଇସ୍ତଫା ଦେବାକୁ ପଡିଥିଲା ଏବଂ ସେଇ ବିରୋଧାତ୍ମକ ପର୍ଯ୍ୟାୟର ଶେଷରେ ଜାନକୀ ବାବୁଙ୍କୁ ମଧ୍ୟ କଂଗ୍ରେସ ସଭାପତି ରାଜୀବ ଗାନ୍ଧୀ ମୁଖ୍ୟମନ୍ତ୍ରୀ ଦାୟିତ୍ୱରୁ ଅପସାରିତ କରିଥିଲେ ଏବଂ ହେମାନନ୍ଦ ବିଶ୍ୱାଳଙ୍କ ପରି ଜଣେ ରାଜ୍ୟ ରାଜନୀତିରେ ନୂଆ ଲୋକ ତଥା ତତ୍‌କାଳୀନ ସ୍ୱାସ୍ଥ୍ୟ ରାଜମନ୍ତ୍ରୀଙ୍କୁ ମୁଖ୍ୟମନ୍ତ୍ରୀ ଭାବେ ମନୋନୀତ କରିଥିଲେ । ତାର ଏକମାତ୍ର କାରଣ ଥିଲା ଶ୍ରୀ ବିଶ୍ୱାଳ ଜଣେ ଆଦିବାସୀ ଏବଂ ଓଡ଼ିଶାରେ ଆଦିବାସୀଙ୍କ ସଂଖ୍ୟା ଅଧିକ ଥିବାରେ ଉଚ୍ଚ ଜାତିର ଜଣେ ମୁଖ୍ୟମନ୍ତ୍ରୀ ହେଲେ ନିର୍ବାଚନରେ ତାର ପ୍ରତିକ୍ରିୟା କଂଗ୍ରେସ ବିଜୟ ପାଇଁ ଅନ୍ତରାୟ ହୋଇପାରେ ବୋଲି ତାଙ୍କର ନିକଟତମ କେତେକ କଂଗ୍ରେସ ନେତା ବିଶେଷ କରି ପୂର୍ବତନ କଂଗ୍ରେସ ସଭାପତି ସୀତାରାମ କେଶରୀ ପ୍ରଭୃତି ଏ ଦିଗରେ ରାଜୀବଜୀଙ୍କୁ ପ୍ରଭାବିତ କରିଥିଲେ ବୋଲି ଓଡ଼ିଶାରେ ବହୁ ଲୋକ ଅନୁଭବ କରିବାର ଯଥାର୍ଥତା ଥିଲା । ୧୯୯୦ ମସିହା ନିର୍ବାଚନ ବେଳେ ସ୍ୱର୍ଗତ ବ୍ରଜମୋହନ ମହାନ୍ତିଙ୍କୁ କଂଗ୍ରେସ ପ୍ରାର୍ଥୀ ଭାବେ ମନୋନୀତ ନ କରି ମତେ ଲୋକସଭାକୁ କଂଗ୍ରେସ ପ୍ରାର୍ଥୀ କଲାପରେ ରାଜୀବଜୀ ନିଜେ ଓଡ଼ିଶାକୁ ନିର୍ବାଚନ ପ୍ରଚାରରେ ଆସିଥିବା ଏବଂ ତାଙ୍କର ମର୍ମନ୍ତୁଦ ହତ୍ୟା ଦିନ ପୂର୍ବ ରାତ୍ରୀରେ ରାତି ଗୋଟାଏ ସମୟରେ ଡକାଇ ମୋ ନିର୍ବାଚନ ସଂପର୍କରେ ଆଲୋଚନା କରିବା ବେଳେ ନିଜେ ସେ ଏ ସଂପର୍କରେ ସୂଚନା ଦେଇ ଆଶ୍ୱାସନା ଦେଇଥିଲେ ଯେ ମତେ ରାଜ୍ୟ କଂଗ୍ରେସ ଦଳର ଦଳପତି ଜାନକୀବାବୁଙ୍କ ସ୍ଥାନରେ ମନୋନୀତ ନକରିବା ପାଇଁ ଯେଉଁ ନିଷ୍ପତ୍ତି ନେଇଥିଲେ ତାହା

ଠିକ୍ ନଥିଲା ଏବଂ ମୁଁ ଲୋକସଭାକୁ ନିର୍ବାଚିତ ହେବା ପରେ ସେ ପୁନର୍ବାର ପ୍ରଧାନମନ୍ତ୍ରୀ ଦାୟିତ୍ୱ ନେବା ପରେ ସେ ଭୁଲର ସଂଶୋଧନ କରିବାର ସୁଯୋଗ ଆସିବ । ମୋର ଏବଂ ରାଜୀବଜୀଙ୍କ ସହିତ ଗେଷ୍ଟ ହାଉସ୍‌ର ୨୧ ନମ୍ବର ରୁମ୍‌ରେ ଆଲୋଚନା ବେଳେ ଜାନକୀବାବୁ ଓ ଜୟନ୍ତୀ ଦେବୀ ଉଭୟ ପାଖକୁ ଲାଗିଥିବା ୨୦ ନମ୍ବର ରୁମ୍‌ରେ ଥିଲେ । ରାଜୀବଜୀ ରୁମ୍ ବାହାରକୁ ଆସି ମତେ ବିଦାୟ ଦେଇ ଚତୁର୍ବେଦୀଜୀଙ୍କୁ (ତାଙ୍କ ପି.ଆର.ଓ.)ଙ୍କୁ ନିର୍ଦ୍ଦେଶ ଦେଇଥିଲେ ଯେ, ମୋ ପାଇଁ କିଛି ଅଧିକ ଆର୍ଥିକ ବ୍ୟବସ୍ଥା କରିବା ପାଇଁ । କିନ୍ତୁ ବିଧାତାର ବିଧାନ ଅନ୍ୟ ପ୍ରକାର । ଏହି ଆଲୋଚନା ପରଦିନ ରାଜୀବଜୀଙ୍କର ତାମିଲନାଡୁରେ ଏକ ସଭା ପୂର୍ବରୁ ମାନବ ବୋମା ଦ୍ୱାରା ମର୍ମନ୍ତୁଦ ନିଧନ ଘଟିଥିଲା ଯାହା ପାଇଁ ଲୋକସଭା ନିର୍ବାଚନ ୧୫ ଦିନ ବନ୍ଦ ରହିଲା ସାରା ଦେଶରେ । ମାତ୍ର ସୋନିଆଜି ତାଙ୍କ ମୃତ ସ୍ୱାମୀଙ୍କର କଥା ରଖି ମୋ ପାଖକୁ ଏକ ଲକ୍ଷ ଟଙ୍କା ପଠାଇଲେ । ତାଙ୍କର ଏ ମହାନୁଭବତା ଜୀବନରେ ମୋର ଏକ ବିରଳ ଅନୁଭବ । ଏହି ସମୟରେ ମୋର ପ୍ରତିଦ୍ୱନ୍ଦ୍ୱୀ ଏପରିକି ଜାନକୀବାବୁ ନିଜେ ତାଙ୍କ ବିଶ୍ୱସ୍ତ ଦଳୀୟ କର୍ମୀମାନଙ୍କ ସହିତ ବ୍ରଜବାବୁଙ୍କ ପ୍ରବଳ ଉଦ୍ୟମକୁ ଶକ୍ତିଶାଳୀ କରି ମତେ ନିର୍ବାଚନରେ ପରାଜିତ କରିବାର ସମସ୍ତ ଉଦ୍ୟମ କରିଥିଲେ, ଯାହା ଫଳରେ ମୁଁ ପ୍ରାୟ ୩୦ ହଜାର ଭୋଟ ବ୍ୟବଧାନରେ ଲୋକସଭା ନିର୍ବାଚନରେ ପରାସ୍ତ ହେଲି । କଂଗ୍ରେସ ଲୋକସଭାରେ ସଂଖ୍ୟା ଗରିଷ୍ଠତା ହରାଇଥିଲେ ମଧ୍ୟ ଏକକ ସଂଖ୍ୟା ଗରିଷ୍ଠ ଦଳ ହୋଇଥିବାରୁ ଏହାର ନେତା ଭାବେ ପ୍ରଧାନମନ୍ତ୍ରୀ ଦାୟିତ୍ୱ ନେଲେ ଶ୍ରୀ ନରସିଂହ ରାଓ ଓ ଭାରତରେ କଂଗ୍ରେସ ଶାସନ କେନ୍ଦ୍ରରେ ଓ ରାଜ୍ୟରେ ପ୍ରତିଷ୍ଠିତ ହେଲା । ଏହା ହେଲା ମୋର ଓଡିଶାର ମୁଖ୍ୟମନ୍ତ୍ରୀ ହେବାର ଦ୍ୱିତୀୟ ନିଷ୍ଫଳତା । କିନ୍ତୁ ହେମାନନ୍ଦ ବାବୁ ମୁଖ୍ୟମନ୍ତ୍ରୀ ଥାଇ ମୁଁ ମନ୍ତ୍ରିମଣ୍ଡଳରେ ରହିବା ଅନୁଚିତ ମନେ କରିଥିଲେ ସୁଦ୍ଧା ଦଳୀୟ ଶୃଙ୍ଖଳା ଦୃଷ୍ଟିରୁ ମୁଁ ଅଗତ୍ୟା ଅର୍ଥ ଓ ଆଇନ ମନ୍ତ୍ରୀର ଦାୟିତ୍ୱ ନେଇ ଦ୍ୱିତୀୟ ସ୍ଥାନରେ ରହିଲି ଓ ହେମାନନ୍ଦ ବାବୁ ମଧ୍ୟ ମୋ ଉପରେ ରାଜ୍ୟ ପ୍ରଶାସନରେ ବହୁତ ବିଶ୍ୱାସ ରଖିଥିଲେ । ନନ୍ଦିନୀ ଦେବୀ ମଧ୍ୟ ସେହି ସମୟରେ ପ୍ରଦେଶ କଂଗ୍ରେସ ସଭାପତି ଥାଇ ଚାରି ମାସ ଭିତରେ କଂଗ୍ରେସ ଦଳକୁ ଜୟଯୁକ୍ତ କରିବାରେ ସମର୍ଥ ହୋଇ ପାରିଲେ ନାହିଁ । ତାଙ୍କର ହେମାନନ୍ଦ ବାବୁଙ୍କ ସହିତ ଯେପରି ସମନ୍ୱୟ ରହିବାର କଥା ତାହା କେତେକ କାରଣ ଯୋଗୁ ସମ୍ଭବପର ହୋଇ ପାରିଲା ନାହିଁ । ଫଳରେ ରାଜ୍ୟ କଂଗ୍ରେସର ଶୋଚନୀୟ ପରାଜୟ ଘଟିଲା ।

ବିଜୁ ପଟ୍ଟନାୟକ ଓଡିଶାରେ ମୁଖ୍ୟମନ୍ତ୍ରୀ ଭାବେ ଦ୍ୱିତୀୟ ଥର ପାଇଁ ଦାୟିତ୍ୱ ନେଲେ ଓ କଂଗ୍ରେସ ଦଳ କେବଳ ଦଶ ଜଣ ସଭ୍ୟଙ୍କୁ ନେଇ ବିଧାନସଭାରେ

ବିରୋଧି ଦଳର ସ୍ୱୀକୃତି ମଧ୍ୟ ପାଇଲେ ନାହିଁ । ଏହି ସମୟ ଭିତରେ ଜାନକୀବାବୁଙ୍କ ନେତୃତ୍ୱରେ ସମଗ୍ର ରାଜ୍ୟରେ କଂଗ୍ରେସ ଦଳକୁ ପୁନଃ ପ୍ରତିଷ୍ଠିତ କରିବା ପାଇଁ ପ୍ରବଳ ଉଦ୍ୟମ ହେଲା ଓ ମୁଁ ମଧ୍ୟ ପୂର୍ବ ତିକ୍ତ ସ୍ମୃତିକୁ ପଛରେ ପକାଇ ତାଙ୍କ ସହିତ କଂଗ୍ରେସ ଦଳକୁ ପୁନର୍ବାର କ୍ଷମତାକୁ ଆସିବା ପାଇଁ ରାଜ୍ୟବ୍ୟାପୀ ଯେଉଁ ସଂଗଠନ ଶକ୍ତି ଜାନକୀ ପଟ୍ଟନାୟକ ପ୍ରଦର୍ଶନ କଲେ ତା ସହିତ ସାମିଲ ହେଲି । ଫଳରେ ୧୯୯୫ ନିର୍ବାଚନରେ ପୁନର୍ବାର କଂଗ୍ରେସ କ୍ଷମତାକୁ ଫେରିଲା ଜାନକୀବାବୁଙ୍କ ନେତୃତ୍ୱରେ । ଏହା ହେଉଛି ଜାନକୀ ବାବୁଙ୍କ ତୃତୀୟ ଥର ପାଇଁ ମୁଖ୍ୟମନ୍ତ୍ରୀ ଦାୟିତ୍ୱ । ଏହି ସମୟ ଭିତରେ ମତେ ରାଜ୍ୟ ବିଧି ସଂଶୋଧନ କମିଟିର ଅଧ୍ୟକ୍ଷ ଭାବେ କ୍ୟାବିନେଟ ପାହ୍ୟା ଦିଆଯାଇ ଜାନକୀବାବୁ ମୋ ପ୍ରତି ଯେଉଁ ଅବିଚାର କରିଥିଲେ ତାର ସଂଶୋଧନ କରିବା ପାଇଁ ଉଦ୍ୟମ କଲେ ଓ ମୁଁ ମଧ୍ୟ ତାଙ୍କର ପୁଣି ଜଣେ ବିଶ୍ୱସ୍ତ ସହକର୍ମୀ ଭାବେ ତିନି ବର୍ଷ ଏହି ଦାୟିତ୍ୱରେ ରହିବା ପରେ ୧୯୯୯ ମସିହାରେ ସାଧାରଣ ନିର୍ବାଚନରେ ପୁନର୍ବାର କଂଗ୍ରେସ ଦଳର ଶୋଚନୀୟ ପରାଜୟ ଘଟିଲା । ଜାନକୀବାବୁ ନିଜେ ଆଠଗଡ ନିର୍ବାଚନ ମଣ୍ଡଳୀରୁ ପ୍ରାୟ ୪୨ ହଜାର ଭୋଟରେ ପରାଜିତ ହେଲେ ଓ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ବିଜୁ ଜନତା ଦଳ ଓ ଭାରତୀୟ ଜନତା ପାର୍ଟିର ସମର୍ଥନରେ ରାଜ୍ୟରେ ଏକ ମିଳିତ ମନ୍ତ୍ରିମଣ୍ଡଳ ଗଠନ ପରେ ମୁଁ ଦଳୀୟ ଶୃଙ୍ଖଳା ଦୃଷ୍ଟିରୁ ବିଧି ସଂଶୋଧନ କମିଟିର ଅଧ୍ୟକ୍ଷ ପଦରୁ ଇସ୍ତଫା ଦେଇଛି । ମୋର ବୟସ ଓ ସ୍ୱାସ୍ଥ୍ୟ ଦୃଷ୍ଟିରୁ ମୁଁ ମଧ୍ୟ ଗତ ନିର୍ବାଚନରେ ପ୍ରାର୍ଥୀ ହେବାକୁ କୌଣସି ଆଗ୍ରହ ପ୍ରକାଶ କଲି ନାହିଁ । ଅତ୍ୟନ୍ତ ଦୁଃଖ ଓ ପରିତାପର ବିଷୟ ଯେ କଂଗ୍ରେସ ଦଳ ଏ ବିପର୍ଯ୍ୟୟ ପରେ ମଧ୍ୟ ଐକ୍ୟବଦ୍ଧ ହୋଇ କାର୍ଯ୍ୟ କରିବା ପାଇଁ ସମର୍ଥ ହୋଇ ପାରି ନାହାନ୍ତି । ଜାନକୀ ବାବୁ ପ୍ରଦେଶ କଂଗ୍ରେସ କମିଟିର ସଭାପତି ଥିଲେ ସୁଦ୍ଧା, ହେମାନନ୍ଦ ବାବୁ ଓ ଅନେକ ବର୍ଷୀୟାନ କଂଗ୍ରେସ ନେତା ତାଙ୍କୁ ସହଯୋଗ କରୁ ନଥିଲେ । କଂଗ୍ରେସ ଦଳରେ ବର୍ତ୍ତମାନ ଏକ ଶୀତଳ ଯୁଦ୍ଧ ଚାଲିଛି । କେନ୍ଦ୍ରରେ ମଧ୍ୟ ସେହିପରି କଂଗ୍ରେସ ବିରୋଧି ଦଳର ଭୂମିକା ନେଇଛି । କଂଗ୍ରେସ ସଭାପତି ଶ୍ରୀମତି ସୋନିଆଜୀ ବିରୋଧି ଦଳର ନେତା ଭାବେ ଦାୟିତ୍ୱ ତୁଲାଉଥିଲେ ମଧ୍ୟ କେନ୍ଦ୍ର କଂଗ୍ରେସ ଦଳରେ ପୂର୍ବ ଭଳି ସଂହତିର ଘୋର ଅଭାବ ଫଳରେ କଂଗ୍ରେସ ଗତ ନିର୍ବାଚନରେ ବହୁ ପ୍ରଦେଶରେ ନିଜର ପ୍ରଭୂତ୍ୱ ହରାଇଛି ଓ ଭାରତୀୟ ଜନତା ଦଳ ଓ ତାଙ୍କର ଅନ୍ୟ ସହଯୋଗୀ ଦଳଙ୍କ ସମର୍ଥନରେ କେନ୍ଦ୍ରରେ ଶ୍ରୀ ଅଟଳ ବିହାରୀ ବାଜପେୟୀଙ୍କ ନେତୃତ୍ୱରେ ଜାତୀୟ ଗଣତାନ୍ତ୍ରିକ ସଂଗଠନ (ଏନ.ଡି.ଏ.) ଏକ ମିଳିତ ମନ୍ତ୍ରିମଣ୍ଡଳ ଗଠନ କରି ଗତ ଦୁଇ ବର୍ଷରୁ ଉର୍ଦ୍ଧ୍ୱ ହେଲା ଶାସନ ଚଳାଇଛନ୍ତି ।

ଅଟଳ ବିହାରୀଙ୍କ ବ୍ୟକ୍ତିଗତ ପ୍ରତିଷ୍ଠା ଓ ଦକ୍ଷ ନେତୃତ୍ୱ ଓ ବିଚାର ଶକ୍ତି ଫଳରେ ଏହି ସରକାର ଚାଲିଛି । ଆଦର୍ଶଗତ ତୀବ୍ର ବିରୋଧ ବିଭିନ୍ନ ଦଳ ସହିତ ଥିଲେ ମଧ୍ୟ କଂଗ୍ରେସ ପୁନର୍ବାର କ୍ଷମତା ଗ୍ରହଣ କରିବାର ଆଶଙ୍କା ସେମାନଙ୍କୁ ଏକାଠି ରଖିବାର ସୁଯୋଗ ଦେଉଛି ଏବଂ କଂଗ୍ରେସ ଦଳ ଭିତରେ ଏକତା ଓ ସମନ୍ୱୟର ଅଭାବ ମଧ୍ୟ ଏହି ମିଳିତ ସରକାରକୁ ଦାୟିତ୍ୱରେ ରହିବାର ସୁଯୋଗ ସୃଷ୍ଟି କରୁଛି । ଆଉ କେତେ ଦିନ କେନ୍ଦ୍ର ସରକାର ତିଷ୍ଠି ରହିବେ ତାହା ଭବିଷ୍ୟତ ହିଁ କହିବ ।

# ନିର୍ବାଚନ ରାଜନୀତିରୁ ମୋର ସନ୍ୟାସ

୧୯୯୦ ମସିହା ଲୋକସଭା ନିର୍ବାଚନରେ ମୋର ଯେଉଁ ପରିସ୍ଥିତିରେ ପରାଜୟ ଘଟିଲା ତାର ସୂଚନା ମୁଁ ଆଗରୁ ଦେଇଛି । ଏବେ ମଧ୍ୟ ମୋର ସ୍ପଷ୍ଟ ମତ ଏବଂ ଏହା ନିଶ୍ଚିତ ଯେ ତତ୍‌କାଳୀନ କଂଗ୍ରେସ ନେତାମାନେ ରାଜୀବ ଗାନ୍ଧୀଙ୍କ ହତ୍ୟା ପରେ ମୋର ପରାଜୟ ଘଟାଇବାରେ ପ୍ରବଳ ଉଦ୍ୟମ କରିଥିଲେ । ଏପରିକି ତତ୍‌କାଳୀନ କିଛି ନେତାଙ୍କ ପିତାମାନେ ସ୍ୱୀକାର କରିଛନ୍ତି କିପରି ସେମାନଙ୍କ କୋଠିରୁ ଧାନ ବିକାଯାଇ ଏବଂ ତୁଙ୍ଗନେତାମାନଙ୍କ ଠାରୁ ମତେ ପରାଜିତ କରିବା ପାଇଁ ପ୍ରଚୁର ଅର୍ଥ ମଧ୍ୟ ସେମାନଙ୍କ ଜରିଆରେ ବଣ୍ଟା ଯାଇଥିଲା । ଏପରିକି ମୋର ସେତେବେଳର ବ୍ରହ୍ମଗିରି ନିର୍ବାଚନ ମଣ୍ଡଳୀ ଯେଉଁଠାରେ ମୁଁ ଘରେ ଘରେ ସମ୍ମାନିତ ହେଉଥିଲି ଏବଂ ଯେଉଁ ନିର୍ବାଚନ ମଣ୍ଡଳୀର ରୂପ ବଦଳାଇ ଦେବା ପାଇଁ ମୁଁ ନିଜକୁ ସଂପୂର୍ଣ୍ଣ ଭାବେ ସମର୍ପୀତ କରିଥିଲି ସେଠାରେ ଜନତା ଦଳର ପ୍ରାର୍ଥୀ ମଧ୍ୟ ମୋ ଠାରୁ ପ୍ରାୟ ୧୧,୦୦୦ରୁ ଅଧିକ ଭୋଟ ପାର୍ଥକ୍ୟରେ ଆଗୁଆ ରହିଲେ । କିନ୍ତୁ ପୁରୀ ନିର୍ବାଚନ ମଣ୍ଡଳୀ ଯାହାକୁ ମୁଁ ୩୦ ବର୍ଷ ଧରି ନିର୍ବାଚନ ସଂଗ୍ରାମରେ ପ୍ରାର୍ଥୀ ହୋଇ ନଥିଲି ସେଠାରେ ପୁରୀ ସହରରେ ପାର୍ଥକ୍ୟ ୩୦୦ ଭିତରେ ରହିଲା । ରମାକାନ୍ତ ମିଶ୍ର (ବର୍ତ୍ତମାନ ବିରୋଧି ଦଳର ନେତା) ଓ ଶ୍ରୀ ଦେବେନ୍ଦ୍ର ମାନସିଂହ (ପୂର୍ବତନ ରାଷ୍ଟ୍ରମନ୍ତ୍ରୀ)ଙ୍କ ଅକୁଣ୍ଠ ସମର୍ଥନରେ ଏହି ୨ଟି ନିର୍ବାଚନ ମଣ୍ଡଳୀରୁ ମୁଁ ଅଧିକ ଭୋଟ ପାର୍ଥକ୍ୟରେ ଜିଣିବା ବେଳେ, ପିପିଲି ଓ ବ୍ରହ୍ମଗିରି ନିର୍ବାଚନ ମଣ୍ଡଳୀ ବିଶେଷ ଭାବେ ମୋ ପରାଜୟ ପାଇଁ ଦାୟୀ । ଏପରିକି ବାଲିପାଟଣା ନିର୍ବାଚନ ମଣ୍ଡଳୀ ଭୁବନେଶ୍ୱରକୁ ଲାଗିଥିଲେ ମଧ୍ୟ ସେଠାରୁ ମୁଁ ନିଶ୍ଚିତ ଭାବେ ଅଧିକା ପାଇବି ବୋଲି ବିଶ୍ୱାସ ରଖିଥିଲେ ସୁଦ୍ଧା ସେଠାରେ ମଧ୍ୟ ଭୋଟ ବ୍ୟବଧାନ ମତେ ଆଶ୍ଚର୍ଯ୍ୟ କରିଥିଲା । ବର୍ତ୍ତମାନ ସେମାନଙ୍କ ନାମ ପ୍ରକାଶ କରି ଏକ ବିବାଦୀୟ ପରିସ୍ଥିତି ସୃଷ୍ଟି କରିବାର ଯଥାର୍ଥତା ମୁଁ ଅନୁଭବ କରୁନାହିଁ । କିନ୍ତୁ ଏତିକି କହି ରଖେ ଯେ ରାଜ୍ୟର ତୁଙ୍ଗ ନେତା ଭାବେ ପ୍ରଦେଶ କଂଗ୍ରେସ ସଭାପତି ନିଜେ ଜାନକୀ ବଲ୍ଲଭ ପଟନାୟକ, ତାଙ୍କର ଧର୍ମପତ୍ନୀ ଶ୍ରୀମତି ଜୟନ୍ତୀ ଦେବୀଙ୍କ ସହିତ ବହୁ ଜିଲ୍ଲାସ୍ତରୀୟ ନେତୃବର୍ଗ ମଧ୍ୟ ପରାଜୟ ସ୍ୱୀକାର କଲେ । ଏପରିକି ବିଧାନସଭାରେ କଂଗ୍ରେସ ଦଳର ୧୯୮୫ ମସିହା ନିର୍ବାଚନରେ ୧୧୮ ଜଣ ସଭ୍ୟ ନିର୍ବାଚିତ ହୋଇଥିବାବେଳେ

୧୯୯୦ ମସିହାରେ କେବଳ ୧୦ ଜଣ ସଭ୍ୟ ସଭ୍ୟା ବିଧାନସଭାକୁ ନିର୍ବାଚିତ ହେଲେ । କିନ୍ତୁ ଲୋକସଭା ନିର୍ବାଚନରେ ରାଜୀବଜୀଙ୍କ ହତ୍ୟାର ପ୍ରଭାବରେ କଂଗ୍ରେସ ପୂର୍ଣ୍ଣ ସଂଖ୍ୟା ଗରିଷ୍ଠତା ହାସଲ କରିନଥିଲେ ମଧ୍ୟ କଂଗ୍ରେସର ବରିଷ୍ଠ ନେତା ଯାହାଙ୍କୁ ନେହେରୁ ପରିବାର ଓ ରାଜୀବଜୀ ଦୂରେଇ ଦେଇଥିଲେ ଓ ଯେ ନିର୍ବାଚନରେ ଯୋଗ ଦେବା ପାଇଁ ସିଧାସଳଖ କଂଗ୍ରେସର ଅନୁରୋଧକୁ ପ୍ରତ୍ୟାଖ୍ୟାନ କରି ଦେଇଥିଲେ ସେହି ନରସିଂହରାଓ ପ୍ରଧାନମନ୍ତ୍ରୀ ଦାୟିତ୍ୱରେ ଅଭିଷିକ୍ତ ହୋଇ ପୂରା ପାଞ୍ଚବର୍ଷ ଭାରତର ପ୍ରଧାନମନ୍ତ୍ରୀ ଭାବେ ଆମ ରାଷ୍ଟ୍ରର ଅର୍ଥନୀତିକୁ ଏକ ନୂତନ ଦିଗ୍‌ଦର୍ଶନ ଦେଇ ଭାରତକୁ ପୃଥିବୀର ସମୃଦ୍ଧ ରାଷ୍ଟ୍ରମାନଙ୍କ ଭିତରେ ସମ୍ମାନୀତ ଓ ପ୍ରତିଷ୍ଠିତ କରାଇବାରେ ସଫଳ ହୋଇଥିଲେ । କଂଗ୍ରେସ ଦଳ ପାଇଁ ଅତ୍ୟନ୍ତ ଦୂର୍ଭାଗ୍ୟର ବିଷୟ ଯେ ସୋନିଆଜୀଙ୍କ କଂଗ୍ରେସ ଅଧ୍ୟକ୍ଷା ଭାବେ ନେତୃତ୍ୱ ନେବା ପରେ ତାଙ୍କର (ନରସିଂହରାଓ) ରାଷ୍ଟ୍ରପତି ଓ ଦଳ ପ୍ରତି ଅବଦାନକୁ ବର୍ତ୍ତମାନର ନେତୃତ୍ୱ ଯେପରି ସମ୍ମାନ ଦେବା କଥା ତାହା ନ ହେବା ଫଳରେ ସେ ବିତସ୍ପୃହ ହୋଇ ନୀରବ ରହିଲେ । କିନ୍ତୁ ତାଙ୍କର ଦେଶ ପ୍ରତି ଓ ରାଷ୍ଟ୍ରର ଅର୍ଥନୀତିକୁ ନୂତନ ଦିଗଦର୍ଶନ ଓ ଜଗତିକରଣ ଅର୍ଥନୀତିରେ ଭାରତର ସମାଜବାଦୀ ଆଦର୍ଶର ରାଷ୍ଟ୍ରୀୟକରଣ, ଅର୍ଥନୀତିର ଆମୂଳ ପରିବର୍ତ୍ତନ ଘଟାଇ ଘରୋଇକରଣ ଅର୍ଥନୀତିରେ କ୍ରମଶଃ ପଦାର୍ପଣ ପ୍ରଧାନମନ୍ତ୍ରୀ ନରସିଂହଙ୍କ ବୁଦ୍ଧିମତା ଓ ପରିପକ୍ୱତାର ପ୍ରମାଣ ଦିଏ । ତାଙ୍କୁ କଂଗ୍ରେସ ଦଳରେ ବହୁ ନେତା ଦଳର ଚାଣକ୍ୟ ଆଖ୍ୟା ଦେଇ ଥାଆନ୍ତି । ତାଙ୍କର ନୀରବତା ଓ କଂଗ୍ରେସ ନେତୃତ୍ୱର ତାଙ୍କ ପ୍ରତି ଅନାଦର କଂଗ୍ରେସ ଦଳକୁ ଦୂର୍ବଳ କରିବାରେ ସହାୟକ ହୋଇଛି ଏଥିରେ ସନ୍ଦେହ ନାହିଁ । ବର୍ତ୍ତମାନର ନେତ୍ରୀ ଶ୍ରୀମତି ସୋନିଆଜୀଙ୍କ ବିରୋଧରେ ଆଜି ବହୁ ରାଜ୍ୟନେତାମାନେ ଦୁଃଖିତ ହୋଇ ବିମୁଖ ହୋଇଛନ୍ତି । ଏବେ ଶୁଣାଯାଉଛି ଯେ ବହୁ ରାଜ୍ୟରେ ବୟସ୍କ ନେତାମାନେ କ୍ରମଶଃ ସୋନିଆଙ୍କଠାରୁ ଦୂରେଇ ଯାଉଥିବାର ସୂଚନା ମିଳୁଛି । ତାର ଉଦାହରଣ ୧୯୯୫ ମସିହା ଲୋକସଭା ନିର୍ବାଚନରେ କଂଗ୍ରେସର ପରାଜୟ ଘଟି ଭାରତୀୟ ଜନତା ଦଳ ଯେଉଁ ନେତୃତ୍ୱରେ ଅଣ କଂଗ୍ରେସ ୨୪ ଦଳିଆ ମିଳିତ ସରକାର ଦେଶ ଶାସନ କରିବା ଫଳରେ, କେନ୍ଦ୍ର ସରକାରର ବିଭିନ୍ନ ଦଳ ଭିତରେ ସମନ୍ୱୟର ଅଭାବ ଓ ଆଦର୍ଶଗତ ବିଭେଦ ଫଳରେ କେନ୍ଦ୍ର ଶାସନ ଆଜି ଦୁର୍ବଳ, ଅର୍ଥନୀତି ଓ ପ୍ରଶାସନିକ ଶକ୍ତି ହରାଇଛି । କେବଳ ଅଟଳଜୀଙ୍କ ବ୍ୟକ୍ତିଗତ ପ୍ରଭାବ ଓ ଭାରତୀୟ ଜନତା ଦଳର ସାଂପ୍ରଦାୟିକ ନେତୃତ୍ୱ ଓ ଧର୍ମ ଭିତ୍ତିରେ ଜନାଦେଶ ଏହି ମିଳିତ ମନ୍ତ୍ରିମଣ୍ଡଳକୁ ଏ ପର୍ଯ୍ୟନ୍ତ ଶାସନ ଗାଦିରେ ରଖିବାର ଅଧିକାର ଦେଇଛି । ଅନ୍ୟତମ କାରଣ ହେଉଛି କଂଗ୍ରେସ ଦଳ ଭିତରେ ଅନ୍ତର୍ବିବାଦ ଓ କେନ୍ଦ୍ର ନେତୃତ୍ୱ ଉପରେ ବିଭିନ୍ନ ବୟସ୍କ

ରାଜନୀତିକ ନେତାମାନଙ୍କର କଂଗ୍ରେସର ତୁଙ୍ଗ ନେତୃତ୍ୱ ପ୍ରତି ଅନାଗ୍ରହ । ପ୍ରତ୍ୟେକ କଂଗ୍ରେସ ଲୋକ ଏହାକୁ ଯଦି ଅବିଶ୍ୱାସ କରିବେ ଓ ଅବସ୍ଥା ସୁଧାରିବାରେ ନେତୃତ୍ୱର ଭ୍ରଷ୍ଟାଚାର ଓ ଲକ୍ଷ ଲକ୍ଷ କଂଗ୍ରେସ କର୍ମୀମାନଙ୍କ ହୃଦୟର ବେଦନା ବୁଝିବାରେ ସମର୍ଥ ନହେବେ ତାହେଲେ କଂଗ୍ରେସର ଭବିଷ୍ୟତ ଯେ ଅନିଶ୍ଚିତ ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ । ବ୍ୟକ୍ତିଗତ ଈର୍ଷା, କ୍ଷମତା ଲୋଭ, ଭ୍ରଷ୍ଟାଚାର, ଅପସଂସ୍କୃତି, ହିଂସା ଓ ଅର୍ଥର ପ୍ରାବଲ୍ୟ ଓ ଆଦର୍ଶଗତ ଦୃଷ୍ଟିକୋଣର ଅବକ୍ଷୟ ଆଦି କଂଗ୍ରେସ ଦଳକୁ ଏକ ବିଷାଦମୟ ପରିସ୍ଥିତିରେ ପହଞ୍ଚାଇ ଦେଇଛି । ଏହା ମୋର ସ୍ପଷ୍ଟ ମତ । ମୋର ବର୍ତ୍ତମାନ ବୟସ ୮୯ ବର୍ଷ । ମୁଁ କ୍ଷମତାରେ ଅନେକ ବର୍ଷ ରହି ଆସିଛି । ୧୯୫୧ ଠାରୁ ୧୯୯୦ ପର୍ଯ୍ୟନ୍ତ ଜିଲ୍ଲା ସଂଗଠନରେ ପ୍ରମୁଖ ଭାଗ ନେଇଛି । ଦୀର୍ଘ ବର୍ଷ ଧରି ଚାରି ଜଣ ମୁଖ୍ୟମନ୍ତ୍ରୀ ଦାୟିତ୍ୱରେ ଥିବା ବେଳେ ମୁଁ ପ୍ରାୟ ଦ୍ୱିତୀୟ ସ୍ଥାନ ହିସାବରେ ବହୁ ଗୁରୁତର ବିଭାଗର କ୍ୟାବିନେଟ ମନ୍ତ୍ରୀ ଭାବରେ ଦାୟିତ୍ୱ ତୁଲାଇଛି । ଏ ପରିଣତ ବୟସରେ ଆଉ କ୍ଷମତାର ଲାଳସା ତିଳେ ମାତ୍ର ନାହିଁ । ଏସବୁ ସୁଯୋଗ ମତେ କେବଳ କଂଗ୍ରେସ ହିଁ ଦେଇଛି । କଂଗ୍ରେସ ଦଳରେ ମୁଁ ବର୍ତ୍ତମାନ ସବୁଠାରୁ ବର୍ଷୀୟାନ ଲୋକ ଭାବେ କଂଗ୍ରେସ ଦଳ ତରଫରୁ ମୋର ୮୫, ୮୬, ୮୭ତମ ଓ ୮୮ତମ ଜନ୍ମତିଥି ବହୁ ଆଡମ୍ବର ସହକାରେ ଦଳୀୟ ନେତୃବର୍ଗଙ୍କ ଶୁଭେଚ୍ଛା ସହଯୋଗରେ ପାଳିତ ହେଉଛି । ବହୁ ଅପମାନ, ଅଭିମାନ ଓ ଅସମ୍ମାନ ମଧ୍ୟ ମତେ ସମୟ ସମୟରେ ରାଜ୍ୟ କଂଗ୍ରେସ ନେତୃତ୍ୱ ଦେଇଛନ୍ତି । ତଥାପି ମଧ୍ୟ ମୋର ସେମାନଙ୍କ ପ୍ରତି ସମ୍ମାନ ଅକ୍ଷୁର୍ଣ୍ଣ ରହିଛି । କାରଣ ଜଣେ କଂଗ୍ରେସ ଦଳର ସଭ୍ୟ ଭାବେ ମୁଁ ସଂଯମ ଓ ଶୃଙ୍ଖଳାର ଦାସ ଭାବେ ନିଜ ସ୍ୱାର୍ଥକୁ ଜଳାଞ୍ଜଳୀ ଦେଇ ଦଳୀୟ ସ୍ୱାର୍ଥକୁ ଏକମାତ୍ର ଲକ୍ଷ୍ୟ ବୋଲି ଅନ୍ୟାୟ ସବୁ ସହିନେବାର ଧୈର୍ଯ୍ୟ ଜଗନ୍ନାଥଙ୍କ କରୁଣାରୁ ମତେ ମୋର ସ୍ୱଚ୍ଛତାରେ ଆଞ୍ଚ ଆଣି ନାହିଁ । ମୋ ବିରୋଧରେ ଭ୍ରଷ୍ଟାଚାର ବା ଅନାଚାର ବା ଅନୈତିକ ପ୍ରଶାସନିକ ଅଭିଯୋଗ କୌଣସି ଦଳ ବା ଗୋଷ୍ଠୀ ନେତୃବର୍ଗ କରିନାହାନ୍ତି; ତାହା ହିଁ ମୋର ରାଜନୀତିକ ଜୀବନର ସାର୍ଥକତା ବୋଲି ମୁଁ ନମ୍ରତାର ସହିତ ଅନୁଭବ କରେ । ସେଥିପାଇଁ ମୋର ଏକମାତ୍ର ଲକ୍ଷ୍ୟ କଂଗ୍ରେସ ଦଳ ଦିନକୁ ଦିନ ଦୁର୍ବଳ ହେବାର କାରଣ ଅନ୍ୱେଷଣ କରି, ଦଳ ଭିତରେ ଏକତା, ଭାଇଚାରା ଓ ସମନ୍ୱୟର ପରିବେଶ ସୃଷ୍ଟି ହେଉ ଏହା ହିଁ ମୋର ଏକମାତ୍ର ନିବେଦନ । କଂଗ୍ରେସ ଦଳ ପୃଥିବୀର ସର୍ବଶ୍ରେଷ୍ଠ ଓ ସର୍ବବୃହତ ଓ ୧୧୫ ବର୍ଷର ଦଳ । କଂଗ୍ରେସ ଦଳର ଇତିହାସ ଆଜି ରାଷ୍ଟ୍ରର ଇତିହାସ ବୋଲି ଧରାଯାଏ । ସ୍ୱାଧୀନତାର ୬୨ ବର୍ଷ ପୂର୍ବରୁ ପ୍ରତିଷ୍ଠିତ ଏହି ଦଳ ପୃଥିବୀର ସର୍ବଶ୍ରେଷ୍ଠ ଜନନାୟକମାନଙ୍କୁ ଜନ୍ମ ଦେଇଛି । ମହାତ୍ମା ଗାନ୍ଧୀ ପୃଥିବୀର ସର୍ବଶ୍ରେଷ୍ଠ ଜନନାୟକ । ସେ ସମଗ୍ର ପୃଥିବୀକୁ ଏକ ନୂତନ

ଦିଗ୍‌ଦର୍ଶନ ଓ ନୈତିକ ଆଦର୍ଶଗତ ନେତୃତ୍ୱ ଦେଇ ଅମର ହୋଇଛନ୍ତି । ପଣ୍ଡିତ ନେହେରୁ ସମଗ୍ର ପୃଥିବୀରେ ଜଣେ ଶ୍ରେଷ୍ଠ ଚିନ୍ତାନାୟକ ଓ ଗୋଷ୍ଠୀ ନିରପେକ୍ଷ ରାଷ୍ଟ୍ରୀୟ ସଂଗଠନର ସ୍ରଷ୍ଟା । ନେତାଜୀ ସୁବାଷ ବୋଷ ଆଜି କ୍ରାନ୍ତିବାଦ ଓ ଭାରତର ସ୍ୱାଧୀନତା ସଂଗ୍ରାମର ଏକ ଅଦ୍ୱିତୀୟ ନେତା । ଏମାନଙ୍କ ନାମ ସମଗ୍ର ପୃଥିବୀର ବିଂଶ ଶତାବ୍ଦୀର ଇତିହାସରେ ଅମରାକ୍ଷରରେ ଲିପିବଦ୍ଧ ହୋଇ ରହିବ । ସମଗ୍ର ଦେଶ ନୁହେଁ ସମଗ୍ର ମାନବ ଜାତି ଏପରି ନେତାମାନଙ୍କ ପାଇଁ ଗର୍ବୀତ । ଆଜି ଭାରତରେ ଯେଉଁ ପ୍ରଗତି ଓ ଅଭିବୃଦ୍ଧି ଘଟିଛି ସାମାଜିକ, ଅର୍ଥନୈତିକ, ରାଜନୈତିକ ଓ ସାଂସ୍କୃତିକ କ୍ଷେତ୍ରରେ, ତାର ମୂଳରେ କଂଗ୍ରେସ ଦଳର ଅସୀମ ତ୍ୟାଗ ଓ ଆଦର୍ଶର ଅବାରିତ ଉଜ୍ଜ୍ୱଳ ସାଂସ୍କୃତିକ ଓ ଆଧ୍ୟାତ୍ମିକ ଧାରା ରହିଛି । ଏକ ଶତ କୋଟିରୁ ଉର୍ଦ୍ଧ୍ୱ ଜନସଂଖ୍ୟା ବିଶିଷ୍ଟ ୬୦୦୦ ବର୍ଷର ସାଂସ୍କୃତିକ କ୍ଷେତ୍ରରେ ସର୍ବ ଧର୍ମ ସମନ୍ୱୟର ଯେଉଁ ଚିରନ୍ତନ ସ୍ରୋତକୁ ଧରି ଭାରତ ଆଜି ପୃଥିବୀରେ ଏକ ଶକ୍ତିଶାଳୀ ରାଷ୍ଟ୍ର ଭାବେ ସମ୍ମାନୀତ ହେଉଛି ତାହା କେବଳ କଂଗ୍ରେସ ଦଳର ନେତୃତ୍ୱର ପ୍ରମୁଖ ଅବଦାନ ଫଳରେ ଘଟିଛି, ଏ କଥା ସମସ୍ତେ ସ୍ୱୀକାର କରିବେ । କଂଗ୍ରେସ ଦଳର ଅବକ୍ଷୟ ପାଇଁ ବର୍ତ୍ତମାନ ପୀଢିର ଆମେ ସବୁ ଦାୟୀ । ମୁଁ ମଧ୍ୟ ଦଳୀୟ କର୍ମୀ ଭାବରେ ମୋର ଅସାମର୍ଥ୍ୟ ଓ ବିଫଳତା ସ୍ୱୀକାର କରୁଛି । କିନ୍ତୁ ମୁଁ ଆଜି ବୟସର ଚାପରେ ଅସମର୍ଥ । ଦାୟିତ୍ୱ ତୁଲାଇବାର ଶକ୍ତି ନାହିଁ । ୧୯୪୮ ମସିହା ପୁରୀ ମ୍ୟୁନିସିପାଲିଟିର ଦାୟିତ୍ୱ ନେବାଠାରୁ ୨୦୦୦ ମସିହା ମେ ପହିଲା ପର୍ଯ୍ୟନ୍ତ ଦୀର୍ଘ ୫୦ ବର୍ଷରୁ ଉର୍ଦ୍ଧ୍ୱ ସାଧାରଣ ଜୀବନରେ ରହି ବହୁ ଭାବରେ ଦଳ ପ୍ରତି ଆନୁଗତ୍ୟ ସ୍ୱୀକାର କରିଛି; ପରାଜୟ, ଅସମ୍ମାନ ଓ ବିଦ୍ରୁପ ସହିଛି କିନ୍ତୁ କଂଗ୍ରେସ ଛାଡି ନାହିଁ । ଆଦର୍ଶରୁ ଓହରି ଯାଇନାହିଁ । ସେହି ବ୍ୟକ୍ତିଗତ ସ୍ୱଚ୍ଛତା ଓ ଆଦର୍ଶଗତ ଆନୁଗତ୍ୟ ମତେ ଏବେ ମଧ୍ୟ ପ୍ରଭାବିତ କରୁଛି । କଂଗ୍ରେସ ଦଳ ତାର ଗୌରବ, ସଂହତି ଓ ଇତିହାସକୁ ନେଇ ପୁଣି ଦେଶର ସ୍ୱାଧୀନତା, ସାର୍ବଭୌମତ୍ୱ ଓ ସମୃଦ୍ଧିରେ ପୁଣି ପ୍ରମୁଖ ଦାୟିତ୍ୱ ନେଉ ଏହା ହିଁ ମୋର ଶ୍ରୀ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା । ଦେଶର ସମୃଦ୍ଧି କଂଗ୍ରେସ ଦଳର ଶକ୍ତି ଉପରେ ନିର୍ଭର କରୁଛି ଏବଂ କଂଗ୍ରେସ ଦଳର ଦୁର୍ବଳତା ଓ ଅବକ୍ଷୟ ଓ ସାଧାରଣ ଜୀବନରେ ଭ୍ରଷ୍ଟତା, ଅନାଚାର ଓ ବ୍ୟକ୍ତିଗତ କ୍ଷମତାଲୋଭ କଂଗ୍ରେସକୁ କ୍ରମଶଃ ଶକ୍ତିହୀନ କରିବାରେ ଲାଗିଛି । ଏକଥା ସବୁ କଂଗ୍ରେସ କର୍ମୀ ହୃଦବୋଧ କଲେ ଓ ସୁଧାରିବା ପାଇଁ ସ୍ୱଚ୍ଛ ମନରେ ଏକ ଭାଇଚାରାର ସମ୍ମାନୀତ ସମବେତ ଉଦ୍ୟମ କଲେ ପୁଣି ଗାନ୍ଧିଜୀ, ନେତାଜୀ ସୁବାଷ ଓ ପଣ୍ଡିତ ନେହେରୁ ସ୍ୱର୍ଗରୁ କଂଗ୍ରେସକୁ ଆଶୀର୍ବାଦ ଦେବେ । ଭାରତ ପୁନର୍ବାର ଜନାଦେଶରେ ଶକ୍ତିଶାଳୀ ହୋଇ ଦେଶର ସମୃଦ୍ଧିକୁ ଆଗେଇ ନେବାରେ ସମର୍ଥ ହେବ ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।

